# ॥ କ୍ଷଣ କ୍ଷଣକେ ଆନ ॥

ଲେଖକ :

**କାହ୍ନୁଚରଣ**

ପ୍ରକାଶକ :

**ବୁକସ ଆଣ୍ଡ ବୁକସ**
ବିନୋଦବିହାରୀ, କଟକ-୨

ପ୍ରଥମ ସଂସ୍କରଣ : ୧୯୭୫
ଦ୍ୱିତୀୟ ସଂସ୍କରଣ : ୧୯୮୫

ମୁଦ୍ରଣ :
**ମେଘମାଳା ପ୍ରିଣ୍ଟର୍ସ**
କଟକ-୧

ମୂଲ୍ୟ : **ଟ ୩୬-୦୦ ମାତ୍ର**

**Khyana Khyanake Ana**

By :
**Kanhu Charan Mohanty**

Published by :
**Books & Books**
Binodbihari, Cuttack-2

2nd Edition : 15th. Aug. 85

Printed at :
**Meghamala Printers**
Cuttack-753001

Price : **Rs. 36-00 only**

ସୁନାମଧନ୍ୟ ଔପନ୍ୟାସିକ
ଶ୍ରୀଯୁକ୍ତ ନିତ୍ୟାନନ୍ଦ ମହାପାତ୍ରଙ୍କ
କର-କମଳରେ
ଅର୍ପଣ କଲି···

**କାହ୍ନୁଚରଣ**

କାର୍ତ୍ତିକ ପୂର୍ଣ୍ଣିମା
ତା ୧୮।୧୧।୧୯୭୫

# ଏଇ ଲେଖକଙ୍କର........

କା
ପଙ୍କ
ଶାନ୍ତି
ସ୍ୱପ୍ନା
ଅପା
ନଷ୍ଟଭି
ତାରକା
ତାପସୀ
ପ୍ରତୀକ୍ଷା
ମାନସୀ
କ୍ଷଣିକା
ଅଙ୍ଗନା
ଶଙ୍ଖ
ଝଁନ୍‌ଜା
ତଥାସ୍ତୁ
ଇତିହ
ଉଦଣ୍ଡୀ
ହ୍ୱା-ଅନ୍ନ
ପଳାତକ
ବାଲିଗଜା
ମାୟାବର୍ତ୍ତି
ସତ୍ୟବତୀ
ପରକୀୟା
ଅନ୍ତଗସ୍ଥ
ବଜ୍ରବାହୁ
ଅଭିନେତ୍ରୀ
ଭୁଲ ହୁଏନା

ତୃଣ୍ଡବାଇଦ୍‌
ଅଦେଖା ହାତ
ତମସା ତୀରେ
ମୁଁ ମନ୍ଦ ଜାଣେ
ଆଜ ନୁହେଁ ଆଉଦିନେ
କ୍ଷଣ କ୍ଷଣକେ ଆନ
କହିବାକୁ ଲାଜ
ଛୁଟିଲେ ଘଟ
ସ୍ୱୈର ବ୍ରହ୍ମାଣୀ
ଢେଉ-ଢେଉକା
ଦୁନିଆର ଦାଉ
ଓଲଟ ପାଲଟ
ମିଳନର ଛନ୍ଦ
ବଗ ବଗୁଲି
ତରଙ୍ଗର ତଳେ
ଏପାଖ ସେପାଖ
ବନଗହନର ତଳେ
ଭଲ ପାଇବାର ଶେଷକଥା
ଅତି ଗୋପନୀୟ
ସ୍ୱପ୍ନ ନା ସତ୍ୟ
ମନ ଜାଣେ ପାପ
ଅତି ଗୋପନୀୟ
ମମତାର ମାୟା!
ନାମଟି ତା'ର ଚମ୍ପା
ମେଲଣୀ ମାଗୁଣୀ
ଲଲାଟ ଲିଖନ



ପିଲାଟି ଶୋଇପଡ଼ିଲାଣି । ଠନଦନ ହେଲା ବାଧକା ପଡ଼ିଛି । ଦେହରେ ତାତି ଯେ ଧାନ ପକାଇଲେ ଖଇ ଫୁଟିବ । ଔଷଧ କାମ କରୁ ନାହିଁ । ଆହାରେ ହୀନକପାଳିଆ ! ବାପ ଥାଉଣୁ ତୁ ଛେଉଣ୍ଡ ହେଲୁ ? ଖୁଣ୍ଟିଆ-କୁଳର ଦୀପଟି ତୁ, ସବୁ ଥାଇ ତୁ ନିଆଶ୍ରା । ସତେ ଚକାଡୋଳା ଗୁହାରି ଘେନିବେ ? ତୁ ଭଲ ହୋଇ ବାଟ ଚାଲିବୁ ? ହେ ବଡ଼ ଠାକୁରେ, ଦୟାକର—

ଆଖିରୁ କେତେ କେତେ ଲୁହ ଝରି ପଡ଼ୁଥାଏ । ମଣିକୁଦ ଗାଆଁର ଖୁଣ୍ଟିଆଘର ବୋହୂ, ଟଣ୍ଡ ଦେଇ, ରତନପୁର ଗାଆଁର କାର୍ତ୍ତିକ ମହାନ୍ତିଙ୍କ ଘରେ, କେଉଁ ପୁରୁଷର ଶିଶୁକାଠର ପୁରୁଣା ପଲଙ୍କ ଉପରେ ବସି ଶୋଇଲା ପିଲାଟି ପାଖରେ ଠାକୁରଙ୍କ ଉଦ୍ଦେଶ୍ୟରେ ଓଳଗି ହେଲା । ଥରକୁ ଥର । ମନରେ ସେହି ଗୋଟିଏ ମିନତି, ଜନମରୁ ଦୁଃଖୀ ଏଇ ଅରକ୍ଷିତ ପିଲାକୁ ଭଲ କରିଦିଅ । ପ୍ରଭୁ, ସମସ୍ତଙ୍କୁ ଛାଡ଼ି ତୁମରି ଆଶ୍ରା ମୁଁ ଧରିଛି ।

ଦିଆଁସ ରାତି । ଆଜି ପୁରୀ-କ୍ଷେତ୍ରରେ ବଡ଼ଠାକୁରଙ୍କ ନେତ୍ରୋତ୍ସବ । କେତେ ଦିନରୁ ଆଶା କରିଥିଲା, ଗାଁ ଲୋକଙ୍କ ସଙ୍ଗେ ଶ୍ରୀକ୍ଷେତ୍ରକୁ ଯିବ । ଦିଅଁ ଦର୍ଶନ କରିବ । ପୁଅକୁ ସମର୍ପି ଦେବ । ବାଇଶି ପାହାଚରେ ଗଡ଼ାଇବ, ତା'ର ଦୀର୍ଘ-ଆୟୁ କାମନା କରିବ । ଗୁହାରି କରିବ, ଅରକ୍ଷିତ ପଛେ ମୂଲଲାଗି ପେଟ ପୋଷୁ ଠାକୁରେ, ସେ ଭଲ ମଣିଷ ହେଉ । ତୁମରି ପଦ୍ମପାଦରେ ତା' ମନ ଲାଗିଥାଉ । ବାପର ଲକ୍ଷ୍ମୀଛଡ଼ା, ଘରବୁଡ଼ା ପ୍ରକୃତି ତା'ର ନ ହେଉ ।

ପିଲାଟି ବେମାର ପଡ଼ିଲା । ତା' ଆଶା ମେଣ୍ଟିଲା ନାହିଁ । ଅତି କଷ୍ଟରେ ପେଟକାଟ-ବଣିଜ କରି ପୁରୀ ଯିବା ପାଇଁ ଟଙ୍କା ଦେଢ଼କୋଡ଼ି ସେ ସଞ୍ଚିଥିଲା । ଏ ଘରର ଚାଷଜମି ଚାରିମାଣରୁ ଚଇତନ ପାତ୍ର ,ଅସଲ ଜମି ଦେଢ଼ମାଣ ଜବର-ଦଖଲ କରି ଓଟାରି ନେଇଛନ୍ତି । ସେହି ଶିମୁଳିତଳ ଜମିରେ ନାଲପାଣି ମାଡ଼େ । ସୁନା ଫଳେ । ଦଖଲ ନ ଦେବାକୁ ତା' ବାପା ଚେଷ୍ଟା କରିଥିଲେ । ମାଡ଼-ଫଉଜଦାରୀରେ ପାତ୍ରଙ୍କର ଜଣେ ମୂଲିଆ ଲହୁଲୁହାଣ ବେହୋସ ହେଲା । ବଡ଼ ସହରର ଡାକ୍ତରଖାନାରେ ପଡ଼ିଲା । ମାସେ କାଳ ଛଟପଟ ହୋଇ ସେ ମଲା ।

ଟଗିର ବାପା କାର୍ତ୍ତିକ ଏବେ ଜେଲ୍ ଖଟୁଛନ୍ତି । ଚାରି ବର୍ଷରୁ ଅଧିକ ରହିଲେଣି । ଅରକ୍ଷିତର ସେ ମୁହଁ ଦେଖି ନାହାନ୍ତି । ଆଉ ଦି ମାସରେ ତାଙ୍କୁ ଚାରି ବର୍ଷ ପୂରିବ ।

ବାପକୁ ପୁଲିସ ବାନ୍ଧି ନେଇଗଲେ । ଟଗିର ବାହୁଣୀ ସାବତମାଆ ଶିମୂଳିତଳ କିଆରିପରେ ଥାଇ କୁଆଡ଼େ ତା' ବାପାକୁ ଦେଖୁଥିଲା । ଅସନା ଭାଷାରେ ପାଇକଙ୍କୁ ଗାଳି ଦେଉଥିଲା । ଶାବଳ ଉଞ୍ଚେଇ ତାଙ୍କ ମୁଣ୍ଡରେ ପାହାରେ ପିଟିଥିଲା । ଭାଗ୍ୟକୁ ସେ ଘୁଞ୍ଚିଗଲେ । ନୋହିଲେ କୁଆଡ଼େ ତାଙ୍କ ମୁଣ୍ଡ ଛତୁ ହୋଇଯାଇଥାନ୍ତା !

ନାଟୁଆକୁ ଖୋଜା ପଡ଼ିଲା । କିନ୍ତୁ ସେ ଉଡ଼ି ଯାଇଥିଲା । ସଞ୍ଚିଲା ଧନ ଗହଣା-ଗାଣ୍ଠି, ଫେଡ଼ିଲୁଗା ସବୁ ନେଇ ପଳେଇଲା । ତାକୁ କୁଆଡ଼େ ଖୋଜା ଚାଲିଛି । କିଏ କହୁଛି ଧର୍ମପଡ଼ା ନେପାଳ ଗଲାଣି । ଆଉ କିଏ କହୁଛି, ତା' ଦୂରସ୍ଥ ଗେରସ୍ତ ଘରେ ଲୁଚିଛି । ସେଠି ତା'ର ଭେଣ୍ଡା ପୁଅ ଅଛି ।

ଯାଉ, ମୁଆଡ଼େ ଯାଉଛି ସେ ରାକ୍ଷସୁଣୀ । ତା' କଥା ମନେ ପଡ଼ିଲେ ଏବେ ବି ଟଗିର ଛାତି ଥରଉଠେ !

ଅମଳ ଜମି ତ ଗଲା, ଆଉ ସେଇଁ କଣ୍ଟିଆ ଜମିରେ କି ଫସଲ ଫଳିବ ଯେ ପିଲାକୁ ମିଶାଇ ତିନିପ୍ରାଣୀ କୁଟୁମ୍ବର ସଂସାର ଚଳିବ ? ବୁଢ଼ୀ ଜେଜେମା ପ୍ରାୟ ଅଚଳ ହୋଇଆସିଲାଣି । ରୋଗରେ ପଡ଼ିଲେ ମରଣ ଖୋଜୁଛି । ପୁଣି, ଠାକୁରଙ୍କ ପାଖରେ ଜଣାଣ କରୁଛି, ପୁଅଟା ଜେଲ୍‌ରୁ ଫେରୁ ଠାକୁରେ, ସେଇଠୁ ମତେ ନେବ । କିଏ ମୋ ମୁହଁରେ ନିଆଁ ଦେବ ତମେ ବିଚାର । କିଏ ସେ ଟୋକାର ମହତ ଜଗିବ କହିଲ ? ଯୁବାନ ବୟସ । ମନ ଚହଲିବ । ଜୋଇଁଟାର ମନ ଯେବେ ହେଲେ ଦିନେ ବଦଳିବ ତ !

ଟଗି ଶୁଣେ । ମୁହଁ ଖୋଲେ ନାହିଁ । ତାର ପ୍ରାଣ ବି ସେହି ଆକୁଳମିନତି କରେ । ନିଜ ପାଇଁ ନୁହେଁ, ଏଇ ଛୁଆଟା ପାଇଁ; ଯିଏ ବାପର ମୁହଁ ଦେଖିଲା ନାହିଁ । ସ୍ନେହ ପାଇଲା ନାହିଁ । ହେ ଠାକୁରେ, ତା'କୁ ଭଲ କରିଦିଅ । ତମର ଦର୍ଶନ କରି ଆସିବ । ମଝିରେ ଦିନ ଦୁଇଟା ଛାଡ଼ି ଶ୍ରୀଗୁଣ୍ଡିଚା । ମୁଁ ଯିବି, ମୋର ଅରକ୍ଷିତକୁ ସଙ୍ଗରେ ନେଇଯିବି । ଝିଅଆର ଶୁଭମନାସି ଶ୍ରୀଛାମୁରେ ଜଣାଣ କରିବି ।

—ବହୁ ଦୁଃଖ କଷ୍ଟ ସହି ପ୍ରାଣପଣେ ଚେଷ୍ଟା କଲି ହେ ଠାକୁରେ, ସବୁ ତମକୁ ଜଣା; ତଥାପି ସେ ବାଟକୁ ଆସିଲା ନାହିଁ । ଶେଷକୁ ଯାହା କଲା ତ ଜାଣିଲ, ମୋର ଆଉ କି ଚାରା ? ତମେ ତାକୁ ଭଲ ବୁଦ୍ଧି ଦିଅ । ସେ ନିଶା-ଅମଳର କବଳରୁ ବଞ୍ଚୁ । ଗଞ୍ଜେଡ଼ିଙ୍କ ମେଳରେ ନ ପଶୁ । କୁଆଡ଼ର ଜନାକାରିଆ ବାବାଜୀଟା, ଗେରି କି ତନ୍ତର, ତା କବ୍‌ଜାରୁ ଖସିଆସୁ ଠାକୁରେ ! ଆଉ, ସେହି ଛଇ-ଛଟକୀ କୁହମୀ ସୁନାଦେଈର ପାଲରୁ ଉଦ୍ଧରି ଆସୁ । ସବୁ ସେ ମୋହିନୀ ଡାଆଣୀଟା ଶୋଷି

ନେଇଛି । ଝିଅର ଧଡ଼ିଆ-ଧେଡ଼ିଙ୍ଗ ଧିଅରେ ଯେଉଁ ନିଶ୍ୱାସ ଆତଯାତ ହେଉଛି, ସେତକ ସେ ନ ଶୋଷୁ ଠାକୁରେ, ସେ ବଞ୍ଚିଥାଉ । —

ଅରକ୍ଷିତ କଡ ଲେଉଟାଇଲା । ଭିଡ଼ିମୋଡ଼ି ହେଲା । ଓଠ ଚାଟିଲା । ତଣ୍ଟି ଶୁଖିଯାଉଥିବ ପରା । ଟଗି ପଲଙ୍କ ଉପରୁ ଓହ୍ଲାଇଲା । ଛୋଟ ଆଲମାରି ଉପରେ ଜଳୁଥିବା ଲଣ୍ଠନର ଆଲୁଅକୁ ତେଜିଲା । ଆଲମାରିରେ ଗୋଟିଏ ଥାକରେ ପିଇବା ପାଣିର ଡେକ୍‌ଚିରୁ କାଚ ଗିଲାସରେ ଅଳ୍ପେ ଆଣିଲା । ଔଷଧ ବୋତଲ ଉଠାଇ ଉପରେ ରଖିଲା । ଆଉ ପାନେ ଅଛି । ଦୁଇ ତିନି ଘଣ୍ଟା ତଳେ ଗୋଟିଏ ମାତ୍ରା ଦେଇଥିଲା । ଏ ମାନଜ ସକାଳ ପାଇଁ ।

ଡାକ୍ତର କହିଥିଲେ, ପାଣି ଦେବାରେ ହେଳା କରିବ ନାହିଁ । ଜର ଏଇ ଔଷଧରେ ଛାଡ଼ିଯିବ ।

ଠାକୁରେ ଜାଣନ୍ତି, ଟଗି ଭାବିଲା, ସବୁଦିନେ ସେହି ଆଶ୍ୱାସନା ଦେଉଛନ୍ତି । ଭଲ ଡାକ୍ତର । ଗରିବଙ୍କଠାରୁ ପଇସା ନିଅନ୍ତି ନାହିଁ ।

ଟଗି ପିଲାର ପାଟିରେ ପାଣି ଦେଲା । ସତେ ସେ କେଡ଼େ ଶୋଷିଲା ଥିଲା ! ନିଦ ଭିତରେ ଅଧ ଗିଲାସେ ପାଣି ଢୋକି ଦେଲା । ଚାହିଁଥିଲା ତ, ସେ ପୁଅ ଆଖି ବୁଜିଲା । ଦେହକୁ ଟଗି ଘୋଡ଼ାଇ ଦେଲା । ଝାଳଉଛି । ଜର ଓହ୍ଲାଇ ଯିବ କି ?

ଏକା ଦୃଷ୍ଟିରେ ଶୋଇଲା ପିଲାର ମୁହଁକୁ ସେ ଚାହିଁ ରହିଲା । ସୁନ୍ଦର ମୁହଁଟି ଫଣ ଫଣ ଦିଶୁଛି । ଭ୍ରୂଲତା, ଆଖି ଓ ନାକରେ କାହାର ଛାଟିକା ? ସୁନାଦେଈର ପୁଅ ଶିବଚରଣର ? ହେଲେ ହୋଇଥିବ । କିଏ ମନା କରିବ ? ଲୋକେ କହନ୍ତି, ଅରକ୍ଷିତର ମୁହଁଟି ଟଗିର ମୁହଁପରି । ଜେଜେମା ମୁଣ୍ଡ ହଲାଇ ଦିଅନ୍ତି । ଆଖିକୁ ଭଲ ଦିଶୁ ନାହିଁ । ତଥାପି ନିରେଖି ନିରେଖି କହନ୍ତି, ପିଲାଦିନେ ତୋ ବାପ କାର୍ତ୍ତିକା ଏମିତି ହୋଇଥିଲା ଲୋ ଟଗି ।

ଟଗି ତା ମୁହଁରେ ଝିଅ-ମୁହଁର ଝଲକ ଦେଖେ । ଏବକା ଝିଅର ଲକ୍ଷ୍ମୀଛଡ଼ା ହାଡ଼ୁଆ ଜ୍ୟୋତିହବ ମୁହଁର ପ୍ରତିଫଳନ ନୁହେଁ । ତା'ର ପିଲାବୟସର ଛନଛନିଆ ମୁହଁର ପ୍ରତିବିମ୍ବ । କେଡ଼େ ନିଷ୍ଠୁର ସେ ଲୋକ ! ଟଗିର ବାରଣ ନ ମାନି ତା ଜେଜେମା ଲୋକ ପଠାଇଥିଲା ମଣିକୁଦ ।

କୁଆଡ଼େ ସବୁ ସେ ଶୁଣିଲା । କିଛି ଜବାବ ଦେଲା ନାହିଁ । ନଟରା-କାଶରେ ଦାଣ୍ଡଘରେ ଲେଟି ଯାଉଥାଏ । ଖଁ ଖଁ ହୋଇ ଖଙ୍କାର କାଢ଼ି କବାଟ କଣକୁ ପକାଉଥାଏ । ଦିନ ଦି ପହରେ ତା' ଆଗରେ ବସି ଦୁଇଜଣ କିଏ ଚିଲମ ସଜାଡ଼ୁଥାନ୍ତି ।

ହରି ମାହାକୁଡ଼ ଫେରି ଆସି ଜେଜେମା ଆଗରେ ଆଉ କେତେ କ'ଣ ଗପୁଥିଲା । ଟଗି ଶୁଣିବାକୁ ରହିଲା ନାହିଁ । ମନର କୋହକୁ ଚାପି ଆଖିରୁ ଲୁହ

ଫେରିଯାଇ ସେ ଝିଅପୁଅ ପାଖକୁ ଫେରି ଆସିଥିଲା । ସେହି ଦିନରୁ ଲୋକ ପଠାଇବା ଆବଶ୍ୟକ ମଣେ ନାହିଁ । ବାଟ ସାତ କୋଶ । କେବେ କେମିତି ସେହି ଗାଆଁରୁ ଉଡ଼ାଖବର ଭାସିଆସେ । ମିଛ ଗୁଜବ କଥା ବି ହୋଇ ପାରେ । ଟିକେ ଶୁଣିବାକୁ ଆଗ୍ରହ ପ୍ରକାଶ କରେ ନାହିଁ । ଆଡ଼େଇ ଯାଏ ।

ସବୁ ସମ୍ପର୍କ ଛୁଟିଗଲେ ବି କେହି କାହାକୁ ଛାଡ଼ପତ୍ର ଦେଇ ନାହିଁ । ସମ୍ପର୍କକୁ କିଏ ଛିଣ୍ଡାଇ ପାରିବ ? ଠାକୁରେ ଅରକ୍ଷିତକୁ ଆୟୁଷ ଦିଅନ୍ତୁ । ମଣିକୁଦ ଖୁଣ୍ଟିଆ ବଂଶକୁ ଏ ସଂସାରରେ ସେହି ରଖିବ ।

ଏଇ ଉଆଁସ ରାତିରେ ରୋଗଣା ପୁଅର ପାଖରେ ସେ ଜଗି ବସିଛି । ଦୁଇରାତି ସେ ଅନିଦ୍ରା ହେଲାଣି । ଆଜି ବି ସେମିତି ସେ ଅନିଦ୍ରା ରହିବ । ଠାକୁରେ ଅରକ୍ଷିତଟିକୁ ଭଲ କରି ଦିଅନ୍ତୁ । କେଜାଣି, ମନ ବଦଳିଲେ କେବେ ତା'ର ହାଡ଼ମାଳିଆ ବାପ ତା'କୁ ଲେଉଟିବ । ଦେଖିବାକୁ, ସଂଖୋଳିବାକୁ ଆସିବ । ଆଜି ସେ କାହିଁକି ଟିକେର ମନେ ପଡ଼ୁଛି । ଖୋଜୁଛି କି ଆଉ !

ସବୁ ଖୁଣ୍ଟିଆଙ୍କର ସେ ଏକୋଇର ବଳା ବଣିକେସନ । ଗେହ୍ଲାରେ ବଢ଼ିଥିଲା । ସେ ବାପମାଆଙ୍କର ନୟନପିତୁଳା । ତେଣୁ ପିଲାଟି ଦିନରୁ ଅମାନିଆ ଉଦ୍ଧତ ସ୍ୱଭାବର ହୋଇଥିଲା, ହୁଣ୍ଡା ଓ ହୁଡ଼ୁମା । ଖେଳିଲା ଶଗଡ଼ରେ ହାତ ପୂରାଏ । ଦାଣ୍ଡର କନ୍ଦଳ ଘର ଭିତରକୁ ଓଟାରି ଆଣେ । ଖୁଣ୍ଟିଆଏ ପରମଣିଷଙ୍କ ହାତ ଓଠ ଧରନ୍ତି । ଉଜୁଡ଼ା ଦ୍ରବ୍ୟର କ୍ଷତି ପୂରଣ ଦିଅନ୍ତି । କନ୍ଦଳ ମେଣ୍ଟାନ୍ତି । ପୁଅକୁ ବୁଝାନ୍ତି । ଉପଦେଶ ଦିଅନ୍ତି । ଶାସନ କରନ୍ତି ନାହିଁ ।

ଯେତେ ଚେଷ୍ଟା କଲେ ପାଠ ହେଲା ନାହିଁ । ଘୁଷୁରି ଘୁଷୁରି କୌଣସି ମତେ ସେ ଲେଖିପଢ଼ି ଶିଖିଲା । ହିସାବ କରି ଜାଣିଲା । ଚାହାଳିପାଠ ନ ସରୁଣୁ, ପୋଥିରେ ଡୋରି ବନ୍ଧା ହେଲା ! ବୁଢ଼ାଗୁଆ କଟର କଟର ହୋଇ ତା'ଠାରୁ ସାତ ସାନ ପିଲାଙ୍କ ସଙ୍ଗେ ପାଠ ପଢ଼ିବାକୁ ତା'କୁ ଲାଜ ମାଡ଼ିଲା । ସ୍କୁଲ ଛାଡ଼ି ବାପାଙ୍କ ଚାଷ କାମରେ ସାହାଯ୍ୟ କରିବାକୁ ସେ ମନ କଲା ।

ସେ କାମ ବି ପଟିଲା ନାହିଁ । ଫୁଲଫାଙ୍କଡ଼ିଆ ହୋଇ ଗାଁର ଆଉ ପାଞ୍ଚ ସାତ ମୂର୍ତ୍ତି ଚଗଲା ଟୋକାଙ୍କ ମେଳରେ ନାନାଦି କୁ-କର୍ମରେ ବେଳ କଟାଇଲା । ଖୁଣ୍ଟିଆ ଦି' ପ୍ରାଣୀ ପ୍ରମାଦ ଗଣିଲେ । ଦିହେଁ ବିଚାରିଲେ ପିଲାଟାକୁ ଅଠର ପୂରି ଉଣେଇଶ ଚାଲିଲାଣି, ତା' ହାତକୁ ଦି' ହାତ କରିଦେଲେ ସେ ବାନ୍ଧିହେବ । ମନ ଘର ଧରିବ । ତା' ବାଉନାଭୂତପଣିଆ ଭାଙ୍ଗିବ । ସେ ବାଟକୁ ଆସିବ ।

ଫଗୁ ଖୁଣ୍ଟିଆ ପୁଅ ପାଇଁ କନିଆଁ ଖୋଜିଲେ । ରତନପୁର ଗାଆଁର କାର୍ତ୍ତିକ ମହାନ୍ତିଙ୍କର ଗୋଟିଏ ବୋଲି ଝିଅ । ପୁନାଖଣ୍ଡିକା ଟେକିଦେଇ । ତା' ଖବର ତାଙ୍କ ପାଖରେ ପହଞ୍ଚିଲା । ସେ ନିଜେ ଦେଖିବାକୁ ଆସିଲେ । ପସନ୍ଦ କଲେ । ସେ ଜାଣିଲେ, ଝିଅଟି ପିଲାଦିନରୁ ମା ହରାଇଛି । ଏବେ ସାବତ ମା ପାଖରେ ଚଳୁଛି । ଦେହର ରୂପରେଖ ଦେଖି ସେ ଅନୁମାନ କରିପାରିଥିବେ, କେଡ଼େ ଦୁଃଖରେ ସେ ବେଳ କାଟୁଥିବ । ଖଡ଼କୁଟରେ ରହୁ । ଦେବାନେବା ପ୍ରଶ୍ନ ସେ ଉଠାଇଲେ ନାହିଁ । ଜବାବ ଦେଲେ । ଦିନ ବାର ସ୍ଥିର କରିଗଲେ ।

ଝିଅଟି ସୁଖରେ ରହିବ, ଏପରି ଧାରଣା କାର୍ତ୍ତିକ ମହାନ୍ତିଙ୍କ ମନରେ ହେଲା । ସେ ଆୟୋଜନରେ ଲାଗିଗଲେ ।

ସାବତମା ନାଟୁଆ ମୁହଁ ମୋଡ଼ୁଥାଏ । ସେହି ନାଟୁଆର ମାଡ଼ଗାଳି ଖାଇ ତା'ର ଗଞ୍ଜଣା ସହି ଟେକି ଛଅବର୍ଷ କଟାଇଲାଣି । କାହାର ଏଡ଼େ ସାହସ ଯେ, ବାଘୁଣୀଟାର ଆଗକୁ ଆସି ଟେକି ପାଇଁ ପଦେ କହିବ ? ଯୋଗଣା ଶାଶୁ ବି ତା'କୁ ଡରିଥିବା ରହନ୍ତି ।

ଆଠ ବର୍ଷର ଝିଅଟିଏ ଥାଉଣୁ, ନାଥ ଆଶାରେ ଆଉ ଥରେ ବାହା ହେବାକୁ ଧାକଟା କରି ସେହି ତ କାର୍ତ୍ତିକଙ୍କୁ ପ୍ରବର୍ତ୍ତାଇ ଥିଲେ । ନାଟୁଆର ବି ସେ ଦ୍ୱିତୀୟ ପକ୍ଷ । ଆଗ-ବର ତାକୁ ଛାଡ଼ପତ୍ର ଦେଇଥିଲା ।

ବାହାଘର ସରିଲା । ଟେକିର ବିଦାବିଦ ବେଳେ କାର୍ତ୍ତିକ କାନ୍ଦି ନ ଥିଲେ ।

ରଜାଘର ପୁଅ ପରି ଜୋଇଁ ଖଣ୍ଡେ ସେ ପାଇଥିଲେ । ପନ୍ଦର ବର୍ଷର ଝିଅକୁ ଊଣେଇଶ ବର୍ଷର ପୁଅ । ପାଚିଲାଟେକିର ବର୍ଣ୍ଣ ପରି ଘମଅଁଠା ଝିଅର ଦେହର ରଙ୍ଗ । ଛଅଟା ବର୍ଷରେ ସେ ରଙ୍ଗ ନାଟୁଆର କୋପର ତାପରେ ଫାଳିଆ ଧରିଛି । ସେଇ ଜହ୍ନାବାଳୀ ଡ଼ାଆଣୀ ତାକୁ ଖଟେଇ ଖଟେଇ, ଅଧା ପେଟିଆ କରି ହାତରେ, ଗୋଡ଼ରେ, ପାଖରେ ଯାହା ହାବୁଡ଼ିଲା ସେଥିରେ ପିଟି, ତା'ର ଛନ ଛନିଆ କଅଁଳ ପୁରୁଗୁଚିଆ ଦେହରୁ ସବୁ ରକ୍ତ ଶୋଷି ଖାଇଛି । ବୟସ ଲାଗିଲା, ତଥାପି ଦେହ ଓ ମୁହଁ ଶେଥା । ଆଖି ପେଁକୁଆ । ମୁଣ୍ଡର କେଶ ଦିନେ କଳା ମିଚ ମିଚ ଥିଲା । ନଅ ବର୍ଷର ଛୁଆଟାର ଫୁଞ୍ଚୁଲା ନାରଙ୍ଗ-ପିଠିରେ ତେଲ ଜୁଳୁଜୁଳୁ ଲମ୍ବା ବେଣୀ ଦୋହଲୁଥାଏ—ଯେବେ ସେ ଗୁଣୁଗୁଣୀ ହାତ ପରି ଥାକୁଲୁ ଥାକୁଲୁ ହୋଇ ଧାଏଁ ।

କେଜେମା ତାକୁ କୋଳରେ ପୁରାଇ ଶୋଇଲା ବେଳେ ଆଖିରୁ ଲୁହ ଗଡ଼ାଇ କାନ୍ଦେ । କହେ ଭୁମ୍ପରୁନକା, ଆଲେ ଟେକି ! ମୁଁ ରଣ୍ଡୀଚୁଣୀ ତତେ ଏତେ ସରି କରାଇଲି । ଜାଣିଛୁ ତ, ମନେ ଥିବ । ତୁ ସାତ ବରଷର ପିଲା ହୋଇଥିଲୁ । ତୋ' ବୋଉ ରଙ୍ଗଣୀର ଡ଼ାହାଣ ପାଦର ତଳପାରେ ଖପରା ପଶିଲା । ଲହୁ ଲୁହାଣ

ହୋଇ ଘରକୁ ଫେରିଲା, ସନ୍ସନ୍ଆ ଜଙ୍ଗଲଆ ପଡ଼ିଆରୁ । ମୁହଁ ସଞ୍ଜ ବେଳ ।
ଖଇରପାଣିରେ ଧୋଇଲି । ଉଷୁମ ତେଲ ଲଗାଇ ଦେଲି । ଭାବିଲି, ମୋ ସୁନା
କଣ୍ଢେଇ ବୋହୂଟା, ତାଆରି ବରଗ ମ ରୁ, ହେଲେ ତା'ର ପାତଳ ଓଠ ଦିଓଟି
ରଙ୍ଗ ବୋଳିଲି ପରି, ସେ ଭଲ ହୋଇଯିବ ।

କି ହେଲା କେଜାଣି ଲୋ ଟଗି ! ତୋ ନାଁ ତ ମୁଁ ଦେଇଛି । କି ହେଲା
କେଜାଣି ? ଦି ଦିନ ପରେ, ତାକୁ ବାତ ମାରିଲା । ଧନୁ ପରି ଟାଙ୍କି ହୋଇ
ଯାଉଥାଏ । ଜଡ଼ିବୁଟି କାମ ଦେଲା ନାହିଁ । କେଉଁ ଠାକୁରାଣୀ କି ପେତନୀ ସେହି
ଧୂଅପଡ଼ିଆରେ ଏକୁଟିଆ ମୋ ଛନଛନିଆ ନହୁଣୀ-ପିତୁଳା ବୋହୂଟାକୁ ଲୋଭ
କଲା । ତା ଭିତରେ ପଶିଲା ଲୋ ମା ! ସବୁ ପଣାପାଣି, ଧୂପଦୀପ ବ୍ୟର୍ଥ ହେଲା ।
ମୋ ସୁନାକଣ୍ଢେଇ ଆଖିବୁଜି ଦେଲା ।

ରୋଗଣୀ ବୁଢ଼ୀ ମୁଁ । ବାତଜର ଧରି ଗୋଡ଼ ଦୁଇଟା ଟିକିଏ ଫୁଲିଛି ।
ଚଲିବାକୁ ଅସଜ । ଦୁଫୁରି ଘୁମୁରି କି କାମ କରନ୍ତି ଯେ ! ତୋ ବାପ କାର୍ତ୍ତିକ
ଘର ମାଡେ ନାହିଁ । ଦିନସାରା ବାହାରେ ବାହାରେ ଥାଏ । କାମ କରେ ।
କାଉପରି ରାତରୁ ଦି ଗୁରି ଖୁମ୍ବା ନେଇ କାମ ବାହାନାରେ ଉଠେ । ରାତି ପହର ବେ
ଫେରେ ଲୋ ! ନକେ ତତେ କୋଡ଼ରେ ବସାଇ ଖୋଇ ପେଇ ଦିଏ । ଆପେ ଦି
ଗୁଣ୍ଡା ପାଟିରେ ଥୋଇ ତୋତେ କୋଳରେ ଧରି ଶୋଇପଡ଼େ ।

ରଙ୍ଗଣୀକୁ ଝୁରି ତା' କଣ୍ଠା ଦୋହଲିଲା । ଯେତେହେଲେ ତୁ ଝିଅଦରବ'
ଦିନେ ନା ଦିନେ ପରଘରେ ଥୁଆ ହେବୁ । ଏ ଡ଼ିହରେ କିଏ ଘର କରି ରହିବ ?
ମାହାନ୍ତି ବଂଶର ନାମ ରଖିବ ? ଏଇ ଚିନ୍ତା ମତେ ଘାରିଲା ଲୋ ମା ! ସାତ ପୁରୁଷ
ବଡ଼ବଡ଼ୁଆଙ୍କୁ କିଏ ମଦିଏ ପାଣି ଦେବ ? ଦି ବର୍ଷ ପରେ ବେଲଗଛିଆ ଗାଆଁରୁ
ଆଣିଲି ଏଇ ରାକ୍ଷସୁଣୀକୁ । କିଏ ଜାଣିଥିଲା ସ୍ୱା'ର ଗୁଣ ? ପାଣ୍ଡୁଆଁ ନାହାକ ମତେ
ଭୁଲେଇଦେଲା । ହା ! ତା ସାତ ପୁରୁଷ ନରକରେ ଘାଣ୍ଟି ହେଉନ୍ତୁ ।

ଆଲୋ ଟଗି, ମୋ ସୁନା କଣ୍ଢେଇ, କି ସରି ହେଲୁଣି । ସିଏ କାହାକୁ
ଶରଧା କରିବାର ଦେଖିଲେ ନାଟୁଣୀର ଆଖିରେ କିଏ ଶୁଖୁଆ କଣ୍ଟା ମାରେ ।
କରପନ୍ତ ଯୋଡ଼ି ତା'କୁ କାର୍ତ୍ତିକା ରହିଛି । ଖାଲି ତୋ'ରି ପାଇଁ । ଯେଉଁ ଆଶାରେ
ଦାଣ୍ଡର ଅରକ୍ଷିତଆମିଟାକୁ ଆଣି ଘରର ବୋହୂ କଲି. ସେ ଆଶା ଫଳିଲା ନାହିଁ ।
ଛଅବର୍ଷ ହେଲା ବାହାଘର । ସେ କଣି ଧରିଲା ନାହିଁ । କିଏ ଜାଣିଥିଲା ନାଟୁଣୀ ତିନି
ବରଷ ସଂସାର କରି ଆଗ ଗୋଟାଏ ବରକୁ ଖାଇଥିଲା ? ପିତାସୁଣୀଟା ବୋଲି ତା
ଶଶୁରଘର ବାଣ୍ଡୀଟାକୁ ହଶାଲଗା କରି ଛେଚିଲେ । ତା' ବୋପାଘରକୁ ତଡ଼ିଦେଲେ ।
ବୋପାଘରେ ଦୁଇ ବରଷ ରହିଲା । କୋଉ ଦରବୁଢ଼ା, କେଉଁ ଗାଆଁ ରଙ୍ଗି ? ଭୁଲ

ଗଲି । ମୋ ନିଆଁ ଲଗା ମନ । ତିନି କୋଡ଼ି ବର୍ଷ କି ବେଶି ହେବ ମୋ'ର ବୟସ । ରହି, ଜିଭ କାମୁଡ଼ି ମନେ ପକାଉଛି—

ନା, ମନେ ପଡ଼ୁନାହିଁ । ସେଇ ଗାଆଁର ସେହି ଦରବୁଢ଼ା । ତାର ଛଅଟା ପିଲା । ସାତ ବେଳକୁ ପିଲାଟା ସଙ୍ଗରେ ମାଆ ବି ମଲା । ସେହି ଲୋ, ତା'ର ଚଙ୍ଗୁଡ଼ି ବାଳୁଙ୍ଗା ଛୁଆଗୁଡ଼ିଙ୍କୁ ପାଳି ବଢ଼ାଇ ମଣିଷ କରିବାକୁ ନାଟୁଆକୁ ଶଙ୍ଖା ସିନ୍ଦୂର ପିନ୍ଧାଇ ଦୁତିଅ ହେଲି । ଇଲୋ, କାହିଁକି ଜାଣୁ? ସେ ଗୃହୁଁ ଥିଲା କାମିକା ମାଇପ । ଘର ସମ୍ଭାଳିବ, ପିଲାଙ୍କୁ ପାଳିବ । ନାଟୁଆ ଭାରି କାମିକା । କିଏ ମନା କରିବ? ଗୋଟିଏ ବର୍ଷ ସେ ରହି ପାରିଲା ନାହିଁ । ପିଲାଙ୍କୁ ଦି' ଆଖିରେ ସେ ଦେଖିଲା ନାହିଁ । ସେମାନେ ନିଆଶ୍ରା ହୋଇ ଗାଆଁରେ ବୁଲିଲେ ।

ତାଙ୍କ ବାପା କି ସହେ? ଲୁହା ଜାଣି ପାଣି ଦେଲା । ଗ୍ରୋଗଛି ବାଡ଼ିଆ । ହଗାଲଗା ମାଡ଼ । କେତେ ଥର । ସେଇଠୁ, ଦିନେ ରାତି ଅଧରେ ସେମିତି ମାଡ଼ ଦେଇ, ଚୁଟିଧରି ଦାଣ୍ଡରେ ଛାଡ଼ିଲା । କହିଲା, ଯାଆ ଲୋ ରାଣ୍ଡୀ, ବାଟ ସୁମରି ବାପ ଘର ଯାଆ, ତତେ ଛାଡ଼ପତ୍ର ଦେଲି ।

ସେଇ ଏ ନାଟୁଆ! ମୁଁ କେମିତି ଜାଣନ୍ତି? କିଏ କେମିତି ଠଉସନ୍ତା? ପାଣୁଆ ନାହାକ ସବୁ ଜାଣିଥିଲା ଲୋ ମା! ମୋ'ଠାରୁ ପଚିଶ ଟଙ୍କା ନେଲା । ତା' ଭାଇଠଉଁ କେତେ ଝଡ଼େଇଥିବ ତା'କୁ ଜଣା । ଅଜପ ମିଛଗୁଡ଼ାଏ ଗପି ମୋ' ଆଗରେ ନାଟୁଆର ପ୍ରଶଂସା, ଗଙ୍ଗାରୁ ଗଉତମ ଯାଏ ଗାଇଲା । ମୁଁ ଭୁଲିଲି । ଏ ଘରକୁ ଗୋଖର ସାପ ଆଣିଲି ।

ପର ଘରକୁ ତୁ ଯାଉଛୁ ଲୋ ଟିଆ! କେତେ ଦୁଃଖ ମୋ ପାଇଁ ସହିଲୁ । ମୋ ମନ ବିକଳ ହେଉଛି । ମୋ ଛାତି ଭିତରି କୋରି ହୋଇ ଯାଉଛି । ହେଲେ, ମୁଁ କାନ୍ଦିବି ନାହିଁ । କଇଲଣ କରୁଛି, ତୁ ସୁଖ ଶାନ୍ତିରେ ରହି । ତୋ'ର ସାତ ପୁଅ ଆଉ ସୁନାନାକୀ ଝିଅ ହେଉନ୍ତୁ । ତୋ' କାଚ ବଜର ହେଉ ।

ବିଦାବିଦା ବେଳେ କାନ୍ଦିଥିଲା ସେହି ସାବତ ମା! ହାହୁକ ବାହୁକ, ଟିଆର ଗୁଣ ସୁମରି । ଗାଁ ମାଇପେ ନାକରେ ଲୁଗା ଦେଇ ଟହ ଟହ ହସୁଥିଲେ । କିଏ ସବୁ ନିଜ ନିଜ ଭିତରେ କଥାଭାଷା ହେଉଥିଲେ ଅନ୍ୟମାନଙ୍କୁ ଶୁଣେଇ ଶୁଣେଇ— ଛେପଣି, ବେହେଲି, ବର ଓ ବରଯାତ୍ରୀଙ୍କୁ ମେ ଜଣେଇ ହେଉଛି, 'ମୁଁ ଏଡ଼େ ଯୋଗନ୍ତା କଲୁ ସେ କାନ୍ଦିଥିଲା । ଆଖିରୁ ଲୁହର ଝରଣା ଛୁଟାଇଥିଲା । ଟିଆ ଦେଖିଛି । ତା' ଆଖିରୁ ବି ଲୁହ ଝରୁଛି ।

ରତନପୁରରେ ସମସ୍ତଙ୍କର ସ୍ନେହ ସେ ପାଇଥିଲା । ଶାଶୂ ତ କରୁଣାର ମୂର୍ତ୍ତି । ପାଚିଲା ଆମ୍ବ ପରି ରଙ୍ଗ । ସାଧାରଣ ଉଚ୍ଚ । ଗୋଲିଆ ମୁହଁରେ ତୀଖ ନାକ । ଚକ୍‌କଣ ଚଉଡ଼ା କପାଳ ମଝିରେ ପଇସା ଆକାରର ସିନ୍ଦୂର ଟୋପା ଦାଉ ଦାଉ ଜଳେ । ଅଧେ କଳା ଅଧେ ଧଳା ମଥାର କେଶ ମଝିରେ ସିନ୍ଦୂରର ଚଉଡ଼ା ଗାର । ଆମ୍ବୁଆଳୀ ଦେହ, ନରମ ପୁଚୁ ପୁଚୁ । ବୟସ ପଚିଶ ଡେଇଁଥିବ । ରଙ୍ଗ ଶାଢ଼ୀରେ ଶରଧା ।

ଝିଅ ସେହି ଠାକୁରାଣୀର ଆଦର-ସ୍ନେହରେ କିଣି ହୋଇଗଲା । ଜନମ କଲା ମାଆଠୁଁ ବଳି । ସେ ପଦେ ଟାଣ କଥା କହି ନାହାନ୍ତି । ଶୋଇପଡ଼ିଥିଲେ କୋଳେଇ କାଖେଇ ନେଇ ନିଜ ହାତରେ ଭୁଞ୍ଜାଇ ଦିଅନ୍ତି ।

ବରଷ ଦୁଇଟାରେ ଝିଅର ରୂପ ସେ ବଦଳାଇ ଦେଲେ । ନିଜ ରୂପକୁ ଆଇନାରେ ଦେଖିଲେ ଝିଅ ଚିହ୍ନିପାରେ ନାହିଁ । ଗାଁ ମାଇପେ ଟିକିଏ ଖୁଣିଲେ, ଚେରେଇଛି ବୋଲି କହିଲେ ସେ 'ଇଲି ଥୁକ୍' କରନ୍ତି । ଅଧିକ ଅଧିକ କ୍ଷୀର ପିଆନ୍ତି । କହନ୍ତି, ଝିଅ ଯେମିତି, ମୋ ଝିଅ ବି ସେମିତି । ସେହି ଏ କୁଳ ଉଜ୍ଜ୍ୱଳ କରାଇବ ।

ତାଙ୍କର ଆଶା ଫଳିଲା ନାହିଁ । ସାତ ବର୍ଷର ବୋହୂପଣିଆ ଭିତରେ ତିନି ଥର ସେ କସି ଧରିଛି । ପାକଳ ହେବା ଆଗରୁ ଦୁଇଥର କସି ଖସିଥିଲା । ଶାଶୁଙ୍କର ଦୁଃଖର ସୀମା ରହିଲା ନାହିଁ । କାନ୍ଦି । ଓଳଟି ଶଶୁରେ ତାଙ୍କୁ ବୁଝାଉଥିଲେ । କହୁଥିଲେ, ଝିଅ ତ ଛୁଆ ବୟସ, ତା' ନାଡ଼ ଦମ୍ଭ ହେବ କିପରି ଯେ ! କସି ତ ଧରିଲାଣି ବଳେ ରହିବ । ଚିନ୍ତା କରନା ।

ଶାଶୁଙ୍କର ସହସ୍ର ମାନସିକ । ଠାକୁରାଣୀ ପୂଜା । ଦୁଃଖୀରଙ୍କୀଙ୍କୁ ଦାନ । ଝିଅର ଯତ୍ନ କହିଲେ ନ ସରେ । ଖୋଇପେଇ ଅଜଗର କରିପକାନ୍ତି ।

ଦ୍ୱିତୀୟ ଥର କସି ରହିଲା । ବଢ଼ିଲା । ପାକଳ ହୋଇ ଆସିଲା । ପୁରିଲା ସାତ ମାସ । କେବଳ ଶାଶୂ ଶଶୁର ନୁହନ୍ତି, ଗେରସ୍ତ ଝିଅ ବି ଖୁସିରେ ଗୁହିଁ ରହିଥିଲା । ପୁଅ କି ଝିଅ, ସେଥିକି ହେଲା ବିଚାର । କିଏ କ'ଣ ସ୍ୱପ୍ନ ଦେଖନ୍ତି । ବୁଢ଼ାବୁଢ଼ୀ ଆଲୋଚନା କରନ୍ତି । ଦୁହିଙ୍କର ସପନ ଭିନେ ଭିନେ । ଖୁସିରେ ଗୁଲା ପକାନ୍ତି । ସପନର ବିପରୀତ ଭିନେଭିନେ ଫଳ । ଜ୍ୟୋତିଷ ଗଣନା କରେ, କହେ ପୁଅ ନୁହେଁ ଝିଅ । ବ୍ରାହ୍ମଣ ଶ୍ଲୋକ ପଢ଼ି ନିଶ୍ୱାସ ବାର ଖିବତନ୍ତ୍ର କହନ୍ତି, ସେଇଆ ଯେ ତେବେ ଉପାୟ ଅଛି । ଗ୍ରହ ଶାନ୍ତି ପାଇଁ ହୋମ, ପୂଜା, ବ୍ରାହ୍ମଣ ଭୋଜନ । ମନକାମନା ପୂରଣ ନ ହୋଇ ଯିବ କୁଆଡ଼େ ? ବିଦ୍ୟା କ'ଣ ବ୍ୟର୍ଥ ହେବ !

ହୁଇ ହେ ଖୁଣ୍ଟିଆ ? ତମେ ଜାଣିବା ଶୁଣିବା ଲୋକ, କହୁନ କାହିଁକି ? ତମର ଅଭାବ କ'ଣ ?

ହୋମ, ପୂଜା, ବ୍ରାହ୍ମଣ-ଭୋଜନ, ବଦାଳା-ଦକ୍ଷିଣା ବ୍ୟର୍ଥ ହେଲା । ଗ୍ରହ-ମାନେ ଓଲଟି ଦୋଷା ହେଲେ । କୁଟୁମ୍ବର ସର୍ବନାଶ ହେଲା । ଏକା ଫଗୁ ଖୁଣ୍ଟିଆଙ୍କର କାହିଁକି, ଅନ୍ୟ କେତେକଙ୍କର ବି । ଗ୍ରାମକୁ ଠାକୁରାଣୀ ବଜେ କଲେ । କେତେ ଗାଁ ଅଧା ପଦା କରି ତାଙ୍କର ଭୋକଶୋଷ ମଲା ନାହିଁ । ମଣିକୁଦଆର ରକ୍ତମାଂସରେ ତାଙ୍କର ଶରଧା ବଳିଲା । ଆଜି ଏ ଘରୁ ଜଣେ ତ କାଲି ସେ ଘରୁ ଦି'ଜଣ । ପଣା-ପାଣି ତାଙ୍କୁ ଅଣ୍ଟିଲା ନାହିଁ । କେତେ କାଳିଆ-ବୋଦାଙ୍କର ତଟକା ରକ୍ତ ତାଙ୍କୁ ରୁଚିଲା ନାହିଁ । ତାଙ୍କର ଲୋଡ଼ା ମଣିଷର ରକ୍ତ, ମାଂସ ! ଅହୋରାତ୍ର ନାମସଂକୀର୍ତ୍ତନ ତାଙ୍କର ଭଣ୍ଡାରିଜଳାରେ ଗଲା ପଶି; ଓଲଟି ସଂକୀର୍ତ୍ତନିଆଙ୍କ ଉପରେ ରାଗ ଚଢ଼ୁଥିଲା ।

ଶଶୁରେ ଫଗୁ ଖୁଣ୍ଟିଆ ମୃଦଙ୍ଗ ଧରି ତାଳ ଦେଉଥିଲେ । ଟଭାର ଭେଣ୍ଡା ଗେରସ୍ତ ଝରିଆ ଝାଞ୍ଜ ଧରି ଅନ୍ୟମାନଙ୍କ ସଙ୍ଗରେ ମାଳ ଧରୁଥିଲା । ମଣିକୁଦଗାଁ ରାତି ସାରା ମଣିଷର ସ୍ୱର ଓ ଝାଞ୍ଜ ମୃଦଙ୍ଗ ନାଦରେ କମ୍ପୁଥିଲା । ଆଲୁଅମାଳ ବୁଲୁଥିଲା ସାହି ସାହିରେ, ଅନ୍ଧ କନ୍ଦରେ, ଗାଁ ଘରପାଖେ । କାଲେ ଅପଜ ଝିଅଟି ଡରିବ, ସେଥିପାଇଁ ଟଭାର ଶାଶୁ ତାକୁ କୋଳରେ ଶୁଆଇ ନିଜର ଲମ୍ବ ପଣତ ଘୋଡ଼ାଇ ଦେଉଥିଲେ । ଫୁଙ୍ଗୁଳା ପର୍ବତିଆ ନରମ ଗ୍ଲୁଡରେ ଆଉଜାଇ ହାତ ବଢ଼ାଇ, ମା ମଙ୍ଗଳାଙ୍କୁ ରାତିସାରା ଡାକ ଗ୍ଲୁଡ଼ୁଥିଲେ । ନେହୁରା ହେଉଥିଲେ, 'ମୋ ପୁଅ ପଢ଼ଙ୍କୁ, ମୋ' ବୋହୂଟାକୁ ଯାହାହେଉ ପଛେ ରକ୍ଷାକର । ପେଟରେ ପିଲାଟାଏ ଓଲଟୁଛି ଯେ । କେଉଁ ଜଣରେ ବା ସେ ଜଣେ ! ସମସ୍ତଙ୍କୁ ତୁ ପଣ୍ଡ ଘୋଡ଼ାଇ ରଖ ମା ! ଏତକ ଦୟା କର ।'

ଠାକୁରାଣୀ ବଧିର ହେଲେ । ଖୁଣ୍ଟିଆ ବଂଶର ପଣାପାଣି ପିଇ, କାଳିଶି ଭୃଣ୍ଡରେ କାଳିଆ ବୋଦାର ତଟକା ରକ୍ତ ଚୋକି, ସବୁ ପ୍ରକାର ଗନ୍ଧ-ଧୂପ-ଧୂଆଁର ମହକ ଶୁଙ୍ଘି, ନାମସଂକୀର୍ତ୍ତନରେ ହରି ନାମ ଶୁଣି, ତାଙ୍କର ଭୋକଶୋଷ ତୁଟିଲା ନାହିଁ । ତାଙ୍କ ମନ ଟଭାର ଶାଶୁଙ୍କ କାକୁତି ମିନତିରେ ତଟିଲା ନାହିଁ । ସେ ଆଗ ଅବତରିଲେ ତାଙ୍କର ଅନ୍ଧର ଲହଡ଼ି ଝରିଆ ଦେହରେ । ଠାକୁରାଣୀଙ୍କର ଦୟା ଯେ, ମୁହଁରେ ହଣ୍ଡା ହେଲେ ଅଲପ । ଦେହରେ ଟିକିଏ ଅଧିକ । ବାପ ଓ ମା ତାଙ୍କର ସେବାରେ ଲାଗିଲେ । ଟଭାର ମନ ଯେତେ ଆତୁର ହେଲେ ବି ତାକୁ ଝରିଆ ପାଖକୁ ଗ୍ଲୁଡ଼ିଲେ ନାହିଁ ।

'ତା' ଦେହରେ ପାଣେଉଠିଲା ବେଳକୁ ଏକସଙ୍ଗରେ ଶାଶୁ ଓ ଶଶୁର ହେଲେ କତରାଳଗୀ । ଗାଁ ଲୋକଙ୍କ କଥା ତ ଦୂରର, ହଳିଆ ବାଉରି ଭଅଁରା ବି ଘର ମାଡ଼ିଲା ନାହିଁ । ଠାକୁରାଣୀ ଦେହରେ ଟଭାର ଗେରସ୍ତ ଗାଈବାଛୁରି ଓ ବଳଦ-

ମାନଙ୍କର ସେବା କଲା । ଅସଜ ମାଇପିଟା ଟେଶ, ଯାହାକୁ ଶାଶୂ ଦାଣ୍ଡ ଦ୍ୱାର ମଡ଼ାଇ ନ ଥିଲେ, ସେ ପୁଣି ନସର ପସର ହୋଇ ଗାଁ ଦାଣ୍ଡରେ ଧାଇଁଲା । ଟିକିଏ ସାହାଯ୍ୟ ପାଇଁ କାହାକୁ କାକୁସ୍ଥ ମାଗୁଣି । ମାଇପେ କବାଟ କିଳିଲେ । ଜଳା କବାଟିରେ ଚାହିଁଲେ ତା'ର ଜଳଜଳ ଗର୍ଭିଣୀ-ରୂପକୁ । ଦୂରେଇ ଦୂରେଇ ମରଦେ ବ ଚାହିଁଲେ । ସବୁ ଜାଢର, ସବୁ ବସ୍ତୁସର ।

ଗ୍ରାମ ଲେଖାରେ କିଏ ହେବ ଶଶୁର-ଖୁଡ଼ତାଶୁର ବରଗ । କିଏ ଦେଢ଼ଶୁର ଦିଅର, ପିଉସା, ମଉସା, ଟେଶକୁ ଜଣା ନାହିଁ । ବଳକା ଅନୁରୋଧ, ଆଶ୍ୱସ୍ତି ଟିକିଏ, ସେମାନେ ଛଟପଟ ହେଉଛନ୍ତି । ତାଙ୍କ ରୋଗଣା ପୁଅ ତ ଟଳଟଳ । ମୁଁ ଏବେ ପାରିବ କେମିତି ? ମତେ କିଛି ଜଣା ନାହିଁ । ମାଆ ଠାକୁରାଣୀଙ୍କ କ ପୂଜା କେମିତି ଦେଇ ତୋଷିବ ? କେମିତି ଶଶୁର-ଶାଶୂ ଦିହଙ୍କର ସେବା କରିବ ? ଆସ ମ ଟିକିଏ; ଏ ବିପଦ ବେଳେ ସାହା ହୁଅ ।

ସେମାନେ ଭରସା ଦେଇଥିଲେ । ସେମାନେ ଟେଶର ଦେହକୁ ଗୋଡ଼ରୁ ମୁଣ୍ଡଯାଏ ତବତବ କରି ଚାହିଁଥିଲେ, ତା'ର ନସର ପସର ଗୁଣୁଣୀ-ହାଣ୍ଡି ଚାଲିକ । ତରଲ ତରଲ ଲାଜରା ଚାହାଣୀରେ ଟେଶ ଯଥା ସମ୍ଭବ ଟାଙ୍କଟାଉ ପାଦରେ ଫେରି ଆସିଥିଲା ।

ଆସିଲେ ଯେଉଁମାନେ, ଦୁଆର ବନ୍ଦ ବାହାରେ ତଳେ ମଥା ଲଗାଇ ଓଲଗି ହେଲେ । ଭସ୍ମରେ ଥରୁ ଥାଆନ୍ତି । କହିଲେ, ଅଖା ବସନ୍ତେଇ ବିଜେ କରିଛନ୍ତି । ମାଆଙ୍କ ମାୟା କାହାକୁ ଜଣା ! ଏଥିକି ଔଷଧ ନାହିଁ । ଲମ୍ବ ପତରରେ ବିଞ୍ଚ, ପାଣି- ପଣା ଦିଅ, ନିଣା, ଗୋଗଲ ଧୂପ । ତେଣେ ଗ୍ରାମ ଦେବତା ମାଜଣା କରାହେବ । ବୋଦାଟାଏ ଦିଆ ହେବ । ମାଆ ଦୟା କରିବେ । ଯେତିକି ହେଲା ସେତିକିରେ ଖୁସି ହୋଇ ଏ ଗ୍ରାମକୁ ପଛ କରି ଆଗେଇଯିବେ ନଈ ସେପାରି ସାତ ଭଉଣୀଆ ତୋଟାକୁ ।

ଦୁଇ ବଖରାରେ ଦୁଇଟି ରୋଗୀ । ଫଗୁଙ୍କ ପାଖରେ ଝିଅ । ଦେହରୁ ସବୁ ଖୋଲପା ଗୁଡ଼ା ଝଡ଼ି ନ ଥାଏ । ଦୁର୍ବଳତା ପାଇଁ ଚାଲିଲା ବେଳକୁ ଟଳ ଟଳ । ତଥାପି, ନ କଲେ ନ ଚଳେ । ଶାଶୁଙ୍କ ପାଖରେ ଟେଶ । ଦିହେଁ ପୁଣି ଏ ଘର ସେଘର ହେଉଥାନ୍ତି । ରୋଗୀଙ୍କ ଦେହରେ ସୋରଷ ପକାଇବାକୁ ରାହା ନାହିଁ । ଆଖି ଖୋଲୁ ନ ଥାନ୍ତି । ପାଟିରେ, ଜିଭରେ, ଗଳା ନାଳୀରେ ଠାକୁରାଣୀ ବିଜେ । ପାଣି ଗିଳିବାକୁ କଷ୍ଟ । କଥା ବୁଝି ହୁଏ ନାହିଁ । ଯନ୍ତ୍ରଣାରେ ଛଟପଟ । ରାତି ପାହିଲେ କେହି କେହି ଦାଣ୍ଡଦ୍ୱାର ଯାଏ ଆସନ୍ତି । ଖବର ବୁଝନ୍ତି । ଉପଦେଶ ଦିଅନ୍ତି । ଦୋକାନରୁ କନ୍ଦ, ତେଲ, ଧୂପ ଓ ଅନ୍ୟ ସଉଦା କିଣି ଦିଅନ୍ତି । ଗୁଣିଆ ପଠାନ୍ତି ।

ହେଲେ ଖିରଣ୍ଟେ । ଗାଡ଼ି ଦେଖ । ଲୋକର ବୋଳ ପଣିଆ, ଗେଲ୍ହାପଣିଆ ସରିଗଲା । ଆଗ ଖସିଲେ ଶାଶୂ । ତନି ଦନ ପରେ ଶଶୁର । ସେମାନଙ୍କର ତରୋଧାନ ପାଇଁ ଦୁଃଖ କରିବାକୁ ମନର କୋହ ଆସିରେ ଓ ତୁଣ୍ଡରେ ପ୍ରକାଶ କରି କାନ୍ଦିବାକୁ ତର ମିଳିଲା ନାହିଁ । ଝିଅ ପୁଣି କଡ଼ଚାଲୀ ହେଲା । ଦୁର୍ବଳ ଯେ ଫୁଙ୍କି ଦେଲେ ଉଡ଼ିପଡ଼ିବ । ତାର ସେବା, ଗାଈ ଗୋରୁଙ୍କ କାମ, ଗୁହାଳ ପୋଚ୍ଛରୁ ଘଷି ପାରିବା ଯାଏ, ଗହ୍ମଡ଼ା କୂଅରୁ ପାଣି ଓଟେଣ୍ଟ, ଧୋପେଇବାସ, ଘରଦ୍ୱାର ଝାଡ଼ିବା, ଏମିତି ଘରଟା ଯାକର କାମ ଟେଣ୍ଟ ହାତରେ ।

କୋଠିଆ ଟୋକା ଭଅଁ ର ଅବଶ୍ୟ ଆସିଲା, ଆଗ ବାଆଁରେଇ ହୋଇ, ସେଇଠୁ କେତେ ପେଖନା କାଢ଼ିଲା ମୁହଁଛପା ଦେଇ ରହିଥିଲା ବୋଲି । ଅସରଣ ପଡ଼ିଛି, ଟାଣ କଥା ପଦେ କହିବାକୁ ସାହସ ନାହିଁ । ବାପଲୋ, ଧନଲୋ, ଖାଇରେ, ଭଅଁ ର କରେ, ଏପରି ନ କହିଲେ ନ ଚଳେ । ଗାଁର ଆଉ ପାଞ୍ଚଟା ନଥିଲା ମାଇପେ ପରଘରେ ଯିଏ ପାଇଛି କଲେ ମାଣେ କି ପୋଷେ ନେଇ ହାଣ୍ଡିରେ ପକାନ୍ତି, ସେମାନେ ବି ଆସିଲେ । ଗୁହିରି ପାଇଛି କରି ଟେଣ୍ଟକୁ ସାହାଯ୍ୟ କରିବାକୁ ଆଗୁସାର ହେଲେ ।

ନୂଆଘରଣୀ ଟେଣ୍ଟ କାହାକୁ ପର କଲା ନାହିଁ । ମାଣେ କି ପୋଷେ ନେବେ ତ ନଅନ୍ତୁ, ଆସୁ ଥାଉନ୍ତୁ, ସାହା ହେଉଥାନ୍ତୁ ।

ଏତେ ବଡ଼ ବିପଦର ତୋଫାନ ଖୁଣ୍ଟିଆ ବଂଶ ଉପରେ ବହିଗଲା । ଗୁହରିଖାର କଲା । ଟେଣ୍ଟର ବାପା କାର୍ତ୍ତିକ ମହାନ୍ତି ଦିନେ 'ଆସି ଅଗଣାରେ ପାଦ ଦେଲେ ନାହିଁ ? ବାଟ ସାତ କୋଶ । ମଝିରେ ନଈ, ନାଳ, ପାହାଡ଼, ଜଙ୍ଗଲ ତ ନାହିଁ । ଗାଁକୁ ଗାଁ ଲଗାଲଗି । ନାଳ ପାଣିମଡ଼ା ଗହ୍ମରମାଳ ମଝିରେ ଶଗଡ଼ ଦାଣ୍ଡ । ବାରମାସିଆ ରାସ୍ତା ପଡ଼ିଛି ।

କ'ଣ ହେଲା ? ଟେଣ୍ଟର ଯାବତ ମା କ'ଣ ଏତେବଡ଼ ଚଉହାଡିଆ ବଳୁଆ ମଣିଷର ଅଣ୍ଟାରେ ଦଉଡ଼ି ବେଢ଼ାଇ କେଉଁ ଖମ୍ବରେ ବାନ୍ଧି ରଖିଲା ? ଅବା, ସେ ଭୁଲିଗଲେ ଯେ ଟେଣ୍ଟ ବୋଲି ତାଙ୍କର ଝିଅଟାଏ କେବେ ଜନମି ଥିଲା ? ସ୍ନେହ ପାଇଥିଲା ? ଦୁଃଖ ସହିଥିଲା, ପରଘରକୁ ଯାଇଥିଲା ? ଅବା, ସେ ମଣିଛନ୍ତି ଯେ ଟେଣ୍ଟ ପରଘରକୁ ଯାଇ ନାହିଁ, ଯମପୁରକୁ ଯାଇଛି ?

କ-ବ-ନ କରି ସେଉଁ ଚିଠି ଲେଖି ସେ ପଠାଇଥିଲା, ତା'ର ଉତ୍ତର ଦେଉଥିବା କୋଠିଆ ଭଅଁ ର ହାତରେ କାର୍ତ୍ତିକ ପଠାଇଥିଲେ—ମୁଁ ମଲିଣି ବୋଲି ବୁ

ବଗ୍ରରେ ଲୋ ଟେଶ୍ରା ! ବଞ୍ଚି ଆଉଣୁ, ଜାଆଣେ ମୁଁ ଯମପୁରକୁ ଗଲିଣି । ସେଇଟାର ଉତ୍ପାତ ସହ୍ୟ ହେଉ ନାହିଁ ଲୋ ମା ! ସେଇଟା ରାକ୍ଷସୁଣୀ, ପିଡାଶୁଣୀ, ଡାଆଣୀ କ କେଉଁଠିକାର ରକତଚଖା ଠାକୁରାଣୀ, କଏ ଜାଣେ ?

ଅଧାବାଇଆଣୀ ସେ ଅଲକ୍ଷଣୀ ! ମୋ' ରୋଗଣୀ ବୋଉ ଉପରେ ବି ହାତ ଚଲାଉଛୁ । ବୋଉ କହେ ନାହିଁ । ଦିନେ ମୋ' ହାବୁଡ଼େ ପଡ଼ିଲା । ଛେଚଲି, ଛେଚଲି ତାକୁ । ବେହୋସ କଲି । ଫାଶୀ ପାଇଲେ ପାଆନ୍ତୁ ପଛେ ତା ତଣ୍ଟି ଚପି ମାରଦେଇଥାନ୍ତି ।

ବୋଉ ବାଧା ଦେଲା । କହିଲା, ଆରେ ପୁଅ, ସେଇଟାର ରାଗ ରହେ ନାହିଁ । ତା ମୁଣ୍ଡକୁ ପିତ ଉଠିଲେ ସେ ସେମିତ ଭାଲୁକୁଣୀ ନାଟ କରେ । ତାକୁ ତ ମାରବୁ, ତା' ସଙ୍ଗେ ତା' ପେଟର ଛୁଆକୁ ବି ମାରବୁ ? ତୋ' ଦଶା କ'ଣ ହେବ ? ମୁଁ ସେ ପୁରକୁ ଗୋଡ଼ ବଢାଇଲିଣି । ଡେଉଁ ପଡ଼ିବ । ଏ ଭିଅରେ ବଲୁଆ ଡେଇଁବେ । ସେଇଠୁ ଚଇତନ ପାଜି ବାଇଗଣ ରୋଇବ ।

ବୋଉ କଥା ଶୁଣି ତା'କୁ ଛାଡ଼ିଦେଲି ଲୋ ମା ! ତେବେ, ଗୋଡ଼େ ଗୋଡ଼େ ଜଗିଛୁ । କେତେବେଳେ କ'ଣ କରବ । ତତେ ସଙ୍ଗୋଳିବାକୁ ଯିବି ଲୋ ମା ! ତୋ ଦୁଃଖର ତ ଅନ୍ତ ନାହିଁ ! ଆଗ ମୁଁ ସେ ଚଇତନ ପାଜିକୁ ସାଧି କରେ । କେମିତ ସେ ମୋ ସଙ୍ଗେ ଅଦଉତ ଲଗାଇଛୁ ! ଶିମିଳିତଳ କଆର ଉପରେ ଆଖି ପକାଇଲିଣି । ସେତକ ଆମର ଭାତ ଥାଳି । ବାହାଘର ପାଇଁ ଶହେଟି ଟଙ୍କା ତା'ଠାରୁ ଆଣିଥିଲି । ଖଣ୍ଡେ ସାଧାକାଗଜରେ ମୋ ଦସ୍ତଖତ ନେଇଥିଲା । କହୁଛି ହଜାରେ ଦେଇଛି । କହୁଛି ପାଞ୍ଚ ବରଷିଆ କଣ୍ଟରେ ଜମି ମୁଁ ତାକୁ ଦଖଲ ଦେଇଛୁ । ଏ କ ଡାହା ମିଛ ! ତା'ର ଦିନେ କ ମୋ'ର ଦିନେ, ହୁଁ —

କେତେ କ'ଣ ଲେଖିଥିଲେ ତା'ର ବାପା । ପଢ଼ିବାକୁ ଡର ନାହିଁ । ପେଟ ଭିତରେ ଆଠ ମାସର ପିଲା ବୁଲୁ ନାହିଁ । ଅସହ୍ୟ ବେଦନା । କାହାକୁ ଡାକବ ? ଝିଅଆ ଏବେ ସନ୍ଧ୍ୟାକୁ ଯାଉଛୁ କେଉଁ ବାବାଜୀ ପାଖକୁ । ଆସୁଛୁ କେତେ ରାତିରେ । କ'ଣ ସବୁ ନିଶା ଖାଉଛୁ । ଟଳ ଟଳ ହେଉଛୁ । ଏଣୁ ତେଣୁ ଗପୁଛୁ । ସଙ୍ଗେ ସଙ୍ଗେ ଖାଇବାକୁ ନ ଦେଲେ ହାତ ଉଠାଉଛୁ । ପୁଣି ଏ କ ଢଙ୍ଗ ! ଭାବୁଛୁ, ମୁଁ ଭଲ ମାଇପିଟା, ସଜ ମାଇପିଟା ? ନେହୁରା ହୋଇ ମନା କଲେ ମାନୁ ନାହିଁ । ପେଟ ବେଦନା ସେଇଠୁ ଆରମ୍ଭ । କାହାକୁ କହିବ, ଛି, ଛି, ଲାଜର କଥା ।

ବହୁ କଷ୍ଟରେ ଟେଶ୍ରା ବଞ୍ଚିଲା । ଆହା, କେଡ଼େ ଶୋଭିକାର କଇଁଫୁଲ ପରି ସଫେଦ୍ ପୁଅଟାକୁ କତରା ସହିତେ ଗୋଟାଇ ନେଇ ସେମାନେ ବଣ୍ଟତଳ ମଶାଣିକି ବୋହିନେଲେ । ମଣିକୁନ୍ଦ ଗାଁର ମାଇପି ମହଲରେ ପ୍ରସଙ୍ଗ ପଡ଼ିଲା ଟେଶ୍ରାର କଥା । ତା' ପେଟର ଛୁଆ ଉପରେ ଠାକୁରାଣୀଙ୍କର ଶରଧା ବଳିଥିଲା । ସେଇଥି ପାଇଁ ଟେଶ୍ରାକୁ ସେ ନ ଛୁଇଁ ଚାଲି ଯାଇଥିଲେ ।

ଦୁଇ ମାସ ପରେ ଝିଅ ସ୍ୱାସ୍ଥ୍ୟ ଫେରି ପାଇଥିଲା । କିନ୍ତୁ ଝିଅଆର ଢଙ୍ଗ ଧାଳୁ ଧନ ଆହୁରି ବଦଳିବାକୁ ଲାଗିଲା । ଯେଉଁ ଦାଢ଼ିଆ ବାବାଜୀ କେଉଁଠୁ ଆସି ମଣିକୁନ୍ଦ ଗାଆଁ ମୁଣ୍ଡ କୋଚିଲା ବଣରେ କୁଟୀ ରଚି ଥିଲା, ତା'ର ଅସଲ ଭକ୍ତ ହେଲା ଝିଅଆ ।

ଘରକାମ, ବିଲବାଡ଼ି କାମ ପଛ କରି ସବୁ ବୟସର କେତେ ଲୋକ ବାବାଙ୍କ ପାଖରେ ଜୁଟିଲେ । ଅଳ୍ପ ବଣ ସଫା କରି ତାଙ୍କପାଇଁ ଖଣ୍ଡାଘର ତୋଳା ହେଲା । ଦେବୀମାନଙ୍କୁ ସ୍ଥାପନା କରାଗଲା । ଗୋଟିଏ ଘରେ ଶିବଲିଙ୍ଗ । ଅଗଣା ମଝିରେ କୂଅ ।

ବାବାଜୀ ନିଜେ ପୂଜା କରେ । ଶିବ କହୁ, ଠାକୁରାଣୀ କହୁ, ସେମାନଙ୍କ ସଙ୍ଗେ ହସ ଖୁସିରେ କୁଆଡ଼େ ସେ ଆଳାପ କରେ । ଲୋକଙ୍କର ମନକାମନା ପୂରଣ କରିବାକୁ ତାଙ୍କୁ ଭୋଗରାଗ ଦେଇ ମତାଏ ଠାକୁରାଣୀଙ୍କ ପାଖରେ ମଦ ଓ ମାଂସ, ଶିବଙ୍କ ପାଖରେ ଗଞ୍ଜେଇ ।

ଭକ୍ତମାନେ ଜୁଟିଲେ । ନିମେ ଗାଆଁର ତରୁଣୀମାନେ ବି ଜୁଣ୍ଡ ହେଲେ । କାହାର କେତେ କାଉର ମନକାମନା—

ଅନ୍ୟମାନଙ୍କ ଗହଣରେ ଝିଅ ଦୁଇଥର ଯାଇଛି । ଦେଖିଛି ବାବାଜୀଙ୍କର ରୂପ । ମୋଟା ମୋଟା ବଳିଷ୍ଠ ଉଚ୍ଚ ମଣିଷ । ଗୌର ତନୁ । ଭରପୂର ସୁନ୍ଦର ମୁହଁ । ବଡ଼ ତୀଖ ନାକ । କଳା ମିଚ ମିଚ ଗୋଟ୍ଟଳିଆ ଜଣ ମିଶିଛି ବହଳିଆ ମୁଠିଏ ଲମ୍ବ ଦାଢ଼ିରେ । କାନରେ ବି ମେଞ୍ଚାଳିଆ କେଶ । ମୁଣ୍ଡର କଳାବାଳ କାନ୍ଧତଳକୁ ଓହଳିଛି । ନାଲିଚିଆ ପୂରିଲା ପୂରିଲା ଲମ୍ବ ଆଖି ଉପରେ ଗୋଟ୍ଟଳିଆ ଚଉଡ଼ା ଭ୍ରୂଲତା । ବାହୁ ଉପରୁ ମୁନ୍ଦ ପଞ୍ଜ'ଗୋଲ ଗୋଲ କେଶର ଭରିଁଗି ଆଚ୍ଛାଦିଛି ଚଉଡ଼ା ବିଶାଳ ଗ୍ରୀବ ଓ ଲମ୍ବି ଯାଇଛି ନାହିତଳ ଛାଡ଼ିଆ କିରଧନ ଯାଏ । ଦିଶନ୍ତି ସେ ଭୟଙ୍କର । ହୃଦରେ କହନ୍ତି । ହାତଠାରି ମୁଖ ଭଙ୍ଗୀ କରି ଭାବ ପ୍ରକାଶନ୍ତି ।

ତାଙ୍କୁ ଦେଖିଲେ ଡର ଲାଗେ । ସେ ଗୁହିଁଲେ ମନେହୁଏ ଯେପରି ତାଙ୍କର ତୀରମଦ୍ୱ ଗୁହାଣୀ ଦେହର ଦସନ ଭେଦ, ମାଂସ ଭେଦ ଦେହ ଭିତରକୁ ପଶି ଯାଉଛି । ସେ ମୁରୁକେଇ ହସନ୍ତି ମୁହଁକୁ ଗୁହିଁ । ନାଲିଚିଆ ଢ଼ଳ ଢ଼ଳ ଆଖି ବି କେମିତି ହସୁଆ ହୁଏ । ଢ଼ୋଲା ଦୁଇଟା ଜଳି ଉଠେ କି ? ଗ୍ରୀବ ଥରି ଉଠେ । ପାଦ ତଳେ ମୁଣ୍ଡ ଲୋଟାଇ ଦିଏ । ଅନ୍ୟ ଭୂଆସୁଣୀଙ୍କ ସଙ୍ଗେ ଝିଅ ତାଙ୍କର ପାଦ ତଳେ ମୁଣ୍ଡିଆ ମାରିଛି । ମୁଣ୍ଡ ଉପରେ ତାଙ୍କ ହାତର ପରଶ ପାଇଛି । ମୁଣ୍ଡହଲି ଦେଖିଛି ।

ଝରଆର ଗୋଡ ଧରି ସେ ଲୁହ ଝର ଝର ଆଖିରେ ମାଗୁଣି କରୁଛ, ଦୁଇ ବର୍ଷ ଭିତରେ ତମର କି ରୂପ ହେଲାଣି ? ମାରିବ ତ ମାର, ମନ ଇଚ୍ଛା ମାର, ତମର ଭଲକୁ କହୁଛ । ତମେ ସେଇଟାର ପାଖ ପଶ ନାହିଁ । ଗାଁ ଛତରଙ୍କ ସାଙ୍ଗେ ମେଳା କରି ଗଞ୍ଜେଇ ଟାଣ ନାହିଁ, ମଦ ଖାଅ ନାହିଁ । ଘରୁ ସବୁ ବୋହି ତା' ପାଖରେ ଅଜାଡ଼ିଲ । ଘର ଉଜୁଡ଼ିଲା । ଜମିରେ ଘାସ ବଢ଼ିଲା । ମୁଁ ମାଇପିଟା କୁଆଡ଼କୁ ହେବ ? ସେ ଦାଢ଼ିଆ ବାବାଜୀର ଢଙ୍ଗ ଭଲ ନୁହେଁ । ଗାଁର ଜାଣିଲା ମାଇପେ କେତେ କଥା କହୁଛନ୍ତି । ତମରି ପାଇଁ ପେଟରେ ମୋ'ର ଆଠମାସର ପୁଅ ମଲା । ତମରି ଗୋଇଠା ମାଡ଼ରେ ପେଟରୁ ପୁଣି ଚାରି ମାସର ଛୁଆ ଖସିଲା ସେ ମରୁ ମରୁ ବଞ୍ଚିଲ । ତମ ଗଞ୍ଜେଇଖିଆ ପାଇଁ ।

ମାଇ ସଞ୍ଜ । ଝରଆର ଗଞ୍ଜେଇ ଟଣା ବେଳ ଗଡ଼ି ଯାଇଥାଏ । କିଏ ଗୋଟାଏ ତା ନାଁ ଧରି ଦାଣ୍ଡରୁ ଡ଼ାକ ଛାଡ଼ୁଥାଏ । ଅଗଣାର ତୁଳସୀ ମୂଳରେ ସଞ୍ଜବତୀ ମାଟିଦୀପର ଗର୍ଭରେ ଶିଖା ଟେକିଥାଏ; ସେହି ଶିଖା ହଲି ହଲି ଧପ୍ ଧପ୍ ହେଉଥାଏ । ମାଟି ପିଣ୍ଡା ଉପରେ ଜଳୁଥାଏ ନଳଟେଣି ।

ଦାଣ୍ଡରୁ ଡାକ ଶୁଣି ଝରଆ ଗୋଡ଼ ଛୁଟିଲା । ଟେଭି ଉଠି ଠିଆ ହେଲା । ଝରଆ କହିଲା, ଆବେ ଶୁଣ । ସେ ବାବାଜୀ ମହାତ୍ମା ଭିତରେ ମହାଦେବ ଅଛନ୍ତି । ସେ ଏମିତି ସେମିତି ଲୋକ ନୁହନ୍ତି । ତାଙ୍କର ତିନିଟା ଆଖି । କପାଳର ଆଖିଟା ଭକ୍ତଙ୍କ ଛଡ଼ା ଆଉ କାହାକୁ ଦିଶେ ନାହିଁ ।

ଟେଭି ପଚାରିଲା, ତମେ ଦେଖିଛ ?

ଝରଆ କହିଲା, ପାଞ୍ଚଥର କି ପଚାଶିଥର ଦେଖିଥିବି । ଅନ୍ୟ କେହି କେହି ଦେଖିଛନ୍ତି । ନିଆଁ ପରି ଦପ୍ ଦପ୍ ଜଳେ । ତାଙ୍କର ଦୟା ହେଲେ ତୁ ବି ଦେଖିବୁ । କେତେ କୁଆଡର ବାଞ୍ଝ ମାଇପେ ଦେଖି ଯାଇଛନ୍ତି । ଯାହାଙ୍କର ପିଲା ପେଟରେ ମରେ, ପେଟରୁ ଖସେ, ସେମାନେ ବି ଦେଖିଛନ୍ତି । ସେ ଦୟା କଲେ ହେଲା ।

ଟେଭି ପଚାରିଥିଲା, ସତେ କି ?

ଝରଆ ଉତ୍ତର ଦେଲା ସତ, ସେମାନେ ବାବାଜୀଙ୍କ ଆଗରେ ସୁନା ରୁପାର ଗହଣାଟିଏ ଥୋଇଦେଇ ଓଲଗି ହୁଅନ୍ତି । ସେଥିକରେ ସେ ଖୁସି । ସୁନା ରୁପା ସେ ଛୁଅନ୍ତି ନାହିଁ । ତାଙ୍କ ପାଖରେ ସେ ଯେଉଁ ଛୋଟ ବାବାଜୀ ଅଛ ଯୋଗସାଧନା ଶିଖୁଛି ସେଇ ତାକୁ ଠୁଳ କରେ । ହିସାବ ରଖେ । ଚାରି ଛଅ ମାସରେ ଆଉ ଜଣେ ସାଧକ ବାବାଜୀ ଆସନ୍ତି । ସବୁ ସେ କଇଳାସ ପର୍ବତକୁ ନେଇଯାନ୍ତି । ସେଇଟା ହିମାଳୟ ପର୍ବତ ଉପରେ । ନିଜେ ମହାଦେବ ସେଠାରେ ସ୍ୱଦେହରେ ଚଳପ୍ରଚଳ । ତାଙ୍କର ସୁନା ରୁପାର ମନ୍ଦିର ତୋଳା ହେଉଛି । ସେଇଠୁ ଏ ବାବାଜୀ ଆସିଛନ୍ତି । ଦେଖିନୁ ତାଙ୍କ ତ୍ରିଶୂଳ ?

ଟଗ୍ରୀ କହିଲା, ଦେଖିଛୁ । ଝିଟକୁ ଥାଏ । ସୁନାର ହୋଇଥିବ । କହୁଥିଲ ପରା, ସେ ଦାସୀ କଲେ ବାଆଁଙ୍କର ପିଲା ଜନ୍ମେ ?

ଝିଣିଆ କହିଲା, ଆଉ କେତେ ଗପେଇବୁ ? ପିଲା ହେବେ କ'ଣ, ହୋଇ ସାରିଲେଣି । କେଉଁ ସବୁ ଗାଆଁରୁ ଖବର ପହଞ୍ଚିଲାଣି । ତୋତେ ଦେଖି, ତୋ' କଥା ସେ ମତେ ଗୁପ୍ତରେ କହି ସାରିଲେଣି । ସେ ସବୁ ଜାଣନ୍ତି ।

ଜନମ ବେଳୁ, କେଜାଣି ତୋ' ମା' ପେଟରୁ ତୋ ଭିତରେ ଗୋଟାଏ ଗ୍ରହମୁଣ୍ଡା ଆସି ନେଇଛି । ସେଇ ଆଗ ତୋ' ବୋଉକୁ ଖାଇଲା । ତୋ ବାପକୁ ଖାଇଥାନ୍ତା ଯେ, ତା କର୍ମବଳରୁ ବଞ୍ଚିଗଲା । ତୋର ଏ ବୋଉକୁ ବି ଖାଇଥାନ୍ତା ଯେ, କାଳୁ ସେ ତତେ ମାଡ଼ ମାରି ସାଧି କରି ରଖିଥିଲା । ତୋ' ଗ୍ରହମୁଣ୍ଡୀ ମୁହଁମାଡ଼ ପଡ଼ିଥିଲା ସିନା, ତା କାଗମତ ଦେଖେଇଲା । ତୁ ଥିବା ଯାକେ ତୋ' ମାବତ ମା ଗର୍ଭରେ କିଛି ଧରିଲା ନାହିଁ । ତୁ ଆମ ଘରକୁ ଆସିଲା ପରେ ଯାଇଁ ତା'ର ପୁଅ ହେଲା ।

ଟଗ୍ରୀ ଝିଣିଆର ହାତଟାକୁ କଟମଟ କରି ଧରିଥିଲା । ସେ ହାତ ଥରିଲା । ଗୋଡ଼ ଧରିଲା । ଗ୍ରହ ଦାଉଁ ଦାଉଁ ପଡ଼ିଲା ! ଝିଣିଆ କହିବାକୁ ଲାଗିଲା, ତୋ ବୋପା ଚଣ୍ଡାଳ ଏତେ କଥା ଜାଣେ ନାହିଁ । ତୁ ତା'ର ଗେହ୍ଲାଝିଅ ବୋଲି ପୁଅର ଜନମ ଖବର ଦେଇ ଲୋକ ବରଗିଥିଲା । ଦେଖିଯିବାକୁ ତୁ କାନ୍ଦିଲୁ, ବୁଝିଲୁ । ଗ୍ରହଥିଲେ ବୋପା ବୋଉଙ୍କୁ ବି ଖାଇଥାନ୍ତୁ । ଦୁଇଟି ମୁଅ ଖାଇ ତୋ' ଗ୍ରହମୁଣ୍ଡା ଥଣ୍ଡା ହେଲା । ହେଲେ କଅଁଳା ପିଲାକୁ ତୁ ଗ୍ରହିଲୁ କି ? ଏକୋଇଶା ପୁରିଲା ନାହିଁ । ଆହା ! ପିହୁଳା ମାରିଲା ବୋଲି ତୋ' ବୋପା ଖବର ପଠାଇଥିଲା ।

ଟଗ୍ରୀର ହାତମୁଠା ଝିଣିଆ ହାତରୁ ଖସି ପଡ଼ିଲା । ସେ ଡରିଲା ଥରିଲା ସ୍ୱରରେ ପଚାରିଲା, ମୁଁ ତ ଆମ ଘରକୁ ଯାଇ ନ ଥିଲି ? ସେ କଅଁଳା ପିଲାକୁ ଦେଖି ନ ଥିଲି ?

ଝିଣିଆ କହିଥିଲା, ତୋ ସପନ କଥା ମୋତେ ତୁ କହୁଥିଲୁ ପରା—କେମିତି ଗାଆଁକୁ ଯାଇଛୁ, ତୋ' ଟିକି ଭାଇକୁ କୋଳରେ ଧରି ବୋକ ଦେଉଛୁ ।

ସେଇଟା ସପନ ନୁହେଁ, ସତ । ତୋ' ପିଣ୍ଡଟା ମୋ' ପାଖରେ ଏ ଘରେ ପଡ଼ିଥିଲା । ତୋ' ଭିତରର ଗ୍ରହମୁଣ୍ଡା ଦେହରୁ ବାହାରି ସେ ପିଲାକୁ କୋଡ଼ରେ ଧରିଲା । ପିହୁଳା ମିଶାଇ ତା' ପ୍ରାଣ ଶୋଷି ନେଲା । ଏ ଘରକୁ ଆସି ଯାହା ହେଲା ସମସ୍ତେ ଜାଣନ୍ତି । ଯେଉଁମାନେ ତତେ ସ୍ନେହ କରି ଦୁଧ ଘିଅ ଖୋଇ ଘଣ୍ଟିମାଳି ବାଉଁଶକଣିରୁ ଫାଲୁକା ବେଙ୍ଗ କଲେ, ଆଗ ତୁ ତାଙ୍କୁ ଖାଇଲୁ । ମତେ କ'ଣ ନ ଖାଇ ଗ୍ରହିଥାନ୍ତୁ କି ? ଘଣ୍ଟି ହେବୁ କାଳେ, ସେଥିପାଇଁ ତୋ ନିଜ ଉପରେ ଉପ୍ରୋଧ କଲୁ । ଗାଆଁରେ ସେମାନେ ଏଇଆ କହୁଛନ୍ତି । ବାବାଜୀକୁ ସବୁ ଜଣା ।

ଟେଙ୍ଗର ମଥା ଭ୍ରମିବାକୁ ଲଗିଲା । ସନ୍ଧ୍ୟା ଅନ୍ଧାର ଭିତରେ ଜକ ଜକ ହେଉଥିବା ଜୁଳୁଜୁଳିଆ ପୋକଗୁଡ଼ା ସତେ ବା ନିଆଁହୁଳା ପରି ତା' ମୁଣ୍ଡ ଭିତରେ ପଶିଗଲେ ଥରଥରକା । ସେ ଜ୍ୟେଷ୍ଠମାସର କୃଷ୍ଣପକ୍ଷ କଳାବାଦଲିଆ ଉଷୁମୁକିଆ ଝାଳବୁହା ଆକାଶତଳେ ତୁଳସୀ ଚଉରାପାଖ ଗ୍ରେଟ ଅଗଣାରେ ବସିପଡ଼ିଲା । ମୁଣ୍ଡରେ ତ ଭାବନା ନାହିଁ, ସେ ତୁଣ୍ଡ ଖୋଲନ୍ତା କିପରି ? ତା'ର ମନେ ହେଲା, ଯେପରି ତା'ର ଝାଳ-ଜରଜର ଫୁଙ୍ଗୁଳା ମାଉଁସିଆ ପିଠିରେ କିଏ ନିର୍ଘାତ ଆଘାତ କରୁଛି । ଗୋଟାକ ପରେ ଗୋଟାଏ ବେଦନାରେ ତା'ର ଭ୍ରମିଲା ମନ ସ୍ଥିର ହେଲା । ସେ ଦେଖିଲା, ସେହି ଦୁର୍ବଳ ଲୋକଟି ଯିଏ ତା'ର ଗେରସ୍ତ, ତାକୁ ଠିଆ ଗୋଇଠା ମାରୁଛି ଆଉ କ'ଣ କହୁଛି ।

ସେ ପିଠି ସଳଖି ଉଠିଲା । ଝିଅଆ କହୁଛି, ଶଳା ଭଅଁରୀ କୁଆଡ଼େ ପଳେଇଲାଣି । ସାଙ୍ଗ ବାଟ ଯୋଉଁ ଡାକଡାକ ହାଲିଆ ହେଇଛି । ମେଲା ଡେଣେ ଡେରିହେବ । ବାବାଜୀ ଖୋଜୁଥିବ । ତୁ ଶାଳୀ ଛଟାଗାଲା ବସିଲେ ଗୋରୁ ମୋହିବ କିଏ ? ଗୁହାଳରେ ଧୂଆଁ କିଏ ଦେବ ବେ ?

ଟେଙ୍ଗି ନିଶ୍ୱାସ ରୋକି ରୋକି ଗୁଡ଼ି ଗୋଇଠା ମାଡ଼ର ଯନ୍ତ୍ରଣାକୁ ପଦାକୁ ଛାଡ଼ିଲା । ଅଲଗାକେଣ ଝାଡ଼ି ସେ କହିଲା, ମୁଁ ସବୁ କହିବି । ତମେ ଟିକିଏ ରହ । ମୋ' କଥା ଶୁଣ । ସେଇଠୁ ଯିବ, ଯାହା ମନ କରିବ । ମୁଁ ବାଧା ଦେବି ନାହିଁ । କେବେ ତମ ବାଟ ଓଗାଳିବି ନାହିଁ ।

ଝିଅଆ ପଚାରିଲା, କ'ଣ କହି; ଜଲଦି କହି ।

ଟେଙ୍ଗି ଧଇଁସଇଁ ହେଲା । ଟେଙ୍ଗି ସୁକୁ ସୁକୁ ହୋଇ କାନ୍ଦିଲା । କାନ୍ଦ ରୋକି, ଲୁହ ପୋଛି ସେ କହିଲା, ସେମାନେ ଯାହା କହିଲେ ସତ ହୋଇଥିବ । ଆଜିଯାଏ ଜାଣି ନ ଥିଲି । ଆଜି ତମେ କହିଲାରୁ ଜାଣିଲି ।

ଝିଅଆ କହିଲା, ବାବାଜୀ କହିଲେ ତ ! ତୋ ଆଖିକି ଚାହିଁ ସେ ଜାଣି ପାରିଲେ । କିଏ ତା' ଆଗରେ କ'ଣ ଲୁଚାଇ ଛପାଇ ରଖି ପାରିବ ? ସବୁ ତା'କୁ ଜଣା ।

ଟେଙ୍ଗି କହିଲା, ଜାଣିଲ ତ, ମୋତେ ଏମିତି କଲବଲ କରି ମାରୁଛ କାହିଁକି ? ମୋ ଆତମାକୁ କେଣ୍ଡା କେଣ୍ଡା କର ନାହିଁ । ମୋ ଜୀବନ ବେଶୀ କଷ୍ଟ ପାଇଲେ ମୋ ଭିତରେ ଥିବା ଚାମୁଣ୍ଡା ଯଦି ତମ ଉପରେ କୋପ କରି କଅଣ ନାହିଁ କଅଣ କରି ପକାଇବ । ମୋ'ର ଜୀବନ ରହିଲେ ସିନା ମୁଁ ନିଜେ ସବୁ ଦୁଃଖକଷ୍ଟ ଅଙ୍ଗରେ ନିଭାଇ ତାକୁ ଜଗିବି, ଯଦି ଜୀବନ ହାରେ ?

ଝିଅଆ ଟିକିଏ ତରଗଲା । ତା' ପାଟିରୁ ବାହାରିଲା ଗୋଟାଏ ଲମ୍ବ ସ୍ୱର, ଏଁ-ଏଁ-ଏଁ । ସ୍ୱର ଥରୁଥିଲା ! !

ଝେଞ୍ଜି କହିଲା, ତମେ ମୋ ତଣ୍ଟି ଚିପି ମାରିଦିଅ । ସବୁ ଲଟେ ତୁଟିଯିବ । ସମସ୍ତେ ନିଶ୍ଚିନ୍ତ ହେବେ । ମୋ ଭିତରେ ଥିବା ଚାମୁଣ୍ଡା ଆପେ ଖଲାସ ହୋଇ କୁଆଡ଼େ ପଳାଇବ । ଆଉ କାହାର ଅନିଷ୍ଟ ହେବ ନାହିଁ ।

—ଭଲ ବୁଦ୍ଧି ଶିଖାଉଚୁ ତ, ଝେଙ୍ଗିଆ କହିଲା । ଗଲାବେଳେ ମତେ ଫାଶୀ କାଠରେ ଝୁଲାଇ ମୋ ଜୀବନ ଠୋକ ସେ ଚାମୁଣ୍ଡା ଯିବ ।

ଝେଞ୍ଜି କହିଲା, ମୁଁ ସେ କଥା ବିଚାରି ନ ଥିଲି । ହଉ ହେଲା, ମୁଁ ମୋ'ର ଦେଖିଲା କାମ କରିଦେବ । ମିଳିଲେ ବିଷ ଢୋକିବ । ନ ମିଳିଲେ ଦଉଡ଼ି ଲଗାଇ ମରିବ କି କୂଅ-ପୋଖରୀକୁ ଡେଇଁବ । ତମେ ଏଥର ତମ ବାବାଜୀଙ୍କ ପାଖକୁ ଯାଅ କି ମଦ ଖାଇ କୋଉ ଖାନକୀ ପାଖକୁ ଯାଅ । ମୁଁ ଜାଣେ ଯେ । ସେଥିରୁ ମତେ କଣ ମିଳିବ ?

ଝେଙ୍ଗିଆ ଉତ୍ତର ନ ଦେଇ ଦାଣ୍ଡ ଘରର ଦ୍ୱା' ଫାଳିଆ କବାଟ ଠିଆମେଲା କଲା । ଘୋଷରି ପାହାଚରେ ଦମ୍ ଦମ୍ ହୋଇ ତଳକୁ ଓହ୍ଲାଇଲା । ଅନ୍ଧାରିଆ ଗାଁ ଗୋହିରି ଭିତରେ ଅଦୃଶ୍ୟ ହେଲା ।

ଝେଞ୍ଜି ନିର୍ବାକ୍ ନିଷ୍ପନ୍ଦ ହୋଇ ସେମିତି ଠିଆ ହୋଇ ରହିଲା । ଲ... କିରାସିନର ଧୂଆଁ ମିଶା ନାଲିଚି ଆଲୁଅ ନିଷ୍ପ୍ରଭ ହେଲାଣି । ପୁରୁଣା ଲଣ୍ଠନ କାଚରେ କାଳିମା ଲେପି ହୋଇଗଲାଣି । ଅନ୍ଧାରିଆ ଅଗଣାରେ କେହି ନା... ପରିବେଶରେ ଝେଞ୍ଜିର ମନେ ହେଲା ଯେପରି ସେମାନେ ଗୋଟିକି ଗୋଟି ଅ... ଅସ୍ପଷ୍ଟ ରୂପରେ ତା' ଆଗରେ ଉଭା ହେଉଛନ୍ତି—ତା'ର ବୋଉ, ଶାଶୂ ଓ ଶଶୁର—ଗୁଡ଼ାଏ ଛାଇଆ ମୂର୍ତ୍ତି । ସେମାନଙ୍କ କୋଳରେ ଶିଶୁଗୁଡ଼ାଏ । ସେହି ଛାୟାଗୁଡ଼ିକ ଯେମିତି ତା' ମନ ଭିତରେ କହି ହେଉଛନ୍ତି—

ତୋ'ର କି ସୁଖ ଲୋ ଝେଞ୍ଜି, ମା ଚାମୁଣ୍ଡା ତୋର ଭିତରେ ତା' ମନ ଖୁସିରେ ଆସ୍ଥାନ ଗଢ଼ିଛି । ଯାଉଛି, ମନ ହେଲେ ଆଉଛି, ରହୁଛି । ଆମ ଜୀବନକୁ ଅକାଳେ ଶୋଷି ଆମ ଆତ୍ମାଗୁଡ଼ିକୁ ଅମୋକ୍ଷ କରିଛି । ବଡ଼ କଳବଳ । ବଡ଼ ଛଟପଟ !

ଝେଞ୍ଜିର ଆଖିରୁ ସତେ କି ନିଆଁର ଝୁଲ ଖସୁଛି । ଉଦ୍‌ଭ୍ରାନ୍ତ ହୋଇ ଆଖି ମଳି ମଳି ସେ ଦୀର୍ଘଶ୍ୱାସ ଛାଡ଼ୁଛି । କୁଆଡ଼େ ଉଭେଇ ଗଲେ ସେ ଛାଇଗୁଡ଼ାକ । ଅନ୍ଧାର ଘନୀଭୂତ ହୋଇ ଆସୁଛି । ନିର୍ଜନତା କେଡ଼େ ଭୟଙ୍କର । ଅଧିକ ଭୟଙ୍କର କରୁଛି ବାହାରୁ ଆସି କାନରେ ବାଜୁଥିବା ଝିଙ୍କାରୀଙ୍କର ଝିଁ ଝିଁ ମିଶା ବେଙ୍ଗ ପଲର ମିଳିତ ରଡ଼ି । ଝେଞ୍ଜିର ଆଖିରେ ପଡ଼ୁଛି ବାରି କବାଟ ପାଖ ଝଙ୍କାଳିଆ ତେନ୍ତୁଳିଗଛର

ଆକୃତିରେ । ସେଇଠି ସେ ଠିଆ ହୋଇ ଦେଖୁଛି··· କ ବିକଟାଳ କଳା କଟିକଟି ମୂର୍ତ୍ତି । ଆଖି ଦୁଇଟା ଜଳୁଛି, ଲିଭୁଛି । ନିଆଁଳିଆ ଲମ୍ବିଲି ଜିଭଟା ହଲର ହଲର । ଦେହ ଓ ମୁଣ୍ଡ କଳା ଅନ୍ଧାରରେ ମିଶି ଏକାକାର ହୋଇଛି । ଦୂରରେ ଥାଇ ବି କେମିତି ସେ ଫୁସୁଫୁସୁ କରି କାନ ପାଖରେ କହୁଛି—ତୁ ତ ମୋର ’ଘରଲୋ ଟଙ୍କା । ତତେ ଘାରି ଶରଧା କରେଁ । ଅରେ ଚାପୁଣ୍ଡିଲି, ତୋର ଏିପ୍ରୋଧରେ ଅଳପ ଗୃଷି ଅଛିଁଠାକର ଛାଡ଼ିଦେଲି ତୋ ଝିଅଆଳୁ ! ଅତି ଉଦ୍ଧତ ହେଲାଣି ସେଇଟା । ତତେ ମାରିପିଟି କଷ୍ଟ ଦେଇ ମତେ ଜଳବଳ କଲାଣି । ଦାଢ଼ିଆ ବାବାର ଶରଣ ପଶିଛି, ନାଁ ? ସେ ବାବାଜୀ ମତେ ଦେଖିବା ଆଗରୁ ମୁଁ ତା’କୁ ଖାଇବି, ଖାଇବି, ଖାଇବି—

ନା, ନା, ନା— ! ଟଙ୍କା ନିଜ ଭିତରେ ନ ଥିଲା । ସେ କାନରେ ଦୁଇ-ହାତ ମାଡ଼ି ବାଇଆଣୀ ପରି ମୁଣ୍ଡ ହଲାଇ ଅଗଣାରେ ଧାଇଁବାକୁ ଲାଗିଲା । ଅଯତ୍ନରେ ବନ୍ଧା ମଥାର ନୁଖୁରା ଲମ୍ବକେଶ ଫିଟି ପିଠି ଉପରେ ଫୁଲି ଫୁଲି ଫୁରୁ ଫୁର ହୋଇ ଦୋହଲୁଛି । ଦରମଇଳା ବସନ ଦେହରୁ ଦୂର ହୋଇଛି । ଲେଟୁଛି ଅଗଣାରେ । ସେ ଟଳି ଟଳି ବୁଲିବୁଲି ଧାଉଁଛି । ତା’ର ଅଧାଚେତା ମନରେ ଧାରଣା ଆସୁଛି, ଯେପରି ତା’ ଭିତରେ ବନ୍ଧାବାନ୍ଧି ରହିଥିବା ଗୃମଣ୍ଡା, ସିଏ ଝିଅଆର ଗୋଇଠା ମାଡ଼ରେ ଛଟପଟ ହୋଇ ପଦାକୁ ପଳାଇଥିଲା, ଫେରିଆସି ପୁଣି ତା ଭିତରେ ପଶିବାକୁ ଚେଷ୍ଟା କରୁଛି; ଆଉ ଏଥର ପଶିଲେ ସେ ଝିଅଆକୁ ଖାଇବ । ବଂଶ ବୁଡ଼ାଇବ ।

ଦାଣ୍ଡ କବାଟ ଆଡ଼କୁ ଧାଇଁଯାଉଣୁ ଲୁଗା ଛନ୍ଦୁର ହୋଇ ସେ ଘୋଷରି ପାହାଚ ଉପରେ ପଡ଼ିଲା । ହତଜ୍ଞାନ ହୋଇ ଗଡ଼ିଗଡ଼ି ଲେଟିଲା ପାହାଚ ତଳେ । କପାଳ ଉପର ଫାଟିଛି । ରକ୍ତର ଧାର ବହୁଛି । ଟେକ, ଉଠାଇ ସାନ୍ତ୍ୱନା କରିବାକୁ ସେତେବେଳେ ପାଖରେ କେହି ନାହିଁ ।

କେତେବେଳକେ ହାତରେ ନଲଟଣ ଧରି ଉଣେଇଶ ବର୍ଷର ଟୋକା ଭଅଁରୀ ଘେଇ ତା’ ବିଧବା ସ୍ନେହେଇ ମାଆକୁ ସଙ୍ଗରେ ଧରି ଆସିଲା । ଭଅଁରୀ କଳା ମିଚମିଚ ବଳୁଆ ଟୋକା । ମୁହଁଟି ଗୋଲଗାଲଆ ସୁନ୍ଦର । ଗ୍ରେଟ ନାକ । କାନ ଦିଓଟି ଠିଆଠିଆ । ମୁଣ୍ଡରେ ଗୋଛାଏ ବାଳ । ପଛଆଡ଼କୁ କୁଣ୍ଡାଏ । ତା’ ବୋଉ କାହାର ଘର ଲିପୁଣୁ ସିଢ଼ିରୁ ପଡ଼ି ଗ୍ରେଟା ହୋଇଛି । ଦେହରେ ବଳ ଅଛି । ସେ ତା’ର ଏଇ କୋଡ଼ପୋଛା ପୁଅ ବରଗ ’।

ବୁଢ଼ୀର କାଳ ପାଚଲାଣି । ଭଅଁରୀ ଉପର ବଡ଼ ପୁଅ ତିନୋଟି ନିଜ ନିଜର ପିଲାଛୁଆ ଧରି ଭିନେ ସଂସାର କରନ୍ତି । ବୁଢ଼ୀ ମା ଓ ସାନଭାଇକୁ ପଗ୍ଭରନ୍ତି ନାହିଁ । ବୁଢ଼ୀ ବାହାର ପାଇଟିକୁ ନକମା ହେଲାଦିନୁ ଅତି ଖରଭୁଣ୍ଡୀ ହୋଇଛି । ବୋହୂ-ମାନଙ୍କର ଶିଘ ଦେଖିପାରେ ନାହିଁ । ପାଟି ଖୋଲିଲେ ଅଭଦ୍ର ଅସନା ପଦ ଭୁଣ୍ଡ

ଖସାଇ ଶୋଧେ । ଝିପୁରି କମାଏ । ହାତରେ ମୋଟ ବାଡ଼ି ଧରି ଅଖଣ୍ଡ ବାଁ ଗୋଡ଼କୁ ଘୋଷାରି ଘୋଷାରି ଚାଲେ ।

ଏବେ କେଇମାସ ହେଲା ମା' ପୁଅ ଦୁହେଁ ରାତିରେ ଝରିଆ ଘରେ ଶୁଅନ୍ତି । ଟଙ୍କିର ଖୋଲା ହାତ, ବଡ଼ ମନ । ପେଟ ପୂରାଇ ସେ ଖାଇବାକୁ ଦିଏ । ଦାଣ୍ଡ ଘରେ ଦୁହେଁ ରାତି କଟାନ୍ତି ।

ଟଙ୍କିର ଅବସ୍ଥା ଦେଖି ଭଅଁରୀ ବିକଳ ହୋଇ ବୋବାଳି ଛାଡ଼ିଲା । ତା' ମା ବାହୁନିବାକୁ ଲାଗିଲା । ଭଅଁରୀ ଅନୁମାନ କଲା, ବୋଧହୁଏ ତା ଖାଉନ୍ଦ ଝରିବାବୁ ଯିଏ ନୂଆ ସାଁତାଣୀକୁ ଠିଆଗୋଇଠା ମାରୁଥିଲେ, ଆଉ କ'ଣ ସବୁ, ନିଶାର ଜୋର୍‌ରେ ହୋଇଥିବ ପରା, ଏଣୁତେଣୁ କହୁଥିଲେ, ଯାହା ଶୁଣି ମାତ୍ର ଡରବେ ହଜେ ସେ ଖସି ପଳାଇଥିଲା । ବିନାକାରଣରେ କେତେଥର ତାଙ୍କ ହାତର ନିର୍ଘାତିଆ ବ୍ରହ୍ମ-ଯାବୁଡ଼ା ଓ ବିଧା ଖାଇଛି ତ ସେ, ସେଇ ସାଁତାଣୀଙ୍କୁ ମାରି ତଳକୁ ଗଡ଼ାଇ ବଟସୋଇଁଙ୍କ ସଙ୍ଗରେ ବାଦାଜାର ମେଲାକୁ ଛୁଟି ପଳାଇଛନ୍ତି ! ପୁଲିସି ଆସି ତାକୁ ବାନ୍ଧି ନେବ ନାହିଁ ତ ? ତାକୁ ଫାଶୀ ଦେବ ନାହିଁ ତ ?

ହେ ବୋଉ, ତୁ ତାଙ୍କୁ ଛୁଉଁନା । ଗୁହୁଆ ଲୋ ! ମୁଁ ଲୋକଙ୍କୁ ଡାକେଁ ।

କ'ଣ ହେଲା କି ? ଭଅଁରୀର କଥାରେ ତା' ମା କହିଲା, ହେଇରେ, ସେ କଡ଼ ମୋଡ଼ିଲେଣି । ଆଖି ଖୋଲିଲେଣି ।

ବୁଢ଼ୀ ପୁଣି ବଡ଼ପାଟି କରି ବାହୁନିବାକୁ ଲାଗିଲା । ଭଅଁରୀ ଡାକ କୁହାଟ ଛାଡ଼ିଲା । ଆଲୁଅ ଧରି ମରଦେ ଧାଇଁ ଆସିଲେ । ତାଙ୍କ ପଛେ ପଛେ କେତେ ମାଇପେ ।

ଟଙ୍କି ସୁସ୍ଥ ହେଲା ।

କପାଳ ଉପରେ ଗଣ୍ଠିଆ ଦାଗଟିଏ ରହିଗଲା । ଲୋକେ ଜାଣିଲେ ଅନ୍ଧାର ଘରକୁ ଡରି ବାହାରକୁ ଧାଇଁ ଆସୁଣୁ ଟଙ୍କିର ଗୋଡ଼ ଖସି ଯାଇଥିଲା । ଟଙ୍କିର ମୁଣ୍ଡ ଭିତରେ ମହୁଆ ଓ ଗଞ୍ଜେଇ ଝରିଆ ଯେଉଁ ସମୁଣ୍ଡା ଧାରଣା ପୂରାଇ ଦେଇଥିଲା, ସେ ଧାରଣା ଦୂର ହେଲା ନାହିଁ । ଭଅଁରୀ ଓ ତା'ର ମାଆକୁ ଟଙ୍କି ଆଶ୍ରୟ ଆପଣାର କଲା । ଦେଇ ଦେଇ ସନ୍ତୁଷ୍ଟ ରଖିଲା । ସଞ୍ଜ ହେଲେ ସେମାନେ ଆସନ୍ତି । ରାତିରେ ରହନ୍ତି ।

ଝରିଆ ନିଶା ଖାଇ ଟଳଟଳ ଆସୁ, ଅବା ଭଲ ମଣିଷ ହୋଇ ଆସୁ ସେ ଫେରିବାଯାଏ ଟଙ୍କି ଅପେକ୍ଷା କରି ବସିଥାଏ । ଯେତେ ରାତି ହେଉ । ତାକୁ

ଖୋଇପେଇ, ତା'ର ଗୋଡ ଘଷି ତାକୁ ଶୁଆଇ ପକାଏ । କବାଟ ଆଉଜାଇ, ପାଖ ଘରେ କାନ୍ଥ ପାଖ ନିଜେ ସେ ଶୋଇପଡ଼େ । ସପନ ଦେଖେ, ଅବା ଥକିଲା ଦେହର ଛନକଛେଦିଲା ମନରେ ଚହ୍ଲଙ୍କା ନିଦରେ ଉଭରିଲା ଧାରଣାର ଭୟଙ୍କର ରୂପ ସେ ଦେଖେ । ବିଲିବିଲେଇ ଉଠେ । କହୁଥାଏ ସେ ଅରୁଝା-ଖିଆରେ, ନା-ନା-ନା, ଝିଅଆକୁ ଛୁଇଁନା । ଆଉ କାହାକୁ ବି ନୁହ, ମତେ ଖାଇଦେ, ମତେ ଖାଇଦେ— ।

ଚହ୍ଲିକା ନିଦ ଭାଙ୍ଗେ । ସେ ଉଠି ବସେ । ଅନ୍ଧାରରେ ନିଜ ଗ୍ରୁଢରେ ନିଜେ କୋରହୁଏ । ମନେ ମନେ କହେ, ଶୋଇପଡ଼ ଲୋ ! ନୋହିଲେ ଆଉ କୁଆଡ଼େ ଯା । ହଁ, ଯା ଯା । ବୁଲି ଚରି ଆସିବୁ । ଥରକନ ପଶିବୁ । ମୁହଁ ମାଡ଼ି ଶୋଇବୁ ।

ନିଜର ଆଘାତରେ ନିଜେ ବ୍ୟଥା ପାଇ, କ୍ଳାନ୍ତ ହୋଇ, ଧଇଁସଇଁ ହୋଇ ଟଳି ଗଡ଼ି ପଡ଼େ । ଆଖି ବୁଜେ । ନିଦ୍ରାର ଶାନ୍ତିମୟ ଶ୍ରାନ୍ତିହରା କୋଳରେ ନିଶ୍ଚିନ୍ତରେ ସେ ଆଶ୍ରୟ ନିଏ ।

ନିଶିର ଅବସାନରେ କଅଁଳ ଆଲୁଅର ଥିରି ଉନ୍ମେଷରେ ପାହାନ୍ତା ଚଢ଼େଇର ପ୍ରଥମ ଡାକରେ ସେ ଆଖି ଖୋଲେ । ଉଠି ବସେ । ଭାବେ, କାଳ ରାତି ପାହିଛି । ତା'ର ନଉଛଣା ଜୀବନରେ ସବୁ ରାତି ତ କାଳରାତି !

ଝିଅଆ ଆଜି ସ୍ନେହ କରିଛି । ହାତ ଧରି ଅଟକାଇ ରଖିଛି । ନିଜେ ଉଠି କବାଟ ଖୋଲିଲାଣି । ଆଲୁଅ ତେଜିଲାଣି । ଝିଅଆ ଅଳପ ନିଶା ଖାଇଛି । ମଦ ପିଇ ନାହିଁ । ପାଟିରୁ ଗନ୍ଧ ବାହାରୁ ନାହିଁ । ହୁଏତ ଗଞ୍ଜେଇ ଟାଣିଛି ଅବା ଅଫିମ ଟିକିଏ ଗିଳିଛି । ସେଇଟା ତାର ନୂଆ ଅମଲ । ତା'ର ଚେତା ବୁଡ଼ି ନାହିଁ । ସେ ଟଳଟଳ ହେଉନାହିଁ ।

ଯେତେବେଳେ ଟଭା ବାହା ହୋଇ ପନ୍ଦର ବର୍ଷ ବୟସରେ ଏ ଘରେ ପାଦ ଦେଇଥିଲା; ନିକନିକିଆ ଘୁନାଖଣ୍ଡିକା, ଝିଅଆର ଦେହଯାଏ ତା'ର ମୁଣ୍ଡ ପାଉଥିଲା । ଆଉ ସେ ଝିଅଆ ମୋଟାମୋଟି ହୋଇ କେତେ ବଳିଷ୍ଠ ଛନଛନିଆ ଟୋକାଖଣ୍ଡେ ଥିଲା ସତେ ! ମୁହଁଟି ଲମ୍ବାଳିଆ । ଗେଣ୍ଡାଳିଆ ନାକ । ଭ୍ରୂଲତା ତଳେ ପୂରିଲା ଆଖି । ଫାଲୁକା ନ ହେଲେ ବି ପୂରା ଗାଲ । ଗ୍ରୁଡ଼ି ଗ୍ରୁଡ଼ିକା କହରିଆ ନିଶ ଯେ ଅଛି କି ନାହିଁ ଦୂରରୁ ଜାଣି ହୁଏ ନାହିଁ । ଥୋଡ଼ି ଆଗରେ ସେମିତି ହୋଇଲା ପରି ଅଳ୍ପ ଦାଢ଼ି । ମୁଣ୍ଡର ବାଳ ପାତଳ । ନାକଦଣ୍ଡା ସିଧା । କପାଳ ମଝିରୁ ସେ ବାଳକୁ ଦୁଇପାଖକୁ କୁଣ୍ଡାଏ । ଟଉର ଶାଗୁ କୁଆଡେ ପିଲାଦିନେ ସେମିତି କୁଣ୍ଡାଇ

ଦେଉଥିଲେ । ଝିଅ ପରି ମୁଣ୍ଡରେ ବେଣୀ ପକାଉଥିଲେ । ଆଖିରେ ମଣ୍ଡୁଥିଲେ କଜଳ । କାନ ଫୋଡ଼ି ଫାଶିଆ ଲଗାଉଥିଲେ । ହାତରେ ପିନ୍ଧାଉଥିଲେ ରୂପାର ବଳା । କହୁଥିଲେ, କାଲେ ଏଇ ମୋ'ର ପୁଅ, ଏଇ ମୋ'ର ଝିଅ ।

ନୂଆ ବାହା ବେଳେ ସେଇ ଚଞ୍ଚଳିଆ ଛନଛନିଆଁ ବହୁଆ ଟୋକାଟି ଗେଲରେ ତାକୁ ଶୂନ୍ୟେ ଶୂନ୍ୟେ ଟେକେ, ପିଠିରେ ପକାଏ । କାନ୍ଧ ଉପରକୁ ଟେକିଲେ ଟିକି ଛଟପଟ ହୋଇ ଓହ୍ଲାଇ ଆସେ । ଝରିଆ ଗେଲ କରି ଗ୍ରୁଡରେ ପକାଏ । କହେ, ତୁ କଅଁଳା ବଳେଇ ଛୁଆଟା ଲୋ ! ପିଠି ଥାପଡ଼ି ଦେଉଛି, ଶୋଇ ପଡ଼ । କାମୁଡ଼ିବୁ ନାହିଁ, ଆମ୍ପୁଡ଼ିବୁ ନାହିଁ, ଏଁ ?

ସେ ବେଳର ଝରିଆ ଗଲା କୁଆଡ଼େ ? କେତେ ଘଟଣା, ସୁଖ-ଦୁଃଖର ମିଶାମିଶି ଦିନରାତି ପରି ଆଲୁଅ-ଅନ୍ଧାର ପରି, ଖରା ବରଷା ପରି ଆଠଟି ବର୍ଷ ତା' ଜୀବନରେ ଘଟି ଯାଇଛି ।

ସେଇ ଝରିଆର ଆଜି କି ରୂପ ହେଲାଣି, କି ଢଙ୍ଗ ହେଲାଣି ? ସତେଇଶି ବର୍ଷର ଯୁଆନ ଦିଶୁଛି ବେଗଣା ଦରବୁଢ଼ା ପରି । ଶୁଖୁଟା ସେମେଟା । ଦେହର ରଙ୍ଗ କଳିଥିଆ, ହାତଗୋଡ଼ରେ ଶିରା ଦଉଡ଼ି ବାରି ହେଉଛି । ଗ୍ରୁଡ ହାଡ଼ ଗଣି ହେବ । ଗାଲ ହେଲାଣି ଟାକୁଆ । ଆଖି ଦୁଇଟି ପଶିଲା ପଶିଲା । କେବେ କୋଳଥିଆ ଦିଶେ, କେବେ ପେଳୁଆ । ଅଧିକ ଡେଙ୍ଗା ସେ ହେଲାଣି ପରି ଲାଗେ । ଢଙ୍ଗ ତ ଜାଣି ଚଢ଼ଚଢ଼ା ହେଲାଣି, ସବୁବେଳେ ଖିନଖିନ । ସବୁ କଥାକୁ ତରତର, ଉଚ୍ଛନ୍ନ ।

ଆଜି ସେ ଟିକି, ଶାଶୁ ଶଶୁର ଡକାଡକି ହୋଇ ସେପୁରକୁ ଗଲାଦିନୁ ସବୁ ଗେହ୍ଲାପଣିଆଁ ଓ ସୁଖ ଆନନ୍ଦ ତା' ଜୀବନରୁ ଲୁଚି ଯାଇଛି । କାଲି ପରି ଲାଗୁଛି, ଛଅଟି ବର୍ଷ କଟିଗଲାଣି । ସେବଯାଏ ଝରିଆ ତାକୁ ଟାଣ କରି ପଦେ କହି ନ ଥିଲା । ଟିକିର ରଙ୍ଗ ଫିଟିଛି, ଟିକି ମାଇପିଟାଏ ହେଲାଣି, ଗେଟିଏ ବାହ୍ମୁଣୀ ବେଙ୍ଗ ପରି ଫୁଲି ଉଠିଲାଣି । ମୁହଁଟି ପାନପତରିଆ ଆଗରୁ ଥିଲା, ସେଇଟା ଗୋଲଗାଲିଆ, ମାଉଁସିଆ, ଚକ୍‌କଣିଆ ହେଲା । ତଳପେଟ, ପିଚା, ଆଗ ବଢ଼ି ଥଲଥଲିଆ ହେବାରୁ ଢ଼େଙ୍ଗରେ ସୋହଡ଼ି ଝରିଆର ନାକ ଛୁଇଁଲେ ବି ଶାଶୁ କହିଲା, ମୋ' ଗୁଣ୍ଡୁଣୀ-ହାତୀ । ଝରିଆ ତା'କୁ ଟେକିପାରେ ନାହିଁ, ପିଠିରେ ପକାଇ ବୀରପଣ ଦେଖାଇବ କ'ଣ ? 'ଜଣାଗଲା ମ ତମ ପାଉରୁଷପଣ' ଭୁଜା ଭୁନ୍ନା କାନରେ କହି ଟିକି ହସିହସିକା ଝରିଆର ଝାଲଜକା କାନ୍ଧରେ ମୁହଁ ଲଦିଦିଏ ।

ଶାଶୁ ମରିବାର କେତେ ମାସ ପରେ ଘରର ସର୍ବେସର୍ବା ମାଲିକ କୁସଙ୍ଗରେ ପଡ଼ି, ପୂର୍ଣ୍ଣିମା-ବାବାଜୀର ବଡ଼ ଚେଲା ହୋଇ, ଅମଲ ଧରି, ମଦହପି ଢଙ୍ଗରେ ଝରିଆ ତା'କୁ ମନ ଇଚ୍ଛା ବିଧା, ଗୁପଡ଼ା, ଗୋଇଠା କୁଟୁଛି । ତା' ଦେହକୁ ନଖରେ କୋରି ଲହୁଲୁହାଣ କରୁଛି । ତା' କେଶ ଧରି ଝିଙ୍କିଛି । ଟିକି ଆତୁର ଚତ୍କାର କରି

ଝିଅର ନିଷ୍ଠୁର ଅତ୍ୟାଚାରରୁ ରକ୍ଷା ପାଇବାକୁ ତାକୁ ଦୁଇ ହାତରେ ମୁକୁଳା ଛାତିରେ ପ୍ରାଣ ବିକଳରେ କୁଣ୍ଢାଇ ଆତ୍ମରକ୍ଷା କରିଛି ପଛେ; ନିଜେ କେବେ ତାକୁ ହାତ ଉଠାଇ ମାରି ନାହିଁ ।

ସେ ବୁଝିଛି, ଝିଅ ତାକୁ ମାରି ନାହିଁ, ଝିଅର ନିଶା ଏତେ ଉତ୍ପାତ କରିଛି । ସେ ଜାଣିଛି, ତା' ଦେହର କଅଁଳ ମୁଲାୟମ, ଶୀତଳ ସ୍ପର୍ଶରେ ଝିଅର ହାତ ଗୋଡ଼ ବଳ ହରାଇବ । ତା'ର ନିଶା ଛାଡ଼ିବ, ଆଉ ସେ ତାଆର ଉପରେ ନଇଁ ପଡ଼ିବ । କ୍ଳାନ୍ତ ଓ ନିର୍ଜୀବ ହୋଇ ଶୋଇପଡ଼ିବ ।

ଟୁକୀର ଭିତରେ ଅତି ଭୟଙ୍କର ଚାମୁଣ୍ଡା ଜନ୍ମରୁ ଆଶ୍ରା ନେଇଛି, ଏତକ ଜାଣିଲା ଦିନରୁ ଟୁକୀ ଆଉ ତାକୁ ଆଲିଙ୍ଗି ଧରି ନାହିଁ । ଟୁକୀକୁ ଛେଚି ପିଟି ନିଜେ ଝିଅ ଥକି ନିର୍ଜୋର ହୋଇ ଧଇଁ ସଇଁ ନିଶ୍ୱାସ ଛାଡ଼ି ଫାଁ-ଗାଳି ଯନ୍ତ୍ରଣାରେ ଚେତା ବୁଡ଼ିଲା ପରି ଶୋଇବା ଯାଏ ସେ କାନ୍ଦିଛି । ଏତେ ଯାତନା ସହି ମଧ୍ୟ ଟୁକୀର ଗଣ୍ଡି ଝଡ଼ି ନାହିଁ । ଝିଅ ପାଖରୁ ସେ ଆଡ଼େଇ ଯାଇଛି ।

ଆଜି ଏଇ ନିଶୂନ ରାତିରେ; ନିଶା ସାଇଁ ସାଇଁ ଗର୍ଜୁଛି । ଦାଣ୍ଡ ଘରେ କୋଠିଆ ଭଉଁରୀ ଓ ତା'ର ମା କବାଟ କିଳି ଶୋଇ ପଡ଼ିଲେଣି । ଘୁଙ୍ଗୁଡ଼ି ମାରୁଛନ୍ତି । ଝିଅ ସ୍ନେହରେ ତା'ର ହାତ ଧରି ପାଖକୁ ଟାଣିଲାଣି । ପଲଙ୍କ ଉପରେ ବିଛା ହୋଇଥିବା ପୁରୁଣା ଶତରଞ୍ଜି ଉପରେ ପାଖରେ ବସିବାକୁ ଅନୁରୋଧ କଲାଣି । ତାର ଆଖିର ଲାଳଚିଆ ଢ଼ଙ୍ଗ ଏବଂ ଲମ୍ବିଲା ଆଣ୍ଠୋଳିଲା ଆଣ୍ଠୁଆ ହାତ କହି ସାରିଲାଣି, ସେ କଅଣ ଚାହେଁ ।

ଟୁକୀର ଶିହରିଲା, ଥରିଲା, ଭୋକିଲା ଦେହର ଆତୁର ଆଗ୍ରହକୁ ସତେ କି ଚିହ୍ନାଇ ଦେଉଛି ତା ଭିତରର ଚେଇଁଲା ଚାମୁଣ୍ଡୀ, ଆଲୋ ! ଡ଼େରି କାହିଁକି ? ମୁଁ କେଉଁ କାଳରୁ ଉପାସ ଅଛି । ଛଟପଟ ହେଉଛି । ତାକୁ ଟାଣି ଛାତିରେ ଜାକି ଦେ । ଦୁଇ ବାହୁରେ ଭିଡ଼ି ଦେ କଟିକଟିଆ । ମିଶି ଏକାକାର ହ ଲୋ ମୋର ବୋଲକରା ସୁନା ଟୁକିଟି, ମୁଁ ତା' ଭିତରେ ପଶିବି, ମୋ'ର ଆଶା ବଳିଛି । ଲହ ଲହ ଟକଲା ଜିଭରୁ ଲାଳ ଗଡ଼ୁଛି । ସେ ଦୁର୍ବଳିଆଟା, ତା' ଜୀବନ ଶୋଷିବ । ରକତ ଚୁଷିବ । ଦାଢ଼ିଆ ବାବାଜୀ ତାକୁ ରଖି ପାରିବ ନାହିଁ—

'ମୁଁ ଖାଇବି, ଖାଇବି—'

ଝିରିଆ ତା' ବାସ ଓଠାର ଫୁଙ୍ଗୁଳା କଲାଣି । ଝିରିଆର ମୁହଁ ତା ମୁହଁ ପାଖକୁ ଦୁଙ୍କି ଆସିଲାଣି । ତାର ନିଶ୍ୱାସ ବାଜିଲାଣି ଗାଲରେ ।

ଟୁକୀର ଭୟାକୁଳ ଆଖି ଆଗରେ ଯେ କିଏ ଠିଆ ହୋଇଛି ? ଯେଉଁ ପଲଙ୍କ ଉପରେ ସେ ଓ ଝିରିଆ, ତାର କଡରେ ମାଟି ଉପରେ ଛଟପଟ ହୋଇ ଯିଏ ଜୀବନ ଛାଡ଼ିଥିଲେ, ସେହି ସ୍ନେହମୟୀ ଶାଶୁଙ୍କର ଛାୟାମୂର୍ତ୍ତି ପରି ! ହାତ ପିଠିରେ

ଲୁହ ପୋଛୁ କାନ୍ଦୁଛନ୍ତି । କ'ଣ କହୁଛନ୍ତି ? କହୁଛନ୍ତି ନ, ମୋ ଝିଅଆକୁ ତା ମୁହଁରୁ ରକ୍ଷାକର ମା !

ଟଗ୍ର ଚିତ୍କାର କରି ଉଠିଲା । ଦୁଇ ହାତରେ ଝିଅଆକୁ ଠେଲି ଦେଇ ପଲଙ୍କ ଉପରୁ ତେଇଁଲା । ବସନ ଓଟାରି ଦେହ ଘୋଡ଼ାଇ ସେ କହିଲା, ନା, ନା । ସେ ତମକୁ ଖାଇଦେବ, ମୋ ଭିତରୁ ଗ୍ରମଣ୍ଡା, ସେ ମତେ ସେଇଆ କହିଲା ।

ଏଁ, ଏଁ ? ଗ୍ରମୁଣ୍ଡା ! ଝିଅଆ ଭୟରେ କହି ଉଠିଲା । ଘରଆଡ଼କୁ ଡ଼ର-ଡ଼ର ଦୃଷ୍ଟି ପକାଇଲା ।

ଟଗ୍ର କହିଲା, ମୋ ଭିତରେ ସେ କହିଲା, ମୁଁ ଶୁଣିଲି । ହେଇଟି, ତମର ବୋଉ ଆସି ତମ ପଛରେ, ଖଟ କଡ଼ରେ ଧୂଆଁଳିଆ ମୂର୍ତ୍ତି ପରି ଠିଆ ହୋଇ ଉଭେଇଗଲେ । କାନ୍ଦୁଥିଲା ପରି ଲାଗିଲେ ।

ଝିଅଆ ଖଟ ଉପରୁ ଓହ୍ଲାଇ ତଳେ ଠିଆ ହେଲା । ମୁହଁ ଶୁଖି କଳାକାଠ । ମୁଣ୍ଡ ଅଳପ ଝାଙ୍କୁଥାଏ । ଗୋଡ଼ ଥରୁଥାଏ, ଅବା ସେ ଟଳି ପଡ଼ିବ । ନିଜର ଦୁର୍ବଳ ଦେହକୁ ସମ୍ଭାଳି ନ ପାରି ସେ ପୁଣି ଖଟ ଉପରେ ବସିପଡ଼ିଲା ।

ନଳଟେଣି ଆଲୁଅ କ୍ଷୀଣ ହୋଇ ଆସୁଛି । ମୁଣ୍ଡ-ଆଡ଼ର କାନ୍ଥ ପାଖରେ ରହିଥିବା ବାସନ ଓ ଅନ୍ୟାନ୍ୟ କେତେ ଘରକରଣା ଚଜରେ ଭର୍ତ୍ତି ଗୋବମଗ୍ର ପୁରୁଣା ସିନ୍ଦୁକ ଉପରେ ଆଲୁଅ ଥୁଆ ହୋଇଛି । କାଚରେ ପାତଳ କଳା ନେସି ହୋଇଗଲାଣି । ଶିଖାରେ ଗୁଲ । ସେଉଁଠି ଟିକିଏ ଅନ୍ଧାର, ତା'ଆରି ଭିତରୁ ଗ୍ରମୁଣ୍ଡା ବାହାରି ଆସିବ କି ?

ଝିଅଆ ଗୃହୁଁଛି ।

ଖଟ ତଳର ଅନ୍ଧାର ତା' ଆଖିକୁ ଦିଶୁ ନାହିଁ । ସେଇଠି ଅଛି କି ? ତଳକୁ ଲମ୍ବିଲା ଗୋଡ଼ ଝିଅଆ ଉପରକୁ ଟେକିଲା । ଏଦନେ ବାବାଜୀ ତାକୁ ଗୋଟାଏ ତେଉଁରିଆ ଦେବି କହୁଥିଲା । ଗୁପ୍ତରେ । ଶହେଟଙ୍କା ପଡ଼ିବ । ତା' ଭିତରେ ସୁନାର ଶିବଲିଙ୍ଗ ରହିଥିବ । ମନ୍ତ୍ରପଢ଼ି ତା'କୁ ସେ ଜୀବନ ଦେବେ । ନିଜେ ତ ଶିବଙ୍କର ଅବତାର, ନିଜର କଳାରୁ ଟିକିଏ ଆଣିବେ । ଟଙ୍କା ଯୋଗାଡ଼ କରି ତେଉଁରିଆ ଆଣିବାକୁ ସେ ଭୁଲି ଯାଇଛି । କେତେ ଲୋକ ନେଲେଣି ।···

ସେମାନେ ଉପକାର ପାଇଲେଣି ।

କେନ୍ତ କେନ୍ତ ଜଗନ୍ନାଥ ମେଲାରେ କହୁଥିଲେ, ଗଦେଇ ଷଡ଼ଙ୍ଗୀଠୁଁ ବଳି ମନ୍ତ୍ରୀକୁଦରେ ଡ଼ରୁଆ ଛେରୁଆ ଆଉ କେନ୍ତ ନ ଥିଲେ । ଉନ ଭାଇରେ ସବାସାନ । ପୁରୋହିତ ବଂଶର ପିଲା । ଧନ ସମ୍ପଦ ମାଡ଼ଯାଉଛି । ଗେଟେମା ମଣିଷ । ଗୋଲିଆ ମୁଣ୍ଡରେ ଗ୍ଲେଟ ଗ୍ଲେଟ ଆଖି, ଟାକୁଆ ଗାଲପାଖେ ଲମ୍ବା ନାକ ବେଶି ଲମ୍ବାଳିଆ ଦାନ୍ତେ, ଗୋଟାଏ ବାଙ୍କୁଲି ଲମ୍ବ ଅଣ୍ଟା ପରି ।

ଦୁଇପୁଅ, ପାଞ୍ଚ ଝିଅଙ୍କର ବାପ, ତଥାପି ଗଦେଇର ଡ଼ର ଗୁଡ଼ା ନ ଥିଲା । ଗୁଇ ଦେଖିଲେ ଡ଼ରେ । କାହା ହାତ ନ ଧରିଲେ ଦିନବେଳା ବି ଅନ୍ଧାର ଘରେ ନ ପଶେ । ବାହୁନିଆଁ ପାଠଯାକ ପଢ଼ିଛି, ହେଲେ ଆଉ ଦି'ଜଣଙ୍କୁ ସାଙ୍ଗ ନ କଲେ ଯଜମାନ ଘରକୁ ନ ଯାଏ । କେତେ ଡ଼େଉଁରିଆ ଦି ହାତରେ ପିନ୍ଧିଥିଲା । କାମ ଦେଖାଉ ନ ଥିଲା ।

ବାବାଜୀର ଚେଲା ହେଲା ସେ ଗଦେଇ । ପ୍ରସାଦ ଚଲମ ମୁଣ୍ଡରେ ଲଗାଇ ଅନ୍ୟ ହାତକୁ ବଢ଼ାଇ ଦେଉଥିଲୁ, ମୁହଁରେ ଲଗାଇଲା । ହାଉଲେ ହାଉଲେ ଶୋଷି ଜାଣୁଥିଲୁ, ଏବେ ସେ ଭାଲୁ ଶୋଷା ହେଲାଣି । ଚଲମ ଧରି ଦମେ ଶୋଷି ନେଲେ ଏକା ସେ ଅଧଭରିଏ ଗଞ୍ଜେଇରୁ ଉନଭାଗ ଶୋଷି ନିଏ । ସେଇ ଗଦେଇ ଷଡ଼ଙ୍ଗୀ ବାବାଜୀଙ୍କର ଡ଼େଉଁରିଆ ପିନ୍ଧିଲା । ବାକତକ ହାତରୁ କାଢ଼ି ଫୋପାଡ଼ି ଦେଲା ।

ଏବେ ଦେଖ, ଦମେ ଦି'ଦମ ଭଲ କରି ଟାଣିଦେଇ, ହାତରେ ଠେଙ୍ଗାଟାଏ ଧରି, ରାତି ଅଧରେ, ଯେତେ ମେଘୁଆ ଅନ୍ଧାର ଝିମ୍‌ଝିମ୍ ରାତି ପଛେ ହୋଇଥାଉ, ସେ ଏକା ଟୁଙ୍ଗ୍‌ଟୁଙ୍ଗ୍ ଗ୍ଲୁଲିଆସୁଛି । ଭୂତ ପ୍ରେତଗୁଡ଼ା ପାଖକୁ ଆସିଲେ, କଏ ବେ ବୋଲି ଗୋଟାଏ କଳକଳା ରଡ଼ି ଛାଡ଼ି, ଠେଙ୍ଗାକୁ ତଳେ ବାଡ଼େଇ ଶ୍ଳୋକ ପଦେ ଝାଙ୍କି ଦେଲେ, ସେଗୁଡ଼ା ତାଟକା ହୋଇ ଯିଏ ଯୁଆଡ଼େ ଛୁ ।

ଲୁଙ୍ଗୁଡ଼ା ନାରଣ ପରିଡ଼ା, ଚନ୍ଦା ମୁଣ୍ଡିଆ, ଛୁଞ୍ଚ-ମୁହାଁ କଳା ମିଚମିଚ ଧେଡ଼େଙ୍ଗା ଟୋକାଟା । ମିଉଁମିଉଁ କରି କଥା କହେ । ଝିଟିପିଟି ପରି ମୋଡ଼ି-ମୋଡ଼ି ହୋଇ ଗ୍ଲୁଲେ ନାହିଁ ତ ଜାଣି ଦଉଡ଼େ । ଦେଖ, ସେ ଏବେ ନୂଆଘର ତୋଳିଲାଣି । ଘବନ ପରିକା ତା' କାରବାର । ଏଇଠି ଥାଏ, ଏଇଠି ନ ଥାଏ । ମା, ଭାରିଯା, ଉନଟା ପିଲା, ଏମିତ ତାକୁ ମିଶାଇ ତା'ର ଛଅ ପ୍ରାଣୀ କୁଟୁମ୍ବ । ଅକ୍ଷରଗୁଡ଼ିକ ବାଇଗଣ ମଞ୍ଜି ପରି । ଟାଉଟରି କରେ । ସେ ବିଦ୍ୟାରେ ଆଉ ପିଟିସନ୍ ଲେଖାରେ କେତେ ବା ମିଳିବ ? ତାଙ୍କୁ ବଳି ତାଙ୍କୁ ବଳି ଲୋକ ଅଛନ୍ତି ।

ରାତିଏ ଗଲେ ହାଣ୍ଡିଏ ଆଣିବା କେଉଁ ଦଳର ସେ ଜଣେ ମେମ୍ବର । ତା' ଉପରେ ଚଉକିଆ ଓ ପୋଲିସର ନଜର । ଆଉ ସାଙ୍ଗମାନେ ଜେଲ୍ ଖଟିଲେଣି । ଥରେ ଅଧେ ସେ ଥାନାକୁ ଯାଇଛୁ । ଫେରି ଆସିଛୁ ସୁରୁଖୁରୁରେ ।

କାହାର କଥାମତ ସେ ? ସେଇ ବାବାଙ୍କର ଡେଉଁରିଆ । ଶହେ ଶହେ ଟଙ୍କା ଦେଇ ତା ମାଇପ ଓ ବଡ଼ପୁଅ ବି ହାତରେ ବାନ୍ଧିଲେଣି । ତା' ଘରଯା ତ ବାବାଙ୍କର ସେବା କରେ ଯେ ରାତି ବି ପାହିଯାଏ କେବେ କେବେ । ଫାଲୁକା ମୁହଁ । ଶାବନୀ । ମୋଟାଳିଆ ଦେହଟା ଏବେ ଶୁଖିଗଲାଣି । ପାଦ ସେବା କରେ । ସା ନ କହିଲେ ସେ ପାଦ ଛାଡ଼ି ଆସିବ କେମିତି ?

ବାବାଙ୍କର ଶିବରୂପ ସେ କେତେଥର ଦେଖିଛୁ ବୋଲି କହେ । ବାବା ତ ଶୋଇ ଶୋଇ ଘୁଙ୍ଗୁଡ଼ି ମାରୁଥାନ୍ତି । ଯେତେବେଳେ ଘୁଙ୍ଗୁଡ଼ି ଥମେ, ତାଙ୍କ ଦେହରୁ ଶିବ-ମହାଦେବ ବାହାରି ଆଗରେ ଉଭା ହୁଅନ୍ତି ।

ଆହା, ସେ କି ରୂପ ! କପାଳରେ ଆଉ ଗୋଟାଏ ଆଖି । ନିଆଁ ଭଳି ଜଳୁଥାଏ ଯେ, ଘର ଆଲୋକମୟ ହୁଏ । ମୁଣ୍ଡରେ ବେଢ଼ା ପରି ଜଟାର ପାହାଡ଼, ସେଥିରେ ବାଙ୍କୁଲି ଜହ୍ନ । ବେକରେ ଏଡ଼େ ମୋଟାର ନାଗସାପ ଗୁଡ଼ାଇ ହୋଇ ଫଣା ଟେକିଥାଏ । ଜିଭ ଲହଲହ । ଶିବ-ମହାଦେବ କାଳିକାମାଈଙ୍କ କୋଠରି ଭିତରକୁ ପଶନ୍ତି । କବାଟ କିଳନ୍ତି । ବାବା ଘୁଙ୍ଗୁଡ଼ି ମାରିଲେ ଜାଣିବ, ସେ ଫେରି ଆସିଲେଣି ତାଙ୍କ ଭିତରକୁ । ଆଗରୁ ଜାଣିବ କେମିତି ? ତାଙ୍କ କପାଳ ଉପର ଆଖିର ଆଲୁଅରେ ତମ ଆଖି ତ ଆପେ ଆପେ ବୁଜି ହୋଇଯାଏ । ତମେ ମୂର୍ଚ୍ଛା ହୋଇ ବାବା-ମହାଦେବଙ୍କ ପାଦତଳେ ଢଳି ପଡ଼ିଥାଅ !

କୃଷ୍ଣସ୍ତ ଚିଲମର ଦମ୍ ଓଟାରି ଧୂଆଁକୁ ପେଟ ଭିତରେ ପ୍ରାଣପଣେ ଅଟକାଇ ରେଲ-ଇଞ୍ଜିନ ଭୁହାକୁ ଭୁହା ବାମ୍ଫ ଛାଡ଼ିଲା ପରି ନାକବାଟେ ଫୁଁ ଫୁଁ କରି ଛାଡ଼େ, ତେସ୍ତାଳିଶ ବର୍ଷର ଦରବୁଢ଼ା ଡମ୍ବରୁ ମହାରଣା । କେଡ଼େ ବଳୁଆ ଲୋକଟା ! ଖଣ୍ଡ-ମଣ୍ଡଳରେ ସମସ୍ତେ ଜାଣନ୍ତି । ଅର୍ଘାସୁର ପରି ରୂପ । ଦେହର ରଙ୍ଗଟା ପାଉଁଶିଆ-କଳା । ବଡ଼ ମୁଣ୍ଡଟାରେ ବେତାଏ ବାଳ । ସେ ଖାଏ ରାକ୍ଷସ ପରି । ବାଜି ପକାଇ ଗୋଟାଏ ଛେଳିର ଅଧେ ସିଝା-ମାଂସ ସେ ଖାଇ ଦେଇଥିଲା ।

ସେ କହେ, ବାବାଜୀ-ବ୍ରହ୍ମଋଷି ଅପୁତ୍ରକକୁ ପୁଅ ଦାନ ଦେଇପାରନ୍ତି । ହ୍ୟାପ୍, ସେ ମାଇକିନିଆଁଟା, କକେ ବାଞ୍ଝ, ଦେଖିହୋ, ଶୁଳୁଟୀ, ସେମିଟୀ, ଅଣ୍ଟାଟା ବେକେ ମୋଟ, ସେଇଟା ପୁଣି ପେଟରେ ଛୁଆ ଧରନ୍ତା ? ଦଶବର୍ଷ ମୋ'ର ଘରଣୀପଣ କଲା । ପିଲା ପାଇଁ କେତେ ପୂଜାବ୍ରତ କରି ଉପାସ କରି କରି ତା'ର କଣ୍ଠା ଦୋହଲିଲା । ହ୍ୟାପ୍, ସେଇଟା ପୁଣି ଗାଆଁସାରା ମାଇପଙ୍କ ପାଖେ ପ୍ରଚାର କଲା ଯେ, ମୁଁ ଅଣପୁରୁଷା । ଶେଷକୁ ସେ ଦଉଡ଼ି ଦେଇ ମଲା ।

ପୁଣି ଡମ୍ବରୁ କହେ,, ଦୁଇ ବର୍ଷ ପରେ ମୁଖଦାଳୁରା, ବଳେଇମୁଣ୍ଡାଁକୁ ଆଣିଲି, କାଳୀଗୋଟମୀ, କଖାରୁଦେଖା । ତା'ର ଦୁଃଖଅଳୁ ମୋ'ର ଦୁଃଖ । ଭଲ କାମିକା ମାଇମିଟା ଥିଲା । ସେଇଟା ରହିଲା ଗ୍ଭର ବରଷ । ଅଲଥଲ ଆଟିକା-ପେଟୀର ପେଟଟାରେ ଖାଲି ବସ—ତା ପିଲା ପାଇଁ ଥାନ କାହିଁ ? ଭାବିଲି ଭଉଣୀଠୁଁ ଗୋଟାଏ ପୁଅ କରି ଆଣିବି । ଗ୍ଭର ବରଷ ଅନେଇଲି, ସେଇଠୁ ତା'କୁ କହିଲି ।

ଜବାବ ଦଉଛି, 'ସେକଥା ହେବ ନି । ତମେ ମୋର ପୁଅ ତ ମୁଁ ତମର ଝିଅ । ସେଇଆ ଭୁଝ, ପୁଅ କର ନା ।'

ଶାଳୀ ଭାରି ଜଣେ ।

ଡମ୍ବରୁ ଚଲମରେ ମୁହଁ ଲଗାଇ ଶୋଷେ । ତା' ଗଞ୍ଜେଇ, ତା' ଚଲମ । ଆଖି ବୁଜି ଶିବ-ବାବାଜୀ ମହାତମା ବ୍ରହ୍ମଗୃହୀଙ୍କ ଧ୍ୟାନ କରୁଣୁ ଚଲମଟା ପାଖ-ଲୋକର ମୁହଁ ଆଡ଼କୁ ବଢ଼ାଇ ଦିଏ । ତା' ଚଲମ ଓଟାରି ନେବାକୁ ସମସ୍ତଙ୍କ ମନ । ତା' ଧୂଆଁର ମଜା କାହୁଁ ମିଳିବ ? ଯିଏ ଗ୍ଭଖିଛି, ସେ ତା'ର ଭାବ ପାଇଛି, ମଜା ଜାଣିଛି ।

ସେ ବାବା-ମହାତ୍ମାଙ୍କ ଭଗତମାନଙ୍କୁ କହିଛି । ହେଲେ, ହକମା କାମ । ଗଞ୍ଜେଇ କଳିଗୁଡ଼ିକୁ ଅଫିମପାଣିରେ ବୁଡ଼ାଇ ଶୁଖାଇବାକୁ ହେବ । ସାତଥର । ହନ୍ଦେଁ ହନ୍ଦଙ୍କ ଦୋଷ କାଟି ପକାଇବେ । ଗୁଣ ବଢ଼ାଇବେ । ନିରୋଗ ଦରବ । ତା ଧୂଆଁ ବାଇଆ ମନକୁ ଆଡ଼େଇ ନେଇ ବ୍ରହ୍ମରନ୍ଧ୍ର ପାଖରେ ଛାଡ଼ିଦିଏ । ଏଥର ଦେଖୁଥାରେ ବାଇଆ-ମନ । ଗଣି ନ ପାରୁ; ଖାଲି ଝଲ-ଝଲ ସୂର୍ଯ୍ୟ, ଚନ୍ଦ୍ର, ତାରା । ଶୁଣୁଥାଆ ଅନାହତପୁର ନାଦ । ଏ କାୟା ମାୟା ସେତେବେଳେ ରହିବ ନାହିଁ । ଏ ଭବଭୟ, ଦାରସୁତ ଚିନ୍ତା, କୁଟୁମ୍ବ ଜଞ୍ଜାଳ ପାସୋର ଯିବ ।

ପଂଇଆ କେତେଥର ଡମ୍ବରୁ ଚଲମର ଗୁଣ ପରଖିଲାଣି, ଗୋଟାଏ ଚଲମ ପାଖରେ ରଖି । ଗଞ୍ଜେଇ କଳର ଡମ୍ବରୁପାଗ ଉତାରିବାକୁ ତା'ର ମନ ହାଉଁପାଉଁ ହୁଏ, ପୁଣି ଭୁଲିଯାଏ । ବାବା ମହାତ୍ମାଙ୍କ ଶିବଭୋଗ, ଯହିଁରେ ଗାଢ଼ ଆଉଟା କ୍ଷୀର ସଙ୍ଗେ ଗଞ୍ଜେଇ ବଟା, କଦଳୀ ଚକଟା, ଛେନା ଓ ନବାତ ପଡ଼ିଥାଏ, ପୁଣି କାଳୀ ମା'ଙ୍କ ପ୍ରସାଦ; ଯହିଁରେ ଏହିସବୁ ଦରବରେ ଗଞ୍ଜେଇବଟା ନ ଦେଇ ସୁରା ହିଆ-ଯାଇଥାଏ, ଗିଲାସେ ଗିଲାସେ ପିଇ ଦେଲେ ଆଃ; 'ଗନ୍ଧଆ-ପାଗ' ଚଲମକୁ ଛୁ କରିବାକୁ ମନ ହୁଏ । ଭୋଗ ବା ପ୍ରସାଦ ଖାଇଲେ ବି ସେମିତି ସୂର୍ଯ୍ୟ, ଚନ୍ଦ୍ର, ଗ୍ରହ, ତାରା ସବୁ ଦିଶନ୍ତି, ନାଦ ବି ଶୁଭେ ।

ଡମ୍ବରୁ ତା' କଥାର ଖିଅ ଯୋଡ଼ି କହେ, ହଁ, ସେ ଶାଳୀ ଭାରି ଜଣେ ! ଭାବିଥିଲି, ମୁଁ ତ ତା' ବାପ ନ ହେଲେ ବି ଦାଦ ବଅସର, ମୁଁ ମଲେ ମୋ' ଘର-ବାରି, ଆଉ ଡନ ମାଣ ଅଉଲ୍ ଜମିର ସେ ଏକା ମାଲିକାଣୀ ହେବ । ସେଇଠୁ ତା'

ଭଉଣୀର ପିଲାଙ୍କୁ ଆଣି ପୋଷାପୁଅ କରିବ । ମନ କଥା ନ କହି, ତାକୁ ଆଉ ବାଗରେ କହିଲି, ହଇଲେ ହେ, ତୁ ଯାହା କହିଲୁ, ଆଜିଠୁଁ ମୋ ଠେଇଁ ମାତୃହରଣ ମହାପାପ, ନୋହିଲେ କନ୍ୟାହରଣ, ତହୁଁ ବଳି ପାପ ଲାଗିବୁ । ଆଜିଠୁଁ ତୁ ଅଲଗା, ମୁଁ ଅଲଗା । ତୁ ମୋ'ର ସେବା କରିବୁ । ମୁଁ ତତେ ଖାଇବାକୁ ପିନ୍ଧିବାକୁ ଦେବି ।

ଶୁଣ ଭଗତେ ! ସେ ହ୍ୟାପ୍ କ'ଣ କହିଲା । ମୋ ବ୍ରହ୍ମ ଜଳେଇଲା । କହୁଛି, ଓଃ ଭରି ତ । ଆଇଲାଦିନୁ ସେମାନେ ମତେ ଅଥା ନକଲ କରି କହୁଛନ୍ତି, ତମର ଏଇ ଗାଁ ମାଇପେ ମ, ତମର ତ ପୁରୁଷପଣିଆଁ ନାହିଁ, ଗୋଟାଏ ଯବାନ୍ ଟୋକା ଭରସା କରି ଆଣିଲ କାହିଁକି ? ମୁଁ ଗୃହବର୍ତ୍ତ ପରଖିଲି । ତମେ ସେଇଆ । ଅଲଗା ଅଲଗା ହେଲେ କାହାର କ'ଣ ବିଗୁଡ଼ୁଛି ?

ଶୁଣ ଗୁରୁଭଇଏ ! ତମେ କହ, ଏଥିରେ କେଉଁ ମଣିଷ ନ ବିଗିଡ଼ିବ ?

ସିଏ ଯେ ବ୍ରହ୍ମଚଣ୍ଡାଳ । ମୋ ମଣିଷପଣିଆଁକୁ ଦି'କଡ଼ା କରିବ ? ଶାଳୀର ଏଡ଼େ ଦିହପ ? ଯେଉଁ ନଗରନାଉଲୀମାନେ ଏ ଅପବାଦ ଦେଉଥିଲେ, ଶାଳୀ ଅଟିକା-ପେଟୀ ଯିଦ ତାଙ୍କର ନାଁ ମୋ ଆଗରେ କହିଥାନ୍ତା, ମୁଁ ନସ୍ତେ ବୁଝେଇ ଦେଇଥାନ୍ତି, ତାଙ୍କମାନଙ୍କ ଭିତରୁ କାହାକାହା ଘରେ ମୋ'ର ଜୁଆ ଖେଳୁଛି । ପଚାରିଲାରୁ ଯେମିତି ସେ ନ କହିଲା, ମାରିଲି ଗୋଟିଏ ବ୍ରହ୍ମଯାବୁଡ଼ା । କୋଣରିଲି ତ, କୋଣରିଲି ।

ସାତଦିନ ବାଧିକା ପଡ଼ିଲା କ ଛଟାଗାଳ ଘୁଷୁରି ହେଲା, ସେ ଜାଣେ । ଆଠଦିନ ସନ୍ଧ୍ୟାରେ ଦୂର ଗାଆଁର ଘର ଡଆରି କାମରୁ ଫେରି ଦେଖିଲି, ଦାଣ୍ଡୁଆ ମାର୍ ଚମ୍ପଟ । ଶାଳୀ ତ ଗଲା, କଳାକନା ବୁଲେଇ ଦେଇଗଲା । ଭାଗ୍ୟକୁ ଆଦରି ରହିଲି ।

ତମୃକୁ କହେ, ଏ ସୁନାଟି ! ବାପ ମାଆଙ୍କୁ ହରାଇ ମାମୁଁଘରେ ଛେଲିଣ୍ଡଟା କାମ କରି କରି ଲୁରୁମ ହୋଇଥିଲା । ଖ ଇବାକୁ ଗଣ୍ଡାଏ ଭଲରେ ଦେଉ ନ ଥିଲେ । ତା' ଉପରେ ଯାଉଣ୍ଟୁ ଆସୁଣୁ ମାଡ଼ । କଣ୍ଡା ଦୋହିଲୁଥିଲା । ଜୀବନ ଯାଉଥିଲା କ ଆସୁଥିଲା । ମୋ ଝିଅ ବରପର ଲୁହେ କ ?

ତା' ମାମୁଁ ମତେ କହିଲା । ମୁଁ ଦୋଦୋ ଯାଞ୍ଚ ହେଲି । ତା' ଘର ଜନାମ ଗାଁ । ଭାବିଲି ମୁଠାଏ ଫୁଟାଇ ଦେବ । ମୁଁ ହଇରାଣ । ନଜେ ଠେକରି ବସାଉଛି । ଭାବିଲି ବଂଶଟା କ'ଣ ବୁଡ଼େଇବ ? ନା, ନା ହୋଇ ଶେଷକୁ ହଁ କରିଦେଲି । ସେ ଆଇଲା ।

ବର୍ଷେ ଦୁଇଟାରେ ଚେରେଇ ଗଲା, ତମେ ସବୁ ଦେଖିଛ ।

ମୋ ଦୁଃଖ ବାବାଜୀ ମାହାପ୍ରାଙ୍କୁ ସବୁ ଜଣାଇଲି । ମୋତେ ଶହେଟି ଟଙ୍କାରେ ସେ ଶିବ-କଳାରେ ତେଉଁରିଆ ଗଢ଼ି ଦେଲେ । ହେଇ ଦେଖ, ମୁଁ ପିନ୍ଧିଛି ।

ଡମ୍ବରୁ ତା ତେଉଁରିଆ ଦେଖାଏ । ପୁଣି କହେ, ସୁନାକୁ ଦେଖି ବାବା କହିଲେ, ଯା ଭିତରେ ବ୍ରହ୍ମରାକ୍ଷସ ପଶିଛି । ସେଥିପାଇଁ ସେ ବାପ, ମାଆଙ୍କୁ ଖାଇଲା । ତତେ ବି ଦିନେ ଖାଇଆନ୍ତାରେ ! ତେବେ ହାତରେ ତେଉଁରିଆ ଅଛି । ତୋ'ର ସେ କିଛି କରିପାରିବ ନାହିଁ । ହେଲେ ତା' ଭିତରେ ତୋ'ର କପିକୁ ସେ ଖାଇ ଦେଉଥିବ ।

ତାଙ୍କ ଗୋଡ଼ ଧରି ଲମ୍ବ ହୋଇ ପଡ଼ିଗଲି । କହିଲି, ଏ ବଂଶ ରଖ । କହିଲେ ଶିବମହାତ୍ମା, ଭୟ ନାହିଁ, ସେ କାଳିକାମାଈଙ୍କ ପାଖରେ ଅଧିଆ ପଡ଼ୁ । ତାଙ୍କୁ ଖୁସି କରି ମୁଁ ସେହି ବ୍ରହ୍ମରାକ୍ଷସଟାକୁ ତା' ଭିତରୁ ତଡ଼ିଦେବି ।

ଡମ୍ବରୁ ବସିବସି କାଳସି ଲାଗିଲା ପରି ଢଳଢଳ ଆଖିବୁଜେ । ବାବାଜୀଙ୍କର ଶିବ ରୂପକୁ ଧ୍ୟାନ କରି ସେ କହେ, କେତେ କଷ୍ଟରେ ସୁନା ମର୍ଜିଲା । ଏବେ ଦେଖ, ତା' କୋଳରେ ଦିବ୍ୟସୁନ୍ଦର ପୁଅ । ଶିବକଳାରେ ଜନ୍ମ ବୋଲି ତା' ନା ଦେଲି ଶିବଚରଣ ! ହ୍ୟାପ୍, ଶାଳୀସ୍ତ୍ରୀ ମୋ' ମଣିଷପଣିଆକୁ ନିନ୍ଦା କରୁଥିଲେ !

ଝରିଆର ଏହିସବୁ କଥା ମନେପଡୁଥିଲା ।

ଡମ୍ବରୁର ପୁଅ ଶିବଚରଣକୁ ସେ ଦେଖିଛି । କନିଅଁଫୁଲ ରଙ୍ଗ, ହୃଷ୍ଟପୁଷ୍ଟ ଛଅମାସର ପୁଅ । ଶାବନ୍ତୀ ସୁନାର କୋଳରେ ମଠରେ ସେ କେତେଥର ଦେଖିଛି । ଲୋକେ କହନ୍ତି, ମହାଦେବଙ୍କ ପୁଅ କାର୍ତ୍ତିକେଶ୍ୱର ପରି ସୁନ୍ଦର ହୋଇଛି । ଗଣେଶଙ୍କ ପରି ବୁଦ୍ଧିଆ ବି ହେବ ।

ପିଲାଟି କାହାରିକୁ ଅଚହ୍ନା ବାରେ ନାହିଁ । ହସହସ ହୋଇ ହାତ ବଢ଼ାଇଲେ କୋଳକୁ ଡେଇଁପଡ଼େ । ମାଈପିମାନଙ୍କର ଏ କୋଳ ସେ କୋଳ ହେଉଥାଏ । ମରଦେ ସ୍ନେହରେ ଡାକି ହାତ ବଢ଼ାଇଲେ ବି ଆସେ । ଲୁହାଲୁହି ହୁଅନ୍ତି, ଶିବ ଅଂଶରେ ଜନ୍ମ ତା'ର କାହାକୁ ଡର ?

କାଳିକାମାଈଙ୍କ ପୋଇଲା କଙ୍କାଳମାନେ ଯେଉଁମାନେ ମଣିଷ ସମାଜକୁ ତାଙ୍କର ଶାଗପଟାଳି କରିଛନ୍ତି, ସେଇଠି ଚରିବୁଲି ଖାଆନ୍ତି, ସେମାନେ କାଳିକାଙ୍କ ଆଜ୍ଞାରେ ପିଲାକୁ ଜଗି ରହିଥାନ୍ତି । ଯିଏ ତା'କୁ ଆଦର କରେ, ସ୍ନେହ କରେ, ସେହି କଙ୍କାଳମାନେ ତାଙ୍କର ବି ଅନିଷ୍ଟ କରନ୍ତି ନାହିଁ । ସେମାନେ ଆଖିକୁ ଦିଶନ୍ତି ନାହିଁ । ଶୂନ୍ୟରେ ଥାଆନ୍ତି । ପବନରେ ମିଶିଯାଇଥାନ୍ତି ।

ଝରିଆର ସବୁଲୋକ, ସବୁ ଘଟଣା, ସେମାନଙ୍କର ଅଙ୍କେଲିଷ୍ଟ ସବୁ ଅନୁଭବର କଥନ, ବଚନିକା ମନେପଡ଼ିଲା । ସେ ଏବେ ପ୍ରକୃତିସ୍ଥ ହେଲାଣି । ବ୍ରହ୍ମରାକ୍ଷସର ଭୟ ବି ଦୂରେଇ ଗଲାଣି । ଘର ଭିତରେ ଆଲୁଅ ଧୂଆଁଳିଆ-ନାଲି-ଆଖିଆ ହେଲେ ବି ସେ ଦେଖୁଛି ବ୍ରହ୍ମରାକ୍ଷସ କେଉଁଠି ଛପି ରହି ନାହିଁ । କେଜାଣି ସେ ଟେଭି ଭିତରେ ପଶି ଲୁଚି ପାରିଲାଣି ।

ହେଇଛି, ଟେଙ୍ଗି କବାଟ ପାଖରେ ଠିଆ ହୋଇଛି । ତା'ର ଦରମଇଳା ଧଳା ତନ୍ତବୁଣା ଶାଢ଼ୀକୁ ଦେହରେ ବେଢ଼ାଇ କାନରେ ଗୁହାକୁଗୁହା ଲୁହ ପୋଛୁଛି । ଅଣଓସାରିଆ ଶ୍ରେଷ୍ଠ ଶାଢ଼ୀଟା ନଳୀଗୋଡ଼ ଯାଏ ଲମ୍ବିଛି । ଗୁଡ଼ ଯୋଡ଼ାଇ କାନ୍ଧ ଦେଢ଼ାଇ ପୁଣି ଗୁଡ଼ ଉପରେ ଅଳପ ଓହଳିଛି । ହାତରେ ଦ' ଦ' ଗଣ୍ଡି କଳାରୁପାର କାଚ । ସେତକର ରଙ୍ଗ ଲୁହାଳିଆ ହେଲଣି । ଡାହାଣ ନାକପୁଡ଼ାରେ ନେଳୀ କାଚବସା ଲବଙ୍ଗଟିଏ । ଦୁଇକାନର ତଳ ବଉଳୀରେ ଦଅଟି ଅସଲ-ସୁନାର ବଉଳ ଫୁଲ । ମଇଳା ଜମି ଆଉ ଝଟକୁ ନାହିଁ । ସେହି ସୁନାର ଦେଢ଼ଭରିଆ ହାରଟିର ଶ୍ରେଷ୍ଠ ପଦକ ଶାଢ଼ୀର ସନ୍ଧିରୁ ଟିକିଏ ଦିଶୁଛି । ଝରିଆର ବୋଉ ଏଗୁଡ଼ିକ ତା'ର ଗେହ୍ଲା ବୋହୂ ପାଇଁ ଗଢ଼ାଇ ଦେଇଥିଲା ।

ଝରିଆ ଭାବିଲା, ସେହି ଗେହ୍ଲାବୋହୂ ଶେଷକୁ ତାକୁ ଖାଇଲା, ବାପାକୁ ଖାଇଲା । ବଂଶ ପଦାକରି ଦେଇଥାନ୍ତା । କମାଲ ଭଲ ଯେ, ସେ ବଞ୍ଚିଗଲା । ବାପ-ମାଆଙ୍କ କଲ୍ୟାଣ । ଆରେ ବାପ୍‌ରେ, ଧରିଥିଲା ତ ! କାମୁଡ଼ା ଦାଗରୁ ବୁନ୍ଦା ବୁନ୍ଦା ଚହ୍ଲ ଏବେଯାଏ ଦେହରେ ମୁହଁରେ ଲାଗି ରହିଛି ।

ଟେଙ୍ଗି କାହିଁକି ଥରକୁଥର ଲୁହ ପୋଛୁଛି । ଆଖିରେ ଧୂଳିଆ ପଡ଼ିଛି କି ?

ଝରିଆର ବ୍ରହ୍ମଅଗ୍ନି ଜଳି ଉଠିଲା । ତା'ର ହାତ ମୁଠା ମୁଠା ହେଲା । ଭାବିଲା ଟେଙ୍ଗିର ନାକ ଦଣ୍ଡାରେ ଦ'ଉଡ଼ି ବାଧି ଥୋଇବ । ଲହୁଲୁହାଣ କରିବ । ତା' ଭିତରର ଚାମୁଣ୍ଡାକୁ ସେ ଘଉଡ଼ି ନ ପାରିଲେ ନାହିଁ, ଥଣ୍ଡା କରିବ । ଖାଉ ସେ, ଟେଙ୍ଗିର ରକ୍ତ ଖାଉ ।

ଝରିଆର ସାହସ କୁଳାଇଲା ନାହିଁ । ହାତମୁଠା ହୁଗୁଳିଗଲା । ଡରିଲା ପରି । ସେମିତିଆ ସ୍ୱରରେ ସେ କହିଲା, ଆଲୋ ହେ, ଏ ଘର ପଦା କରିବାକୁ, ଏ ବଉଁଶ ବୁଡ଼େଇ ଦିଅରେ ବାଲୁଆ କୁକୁର ଚରାଇବାକୁ ତୁ ପେଟରେ ଚାମୁଣ୍ଡା ପୂରାଇ ଆଇଲୁ; ଦେ, ମତେ ଖାଇଦେ । ତୋ' ମନ କାମନା ପୂରଣ ହେଉ । ବଞ୍ଚିଛି ତ ଏକା ମୁହିଁ । ମତେ ହନ୍ତସନ୍ତ କଲବଲ କରି ମାରନା ଲୋ ଟେଙ୍ଗି । କାନ୍ଦ ନା । ଖାଇବୁ ତ ମତେ ଜଲଦି ଖାଇଦେ । ବାବାଜୀଙ୍କଠାରୁ ତ ଶିବ ତେଉଁରିଆ ଆଣିନାହିଁ, ପିନ୍ଧିନାହିଁ, ଦେହ କଳିନାହିଁ !

ଝରିଆ ଭୁଣ୍ଡର ଆତୁରିଆ ସ୍ୱର ଶୁଣି, ତା' ଛଟପଟ ଦେହ ଓ କଲବଲ ମନର ବିଷାଦ ବୁଝି ଟେଙ୍ଗି କହିଲା, ଏ ଘରକୁ ମୁଁ ଆପେ ଆସି ନ ଥିଲି । ତମରବାପ ଆଣିଥିଲେ । ମୋ'ର ବାପା ପଠାଇଥିଲେ । ମୋ' ଭିତରେ ଚାମୁଣ୍ଡା ଅଛି ବୋଲି ସେମାନେ ଜାଣି ନ ଥିଲେ । କେହି ଜାଣି ନ ଥିଲେ । ମୁଁ ପିଲାଟା ବା ଜାଣିନ୍ତି

କେମିତ ? ଏ ଗାଆଁରେ ଶିବବ୍ରହ୍ମସ୍ୱସ୍ୱ ଦାଢ଼ିଆବାବାଜୀ ମଠ ପକାଇଲେ । ତମେ ତାଙ୍କର ଭଗତବେଲ୍ ହେଲ । ମଦ, ଗଞ୍ଜେଇ, ଅଫିମ ଖାଇ ସବୁ ଉଡ଼ାଇଲ, ଶାଶୁଙ୍କ ଗହଣା, ଘରର ପୁରୁଣା ବାସନକୁସନ, ଦ'ମାଣ ଜମି ସବୁ ଉଡ଼େଇଲ ।

ଟେରଆ ତମ ତମ ହୋଇ ଚହ୍ଲଙ୍କି ଉଠିଲା । ପୁଣି ଘୁସିମାରିବାକୁ ଠିଆ-ହେଉଣୁ କହିଲା, ଆବେ ଘଣ୍ଟ, ତୋ' ବୋପାର କ'ଣ ଯାଉଛି ?

ଟେରଆର ଦୃଷ୍ଟି ପଡ଼ିଲା ଟେଭିର ମୁହଁରେ । ତା'ର ମୁଣ୍ଡ ସାମାନ୍ୟ ଝାଙ୍କୁଥିଲା । ସେ ମଣିଲା ଟେଭିର ଆଖିଦୁଇଟା ନିଆଁ ପରକା ଜଳୁଛି । ସେ ପୁଣି ଖଟ ଉପରେ ନାଥ୍ କରି ବସିପଡ଼ିଲା । ଟେଭି କହିଲା; ସତେ ! ମୋ'ର କି ଯାଉଛି ? ଅତି ହୀନମାନ ଜୀବନ ମୋ'ର ! ତମ ସମ୍ପତ୍ତି ଥିଲେ ତମ ପୁଅ ନାତି ଭୋଗ କରିଥାନ୍ତେ । ମୋ' ପେଟରୁ ତ ଜନ୍ମନ୍ତେ ନାହିଁ, ଆଉ ଯିଏ ଆସନ୍ତା, ତା' ପେଟରୁ ଜନ୍ମିଥାନ୍ତେ ! ବାବାଜୀଙ୍କୁ ଦର୍ଶନ କରିବାକୁ କେତେଥର ଯାଇଥିଲି । ସେ ମତେ ଦେଖି ମୋ' ଭିତରେ ସ୍ୱମଣ୍ଡା ଥିବା କଥା ତମକୁ କହିଲେ । ଆଉମାନଙ୍କୁ କହିଥିବେ ପରା ! ପ୍ରଚ୍ଛର ହେଲଣି । ମୁଁ ଜାଣିଲଣି । ମୁଁ ବୁଝିଲଣି, ସେ ସତ କହିଲେ । ମୋ' ଭିତରର ସେହି ସ୍ୱମୁଣ୍ଡାକୁ ମୁଁ କେତେଥର ଦେଖିଲଣି । ସେ ମତେ ଛାଡ଼ିବ ନାହିଁ । ଭାବଛି, ମୁଁ ନିଜେ ତାକୁ ଛାଡ଼ି ପଳାଇବି । ଥିଲେ ସିନା ନିଜେ ହୀନସ୍ତା ହେବି ? ନିଜେ ଦହଗଞ୍ଜ ହୋଇ ତମକୁ ବି ଦହଗଞ୍ଜ କରିବି ? ହାଇଁପାଇଁ ଛଟପଟ କରିବି ? ତମର ବଂଶ ବୁଡ଼ାଇ ମହାପାପର ଭାଗୀ ହେବି ? ନରକକୁଣ୍ଡରେ ପାଣ୍ଡି ହେବି ?

ଟେଭି ଆଗ ତା' କାନରୁ ସୁନାଫୁଲ ହଳଟି କାଢ଼ିଲା, ଖଟ ପାଖକୁ ଘୁଞ୍ଚିଯାଇ ତାକୁ ଟେରଆ ପାଖରେ ରଖିଲା । ସେଇଠୁ ବେକରୁ ଖୋଲିଲା ହାରଟି । ତାକୁ ମଧ ଖଟ ଉପରେ ଥୋଇଲା । ଆଖିରୁ ଲୁହଧାର ତା'ର ଚକ୍କଣ ଗାଲ ଉପରେ ବହି ଯାଉଥାଏ । ସେ ନାକରୁ ଫୁଲକୁ ଉତାରିବାକୁ ଚେଷ୍ଟା କରୁଥାଏ । ହେଲା ନାହିଁ । ସେ ନିରସ୍ତ ହେଲା । ବାଷ୍ପାକୁଳ କଣ୍ଠରେ କହିଲା, କାଢ଼ିପାରୁନାହିଁ । ମଶାଣିକି ନେଲା ଆଗରୁ ତମେ ଓଟାରି କାଢ଼ିବ । ସଧବା ମାଇପିଟା ମୁଁ, ହାତରୁ ଏ ରୂପାକାଚ ଏବେ କାଢ଼ିବି ନାହିଁ । ମୋ ହାତରୁ ତା'କୁ ଉତାରି ଦେବ ।

ଟେଭି ମନର କୋହ ସମ୍ଭାଳି ନ ପାରି ଟେରଆର ମୁହଁକୁ ବାମ୍ଫୁଆ ଆଖିରେ ଚାହିଁ ଛାତି ଥରାଇ ସକେଇ ହେଲା । ଟେରଆ ତା' ମୁହଁ ଓ ମଥା ଉପରେ ତା' ହାତ ବାଜି ଅଳପ ନେସି ହୋଇଥିବା ଗୋଲା ସିନ୍ଦୁରକୁ ଚାହିଁ ଆଁ କରି ରହିଲା । ଟେଭି ଚୁଲିପଡ଼ା କବାଟର ଶିକୁଳି ଖୋଲିଲା । ଟେରଆ ଚମକିଉଠି ଭୟରେ ତା'ର ଲୁଗା ଧରି ଓଟାରି କହିଲା, ଆବେ ହେ ଶୁଣ ।

ଫୁଙ୍ଗୁଳା ଦେହକୁ ଘୋଡ଼ାଇ ଟେଭି ମୁହଁ ବୁଲାଇ ପଚାରିଲା, କ'ଣ ?

ଝରଆ କହିଲା, ତୁ ତ ଦଉଡ଼ି ଦେଇ ମରିବୁ କି କ'ଣ, ମତେ ଫାଶୀ ଖୁଣ୍ଟରେ ଝୁଲାଇ ସଙ୍ଗରେ ନବୁ ? ସେ କଥା ପଟିବ ନାହିଁ। ଏ କଥା କେତେ ଥର କହୁଛି । କାହିଁକି ମତେ ତୁ ଏମିତି ହାଲପଟା କରିବୁ ? ମୁଁ ତୋ'ର କି ଦୋଷ କରିଛି ? କହୁଛି ତ, ତୁ ମତେ ଖାଇଦେ । ମୁଁ ନିଶ୍ଚିନ୍ତ ହେବି । ତେଣିକି ତୋ' ମନ ଯାହା ହେବ, ତୁ କରିବୁ । ସେତେ କହିଲି ମୋ କଥା ତୁ ମାନିଲୁ ନାହିଁ । ମାନିଥିଲେ କାହିଁକି ଆମେ ଦହଗଞ୍ଜ ହେଉଥାନ୍ତୁ ?

ଝଗି ପଚାରିଲା, କେଉଁ କଥା ନ ମାନିଲି ?

ଝରଆ ସ୍ୱର ନରମେଇଁ କହିଲା, ଏଠିକି ଆ, ମୋ' ପାଖରେ ବସ । ଆଉ ଥରେ କହିବି । ତୁ ନିଶ୍ଚେ ଆଗରୁ ଶୁଣିଥିବୁ । ସେ ବାବାଜୀ, ସେ ନିଜେ ଶିବମହାଦେବ ଲୋ ! ତାଙ୍କ ନିଜ ରୂପ ମୁଁ ଦେଖିଛି । ଆ' ମୋ' ପାଖକୁ ।

ଝଗି ପାଖକୁ ଆସିଲା । ଝରଆ ତା'ର ହାତ ଧରି ପାଖରେ ବସାଇ ଦେଲା । କହିଲା-ନଳଝଣର କାଚଟା କଳା ପଡ଼ିଗଲାଣି, ତଳୁ ଟିକିଏ କାଚ ସଫାଳିଆ ଦିଶୁଛି, ସାମାନ୍ୟ ଆଲୁଅ ଆସୁଛି । ଘରଟା ଅନ୍ଧାରିଆ ହେଲେ ହେଉ, ତୁ ମୋ ପାଖରେ ଥା । ହେଇଟି ତୋ' ହାତ ଧରିଲି । ତୋ' ଭିତରୁ ଗ୍ରମଣ୍ଡାକୁ ସେ ନିଶ୍ଚୟ ତଡ଼ି ଦେଇ ପାରିବେ । ତେଣିକି ଆଉ ଡ଼ର ନ ଥିବ । କହୁଛି ଶୁଣ । ଶୁଣିବୁ ?

ଝଗି କହିଲା, ଶୁଣିବି, କୁହ । ମୋ'ର କାହାରିକି ପରବା ନାହିଁ । ଡ଼ର ଭୟ ନାହିଁ । ସେ କେଉଁ ଦେବତା ହେଉ, ଅବା କେଉଁ ମଣିଷ ବା ମାଇପି ହେଉ । କାହାରିକି ମୋର ମୁଖ-ମୁଲାଇଜା ନାହିଁ । ଷଠୀ-ଠାକୁରାଣୀ ମୋ ଭିତରେ କାଳ-ସାପ-ଗ୍ରମୁଣ୍ଡା ସମ୍ପାଦ ଜନମ ଦେଇଥିଲା । ମତେ ଜନ୍ମରୁ ଦୁଃଖିନୀ କଲା । ମୋ ପାଇଁ ଅନ୍ୟମାନଙ୍କର ଜୀବନ ଗଲା । ତା' ପାଖକୁ ଫେରିଯିବି । ତା'କୁ ପଚାରିବି, ହଁ ନିଶ୍ଚେ ତାକୁ ପଚାରିବି—

ଝରଆ ପଚାରିଲା, ଷଠୀକୁ କ'ଣ ପଚାରିବୁ ଲୋ ବାଇଆଣୀ । ଜୀବନ ହାରିବା ତୋ'ର ଲୋଡ଼ା ହେବ ନାହିଁ । ମୋ' କଥା ଶୁଣିବୁ ନାହିଁ ? ମୋ' କଥା ମାନିବୁ ନାହିଁ ? ଝଗି— !

ଝରଆ ପୁଣି ହାତ ବଢ଼ାଇ ଅଣ୍ଡାଳି ଅଣ୍ଡାଳି ଝଗିର ପାପୁଲି ପାଖରୁ କଅଁଳ ଶୀତଳ ହାତଟି ଧରି ଚପିଲା ।

ଝଗି କହିଲା, ଶୁଣିବି କହ । ମାନିବାକୁ ମୋ'ର ବେଳ ନାହିଁ । ତମ ସୁହାଗିଆପଣ ଯେତକ ଥାଉ । ଆଠବର୍ଷ କାଳ ଜାଣିଲିଣି । ଦେହସୁଖ ପାଇଁ ଏମିତି ହାତଟା ଆଗ ବଢ଼ାଅ । ନିଜ ଦେହରେ କେଉଁ ଅଜଣା ନିଆଁ ଜଳାଅ । ସେହି ନିଆଁ ମୋ ଦେହରେ ଲାଗେ । ଚହଟେ, ଜଳେ । ସବୁ ସୁହାଗ ପୋଡ଼ି ଜଳି

ପାଉଁଶ ହୁଏ । ବାହା ସଇଲେ ବେଦୀମୁହଁ ପୋଡ଼ା । ତମ ଖଜୁରି ମୂଳର ମଦଘଡ଼ା ପର । ଛାଡ଼ ମୋ'ର ହାତ ।

ଝିଅ ତା'ର ହାତ ଛାଡ଼ିଲା ନାହିଁ । ଦୁଇ ହାତରେ ସେହି ଗୋଟିଏ ହାତକୁ ଧରିଲା, କଟିକଟି କରି । କହିଲା, ମୋ' ପାଖରୁ ତୁ ପଳାଇ ଯାଇ ପାରିବୁ ନାହିଁ । ଜୀବନ ହାରିବୁ ନାହିଁ । ତୋ' ଭିତର ଗୁମଣ୍ଡା ମତେ ଖାଇଲେ ଖାଉ । କହୁଚି, ଶୁଣ ।

ଝିଅ ଦାଢ଼ିଆବାବାଜୀର ମହାତ୍ମ୍ୟ ଟେଭି ଆଗରେ ବଖାଣିଲା, ଯାହା ସେ ଦେଖିଥିଲା, ଅବା ନିଜେ ଅନୁଭବ କରିଥିଲା, ଅନ୍ୟମାନଙ୍କର ଅନୁଭୂତି ନିଜେ ଶୁଣିଥିଲା ଅବା ସେମାନଙ୍କଠାରୁ ଜାଣି ଭକ୍ତିସ୍ଥ ବ୍ୟକ୍ତିମାନଙ୍କ ମେଳାରେ ଆଲୋଚିତ ହେଉଥିବା ଘଟଣାଗୁଡ଼ିକୁ କାନରେ ଭେଦାଇ ମନରେ ସାଇତି ରଖିଥିଲା ।

ଝିଅର ନିଶା ଛାଡ଼ୁଛାଡ଼ୁ ଆସୁଥିଲା । ଏକାଥରେ ଛାଡ଼ୁ ନ ଥିଲା । ସେ ବନେଇ ଚୁନେଇ ଗପିଲା । ପୁଣି ଡ଼ରୁଆ ଛେରୁଆ ଗଦେଇ ଷଡ଼ଙ୍ଗୀଙ୍କ ସାହସପଣ କଥା, ଆଉ ତାଙ୍କ ଘରଣୀ ମୋତା ନାମୀଙ୍କ ଅଚଳା ଭକ୍ତି କଥା । ନିଜେ ଆସି ବାବା-ବ୍ରହ୍ମଚାରୀଙ୍କ ପାଦ ଧରି ଓଳଗି ହୁଅନ୍ତି । ତାଙ୍କ ପାଇଁ ଗଞ୍ଜେଇ, ଗୁଆଘିଅ, ପାଚିଲା କଦଳୀ, ନଡ଼ିଆ, ଲହୁଣୀ ଆଣନ୍ତି । କେତେ ଜାତିର ପିଠାପଣା । ଶିବ-ବାବାଙ୍କୁ ଭୁଞ୍ଜାଇ ଦିଅନ୍ତି । ତାଙ୍କର ପ୍ରସାଦ ଅନ୍ୟମାନଙ୍କୁ ବାଣ୍ଟି ଦିଅନ୍ତି । ଆହା ଅମୃତ ତ ! ଗଲେ ସିନା ସେ ଅମୃତ ଚାଖିବୁ ଲୋ ଟେଭି । ଦେଖିବୁ ମୋତାନାମୀଙ୍କୁ ।

କଳା ଦୁମର ନିଶୂନ ଅନ୍ଧାର ରାତି । ରାତିର ନିଝୁମ ପରିବେଶକୁ ବିରକ୍ତ କରିଥିବା ଝିଁ ଝିଁ କା ରବ ଧୀରେ ଅତି ଧୀରେ ଥଗିଲା ପରି ଟେଭି ଅନୁଭବ କରୁଥାଏ । ଶୁଣୁଥାଏ ଝିଅର ବର୍ଣ୍ଣନା, ଚକିତ ବିସ୍ମିତ ହୋଇ । କେତେବେଳୁ ଝିଅ ତା'ର ହାତ ଛାଡ଼ି ପୂର୍ଣ୍ଣ ଦୃଷ୍ଟି ପାଖକୁ ଲାଗି ଆସିଲାଣି । ତା'ର ଲମ୍ବା ଧଡ଼ିଆ ହାତକୁ ଟେଭିର ଅଣ୍ଟାରେ ଗୁଡ଼ାଇଲାଣି । ସେଇ ହାତଟି ଅନ୍ଧାରିଆ ଘରେ ଟେଭିର ମା'ଉପିଆ ଦେହର ପରଶ ପାଇ ଥରୁଛି କି ?

ଟେଭି ମହକିଲା, ତେମେ ଡରୁଛ କି ? ଥରୁଛ ଯେ ? ମନେ ମନେ ଗୁମଣ୍ଡା ପାଖରେ ମୁଁ ମତେ ସଁପି ଦେଇସାରିଛି । ନେହୁରି ହୋଇ କହି ଦେଇଛି । ଆଲୋ ! ମୋ ଗୁଣ୍ଡାକୁଣୀ ଟିକିଏ ସବୁର୍ କର । ତୋ' ପାଟିରେ ମତେ ମୁଁ ଛାଆଁକୁ ଦେବି; ମଶାଣୀ ପଦାରେ ତୋ' ପେଟ ପୂରାଇ ମନ ଇଚ୍ଛା ଖାଇବୁ ଲୋ ଡାଆଣୀ ! ସେହି ମଶାଣୀ ପଦାରେ ରହିଥିବୁ । ମନ ଖୁସିରେ ଚରିବୁ ବୁଲିବୁ । ବଡ଼ ପାଟି କରି ଖେଁ ଖେଁ ହୋଇ ହସିବୁ । ହୁଁ ହୁ ହେବୁ, ନାଚିବୁ, ଖେଙ୍କିବୁ । ମୁଁ ନ ଥିବି ଯେ ମୋ' ଭିତରେ ରହି ଆଉ ନଟକୂଟ ଲଗାଇବୁ ।

ତମେ ଡ଼ରନା ମ ! କଣ କହୁଛ କହ ।

ଝରିଆ କହିଲା, ଶିବ-ବାବାଜୀ ଯାହାକୁ ସାହା-ଭରସା, ସେ କାହିଁକି କାହାକୁ ଡରିବ ? ଖାଲି ତାଙ୍କଠିଁ ଡେଉଁରିଆଟା ଯଦି ଆଣି ପାରିଥାନ୍ତି ! ଟଙ୍କା ତ ଯୋଗାଡ଼ କରି ପାରିଲି ନାହିଁ, ନୋହିଲେ ଡେଙ୍ଗରିକରି ନ ଥାନ୍ତି । ଭାବୁଛି ଜମିମାଣେ ବିକିବି ।

ଟଗର ଅଣ୍ଟାରୁ ଝରିଆର ହାତ ଖସିପଡ଼ିଲା । ସୁନା ହାରଟି ତା'ର ହାତରେ ବାଜିଲା । କହିଲା, ଆରେ, ଏଇଟା କ'ଣ ? ଓହୋ, ତୋ' ସୁନାହାର ! ନେ, ଏଇଟା ତୋ' ବେକରେ ପିନ୍ଧ । କାନଫୁଲ ? ଝରିଆ ଅଣ୍ଡାଳିଲା । ପାଇଲା । କହିଲା, ନେ ଟଗ ! ଅନ୍ଧାରରେ ଦିଶୁ ନାହିଁ । ନୋହିଲେ ମୁଁ ତୋ' ବେକରେ ହାର କାନରେ ଫୁଲ ନାଇ ଦେଇଥାନ୍ତି । ତୁ ନିଜେ ପିନ୍ଧ ।—

ଟଗର ପେଟ ଭିତରର କୋହ ସେ ଅଟକାଇ ପାରିଲା ନାହିଁ । ଓଠ ଚାପି, ମୁଣ୍ଡ ଝୁଙ୍କାଇ କପାଳରେ ଦୁଇହାତ ଦିଅ, ଛାତି ଥପାଇ ସେ ସକେଇଲା । ବିଚାରିଲା ତା'ର ଗଲା ଅଇଲା ଶେଷ ବେଳରେ ନିଶାଖୋର ଗେରସ୍ତ ଝରିଆ ଏତେ ସୋହାଗ କାହୁଁଛି କାହିଁକି ? ଆଖିର ଲୁହରେ ହାତ ପାବୁଲି ଓ ଗାଲ ଭିଜିଲା ।

ଝରିଆ କହିଲା, ଆବେ ତୁ କାହିଁକି ସକଉଛୁ, ମୁଁ ଆଜି ତତେ ମାରିନାହିଁ ତ ? ଶଳା ଯମ କନ୍ଦଉଛୁ ?

ଟଗର କେତୋଟି ଖର-ଶ୍ୱାସ ଛାଡ଼ି କହିଲା, ହଁ, ସେଇ । ସେଇ ମତେ କନ୍ଦାଉଛି । ସେ ହାର, ସେ ଫୁଲ ମୋର ଆଉ ଲୋଡ଼ା ନାହିଁ । ତାକୁ ବାବାଜୀଙ୍କୁ ଦେଇ ତମେ ଡେଉଁରିଆ ଆଣି ପିନ୍ଧ । ମୋ କଥା ମାନ । ଏଇ ଶେଷ ଥରକ । ତମେ ତମର ଭାତଥାଳି ଜମି ଆଉ ବିକ ନାହିଁ । କଣ ଖାଇ ବଞ୍ଚିବ ? କ'ଣ ଖାଇ ତମର ପୁଅ ନାତି ବଞ୍ଚିବେ ? ମୁଁ ଯେଉଁ ଦେଶରୁ ଆସିଛି ସେଠିକି ଚାଲିଯିବି । ଯିଏ ମତେ ଜନମ ଦେଇଥିଲା ତା'ରି ପାଖକୁ । ତମ ଚାଲିବାଟର କଣ୍ଟା ହୋଇ ତମ ବଂଶ ବୁଡ଼ାଇ ଆଉରି ପାପ ସାଉଁଟିବାକୁ ରହିବି ନାହିଁ !—

ମୋ ଥାନରେ ଯିଏ ଏଠାକୁ ଆସିବ ଏ ଘରେ ସେ ପୁଅଝିଅ ଅବଶ୍ୟ ଖେଳାଇବ । ତାଙ୍କରି ପାଇଁ ତମେ ତମ ବାପ ଅଜାଙ୍କ ଅର୍ଜିଲା ଜମିରେ ଆଉ ହାତ ଦିଅନା । ଡେଉଁରିଆ ଆଣି ପିନ୍ଧ, ବାବାଜୀଠାକୁରଙ୍କର ମନ ଇଚ୍ଛା ସେବା କର । ଖାଲି ଗୋଟିଏ କଥା । ଗଞ୍ଜେଇ, ଅଫିମ, ମଦ ଛୁଅ ନାହିଁ । ସେଗୁଡ଼ା ଖାଇ ବର୍ଷ ଦିନଟାରେ ନିଜକୁ ଢଳ ଢଳ କରି ଜଳାଇ କି ପରି ହେଲଣି ? ଫୁଙ୍କିଦେଲେ ଟଳି ପଡ଼ିବ । ସେଗୁଡ଼ା ଆଉ ଖାଇଲେ ନିଜେ ଜୀବନ ଧରି ରହିବଟି ?

କାହିଁକି ଡେଉଁରିଆ ପିନ୍ଧିବ ? କାହା ପାଇଁ ? ସେ ଗହଣା ରଖ । ଯାହା ଖୁସି ତା କର । କହିବାକୁ ମନ ହେଲା, ଛାତିର କୋହ ସମ୍ଭାଳି ନ ପାରି କହିଦେଲା । ମୁଁ ନ ଥିବି ସେ ଦେଖିବ ।

ଟଗର ଏକା ନିହସରେ ମନର ବେଦନା ବାହୁନିଗଲା । ଆଠ ବର୍ଷର ସୁଖ ଦୁଃଖର ଘରକରଣାରେ ସେ କେବଳ ସହି ଆସିଥିଲା; ମୁହଁ ଖୋଲି କେବେ

କିଛି କହିବାକୁ ଭରସି ନ ଥିଲା । ମନତଳେ ଲୁଚିଛପି ଉସନ୍ନି ହେଉଥିବା ସବୁ ବେଦନା ଆପେ ଆପେ ପଦାକୁ ଛୁଟି ଆସିଲା । ଆଉ ସେ ପାଟି ଖୋଲିଲା ନାହିଁ । କେତେବେଳରୁ ଗାଢ ଅଧର ବଲୁଆ ବୋବାଲି ଅନ୍ଧାର ଭିତରେ ମିଳାଇ ଗଲାଣି । ଗାଢ ଘନେଇଁ ଆସୁଛି । ଆଖିକୁ ନିଦ ଆସୁ ନାହିଁ ।

ଝିଅା କ'ଣ ଭାବୁଥିଲା ପରା ! ଅବା ସେ ଝଷର କଥା ଆଲୋଚନା କରୁଥିଲା ନିରୁତ୍ତର ହୋଇ । କେଜାଣି ତା'ର ନିଶାଖିଆ ଦୁର୍ବଳ ଚହଲା ମନରେ ଝଷର କଥା ପଶିପାରୁ ନ ଥିଲା, ପଶିଥିଲେ ଲଖି ପାରି ନ ଥିଲା ? କେତେବେଳକେ ବଳ-ବଳେଇ ଉଠିଲା ପରି ଯେ କହିଲା, ଶୁଣିଲୁ ? ସତେ ତୁ ଶୁଣିଲୁ ? ନା, ନା । ମୁଁ କାହିଁକି ତେବେ ଡେଉଁରିଆ ଆଣି ପାଳିବ ? ଆଲୋ ହେ ଝଷ ! ଯିବୁ ତ ଯା, ମୁଁ କାହିଁକି ମନା କରିବ ? ହେଲେ, ସେ ଚଳର ଗୁଣ ଓ ତା'ର କରାମତି ମୁଁ ଯାହା ଦେଖିଛି, ଶୁଣିଛି, ଜାଣିଛି, ଅନୁଭବିଛି, ତୋ' ଆଗରେ କହୁଛି ଶୁଣିକରି ଯା ।

ଝିଅା କହିବାକୁ ଲାଗିଲା । କେତେ ଲୋକଙ୍କ ଜୀବନର କେତେ ଘଟଣା । ଛାଆର ଭିତରେ ଲୁଚା ଦୃଢ଼ା ଧେଡ଼େଙ୍ଗା ନାରଣ ପରିଡ଼ା, ଆଉ ତା'ର ଫାଲୁକା ଘରଣୀର କଥା; ପୁଣି ବସ୍ତାନଲା ଡମ୍ବରୁ ମହାରଣା, ତା'ର ସ୍ତ୍ରୀ ସୁନାଦେଇ ଓ ଶିବଙ୍କ କଳା ନେଇ ଜନମିଛି ଯେଉଁ ଧବ୍ୟ ସୁନ୍ଦର ପୁଅ, ତା ନାଁ ଶିବଚରଣ, ସେମାନଙ୍କ ଉଦନ୍ତ ।

ଝିଅା ପଚାରିଲା, ଅଲୋ ଝଷ ! ତୁ ଦେଖିଛୁ ସେ ଶିବଅଂଶୀ ପୁଅକୁ ? ବାବାଜୀ କହୁଛନ୍ତି, ସେ ଲୁଆଡ଼େ ଭାରି ଧର୍ମାତ୍ମା ହେବ । ଦେଖିଛୁ ?

ଝଷ କହିଲା, ନଲ୍‌ଟଣ କାଚର ସବାତଳେ ଅଙ୍ଗୁଳେ ହେବ ଜାଗାରେ ଧାପେ ହେବ ତେଜ ଗୁଳ ଭରଭର ବଡାରୁ ଦଶୁଥିଲା । ସେଇଆକୁ ଅନେଇଁ ଭାବୁ-ଥିଲି, ମୋ' ଉଆଁସୀ ଆଶାର ଯେତକ ଟିକଏ ଆଲୁଅ ନୁହେଁ ତ, ଫିକାଳିଆ ଫରଚ୍ଛ ବାକି ଅଛି । ଆଉ ଡେ଼ର ନାହିଁ । ହେଇଟି, ସେ ଛପି ଆସିଲାଣି ।

ଝିଅା କହିଲା, ସତେ ତ ! ସେଇ ଧାପକ ଉପରେ ମୋ' ନଜର ଥିଲା । ମୋ' ପାଖରେ ତୁ ବସି ବାବାଜୀମହାତ୍ମାଙ୍କ ମହିମା ମୋ ତୁଣ୍ଡରୁ ଶୁଣୁଥିଲୁ । ମୋ' ମନରୁ ଗ୍ରୀମଣ୍ଡାଗ ଡ଼ର ଦୂର ହୋଇଥିଲା । ଆଲୋ ଝଷ ! ସେ ଆଲୁଅ ଛପିଲେ, ପୁଣି ପତ୍ୟାନାସିଆ ଡରଛ ମତେ ମାଡ଼ି ବସିବ । କାବୁ କରିବ । ପାଖରେ ଶିବ ଡେ଼ଉଁରିଆ ତ ମୁଁ ଚଣ୍ଡାଳ ରଖି ନାହିଁ । ଆଲୁଅଟା ପୋଛିପୋଛି ପରିଷ୍କାର କରି ଆଉଥରେ ଜଳାଇ ପାରିବୁ ? ଯେହ୍ନ ବାକ୍‌ସଟା ଉପରେ ଚଗ୍‌କନା ଓ ଦିଆସିଲି ରଖିଛୁ ପରା ।

ଝଷ ଘନଅନ୍ଧକାରର ଆବରଣ ତଳେ କାଚ ଓ ବଳିତା ସଫାସୁତରା କରୁଥିଲା । ଭାବୁଥିଲା, ସତେ ସେ ଯନ୍ଧ ଦାଢ଼ିଆ ବାବାଜୀ ଶିବମହାତ୍ମାଙ୍କର ଶରଣ

ପରେ, ସେ ତା' ଦେହରୁ ଗ୍ରମଣ୍ଡା ଛଡ଼ାଇଦେବେ ? ତାଙ୍କ ଦୃଷ୍ଟିଙ୍କର ଜୀବନରେ ଘୋଟି ଯାଇଛି ଯେଉଁ କାଳ ଅନ୍ଧାର, ମନରେ ମାଡ଼ି ଯାଇଛି ପରସ୍ତ ପରସ୍ତ ହୋଇ ଯେଉଁ କାଳିମା, ନିଜ ମହିମାରେ ତା'କୁ ପୋଛି ନିର୍ମଳ କରିବେ ? ଉସ୍ମଙ୍କାରିଆ ନିଝୁମ ଅଧରାତି ଉଜାଣି ବୋହି କୋଳାହଳିଆ ସଞ୍ଜକୁ ଫେରିବ ? ନେଳି ଆକାଶରେ ପୁନିଅଁ ଜହ୍ନ ତେଜ ପ୍ରକାଶିବ ? ଫୁଟି ଝଟକିବେ କୋଟିଏ ତରା ?

ଶିବ-ବାବା ମହା ପ୍ରସନ୍ନ ହେବେ, ଦୟା କରିବେ, ତା' କୋଳରେ ଖେଳିବ ଗୋଟି ଗୋଟି କରି ଶିବକଳାରେ ଜନମ ଶିବ ଅଂଶ ଯେନ ଶିଶୁଟିମାନେ ? ଅବିକଳ ସୁନାର ବାଳୁତ ଶିବଚରଣ ପରି ? ସେ ତା'କୁ ଦେଖିଛି, ଆଖି ପୁରାଇ ଦେଖୁଛି ଗ୍ଭତଳେ କେମିତି ଗୋଟାଏ ହଲଚଲ ଅନୁଭବ କରିଛି । ଗ୍ଭନିଆଁ ହୋଇ ଆଖି ଫେରାଇଛି । ଦୂରେଇ ଆସିଛି ।

ତା' ଭିତରର ଅଲକ୍ଷଣୀ କାଳନାଗୁଣୀ ଗ୍ରମଣ୍ଡାଟାର ଖେଳନାଦ ଗର୍ଜି ଗଲା କି ଆଉ, କଡ଼ ଲେଉଟାଇ ଅଧୀର ଅସ୍ଥିର ଛଟପଟ ହାଉଁ ହାଉଁ ହେଲାଣି ? ଏ ଗ୍ଭତରୁ ସେ ଗ୍ଭତ ହେଉଥିଲା ସେହି ଉମ୍ବରୁ-ସୁନାଙ୍କର କାର୍ତ୍ତିକେଶ୍ୱର ପରି ଗ୍ନନ-ବଦନିଆଁ ଗୋରାତକତକ ହସକୁଡ଼ା ଗଉରିଆ ଟିକି ପୁଅଟି । ନିଜର ଗ୍ଭତ ଉପରକୁ ଟାଣି ଆଣିବାକୁ ତା ମନ ଛକପକ ହେଉଥିଲା । ହାତ ଉଠି ଆସୁଥିଲା, ଗ୍ଭତଳର ଅଦେଖା ଆଲୋଡନ ତାକୁ ଚେତାଇ ଦେଲା, ମନର ଆହାହା ତାକୁ ଆହୁଲାଇ ଆଡ଼େଇ ଦେଲା ।

ନଳଟିଣ ଜଳା ହେଲା । ଘରଭିତରର ଅନ୍ଧାର ଅପସରିଲା । ଝିଅ କହିଲା, ଭଲ ହେଲା । ଆଲୋ ଟଗ୍ର ! କବାଟର ଶିକୁଳି ତୁ ଖୋଲିଥିଲୁ । ଅଳପ ମେଲା ହେଲାଣି । ବନ୍ଦ କରିଦେ ।

ଟଗ୍ର କବାଟ ଦ' ଫାଳକୁ ଗ୍ଭହିଁଲା । ଫାଙ୍କବାଟେ ଆର ଘରର ମଥାନ ଉପରେ ଆକାଶରୁ ତେନାଏଁ ଦିଶୁଛି । ଗ୍ଲେଟ ବଡ଼ କେତେ ତାରା ଆଖିମିଟିକା ମାରୁଛନ୍ତି । ଠାରୁଛନ୍ତି ପରା ! କହୁଛନ୍ତି, ଡେ଼ରି କାହିଁକି ? ରାତି ବେଶୀ ନାହିଁ । ଆମ ସାଙ୍ଗକୁ ଚାଲିଆ ସହଲ । ସମସ୍ତେ ଏଠାକୁ ଆସନ୍ତି । ଆମର ମଝିରେ କେଉଁଠି ହଜି ଯାଆନ୍ତି । ତୁ ବି ହଜିବୁ, ଫେରିବାର ହେଲେ ନୂଆ ମଣିଷ ହୋଇ କେଉଁଠି କାହା କୋଳକୁ ଫେରିଯିବୁ । ଏତେ ସପନ, ଏତେ ଆଶା, ଏତେ ଭାବନା ? ଏତେ ମନସ୍ତାପ ? ଛଟପଟ ହେଉ କାହିଁକି ! ଝିଅ ବଦଳିବ ନାହିଁ । ସେ ନିଶାର କବଳରେ ପଡ଼ି ବାଇଆ ହୋଇଛି ।

ଟଗ୍ର ଦ' ଫାଳ କବାଟ ଧୀରେ ଧୀରେ ଖୋଲି ଠିଆମେଲା କଲା । ପିଣ୍ଡାକୁ ଗୋଡ଼ ବଢ଼ାଉଥିବା ଝିଅ ଖଟ ଉପରୁ ତଳକୁ ଡେଇଁଲା । ତା'ର କାନ ଧରି ଓଟାରିଲା । କହିଲା, ରହ, ଯାଉଛୁ କୁଆଡ଼େ ? ଭଲଦଶା ଅଛି ତ ମୋ' କଥା ଶୁଣ ।

ଜବାବ୍ ଦେ । ଯାହା କହୁଛୁ ଶୁଣ । ଯାହା କହିବ ମାନବୁ ତ ସବୁ ଭଲ ହେବ । ଏ ଘର ଶିବବାବାଙ୍କ ଦୟାରୁ ପୁଣି ହସିଉଠିବ । ନ ମାନିଲେ ନାହିଁ । କିଏ ତୋତେ ବାଧ କରିବ ?

ଝୋଷ କହିଲା, ମୋ ଲୁଗାକାନ ଗ୍ରୁତ୍ତିଦିଅ । ବନ୍ଧିରହି ତମର ମାଡ଼ସହି, ଗଞ୍ଜଣାଭୋଗି, ହଲାପଟା ଲୋକହସା ହେବାକୁ ଆଉ ଧଇର୍ଯ ନାହିଁ । ମରଗଲେ ତରିଯିବ । ବନ୍ଧି ରହି କାହିଁକି ମରଣ-ଯନ୍ତ୍ରଣା ଭୋଗିବ ?

ଝୋଷ ରହି ରହି ହେଲା ।

ଝଁରଆର ନିଶା ଗ୍ରୁତ୍ତି ଯାଇଥିଲା । ତାର ଆହ୍ଲାଦ ସତେ କି ଝୋଷର ଗୋଡ଼ ଛନ୍ଦିବାନ୍ଧି ପକାଇଲା । ସେ ଅନ୍ଧାରିଆ ଅଗଣା ଆଡ଼କୁ ଆଗେଇଲା ନାହିଁ ।

ଖଣ୍ଡେ ଦୂରରେ ଚୂନବୋଳା ସଫେଦ ଚଉଖିଟି ପାଖରେ ମାଇପିଟିଏ ବସି ମାଳା ଧରିଲା ପରି ଦିଶୁଛି । ଅଳପ ସଫା ଆକାରଟିଏ । ତା ପଛରେ ବାଡ଼ି ପାଖରେ କବାଟ ନିକଟରେ, ଚ଼ିନ୍ଙ୍କି ଗ୍ଧଳର ବହୁକା ଗ୍ଧଳକୁ ଲାଗି ଠିଆହୋଇଛି କେବକାଳର ଘଞ୍ଚ ଝଗରଗଛର ଆକୃତି ।

ସେଠାରେ ଭ୍ରମଣା ନାହିଁ ।

ଝଁରଆ ତାର ବାହୁଧରି ଭିତରକୁ ଟାଣିଲା । ସେ ଅଡ଼ିଲା ନାହିଁ । ଝଁରଆର ଦେହର ଶକ୍ତିରେ ଓଟାରି ହୋଇ ଚଉକାଠ ଟପି ଭିତରକୁ ଆସିଲା । ସତେ ଯେ ଅଣାୟତ ।

ଗୋଟିଏ ହାତରେ ତାର ଫୁଙ୍ଗୁଳା କଟୀକୁ ବେଢ଼ାଇ ଆର ହାତରେ ଶିକୁଳି ଲଗାଉଣୁ ଝଁରଆ କହିଲା, ମୋ ବୋଲ ମାନିଲେ ଆମେ କେତେ ସୁଖରେ ଘର କରିବା ଦେଖିବୁ ରହ । ତୋ' ଦେହରେ ଟିପ ଲାଗିବ ନାହିଁ । ମୋ ସୁନା ଝୋଷଟା ! ଗୁଡଟା ବଳଉଛୁ ? ବଳଉ ଲୋ ଝୋଷ, ଗୋଟାଏ ଗୁଡମ ! କେତେ ଖୁସିର ଗୁଡ ଶିବବାବା ଆଗରେ ସାଇତି ରଖିଛନ୍ତି । ଦେଖିବୁ ରହ । ଆ, ଶୁଣ, ବାଇଆଣୀ ହ ନା ।

ଝୋଷ ମଣିଲା, ଝଁରଆର ବୟସ ଆଠବର୍ଷ ପଛେଇ ଯାଇଛି । ଉଣେଇଶି ବର୍ଷର ନୂଆ ଯୁଆନ । ମୋଟାମୋଟି ହୋଇ ବଳୁଆ, ଚଞ୍ଚଳିଆ, ଅଧର୍ମି ଟୋକାଟିଏ ଫଗୁ ଖୁଣ୍ଟିଆଙ୍କ ଅଲଅଲ ପୁଅ ଝଁରଆ, କାର୍ତ୍ତିକ ମହାନ୍ତିଙ୍କ ମା-ଛେଉଣ୍ଡ ସଉରୁଣିଆ ଝିଅ ଯିଏ ସାବତମା ବାଘୁଣୀ ନାଟୁସ୍ୱରୀର ମାଡ଼ ଗାଳି ସହି, ଅଧାପେଟିଆ ଛନଛୁଙ୍କର ହାଡ଼ମାଳିଆ ହୋଇ ଆସି ବଡ଼ଘରର ଚଳଣି ଦେଖି ଥକା ଥକା ହେଉଛି, ପନ୍ଦର ବର୍ଷର ଲାଜ ଲାଜ ସେହି ଅବୋଧ ଝିଅଟି ଝୋଷଯୁନ୍ଦରୀକୁ କାହିଁକି କେଜାଣି ହାତରେ ଟେକୁଛି । ଗ୍ରୁଡରେ ଭିଡ଼ିବ ? ପିଠିରେ ଥୋଇବ ? ଆଲୁଅ କମାଇ

ଏଇ ଖଟର ସଫେଦ ନରମ ବିଛଣା ଉପରେ ଧୀରେ ଧୀରେ ଟେଣ୍ଟର ଜଳନ୍ତ ଦେହଟାକୁ ଆପଣାର କରିବ ସେ ହ୍ମମହ୍ମିଆଁ ଟାଉଟାହୁଆ ଅନ୍ଧକାରଟା ?

ହେଲା ନାହିଁ ।

ହାଡ଼ମାଳ ଉପରେ ଶିରଦଉଡ଼ି ବାରି ହେଉଛି । ସେହି ପୋଖତ ସୁଆନ ଝିଅ ଝୁଣ୍ଟିଆ । କୋଡ଼ିଏ ଉପରେ ସାତ ବରଷ ଟପିବାକୁ ଉଦ୍ଧୁଙ୍କିଲାଣି । ପୂରିଲା ପୂରିଲା ଆଖି ଯୋଡ଼ିକ କୋରଡ଼ିଆ ଦିଶିଲାଣି । ଗାଲ ଦ'ଫାଳ ହେଲାଣି । ଚଟାଳିଆ ବଡ଼ାଫାଳ ପରି ହାତ ଦୁଇଟି ଟେଣ୍ଟର ଅଣ୍ଟାରେ ବେଢ଼ାଇ ତାର ବସ-ବହଲ ଅଲ-ଥଲିଆ ପେଟ ଓ ଗୁଡିରେ ନିଜ ଦେହର ହାଡ଼ମାଳ ଚପାଇ ତାକୁ ଶୂନ୍ୟେ ଶୂନ୍ୟେ ଟେକି ଖଟ ପାଖକୁ ଉଠାଇ ନେବାର ବୃଥା ପ୍ରୟାସ କରି ସେ ନିରସ୍ତ ହେଲା । ଅପାରଗତା ଓ ବ୍ୟର୍ଥତାର ଅପମାନ, ଆଉ କ୍ଷୋଭରୁ ଉଦ୍ଧାର କରିବାକୁ ଟେଣ୍ଟ ଝିଅର ବାହୁବନ୍ଧନ ଭିତରେ ନିଜକୁ ଓ ତାକୁ ଖଟ ନିକଟକୁ ଅଡ଼ାଇ ନେଲା ।

ଟେଣ୍ଟ ପଚାରିଲା, କ'ଣ କହିବ କୁହ ।

ଟେଣ୍ଟ ଆଗରେ ଖଟ ଉପରେ ବସି, ଝିଅ ଉଲ୍ଲାସରେ କହିଲା, ତୁ ଶିବ ବାବାଜି ପାଖକୁ ଯାଇ ଶରଣ ପଶ । ସୁନାହାର ମୁଁ କାହିଁକି ଦେବ ? ତୁ ତାଙ୍କର ପାଦରେ ଥୋଇ ଓଲଗି ହେବୁ । ତାଙ୍କ ଆଗରେ ତୋ' ଦେକରୁ କାଢ଼ିବୁ । କାନ ଫୁଲ ଦଓଳି ବି । ଏବେ ସବୁ ପିନ୍ଧି ଥା । କିଛି ତୁ କହିବୁ ନାହିଁ । ସେ ସଙ୍ଗ୍ଭ ଦେବତା । ମଣିଷର ମନକଥା ଜାଣି ପାରନ୍ତି ।

ଖାଲି ସେତିକ ? ପୂର୍ବଜନ୍ମରେ କିଏ କ'ଣ ଥିଲା, କେଉଁ କାମ ସବୁ କରିଥିଲା, କେତେ ଅଣା ପୁଣ୍ୟ, କେତେ ଅଣା ପାପ ସେ ମଲାବେଳକୁ ଜମା କରି ରଖିଥିଲା, ସବୁ ସେ ଜାଣନ୍ତି ।

ଟେଣ୍ଟ ବିସ୍ମିତ ହେଲା । ପଚାରିଲା, ସତେ ? ତମକୁ ନିଶ୍ଚେ କହିଥିବେ ? ତମେ ପୁରୁବ ଜନମରେ କ'ଣ ଥିଲ ? କେଉଁଠି ଥିଲ ? ଏ ଜନ୍ମ ବେଳକୁ କେତେ ପାପ କେତେ ପୁଣ୍ୟ ସଙ୍ଗରେ ନେଇ ଆସିଥିଲ ? କହିଥିବେ ତ ?

ଝିଅ କହିଲା, ଆଲୋ ନା, କହି ନାହାନ୍ତି । ମୋ' ମୁହଁକୁ କେତେଥର କଟମଟ କରି ଚାହିଁଛନ୍ତି । ମୋ ପିଲେହି ପାଣିଫାଟି ଆସେ । ସେ ବୁଝି ପାରନ୍ତି କ' କ'ଣ । ଟିକିଏ ମୁଣ୍ଡ ଟେଙ୍ଗାରନ୍ତି । ଅଳପ ହସିଦିଅନ୍ତି । ମୁଁ ପଚାରିବା ପଚାରିବ ହୁଏ । ଡରରେ ପଚାରେ ନାହିଁ । ଦୟାହେଲେ ତାଙ୍କ ମନକୁ ସେ ବଳେ କହିବେ ।

ମୁଁ ତାଙ୍କର ନିରୋଳା ଭଗତ ହୋଇପାରି ନାହିଁ । କେମିତି ହେବି ? ଘରର ଘରଣୀ ଯେ ଗେରସ୍ତର ଅସଲ ଅଧିକ । ଜାଣ ଫୁଲର ରଙ୍ଗ, ଫଳର ସୁଆଦ, ଜହ୍ନର ଆଲୁଅ, ସୂର୍ଯ୍ୟର ତେଜ—ରହି ଆଉସବୁ କଥଣ ତ, ତାଙ୍କର ଅସଲ ଭଗତ

ଗଦେଇନନା, ଜାଣୁ ତ ସେ ଖର ପଣ୍ଡିତ, ଶାସ୍ତ୍ରପୁରାଣ ସବୁ ତାଙ୍କ ମୁହଁରେ ଥାଏ, ସେଇ ନନା କେତେଥର ମେଳାପଙ୍ଗତରେ ବୁଝେଇ କହୁଛନ୍ତି ।

ତୁ ଯେ ମୋ' ଅଧିକ; ଯେତେ କହିଲି, ତତେ ଯେତେ ଧିଆଇଲି ତୁ ଶୁଣିଲୁ ନାହିଁ । କଥା ମାନିଲୁ ନାହିଁ । ତାଙ୍କ ଶରଣ ପଶିଲୁ ନାହିଁ ଲୋ ଗୁଣ୍ଡାକୁଣୀ । ତାଙ୍କର ସେବା କଲୁ ନାହିଁ । ମନ ନେଲୁ ନାହିଁ, ଯେମିତି ଗଦେଇ ନନାଙ୍କ ଖରଯା ମୋତି ନାନୀ, ନାରଣ ପରିଡ଼ାଙ୍କ ସ୍ତ୍ରୀ ପୁନେଇଁ, ଡ଼ମ୍ବରୁ ମହାରଣାଙ୍କ ଘରଣୀ ସୁନା, ବଟ ଦଣ୍ଡପାଟର ଘରଆଡ଼ ଜାନକୀ, ଆହୁରି କେତେ, ତାଙ୍କୁ ମୁଁ ଦେଖିଛି ସିନା ଚହ୍ନି ନାହିଁ ତ, ସମସ୍ତେ ତାଙ୍କ ସେବା କରନ୍ତି ।

କଏ କେବେ । ଯାହାକୁ ଠାକୁରେ ଯେବେ ଦୟା କରନ୍ତି । ସେବା ଅଧିକାରି ଦିଅନ୍ତି । ଯା' ନ କହିବା ଯାକେ ସେ' କ'ଣ ଆସି ପାରିବ ? ହଉ ଯେତେବେଳ । ଗୁଡି ପାହିଲେ ପାହୁ । ସମସ୍ତେ ଶିବବାବା ସ୍ୱୟଂ ମହାଦେବଙ୍କର ଝିଅ । ତାଙ୍କ ଆଖିରେ ମରଦ-ମାଇପ, ବୁଢ଼ୀ, ଦରବୁଢ଼ୀ, ଟୋକୀ, ଲଙ୍ଗୁଳି ଝିଅ ସମସ୍ତେ ସମାନ । ଗଦେଇ ଷଡ଼ଙ୍ଗୀ ଏମିତି ବୁଝାଇ କହନ୍ତି ପୁଣି ବୁଝାଇ ଦିଅନ୍ତି, ସେ ଶିବ କାମଦେବକୁ ତାଙ୍କର କପାଳ ଉପରେ ଥିବା ଆଖିର ନିଆଁରେ ପୋଡ଼ି ଜାଳି ପାଉଁଶ କରିଥିଲେ । ସେ ବ୍ରହ୍ମଚାରୀ ।

ଟଗର ପାଟି ଆଁ ହୋଇଥିଲା । ମନକାନ ଦେଇ ସେ ଝିଅଆର ବଚନ ଶୁଣୁଥିଲା । ଆଜି ନିଦ ପାଖ ପଶୁ ନାହିଁ ।

ଝିଅଆ ଭାବଚନ୍ତି ଥାକ ଥାକ କରି ରହି ରହିକା କହୁଥିଲା । ଟଗ ମନ ଦେଇ ଶୁଣୁଥିଲା । ଆଗରୁ ବାଟରେ ଘାଟରେ, ଗଲା ଅଇଲା ମାଇପିଙ୍କ ତୁଣ୍ଡରୁ ଯେଉଁସବୁ ଅପବାଦଦିଆ କାହାଣୀ ସେ ଶୁଣି ନାକ ଟେକିଥିଲା, ସେଗୁଡ଼ା ହଂସୁଳୀମାନଙ୍କ ଗନ୍ଧଆରୁଣ୍ଡର ତାହାମିଛ ବୋଲି ସେ ଗ୍ରହଣ କରିବାକୁ ନିଜର ମନକୁ ବୁଝାଇଲା । ଧଦଟିଏ ସେ ବୁଝି ପାରିଲା ନାହିଁ । ପଚାରିଲା, ହଇ ହେ, କାମଦେବଟି କଏ ? ବ୍ରହ୍ମଚାରୀମାନେ ଅଣପୁରୁଷାଟି ?

ଝିଅଆ କହିଲା, ଭଲ କଥାଟିଏ ପଚାରିଲୁ । କାମଦେବ ଜଣେ ଠାକୁର-ଦେବତା ହୋଇଥିବେ । କାହିଁକି ମହାଦେବଙ୍କୁ ଚଢ଼େଇଥିବେ । ସେଇଥିପାଇଁ ହୋଇଥିବ । ଅସଲ ଭିତର କଥାଟି ନନାଙ୍କଠାଉଁ ବୁଝି ମୁଁ ଆଉ ଦିନେ କେବେ କହିବି । ବ୍ରହ୍ମଚାରୀଏ ଅଣପୁରୁଷା କି ନୁହନ୍ତି ନନାଙ୍କୁ ପଚାରିବି ।

ବନ୍ଦିତକୁ କେତୋଟି ବଲୁଆ ଭେକ ଉଠିଲେ । ଗୁଡ଼ି ତୃତୀୟ ପ୍ରହର ଆରମ୍ଭ ହେଲା । ନିଦମାଉସୀ ଆଉ କାହାରି ବାଧା ମାନିଲା ନାହିଁ । ମୁଣ୍ଡ ଝାଙ୍କିଲାଣି ।

ଝିଅଆ ପଚାରିଲା, ଟଗ ! ତୁ ମୋ'ର କଥା ମାନିବୁଟି ? ବାବାଙ୍କୁ ଭେଟି ଦେଇ ତାଙ୍କର ଶରଣ ପଶିବୁ ? ତାଙ୍କର ସେବାପୂଜା କରି ମନ ଉଟାଇ ପାରିବୁ ? ଶିବଚରଣ ପରି ସେ ତୋ' କୋଳରେ ଦେବଅଂଶୀ ପୁଅ ଦେବେ । ସେ ଖୁସି ଥିଲେ

ଆମ ମନକାମନା ପୂରଣ କରିବେ । ଧନଦଉଲତ, ଜମିବାଡ଼ି ଘରକଥା । ଆଉ ମାଣେ ଜମି ମୋତା ନାଇଁକି, ନୋହିଲେ ନାରଣ ପରିଡ଼ାର ଭାରିଯା ପୁନେଇଁ ଦେଇଙ୍କୁ ବିକଦେଲେ ଆମର ବେଶୀ ଊଣା ହେବ ନାହିଁ ଲୋ ! ବାବାଙ୍କ ଦୟା-ହେଲେ ତୁ ତୋ ନାଁରେ ତୋ' ମନଇଚ୍ଛା ଜମି କିଣି ପାରିବୁ ।

ଟଭି କହିଲା, ତମର ମନକୁ ମୋ'ର ମନ; ମୁଁ କରିବି । ତମର କଥା ନ ମାନିବି ତ ଆଉ କାହା କଥା ମାନିବି ଯେ ! ତମର ସୁଖରେ ମୋ'ର ସୁଖ । ତମର ଆନନ୍ଦରେ ମୋ'ର ଆନନ୍ଦ । ଜମି ମାଣେ କାହାକୁ ବିକିବ ତ ବିକ । ତେଣିକି ମିଳିଲେ ଖାଇବା, ନ ମିଳିଲେ ମୂଲ ଲାଗିବା । ମୋର କଥାଟିଏ ମାନିବ ?

ଝରିଆ ପଚାରିଲା, କ'ଣ କହ ।

ଟଭି ଆଖିରେ ତା' ଅଜାଣତରେ ଲୁହ ଭରପୂର ହେଲା । ଭାବିଲା, ଯେଉଁ ପିଲାଟି ତା'ର ପେଟରେ ଖେଳୁଥିଲା, କେତେ କୁତୂହଳ, କେତେ ଆଶା, କେତେ ସପନ ତା' ମନରେ ଜଗାଉଥିଲା, ସେ ମଲା ପେଟ ଭିତରେ । ଝରିଆର ବାଧା ଗୋଇଠାରେ ତା'ର ପ୍ରାଣ ଗଲା, ଅବା ସେ ଗଲା ତା' ଭିତରର ଘମଣ୍ଡା ମୂର୍ଖରେ ? ଘର ମାସର କଣିଟି, ପେଟ ଭିତରେ ଓଲଟୁ ଥାଏ, ଓଲଟୁ ଥାଏ । ପୁଣି ଝରିଆର ମାଡ଼ । ସେ ଖସିଲା । ଝରିଆର ମାଡରେ, ନା ଘମଣ୍ଡାର ରକତଲୋଭ ପାଇଁ ? କାହିଁକି ଝରିଆ ଅଣାୟତ୍ତ ହେଉଥିଲା ? ଏବେ ବି ହେଉଛି ? ନିଶା, ନିଶା—

ଝରିଆ ପଚାରିଲା, ଚୁପ୍ ରହିଲୁ କାହିଁକି ? କାନ୍ଦୁଛୁ ଯେ । ତୋ'ର କି କଥା ମାନିବ ?

ଟଭି କହିଲା, ତମେ ଯାହା କହିବ ମୁଁ ନିଶ୍ଚୟ କରିବି । ଯେତେ କଷ୍ଟ କାମ ହେଉ, ଯେତେ ଅପନ୍ତ, ଅପଶୁଣା କାମ ହେଉ କରିବି, କରିବି, କରିବି । ତମର ଭଲ ପାଇଁକି । ମୋ' ପାଇଁ ତମେ ଏତିକି କରିବ । ମଦ, ଗଞ୍ଜେଇ, ଅଫିମ ଆଜି-ଠଉଁ ଆଉ ଛୁଇଁବ ନାହିଁ ?

ଝରିଆ ଭାବିବାକୁ ଲାଗିଲା । ଜବାବ ଦେଇପାରିଲା ନାହିଁ । ଶିବ-ବାବାଜୀ ସବୁଦିନେ ସନ୍ଧ୍ୟାରେ ମଦରୁ ଗିଲାସେ ଲେଉଡ଼ନ୍ତି । କାଳିକାମାଈଙ୍କ ପାଖରେ ଘଡ଼ରେ ଭୋଗ ସଙ୍ଗେ ମିଶାଇ ବାଢ଼ିବାକୁ ତାଙ୍କୁ ପଡ଼େ । ସେତିକି ନ ହେଲେ ମାଆଙ୍କୁ ନ ରୁଚେ । ନିଜେ ବାବା ଭୋଗ ଲଗାନ୍ତି । ସେଥିରୁ ଆଣି ସମସ୍ତଙ୍କୁ କିଛି ବାଣ୍ଟି ଦିଅନ୍ତି । ମା' ସ୍ୱଦେହରେ ଆସି ତାଙ୍କ ଆଗରେ ଉଭା ହୁଅନ୍ତି । ବାବାଙ୍କର ଯେଉଁ ଝିଅ ଭକ୍ତଟି ଉପରେ ଶରଧା, ତାକୁ ସେ କାଳିକା-ମାଈଙ୍କ ପାଖକୁ ଡାକନ୍ତି । ସମସ୍ତେ ତ ତାଙ୍କର ଝିଅ । କାହା ଉପରେ କେବେ ତାଙ୍କର ଦୟା ହୁଏ । ବାବା ନିଜେ ଯୋଗରେ ବସନ୍ତି । ତଳଖଣ୍ଡାର କାଳିକା-ମାଈଙ୍କ ଘରେ ଘିଅଦୀପ ଜଳୁଥାଏ, କବାଟ କିଳା ହୁଏ । ତାଙ୍କ ଧ୍ୟାନ ବଳରେ ମା ଅବତରନ୍ତି । ବାଢ଼ିଲା ଭୋଗ ଝିଅଟି

ତାଙ୍କୁ ଦେଖାଏ । ବାସନାଭୋଗୀ ମା ସବୁ ବାସନା ଭୋଗ କରି ମୂର୍ତ୍ତିରେ ଲୀନ ହୁଅନ୍ତି । କେତେବେଳେ ବାବାଙ୍କ ଧ୍ୟାନ ଭାଙ୍ଗେ । ସେ ଯା' କହିଲେ, ଝିଅଟି ପ୍ରସାଦ ଧରି ଘରୁ ବାହାରେ । ବାବା ପରେ ଆସନ୍ତି । ନୋହିଲେ, ଧ୍ୟାନରେ ବସୁଣୁ ରାତି ପାହେ । କାଉ କା' କରେ । ଏଡ଼େ ବଡ଼ ଯୋଗୀମହାତ୍ମା ।

ଟେଣ୍ଡି ପଚାରିଲା, ତୁମ୍ଭେ ରହିଲ କାହିଁକି ?

ଝିଂଗରିଆ କହିଲା, ମନ ଦେଇ ଶୁଣ ବାବାଜୀଙ୍କ ମହିମା । ବଡ଼ ଗହନ । ପ୍ରଚାର କରିବାକୁ ଭଗତମାନଙ୍କୁ ମନା । ଯାହା ଶୁଣିଛୁ. ପଚାରିଲୁ ଯେବେ ତତେ ମୁଁ ଗୁପ୍ତରେ କହୁଛି । କାହା କାନରେ ଫୋଡ଼ିବୁ ନାହିଁ । ସେ ସର୍ବଜ୍ଞ । ଧ୍ୟାନରେ ବସିଲେ ତିନିପୁରର ଘଟଣା ଜାଣିବେ । ତମ ମନର ଭାବନା ତାଙ୍କ ଆଖିକୁ ଜଳଜଳ ହୋଇ ଦିଶିବ । ବାରବରଷର ତପସ୍ୟା ଶୁଖୁଆ ପୋଡ଼ାରେ ଯିବଟି । ସର୍ବନାଶ ହେବ ।

ଟେଣ୍ଡି କହିଲା, ମୁଁ ତମର ଘରଣୀ, ମୋ ପାଖରେ କପଟ କରନା । ମନ ଖୋଲି କହ ।

ଯାହା ଶୁଣିଥିଲା, ଝିଂଗରିଆ ସବୁ କହିଲା ।

ଟେଣ୍ଡି ପଚାରିଲା, କେମିତି ଜାଣିଲ ?

ଝିଂଗରିଆ କହିଲା, ମେଲାରେ ସେମାନଙ୍କଠାରୁ ଶୁଣିଛୁ । ତାଙ୍କର ଘରଣୀମାନେ ଏଇ ମୋତା ନାନୀ, ପୁନେଇଁ, ସୁନା ଦେଇ, ମାଳତୀ ଆଉ ସବୁ କିଏ କିଏ ନିଜ ନିଜର ଗେରସ୍ତଙ୍କୁ ଆପଣା ଅନୁଭବ କଥା କହିଥିଲେ । କାଳିକାମାଈଙ୍କୁ ଭୋଗ ଭୁଞ୍ଜାଇ ସେମାନେ ଆଗ ପ୍ରସାଦ ପାଇଥିଲେ । ତାଙ୍କ ହାତରୁ ଆମେ ବି ପ୍ରସାଦ ପାଇଛୁ । ତୋତେ ବାବାଙ୍କର ଦୟାହେଲେ ତୁ ବି ଦର୍ଶନ କରିବୁ । ଆଗ ଭୋଗ ଭୁଞ୍ଜି ଆମକୁ ବାଣ୍ଟିବୁ । ତୁ ଏବେ କହ ଟେଣ୍ଡି, କେମିତି ମଦ ନ ଛୁଇଁବ ?

ଟେଣ୍ଡି କହିଲା, ପ୍ରସାଦ ଯେ ଅମୃତ । ତା'କୁ ପାଅ, କିଏ ମନା କରୁଛି ? ହେଲେ, ଖାଲି ସେଗୁଡ଼ାକ ପିଇ ମତୁଆଳି ହୁଅ ନାହିଁ । ଗଞ୍ଜେଇ ଅଫିମ ଏକାଥରେ ଛାଡ଼ିଦିଅ । ପୁଣି ତମ ପୁରୁଣା ଦେହ ଫେରି ପାଇବ । ତମର ସେବା କରିବି । ତମର ଯତ୍ନ ନେବି । ମୋ ଦେହରୁ ରକ୍ତ ମାଂସ ନେଇ ତମ ଦେହରେ ମୁଁ ପରସ୍ତ ପରସ୍ତ ନେସିବି । ତମର ସ୍ୱାସ୍ଥ୍ୟ ଫେରିବ । ବଳ ଫେରିବ ।

ଟେଣ୍ଡିର କଣ୍ଠ ରୁଦ୍ଧ ହୋଇ ଆସିଲା । ଆଖିରେ ଲୁହ ଛଳ ଛଳ ହେଲା । ସେ ଆଉ କହି ପାରିଲା ନାହିଁ । କଳା ହୋଇ ଆସୁଥିବା ନଳଟିଣ କାଚ ଆଡ଼କୁ ଚାହିଁ ରହିଲା ।

ଝିଂଗରିଆ କହିଲା, ହଉ ହେଲା, ମୁଁ ଅଫିମ ଖାଇବି ନାହିଁ । ତୁ ଶୁଣ ଟେଣ୍ଡି ! ଶିବବାବା କହନ୍ତି, ଗଞ୍ଜେଇର ଧୂଆଁ ପେଟରେ ନ ପଶିଲେ ନିକୁଟରେ ଲୟ ଲାଗି ପାରିବ ନାହିଁ । ମୁଁ ଲୟ ଲଗାଇବାକୁ ଗଞ୍ଜେଇ ଧୂଆଁ ଅନ୍ୟ ଭଗତଙ୍କ ସଙ୍ଗରେ ଦି'

ଘୃଣ ଦମ୍ ଟାଣିଦିଏ । ଲସ୍ପ ଲଗାଏ । ଶିବମହାଦେବଙ୍କୁ ମୁଁ ଆଖିବୁଜି ମୋ ମୁଣ୍ଡ ଭିତରେ ଦେଖେଁ । ଆଉ କି ଡର ?

ତୋ’ ଭିତରେ ଗୃମଣ୍ଡା ଥାଇ ତୁ ଏ ଘରେ କାରବାର ହେଉଛୁ । ଶିବ-ମହାଦେବ ମୋ ପାଖେ ପାଖେ ନ ଥିଲେ କେବଠାରୁ ତୋ ଗୃମଣ୍ଡା ମୋ ଜୀବନକୁ ଖାଇ ଦିଅନ୍ତାଣି । ଯେଉଁଦିନ ସେ ତୋ ଭିତରୁ ବାବାଙ୍କ ଦୟାରୁ ପ୍ରାଣ ବିକଳରେ ଖସି ପଳାଇବ, ସେହିଦିନରୁ ମୁଁ ଆଉ ଚଲମ ଛୁଇଁବି ନାହିଁ ।

ଟଗ୍ଭ ଖୁସି ହୋଇ ଝିରଆର ହାତଧରି ହଲଇ ଦେଲା । ପରଡେ ଯିବାକୁ ଦୋଦୋପାଞ୍ଚ ହୋଇ ପଗ୍ଭରିଲା, ସତ କହୁଛଟି ?

ଝିରଆ କହିଲା, ମୋର ଜିବାର ସତ୍ୟ । ଶୁଣ, ଆଜି ସନ୍ତ୍ରବୁଢ଼େ ମେଳାରେ ମୁଁ ଡମ୍ବରୁ ମହାରଣାଙ୍କ ଇସ୍‌ପିସାଲ୍ ଚଲମରୁ ବମ୍‌-ଭୋଲଙ୍କ ନାମରେ ଦୁଇଦମ୍ ଶୋଷିଥିଲି । ନାରଣ ପରଡ଼ା ମୋ ହାତରୁ ଚଲମଟା ଟାଣିନେଲା । ଧୂପଟାକୁ ପେଟ ଭିତରେ ରଖି ପାରଥିଲେ ସିନା ସେ ଜିଲୁଟ-ଅନାହତପୁରକୁ ବାଟ ଖୋଲି ଦେଇଥାନ୍ତା । ନାରଣ ପରଡ଼ା ହାତରୁ ଚଲମ ଛଡ଼ାଇବାକୁ ଉହୁଙ୍କି ଦି ପଦ ଶୋଧିବାକୁ, ମୋର ତ ହୋବ ନ ଥିଲା, ଯେମିତି ମୁଁ ତୁଣ୍ଡ ଖୋଲିଲି, ଧୂପ ଧୂଆଁ ପାଟିବାଟେ ନାକବାଟେ ଖସି ପଳାଇଲା । ମୋ ଦେହ, ମୁଣ୍ଡ, ସବୁ ଦୋହଲାଇ ଦେଲା । ରହ, ସେତେବେଳେ ଲସ୍ପ ଲଗାଇ ଶିବଙ୍କୁ ଦର୍ଶନ ମୋ ଭିତରେ କରପାର ନ ଥିଲି । ଏବେ ଲସ୍ପ ଲଗାଇବି, ଦର୍ଶନ କରିବି ।

ଟଗ୍ଭ ପଗ୍ଭରିଲା, ଗ୍ରତି ଶେଷ ପହର ହେଲା । ଦେଖ, ନଲଟଣଟା କଳା ପଡ଼ିଗଲାଣି । ଘର ଅନ୍ଧାରଆ ଦିଶିଲାଣି । ଶୋଇବ କେତେବେଳେ ? ମୁଁ କହୁଛି, ତମେ ଟିକିଏ ଶୋଇପଡ଼ । କାଲି ସକାଳୁ ଉଠି ଆଗ ଲସ୍ପ ଲଗାଇବ, ସେଇଠୁ ଯାହା କରିବ । ମତେ ବି ନିଦ ଘାରିଲାଣି ।

ଏତକ ଶୁଣି ଝିରଆ ଗ୍ରଗରେ ଜଳି ଉଠିଲା । ହାତ ମୁଠା କଲା । ପୁଣି ବାଇଆ ହୋଇ ଟଗ୍ଭକୁ ନମ୍ରକ ଛେଚଥାନ୍ତା ପରି ! କଣ ବିଗ୍ଭରି ହାତ ନୁଆଇଁଲା ।

ଟଗ୍ଭ ଭାବିଲା, ନିଜ ଦେହର ଶକ୍ତିର ପରଚୟ ପାଇ ସେ ଆପେ ନିରସ୍ତ ହେଲା ।

ଟିକିଏ ଥମି ଝିରଆ କହିଲା, ଆଲୋ ! ଯିଏ ଦିନଗ୍ରତି କରୁଛନ୍ତି ତାଙ୍କ ପାଖରେ ଦିନଗ୍ରତି ସମାନ । ତାଙ୍କ ପାଖରେ ବେଳ କଣ ଅବେଳ କ’ଣ ? କାମଦେବଙ୍କୁ ଯିଏ ଜାଳି ଦେଇଛନ୍ତି ଗ୍ଭର ଦିନ ତାଙ୍କ ପାଖ ପଶିବ ? ମୁଁ କହୁଛି ତୁ ବି ଲସ୍ପ ଲଗା । ଅନା ହେଇଟି, ତୁ ବି ଏମିତି ବସ । ଏମିତି ଆଖି ବୁଜ । ଶିବବାବାଙ୍କୁ ସ୍ମରଣ କର । ତାଙ୍କ ରୂପକୁ ମନେ ପକା । ସେ ଆସିବେ । ଗୃମଣ୍ଡାକୁ ସେ ତୋ ଭିତରୁ ବାହାର କରିଦେବେ ।

ଶିବବାବାଙ୍କ ଆଖିର ଅନ୍ଧାର ତଳେ ଟେଣ୍ଡି ଦେଖିଲା କି ନାହିଁ ସେ ଜାଣି ପାରିଲା ନାହିଁ । ସେ ଅନୁଭବ କଲା, ଯେପରି ତାର ଗୁଢ଼ ଭିତରେ ସେହି ଭୟଙ୍କର ବିକଟାଳ ଗୁମଣ୍ଡା ହଲଚଲ ହେଉଛି । କିଲବିଲ ଛଟପଟ ହୋଇ ତା ଭିତରୁ ବାହାରି ଆସୁଛି କି ? ସେ ଧୀରେ ଧୀରେ ଆଖି ଖୋଲିଲା । ପୁଣି ନଳଟଣର କାଚଟା ଏକାଥରେ କଳା ପଡ଼ିଗଲାଣି । ଘର ଭିତରେ ଅନ୍ଧାର ହେଲାଣି । ରହିଛି ଖାଲି ଟିକିଏ ଆଲୁଅର ଆଭାସ । ନିଦଭଙ୍ଗା ଆଖିକୁ ଦିଶିଲା, ଯେପରି ସେହି ଅଦ୍‌ଭୁତ ଗୁଇର ମୂର୍ତ୍ତିଟା ହଲି ହଲିକା କବାଟ ଦେହରେ ମିଶିଯାଉଛି ।

ଟେଣ୍ଡି ହାତ ଲମ୍ବାଇ ଝରିଆର ଦେହ ଛୁଇଁବୁ ସେ ଚମକି ଉଠିଲା ସ୍ୱରରେ କହିଲା, ଏଁ-ଏଁ !

ଟେଣ୍ଡି କହିଲା ଧୀର ସ୍ୱରରେ, ଶୁଣ, ମୋ ଭିତରର ସେହି ଗୁମଣ୍ଡାଟା ଶିବ-ବାବାଙ୍କ ଦୟାରୁ ମୋ' ଦେହରୁ ବାହାରି ହୋଇ ଦେଖ, କବାଟ ଦେହରେ ମିଶି ଯାଉଛି ।

ନିଦୁଆ କଣ୍ଠରେ ଝରିଆ କହିଲା, ଦେଖିଲି, ଦେଖିଲି, ଶାଳୀ ନ ଯାଇ ଅସୁଧରି ରହିବ କେମିତି, ହଇଲେ ? କାହାର ଆଜ୍ଞା, ନା ଶିବଭଗବାନଙ୍କ ଆଜ୍ଞା ! ଜାଣିଛୁ ନା, ଜକତହୁଦେ ଭଗବାନ । ମୁଁ ଲସ୍ୟ ଲଗାଇଥିଲି । ମୋ ଆଗରେ ସେ ଆସି ଠିଆ ହୋଇଥିଲେ । ଆଉ କି ଡ଼ର ? ଏବେ ତୁ ଶୋଇପଡ଼ । ଏଇଠି ମୋ ପାଖରେ ।

ଝରିଆ ଗୋଡ଼ ଲମ୍ବାଇ ଶୋଇଲା । ଟେଣ୍ଡିର ହାତଧରି ଟାଣିଲା । କହିଲା, ଡେ଼ରି କରନା । ମୁଣ୍ଡ ଝାଙ୍କି ଲାଣି । ରାତି ଆଉ ବେଶୀ ନ ଥିବ ।

ଟେଣ୍ଡି, ଝରିଆକୁ ହାତରେ ଗୁଡ଼ାଇ ଚୁମା ଚୁମା କହିଲା, ପୁଣି ଯଦି ସେ ରାକ୍ଷାସୁଣୀ ଆସେ ? ଆଜି ନୁହେଁ ଯେ ଆଉ କେବେ ?

ମୋ ଦେହରେ ଶିବଭଗବାନ ତ ଏବେ ବିରାଜୁଛନ୍ତି, ତା'ର କଣ ଡ଼ର ଭୟ ନାହିଁ ଯେ ଆଉ ଆସିବାକୁ ପୁଣି ସାହସ କରିବ ? ଆ, ଆହୁରି ପାଖକୁ ଲାଗିଆ ।

ଟେଣ୍ଡି ହସି ହସି କହିଲା, ମୁଁ ତ ତମ ଭିତରେ ପଶି ପାରିବ ନାହିଁ, ଜାଅନ୍ତା ମଣିପଟା । ଶୁଣମ, ମୁଁ ନିଶ୍ଚେ ଶିବବାବାଙ୍କ ଶରଣ ପଶିବି । ତାଙ୍କର ସେବା କରିବି । ସେ ଯାହା କହିବେ କରିବି । ହିଂସୁକୀ ମାଇପେ ଯିଏ ଯାହା କହନ୍ତୁ ମୁଁ ଶୁଣିବି ନାହିଁ । ମୋ କାନରେ ସେମାନଙ୍କର ଚୁଗୁଲି କଥା ଯେତେ ପଡ଼େ ତମେ ଶୁଣିଲେ କାବା ହେବ । ସେହି ଶିବବାବାଙ୍କ ନାମରେ ! ମାଇପି ଜାତି, ଆମର ଡ଼ରୁଆମନ । ତାଙ୍କ ପାଖକୁ ଯିବାକୁ ଡ଼ର ଲାଗେ । ଏବେ ଜାଣିଲି, ସେ ଶିବ ମହାଦେବଙ୍କ ଅବତାର । ସମସ୍ତଙ୍କର ବାପ । ଆଉ କି ଡ଼ର ?

ଝିଅଟାକୁ ନିଦ ଆନନ୍ଦ କରିସାରିଥାଏ । ତା'ର ବାହୁ ବନ୍ଧନ ଶିଥିଳ ହୋଇ ଆସୁଥାଏ । ଟିକି ବୁଝିଲି ସେ ଶୋଇ ପଡ଼ିଲାଣି ! ଟିକି ଆଖି ବୁଜିଲା । ଯାହାର ଭିତରେ ନିଜେ ଶିବଭଗବାନ ବିରାଜିଛନ୍ତି, ସେ ଦେହଛଡ଼ା ହେଲେ ଅଲକ୍ଷଣୀ ଗ୍ରହମଣ୍ଡାଟା ଲୁଚି ଲୁଚି ଆସି ପୁଣି ତା' ଦେହରେ ପ୍ରବେଶିବ । କିଏ ଜାଣେ ଡ଼ାଆଣୀ କି ଉତ୍ପାତ ଆରମ୍ଭ କରିବ ?

ଏହି ଦୁର୍ଭାବନାରେ ଭୟାକୁଳ ଟିକି କେବଳ ହାତରେ ନୁହେଁ ଗୋଟିଏ ମାଂସଳ ଗୋଡ଼ରେ ମଧ୍ୟ ଝିଅଟାକୁ ନିବିଡ଼ ଭାବରେ ଆଶ୍ଳେଷି ଧରିଲା । ଅପାର ଆନନ୍ଦରେ ଶିବ-ବାବାଙ୍କୁ ସ୍ମରଣ କରି ପରମ ଶାନ୍ତିରେ ରାତିର ଶେଷ ପ୍ରହରରେ ସେ ଶୋଇବାକୁ ଚେଷ୍ଟା କଲା ।

## —ଦୁଇ—

ସଞ୍ଜ ବୁଡେ ।

ଟିକି ନୁଖୁରା ମୁଣ୍ଡରେ ଗିନାଏଁ ନଡ଼ିଆ ତେଲ ଢାଳି ଶିଙ୍ଘ ପାନିଆରେ ନିଜ ହାତରେ ଅଡ଼ୁଆ କେଶକୁ ସଜାଡ଼ିବାକୁ ଚେଷ୍ଟା କଲା । ଶାଶୂ ଅତି ଯତ୍ନରେ ସେତକ ବଢାଇ ଥିଲେ । ଆଗରେ ତାକୁ ପଛ କରି ବସାଇ, ନିଜେ କୁଣ୍ଡାଇ ବାନ୍ଧି ଦେଉ-ଥିଲେ । ଭଲକି ଭଲ ଖୋସା । ମୁହଁ ବୁଲାଇ ଚିବୁକ ଧରି ମୁ ଣ୍ଡକୁ ଅଳପ ଟେକୁଥିଲେ; କ୍ଷଣେ ଗୃହିଁ, ଟିକିଏ ହସି କହୁଥିଲେ, ଦେଖ ଗୋ ମୋ ଚନ୍ଦ୍ରଉଦଆ ମୁହଁ !

ଶାଶୂ ଗଲା ଦିନରୁ କିଏ ଆଉ ସେପରି ଯତ୍ନରେ ବାନ୍ଧିବ ? ଗେଲ୍ହାରେ, ମନ ଖୁସିରେ କହିବ ? ଅକାଳେ ସକାଳେ ଗାଁ ମାଇପେ କେହି ତାର ଅଡ଼ୁଆ କେଶକୁ ସଜାଡ଼ି ଦିଅନ୍ତି । ରଟ୍‌ରଟ୍ କରି ଛିଣ୍ଡାଇ ପୁଳାଏ ପୁଳାଏ କେଶ ବାଣ୍ଡା କରି ତଳେ ପକାନ୍ତି । ତଥାପି ଖୁଣନ୍ତି, ଆଲୋ ମାଆଲୋ ! ବେକାଏ । ସେ ପୁଣି ପିଚା ତଳକୁ ଲମ୍ବିଛି, କେଶବତୀ-କନ୍ୟା କି ? କୁ ଣ୍ଡାଇ ଦେଉଣୁ ହାତ ରହିଯାଉଛି ।

ବରଷ ଭିତରଟାରେ ସେ କେଶ ଛିଣ୍ଡିଛିଣ୍ଡି କା ପାତଳ ହେଲାଣି । ପିଠିତଳେ ଝୁଲୁଛି ।

ଏବେ ସେ ନିଜକୁ ନିଜେ । ସ୍ନାହାନ ସାରି, ପେଡ଼ିରୁ କାଢ଼ି ଟିକି ଅଳପ ନାଲି ମିଲ୍ ଶାଢ଼ୀ ଖଣ୍ଡେ ପିନ୍ଧିଲା । ପୁରୁଣା । ଶାଶୂଙ୍କର ଦିନେ ଥିଲା । ନାନା ଜାତି ଫୁଲରେ ପୂର୍ଣ୍ଣ ଗୃହ୍ନ ଡ଼ିଟି ଧରିଲା । ତାଆରି ଭିତରେ ଥିଲା ଗୋଟିଏ ଗିନାରେ ଗୋଳା ସିନ୍ଦୂର ଓ ଅନ୍ୟ ଗିନାଟିରେ ଚନ୍ଦନ । ନିଜେ ଯତ୍ନରେ ଘୋରିଛି । ବେକରୁ ସୁନାର ଆମ୍ବକସିଆ ହାରଟି ଫିଟାଇ କାନରେ ବାନ୍ଧୁଣୁ ହାତ ଅଟକିଗଲା । ଗ୍ରନ୍ଥିତଳେ ଅଜଣା ଅମାନିଆଁ ବେଦନାର କୋହ ।

ଆହା, ଏଇଟି ତାର ଶାଶୁଙ୍କର ସ୍ନେହର ଉପହାର ! ତା ଜୀବନର ଅମୂଲ୍ୟ ନିଧି । ଜାଣ ଏକମାତ୍ର ସମ୍ବଲ । ବାମ୍ଫୁଆଣି ଆଖିକୁ ସେହି ତା'ର ଶେଷ ସମ୍ବଳ ଭିତରେ ଶାଶୁଙ୍କର ବିଷଣ୍ଣ ମୁହଁଟି ସତେକି ଦିଶି ଯାଉଛି । ତାଙ୍କର ଆତୁର ଦାଇନ ସତେବା କାନରେ ବାଜୁଛି ।

ଆଲୋ ମା ! ଝିଅଆଟା କୁସଙ୍ଗରେ ପଡ଼ିଲା, ନିଶାପାଣି ଅମଳ ଧରିଲା । ବାଇଆବାଉଳ ହେଲା । ବିବେକ ହାରିଲା । ତା' ବୋଲ ତୁ ବାଇଆଣୀ ହେବୁ ? ନିଜର ଓ ଖୁଣ୍ଟିଆ ବଂଶର ମହତ ସାରିବୁ ?

ନଥିଲା ଶାଶୁଙ୍କୁ ତା'ର ଜୀଅନ୍ତା-ତୁଣ୍ଡରେ ନିଜର ସ୍ୱାନମାନ କଥା, ତାଙ୍କ ଘରର ହତଶ୍ରୀ ଦୁର୍ଦ୍ଦଶାର କାହାଣୀ କିପରି ସେ କହିପାରନ୍ତା ?

ଟଗର ପୁଣି ମନେ ହେଲା, ନାଗୁଣୀ ଗ୍ରମଣ୍ଡାଟା ତା' ପେଟ ଭିତରେ ନାହି ମୁଣ୍ଡା ତଳେ ଛଡ଼ମୋଡ଼ ହେଉଛି । ବିକଟାଳିଆ ମୁଣ୍ଡଟା ଟେକିଛି । ହାଉ ହାଉଆ ତୁଣ୍ଡ ଆଁ କରିଛି । ଜିଭ ଲହ ଲହ । ହସୁଛି କି ? କହୁଛି କି ସେଠିକି ଯାଅନା, ତାଙ୍କୁ ମୋ'ର ପ୍ରାଣେ ଡର ? ବ୍ରହ୍ମା, ବିଷ୍ଣୁ ମହେଶ ଯେ ତିନିଠାକୁର । ହର୍ତ୍ତା କର୍ତ୍ତା-ବିଧାତା । ମହେଶ-ମହାଦେବଙ୍କି ସବାସାନ ଭାଇ । ଗେହ୍ଲା ଭାଇ । ହାଉଡ଼ା, ଏକ ବାଗିଆ, ଉଦ୍ଭପାଡିଆ ।

ମହାଦେବ ଯେ ଶିବ । ତାଙ୍କର ଘରଣୀ କାଳିକା ମାଈଙ୍କର ମୁଁ ଗ୍ରମୁଣ୍ଡା ଯେ କଙ୍କଣ । ଯେତେ ଜୀବ ଜ ଖାଇଲେ ମୋ' ପେଟ ପୂରେ ନାହିଁ । ଶିବ ମହାଦେବଙ୍କ ସହସ୍ର କଳାରୁ ଶିବବାବାଜୀ ଷୋଳକଳା ପାଇଛି । ମର୍ତ୍ତ୍ୟମଣ୍ଡଳରେ ଜାଣ ସେ ଶିବ ଅବତାର । ସେ ଯଦି ଦୟା କରିବେ, ତାଙ୍କର ଗୋଟିଏ କଳାର କେଜାଣି କୋଟିଏ ଅଂଶକୁ ଧାପେ **ତତେ ଦେବେ । ତୋ'** ଦେହରେ ମୁଁ ପଶି ପାରିବି ? ତାଙ୍କ ଅଂଶର ତେଜରେ ତୋ' ଭିତରେ ବସ ବାନ୍ଧି ଆରାମରେ ଶୋଇ ପାରିବି ? ଶହେ ସୂର୍ଯ୍ୟର ତେଜ ଲୋ ! ନିହମାକରେ ପୋଡ଼ି ଜଳି ପାଉଁଶ ହେବି । କାଳିକା-ମାଈଙ୍କର କଙ୍କଣ ମୁଁ । ସେଇଠୁ ପେଢନୀ ହୋଇ ଉପାସ ଭୋକରେ, ତଣ୍ଟି-ଶୁଖା ଶୋଷରେ ବାଇବଛ ହେବି । ମଶାଣି ମଶାଣି ଘୂରି ବୁଲିବି ।

ଆଲୋ ଟଗ ! ଟିକିଏ ସତାର କର । ତୋ ଝିଅର ହାତରୁ ସେ ନୂଆ ଡ଼େଉଁଶଆଟା ଆଜ ରାତିରେ ତୁ ଟିକିଏ ଖସେଇ ଦେବୁ । ସେ ଦିନ ବି ମଙ୍ଗଳବାର ହୋଇଥିଲା, ସେଇ ରାତିରେ ମ, ଯେଉଁଦିନ ଶିବ ମହାତ୍ମାଙ୍କ ସମ୍ମୁଦ ଶୁଣି କଲଦାଲ ହୋଇ ରାତି ପାହାନ୍ତାରେ ମୁଁ ତତେ ଗୁଡ଼ ଗୁଲଗଲି । କେମିତି ନ ଯା'ନ୍ତି ? ଲସୁ ଲଗାଇ ଝିଅଆ ତାଙ୍କୁ କଇଲାସ ପୁରରୁ ନିଜ ଭିତରକୁ ଟାଣି ଆଣିଥିଲା । ତୁ ଲୋ ଟଗ, ସେଇ ଦୁବଳିଆ ହାଡ଼ମାଳିଆ ଗେରସ୍ତକୁ ତୋ ଛାତିର

କଇଲାସ ପର୍ବତ ଶିଖରରେ ମୋ' ମୁଣ୍ଡ ଉପରେ ଜାକ ଧରଥିଲୁ । ସେହି ବୋଝ ସେହି କଟିକଟିଆ ଗ୍ରୀଷ୍ମରେ ଗ୍ଲାନିଆଁ ହୋଇ ପ୍ରାଣ ବିକଳରେ ମୁଁ ଛୁ' କରିଥିଲି ।

ଆଜି ବି ମଙ୍ଗଳବାର । ତୁ ଶୁଦ୍ଧ-ସ୍ନାହାନ କରିଛୁ । ଶିବ-ମହାତ୍ମାଙ୍କ ସେନେହ କରୁଣା ତୁ ପାଇବୁ । ପ୍ରଭୁ ଦୟାକଲେ ଆଜି ସେ ତୋ' ଭିତରେ ତାଙ୍କ ଷୋଳ-କଳାରୁ ଗୋଟିଏ କଳାରୁ ଧାପେ ମଧ୍ଯିବେ ।

ମାସେ କାଳ ତାଙ୍କର ସେବା କରିଲୁ । ତୋର ନୂଆ ସାଙ୍ଗମାନେ—ଗଦେଇ ଷଡ଼ଙ୍ଗୀଙ୍କ ଭାରିଯା ମୋତାନାଜୀ, ନାରଣ ପରିଡ଼ାଙ୍କ ଘରଣୀ ପୁନେଇଁ ଦେଈ, ମାଳତୀ, ଆଉ କେଉଁମାନେ, ପୁଣି ତୋ' ବଉଳ ଡମ୍ବରୁ ମାହାରଣାର ଘରଣୀ ସୁନା, ସଭିଙ୍କ ମୁହଁରୁ ବାବାଜୀଙ୍କ ଅଲୌକିକ ଗୁଣ ଶୁଣିଛୁ ।

ସେମାନେ ସାକ୍ଷ୍ୟ ଲକ୍ଷ୍ୟ ପ୍ରମାଣ ପାଇଛନ୍ତି । ସୁନାକୁ ପୁତ୍ରଦାନ ଦେଇଛନ୍ତି । ଅଣପୁରୁଷା ବୋଲି ଡମ୍ବରୁକୁ ଲୋକେ ପରିହାସ କରୁଥିଲେ । ତା'ର ବଦନାମ ରଟାଉଥିଲେ । ତାଙ୍କୁ ପୁରୁଷପଣିଆଁ ଦେଇ, ସେହି ସବୁ ନିନ୍ଦୁକ-ଲୋକ ଓ ବାରଭୁଣ୍ଡୀ, ଝିଅବୋହୂମାନଙ୍କ ପାଟିରେ କୋଲପ ପକାଇଲେଣି । ଏବେ ସେମାନେ ଚକୁଳି ନ ଖାଇ ବନ୍ଧ ଗଣୁଛନ୍ତି । ଓସଦ ନ ଗୁଡି ଚାହିଁଆ କାମୁଡୁଛନ୍ତି ।

ଟୋର ଭିତରେ କାକୁସ୍ଥ ହୋଇ ଗୃମଣ୍ଡା ମାଗୁଣି କରୁଛୁ, ଆଜିକ ତୁ ଥା । ମୋ ଧଇନ ଘେନା କର । କାଳିକ ଯିବୁ । ମୁଁ ଝିଅଆ ଭିତରେ ପଶିବି । ତାକୁ ଭଲ କରି ଗୃଷିବି । ଅଇଁଠା କରିବି । ଜୀବନ ନେବି ନାହିଁ । କାଳିକା ମାତାଙ୍କ ମୋଇଲା-ଅଇଁଠା ଦେହଟା ଭିତରେ ଶିବ-ଶମ୍ଭୁ ପଶିବେ ନାହିଁ । ଶିବବାବାଙ୍କ ଢେଉଁରିଆ ଖାଲି ପିନ୍ଧିବା ସାର ହେବ । ତହିଁରେ ଶିବଙ୍କ କଳା ନ ଥିବ । ମୁଁ ରହିଥିବି ଏଇଠି, ଏଇ ଘରେ, ତୋ' ଭିତରେ ବାବା ଦୟାକରି ଶିବକଳାର କାଣିଗୁଏ ସମ୍ପାଦିବେ । କି ସାହସରେ ମୁଁ ଗୃମଣ୍ଡାଟେ ତୋ' ପବିତ୍ର ଦେହ ଛୁଇଁ ପାରିବି ଲୋ ଟଭି ?

ଝିଅଆ, ଆଉ କୋ'ର ଦେହ ଏକାଠି ହେଇ ଏକାକାର ହେଉଥିବା ଯାଏ ମୁଁ ଦୂରେଇ ରହୁଥିବି । ପ୍ରାଣ ବିକଳରେ ଅଲଗା ହେଲେ ତା'ର ରକ୍ତମାଂସରୁ ଟିକିଏ ଗୃଖୁଥିବି । ତୋ ଭିତରେ ଚନ୍ଦ୍ରକଳା ପରି ଶିବଅଂଶୀ ଝିଅଆର ପୁଅ ବଢ଼ି ଉଠୁଥିବ । ସେ ସେଇଠି ଖେଳିବ । ସେଇଠି ବୁଲିବ । ଝିଅଆର କୁଳ ଉଜ୍ଜ୍ୱଳ କରି ଖୁଣ୍ଟିଆ ବଂଶକୁ ବଞ୍ଚାଇ ରଖିବାକୁ ଉତ୍ପନ୍ନ ହେବ । ସେ ସଂସାରକୁ ଓହ୍ଲାଇବ । ଝିଅଆ ତା'ର ମୁହଁ ଦେଖିବ ଲୋ ଟଭି । ସେଇଠୁ ଝିଅଆର ଦୁର୍ବଳିଆ ପିଣ୍ଡରୁ ସବୁ ଜୀବନ ଶୋଷି ନେଇ ମୁଁ ମୋ'ର ଅନ୍ୟ ଜାଗାକୁ ଗୃଲିଯିବି ।

ଶାଶୁଙ୍କର ସ୍ନେହର ଦାନ ସେହି ସୁନାହାରଟିକୁ ହାତରେ ଧରି ପିଣ୍ଢା ଉପରେ ଠିଆ ହୋଇ ଟଭି ଥରୁଥିଲା । ଅନ୍ଧାରିଆ ଦିଶିଆସିଲାଣି । ଭଅଁରୀ ବଲକାମ ସାରି

ଫେରିଆସି ନାହିଁ । ବେଲ ଥାଉଣୁ ଆସିବାକୁ ତା' ଗ୍ରେଷ୍ଟୀ ମାଆକୁ ଆଗରୁ କହିଥିଲା । ସ୍ବଭଲ ଦ' ମାଣ, କଛୁ ସାରୁ, ଦ ପୁଞ୍ଜା ବଡ଼ ଓ ଗ୍ରରଣ୍ଡା ହେବ ସଜନା ଛୁଇଁ ଆଗରୁଗ ଲକ୍ଷ ଦେଇଥିଲା । ସହଲ ଆସିଥିଲେ ଘସିତକ ଚୋଲ ଗ୍ରଲରେ ସକାଡ଼ ସାଇତ ରଖିଥାନ୍ତା । କେତେ କଷ୍ଟ କର ଦୋ'ପୂର ବୃଦ୍ଧାଚକୁଲ ପର ସେ ଗୋବର ପାର ଘଷି ଶୁଖାଇଥିଲା । ବାରଆଡ଼େ ସେ ସବୁ ଶୁଖି ଝଣଝଣ ହେଲଣି । ଦୁଆର ଖରକ ଥିଲେ ତା'କୁ ପଖାଲ କଂସାଏ ଝଣ୍ଡ ବାଡ଼ି ଦେଇଥାନ୍ତା । ସେ ଓ ଭଅଁଗ ସେତକ ଖାଇ ଘର ଜଗିଥାନ୍ତେ । ଗ୍ରେଷ୍ଟୀ ନ ଆସିଲା କାହିଁକ ? କେଉଁଠି କଲା କଣଦାରେ ଲାଗି ଯାଇଥିବ ।

ସୁନାହାରଟିକୁ ରଙ୍ଗ-ଖାଡ଼ୀର କାନରେ ·ବାନ୍ଧ ଝାଣକର ତନ ଗଣ୍ଠି ପକାଉଣୁ ଝଣ୍ଡ ନଜ ଭିତରର ଗ୍ରମଣ୍ଡାକୁ ଛୁଗୁଲାଇ କହିଲା ଗୁଣୁ ଗୁଣୁ ହୋଇ, ତୁ ମୋ'ର ଭବ ଉପକାରିଆଝା ଲୋ ! ସେଇଥିପାଇଁ ତୋ' ବୋଲ ମାନ ସତାର୍ କରବ ? ଯିଏ ମତେ ସେନେହ ଶରଧା କଲା ତା'କୁ ତୁ ଖାଇଲୁ, ପୁଣି ତୋ' କ୍ଷଭର ଲାଳଗ୍ଷ ତେଜ ଉଠିଲାଣି ? ମୋ ଗେରସ୍ତକୁ ଖାଇ ତୋ ମନର ସାଧ ମେଣ୍ଟାଇଲୁ ?

ଶିବ ଅଂଶରେ ଯେଉଁ ଛୁଆଟି ଝରଆର ରକତ ନେଇ ମୋ' ପେଟରୁ ଜନମିବ, ବାପ ବୋଲି ସେ ନ ଚହ୍ନୁଣୁ ତାକୁ ବାପଛେଉଣ୍ଡ କରବୁ ? ଟିକଏ ସବୁର୍ କର ଲୋ ଡାଆଣୀ ! ମୋ ନୂଆ ବଉଳ ସୁନାଦେଇ ଆସିଯାଉ । ଆସିବ କହିଛୁ । ତା' ସଙ୍ଗରେ ମୁଁ ଯିବି । ଆଜି ଶିବବାବା ମତେ ଦୟା କରବେ । ଆଜିଠାରୁ ଆଉ ତୁ ମୋ ପାଖ ପଶିବୁ ନାହିଁ । ଏ ଘରର ସୀମା ମାଡ଼ ପାରବୁ ନାହିଁ ।

ଝଣ୍ଡ ନଜ ଭିତରର ଗ୍ରମଣ୍ଡାକୁ ଭର୍ତ୍ସନା କଲା । ମନ ଦମ୍ଭ କର ଝଣ୍ଡ ତୁଳସୀ ମୂଳରେ ସନ୍ଧ୍ୟାବତୀ ଜାଳି ଓଲଗି ହେଲା । ଝରଆର ଶୁଭ ମନାସିଲା । ବାପା କାର୍ତ୍ତିକା ମାହାନ୍ତ, ସାଦତମା ନାଝୁଣ୍ଡ ଓ ବୁଢ଼ୀ ଅପାରଗ ଜେଜେମାଙ୍କର ବି ମଙ୍ଗଳ ପାଞ୍ଚିଲା ।

ଏତେ ବଡ଼ ଦୁନଆରେ ଆପଣାର ଲୋକ କହିଲେ ମାତ୍ର ଏଇ ଗ୍ରରଜଣ । ଏମାନଙ୍କୁ ଛାଡ଼ିଦେଲେ ସସାର ତା' ଆଖିରେ ଶୂନଶାନ୍ । ନଗ୍ରଛିଆ । ଅକାଳେ ସକାଳେ ବାପଘରୁ ଚଠି ଖଣ୍ଡେ ଆସେ ନାହିଁ । ଗଲା-ଅଇଲା ବାହାର ଲୋକଙ୍କ ହାତରେ କେହି ଖବର ବି ପଠାନ୍ତି ନାହିଁ । ରଜ, କୁଆଁର ପୂନେଇଁ, ଦୋଳ, ଗ୍ରମନବମୀ ରତନପୁରର ବଡ଼ ପରବ । ସେଥିରେ ବି ଝଣ୍ଡର ନଗ୍ରଛିଆ ଅଗଣାରେ କାଉ କା ରଡେ ନାହିଁ । ବାପେ ମରିଛନ୍ତି, ଝଣ୍ଡ ମରଛୁ । ଜାଣି ତ ସାବତମା'ର ମନ ତଟିବାର ନୁହେଁ । ବୁଢ଼ୀ ଜେଜେମା ନକର୍ତ୍ତବ୍ୟ । ହଉ ଲୋ ମା ବୃନ୍ଦାବତୀ ! ସେମାନେ କେହି ନ ପଗ୍ଷରନ୍ତୁ ପଛେ ତାଙ୍କର ମଙ୍ଗଳ କର । ସେମାନେ ସୁଖରେ ରହନ୍ତୁ ।

ଟଭ୍ର ମୁଣ୍ଡ ଟେକି ସଲଖି ବସିଲା । ଆଖିରୁ ଦ' ଧାର ଗଙ୍ଗା ପଡ଼ୁଥାଏ । ଦୁଇ ହାତ ଯୋଡ଼ି ପୁଣି ସେ ବୃନ୍ଦାବତୀ ଠାକୁରାଣୀଙ୍କୁ ମନେ ମନେ କହିଲା, କ'ଣ ତୁ କାହାର କରୁଛୁ ଲେ, କେଉଁ ଯୁଗର ଧୋକଡ଼ୀ ବୁଢ଼ୀ ? କେଉଁ ପୁରୁଷରେ କେଉଁ ଘରର ଝିଅବୋହୂ ତୋ'ର ଚଉରା ତଳେ ମୁଣ୍ଡ ନ ଲଗାଇଛନ୍ତି ତୁ କହିଲୁ ? ଏତେ ଓଲଗି ପାଉଁନି, ସଞ୍ଜ, ତୋର ଭଣ୍ଡାର ପୂରଉଠିବଣି । କାହାକୁ କ'ଣ ତୁ ଦେଇଛୁ ?

କେତେ ସୁନାଘର ଚୂନା ହେଲାଣି । ଖଣ୍ଡମଣ୍ଡଳରେ କେତେ କୃଟୁମ୍ବର ଜୟ-ବାଜଣା ବାଜୁଥିଲା, ମେଦିନୀ ଥରହର କମ୍ପୁଥିଲା, ଗର୍ଭିଣୀ ଗାଈ ବାଟ ଗୁଡ଼ ଆଡ଼େଇ ଯାଉଥିଲେ, ସେମାନଙ୍କ ବଂଶର ନାମ ବୁଡ଼ିଲାଣି । କେଉଁଠି ଥିଲା ସେମାନଙ୍କର ସରଗ ଉଆସ କଏ ବା ଜାଣିଛୁ ?

ଫଗୁ ଖୁଣ୍ଟିଆଙ୍କ ପୁଅ ଝଂଶ ଖୁଣ୍ଟିଆ କୋଉ ମଣିଷରେ ଲେଖା ? ପୋତକଠୁ ସାନ । ତାଆର ଘରଣୀ ମୁଁ । ପେଟରେ ସ୍ୱମଣ୍ଡା ପୂରାଇ ବସିଛୁ । ବାପଘରଠାରୁ ଶାଶୁଘରଯାଏ ତୋ' ଆଗରେ ସନ୍ଧ୍ୟାବତୀ ଜଳାଇଛୁ । କେତେ ଗୁହାରି କରିଛୁ । ତୁ କିଛୁ ଘେନା କରନାହୁଁ । ଆଉ ମୋର ତୋ' ପାଖରେ ଗୁହାରି ନାହିଁ । ତୋ' ସନମାନର ଟେକ ମୁଁ ଊଣା କରୁନାହିଁ । ଖାଲି ଜୁହାର କରୁଛୁ ।

ଟଭ୍ର ଦୁଇହାତ ଯୋଡ଼ି ମୁଣ୍ଡରେ ଲଗାଇଲା । ଉଠି ଠିଆ ହେଲା । ସଞ୍ଜ ଅନ୍ଧାର ଘୋଟି ଆସିଲାଣି । ତା' ବଉଳ ସୁନା ଦେଈ କେତେବେଳେ ଆସିବ ? ଆସୁଥିବ ପରା ! କହିଥିଲା, ସଞ୍ଜ ନ ହେଉଣୁ ସେ ପହଞ୍ଚିବ, ସଙ୍ଗରେ ନେଇଯିବ ।

ଗାଁ ଆର ପାଖେ ସେହି ଅନାବାଦୀ ବଣ ଭିତରେ ବାବାଙ୍କ ମଠ ! ଗଦାଏ ବାଟ । ଗାଁ ଭିତରେ ପଶିଗଲେ ପାଖ ହୁଅନ୍ତା । କିନ୍ତୁ ସନ୍ଦେହ ବ୍ୟଧର୍ମୀ । କେତେ ମରଦ ଓ ମାଈକିନା ତା'କୁ ସୁନାଦେଈ ସଙ୍ଗରେ ମେଡ଼ୀ ଲୁଗା ପିନ୍ଧି ଯିବାର ଦେଖିଲେ ଚମୁଟା ଚମୁଟି ହେବେ । ଆଖି ଠରାଠରି ହେବେ ।

ମାଇପେ ମୁହଁରେ ଲୁଗା ଦେଇ ହସିବେ । ଶୁଣାଇଁ ଶୁଣାଇଁ କେଉଁ ଟାହାଣୀ ଆରେକକୁ ପଚାରିବ, ବଇଁଶୀସ୍ୱନ ଶୁଭିଲା କି ଗୃନ ?

ଆରକ କହିବ, ଶୁଭିଥିବ ଗୋ ! ନୋହିଲେ ଆଜି ରାଧିକା ସଙ୍ଗରେ ଲଳିତା କାହିଁକି ?

ଗଲାବେଳେ ଗୋଡ଼ ଛନ୍ଦାବାନ୍ଧା ହେବ । ତେଣୁ, ନଈ ବନ୍ଧରେ ଖଣ୍ଡେଦୂର ଯାଇ ଗାଆଁର ବସ୍ତି ସରଲେ ଡାହାଣହାତ ଗଡ଼ି ଗୋଦଣ୍ଡାବାଟେ ଗଲେ ସଜ । ଟିକିଏ ବୁଲାଣି । ସୁନା ଦେଈ ସେହି ନଗୋଲା ବାଟକୁ ଭଲ ପାଏ । ତା' ସାଙ୍ଗମାନେ ବି ।

ସୁନା ଦେଇ କେତେ ଡ଼େର କରିବ ? କହୁଥିଲା, ଶିବଚରଣଙ୍କୁ ଆଜ ସେ ସଙ୍ଗରେ ନେବ ନାହିଁ ।

ବାବାଜୀ ଡଲ ଖଣ୍ଡାର ମନ୍ଦିରରେ ରହନ୍ତି । ସେ ବଖରାଟି ବଡ଼ । ଭକ୍ତମାନେ ମାଟି କାନ୍ଥକୁ ଇଟା କରି ଦେଲେଣି । ଚଟାଣ ସିମେଣ୍ଟ-ପାଲସ୍ । ଲଗିଲଗିକା ଗୋଟିଏ ଛପର ତଳେ ଦୁଇ ପାଖର ଦୁଇ ବଖରା ବି ବେଶ୍ ବଡ଼ । ସେମିତ ଗଢା । ତାଙ୍କର ବାଁ ପାଖ ବଖରାରେ କାଳିକା ମାଇଙ୍କର ମୂର୍ତ୍ତିଟିଏ ଉଚ୍ଚ ଆସନ । ତା'ର ଉପରେ ଦେବୀ ଠିଆ ହୋଇଛନ୍ତି ।

ପ୍ରତିମାଟି ଗ୍ରେଟ । ହେଲେ ଭାରି ସୁନ୍ଦର । ମୁଗୁନି ପଥରରେ ତିଆରି । କଳା ମିଚ ମିଚ । ଚକ ଚକ । ଦେଢ଼ ହାତ ଉଚ୍ଚ ହେବ । ଗୋଲଗାଲିଆ ହସ ହସ ମୁହଁ । ମୁଣ୍ଡର କେଶ ପଛଆଡେ ଲମ୍ବିଛି । ଚାରୋଟି ହାତରୁ ଦୁଇଟି ଉପରକୁ ଟେକା । ଗୋଟିକରେ ଚକ୍ର ଓ ଆରଟିରେ କୁମ୍ଭ । ତଳକୁ ଲମ୍ବିଥିବା ହାତ ଦୁଇଟିରେ ବର୍ଚ୍ଛା ଓ ଖଣ୍ଡା । ଗ୍ରୁତର ଉନ୍ନତ ସ୍ତନ ଉପରେ ଦାନବମାନଙ୍କର କଟା ମୁଣ୍ଡର ମାଳା ନାଭିଯାଏ ଓହଳିଛି । ଦେହ ଫୁଙ୍ଗୁଳା । ଚାଲିବା ଭଙ୍ଗୀରେ ଗୋଟିଏ ପାଦ ଅଳପ ଉଠାଇଛନ୍ତି । ଦେହ ଓ ହାତରେ କେତେ ଫୁଲମାଳ ଝୁଲୁଛି । ଭକ୍ତମାନେ ନିଜ ହାତରେ ଝୁଲାଇଛନ୍ତି । ଆସ୍ଥାନ ଉପରେ ଚୁନା ଫୁଲ କୁଢ଼ା ହୋଇଛି । ଆସ୍ଥାନରେ ଭକ୍ତମାନେ ଗୋଲାସିନ୍ଦୂର ବୋଳିଛନ୍ତି । ପାଦରେ ଲେପି-ଛନ୍ତି, ଚନ୍ଦନ । କେହି କେହି ଧୂପକାଠି ଜଳାଇ ଦିଅନ୍ତି ।

ସୁନା ଦେଇ କହେ, ମୋତାନାନୀ, ପୁନେଇଁ, ମାଳତୀ ଓ ଆଉ କେତେ ମାଇପେ ଯେଉଁମାନଙ୍କୁ ଶିବବାବା କାଳିକାମାଇଙ୍କର ସେବା କରିବାର ଅଧିକାର ଦେଇଛନ୍ତି, ସେମାନେ ବି କହନ୍ତି, ଶିବବାବା ଠାକୁରାଣୀଙ୍କୁ ହିମାଳୟ ପର୍ବତର କୈଳାସରୁ ଅଣାଇଥିଲେ ।

ତାଙ୍କର ପୂଜା ପାଇଁ ବ୍ରାହ୍ମଣ ଲୋଡା ନାହିଁ । ମନ୍ତ୍ର, ସ୍ତୋତ୍ର ପଢ଼ା ଆବଶ୍ୟକ ନାହିଁ । ସମସ୍ତଙ୍କର ସେ ମା' । ସମସ୍ତଙ୍କର ସେ ମଙ୍ଗଳ କରିବାକୁ ଚାହାଁନ୍ତି । ସମସ୍ତଙ୍କର ମନ କଥା ସେ ଜାଣନ୍ତି । ନିଷ୍ଠାର ସହିତ ତାଙ୍କୁ ଭକ୍ତି କର । ନିଜର ଦୁଃଖ ଜଣାଅ । ଅନ୍ୟର ଅନିଷ୍ଟ କରିବାକୁ କିଛି ଗୁହାରି କର ନାହିଁ । ନିଷ୍ଠାର ସହିତ ଭକ୍ତି କଲେ ତମର ମନକାମନା ପୂରଣ କରିବେ ।

ଗୋଟିଏ ମାସ ନିତ ଯାଇ ଟିଏ ଏଇଆ ଶୁଣିଛି । କେତେଥର ଦେଖିଛି ଶିବବାବା ତାକୁ ସ୍ନେହଭରା ଆଖିରେ ଚାହିଁଛନ୍ତି । ମୁଣ୍ଡରେ, ପିଠିରେ, ବାହୁରେ ହାତରେ ହାତ ରଖି ସେ ଆଦର କରିଛନ୍ତି । କିନ୍ତୁ କାଳିକାମାଇଙ୍କ ସେବାର ଅଧିକାର ଦେଇ ନାହାନ୍ତି । ସେ କହନ୍ତି, ତା' ଦେହରେ ଗ୍ରୁର ଗ୍ରମଣ୍ଡାଟା ରହି ଦେହକୁ ଅପବିତ୍ର କରିଛି । ଅଙ୍ଗ ଶୋଧନ ନ କଲେ ସେ ଗ୍ରୁଞ୍ଚି ପଳାଇବ ନାହିଁ !

ଆଜି ସେ ଟଗିର ଅଙ୍କ ଶୋଧନ କରିବେ ।

ସୁନାଦେଈ ନିର୍ଭର ଜବାବ ଦେଇଛି । ଟଗିର ଦୁଃଖ ଜଣାଇ ତାଙ୍କୁ ସେ ତରଳାଇ ପାରିଛି । ତା' ପରେ ଶିବ-କଳା ନେଇ ତା' ପେଟରୁ ଜନମିବ ଝିଅଟିଏ ପୁଅ । ତମ୍ବରୁ ମହାରଣାଙ୍କ ପୁଅ ଶିବଚରଣ ପରି । ନା, ଆହୁରି ସୁନ୍ଦର, ଆହୁରି ତେଜସ୍ୱାନ୍, ବୁଦ୍ଧିଆ ।

ଟଗି ଭାବିଲା, ତା' ନାମ ସେ ନିଶ୍ଚେ ଦେବ ଶିବକଳା । ଝିଅସଖିଗୁଡ଼ାଙ୍କ ପାଖକୁ ସେ ଶିବକଳାକୁ ଛାଡ଼ିଦେବ ନାହିଁ । କିଏ କାଳେ ତା' ଉପରେ ଦୃଷ୍ଟି ପକାଇବ ? ହଁ, ପକାନ୍ତୁ, କିଏ ତା'ର କ'ଣ କରି ପାରିବ ? କୃଷ୍ଣ-ଭଗବାନ କ୍ଷୀର ସଙ୍ଗେ ପୁତନାର ପ୍ରାଣ ଶୋଷି ନେଲାପରି ଶିବକଳା କ'ଣ କାହାର ଲୋଭିଲା ଦୃଷ୍ଟି ସଙ୍ଗେ ତା'ର ଆଖିର ଆଲୁଅ ଶୋଷି ନେବ ନାହିଁ ? ତାକୁ ଅନ୍ଧୁଣୀ କରିବ ନାହିଁ ?

ଆରେ, ସେ କେତେ କଅଣ ଭାବି ଯାଉଛି ? ଅନ୍ଧାର ଆକାଶର ମିଟିମିଟିକା ତାରାଗୁଡ଼ାଙ୍କ ଅନାଇଁ ଚେଇଁ ଚେଇଁ ସପନ ଦେଖୁଛି । ଯେଉଁ ପାଣିହାଣ୍ଡିର ଗ୍ଲେଟ ପିଲାଟି ଦିନେ ତା'ର ପେଟ ଭିତରେ ଗୋଡ଼ ହାତ ପିଟି ମନ ଖୁସିରେ ପହଁରୁଥିଲା, ବେଳେ ବେଳେ ଗୁଡଗଳେ ମୁଣ୍ଡିଆ ମାରୁଥିଲା, ସେ ଅଛି ବୋଲି ଟଗି କେଡ଼େ ଉଷତ ହେଉଥିଲା । ଆଗତ ଚଡେଇକୁ ବେସର ବାଟିଲା ପରି, ସମସ୍ତଙ୍କ ଅଜାଣତରେ ପୁଣି ନଜର ଅଣ-ଆୟତ୍ତରେ ସେ କେତେ ଚେଇଁଲା-ସପନ ଦେଖିଛି । ପହ୍ଲେଇ ଆସୁଥିବା ଥନ ଦୁଇଟି, ଅନ୍ଧାର ଗୁହା ଭିତରେ ଆଣ୍ଡାଳ ହେଉଥିବା ଟିକ-ଝିଅଆ ମୁହଁରେ ଅମୃତର ଧାରା ଢାଳିବାକୁ ସିରସିରେଇ ଉଲସି ଉଠୁଥିଲା । କେତେଟା ଦିନ ବା ବାକି ?

ଏତେ ଦିନଯାଏ ଗ୍ରମଣ୍ଡା ସେହି ନିରୀହ ପ୍ରାଣୀର ପ୍ରାଣ ନ ଶୋଷି ତା'କୁ ବଢ଼ିବାକୁ ଛାଡ଼ି ଦେଲା କାହିଁକି ? ଟଗି ଭିତରର ଗ୍ରମଣ୍ଡା କ'ଣ ତା'କୁ, ସେହି ଝିଅଆକୁ ମଦ ଖୋଇ ଅଧ-ପାଗଳ ପଶୁଠାରୁ ଖାନ କରି ଟଗିକୁ ଧରିବାକୁ ମତାଇ ଥିଲା ? ସବୁ ବାଧା, ସବୁ ବାରଣ, କାକୁତି ମିନତି ସେ ଘେନିଲା ନାହିଁ । ମାତ୍ର, ଗୋଇଠା, ଶେଷକୁ ଗ୍ରମଣ୍ଡା ନୁହେଁ, ଯିଏ ତାକୁ ଭିଆଣ କରିଥିଲା ସେହି ଝିଅଆ ତାକୁ, ସେହି ଅନାଗତ ଶିଶୁକୁ ଦଳିଦାଳି ନିସ୍ତଳ କରିଦେଲା । ତା'ର କାମୁକପଣ ପାଖରେ ସେହି ଅଶୁଭ ବେଳାରେ ତାର ମଣିଷପଣ କୁଆଡ଼େ ପଳାଇଲା ? ସେମିତି ଆଉଟି, ଯିଏ କଷି ଧରୁଣ୍ଡ୍ତା'ର ଭିଆଣକାରି ଝିଅଆର ନିଷ୍ଠୁର ତାପରେ ସଢ଼ି ପଦାକୁ ଆସିଲା ।

ଏସବୁ କ'ଣ ତୋ'ର କାଣ୍ଡ ଲୋ, ଗ୍ରମଣ୍ଡା !

ସେହି ମିଳାମିଶାର ରାତିଟି ! ଗୋଟିଏ ମାସ କଟି ଗଲାଣି । ଶିବଦାବାଙ୍କର ଡେଉଁରିଆ ହାତରେ ବାନ୍ଧି ଝରିଆ ନିର୍ଭୟ ହୋଇଛି । ତା' ମନରେ ଧାରଣା ହୋଇ ସାରିଛି ଯେ ଶିବ-ମହାଦେବ, ଯିଏ କାମଦେବକୁ ପୋଡ଼ି ପାଉଁଶ କରିଥିଲେ ଆଖିର ନିଆଁରେ, ତାଙ୍କର କଳା ଦେହରେ ଥାଉଣୁ ଶହେ ସ୍ୱମଣ୍ଡା ତା'ର ପାଖ ପଶିବେ ନାହିଁ । କିଏ ସେ କାମଦେବ, ସେ କେଉଁଠି ଥାଏ, ମଣିଷ ଭିତରେ ଥାଇ ସେ କେମିତି ତାକୁ ନିର୍ଲଜ ପଣରେ ନଚାଏ, ଗଦେଇ ଷଡ଼ଙ୍ଗୀକୁ ପଚାରି ଝରିଆ ବୁଝିଛି । କେତେଥର ବୁଝି ସେସବୁ ମନେ ରଖିଛି ।

ବନେଇ ଚୁନେଇ କାମଦେବର କରାମତି କଥା ଝରିଆ ଟେଣ୍ଡି ଆଗରେ ବଖାଣିଛି । ରାତି ଅଧରେ । ନିଶା ଖୋଲରେ । ଟେଣ୍ଡି ପରିକା ସେ ମଦମିଶା କାଳିକା-ମାଈଙ୍କ ପ୍ରସାଦ ଟିକିଏ ପାଏ ସିନା, ମଦ କି ତାଡ଼ି ପେଟେ ପିଏ ନାହିଁ । ଶିବଙ୍କ ପ୍ରସାଦ-ଚିଲମରୁ ସେ ଧୂଆଁ ଟାଣେ ।

ଟେଣ୍ଡି ସହଳ ସହଳ ତା' ବଉଳ ଓ ଅନ୍ୟମାନଙ୍କ ସଙ୍ଗେ ଘରକୁ ଫେରେ । ଝରିଆ ତା' ସାଙ୍ଗମାନଙ୍କ ପାଖରେ ମେଳା କରିବାକୁ, ଭଜନ କରିବାକୁ ରହିଯାଏ । କେଉଁଦିନ ସେ କେତେ ରାତିରେ ଫେରେ, ତା'ର ଠିକଣା ନ ଥାଏ । କେତେ ଚିଲମ ଶୋଷିଥାଏ କିଏ ଜାଣେ ? ଦିନେ ଦିନେ ଟଳଟଳ ହେଉଥାଏ । ଟେଣ୍ଡି ନେହୁରା ହୋଇ କେବେ କେବେ ତା'କୁ ଖୁଆଇ ପାରେ, ଆଉ କେବେ କେବେ ସେ ରହେ ଖାଡ଼ା ଉପାସ । ଟେଣ୍ଡିର କି ଯିବ ?

ଝରିଆ କହେ, ଆଲୋ, ସେ କାମଦେବ ବୋଲି ଯେଉଁ ଦେବତା, ପିଲା ବକଟେ ମ, ଲାଙ୍ଗଳା ଛୁଆଟା, ହାତରେ ଧନୁଟାଏ ଧରିଥାଏ । ସେଥିରେ ପାଞ୍ଚଟା ଶର ଯୋଖି ଥାଏ । ସେ ଆଖିକୁ ଦିଶେ ନାହିଁ । ଆଖି ପିଛୁଡ଼ାରେ ବ୍ରହ୍ମାଣ୍ଡ ଗୋଟାକ ବୁଲିଆସେ । ଖର ଉତ୍ପାତିଆ ସେ ଛୁଆ ବିକଟକ । ତା'ର ଶରର ମାଡ଼ ଖାଇଲେ ସ୍ତ୍ରୀ-ପୁରୁଷ ମିଶନ୍ତି । ତା'ରି ପାଇଁ ଏ ସଂସାର ଲୋ ଟେଣ୍ଡି; ପୁଅଝିଅ, ସନ୍ତାନ, କୁଟୁମ୍ବ । ଜାଣିଥା ହେ, ସେ ନ ଥିଲେ ସଂସାରରେ କେହି ରହନ୍ତେ ନାହିଁ ।

ଦିନୁଦିନ ଦୁର୍ବଳ ହେଉଛି ସେ ଝରିଆ । ନିଶାରେ ବେଳୁବେଳ ଅଧିକ ଟଳଟଳିଆ ହେଉଛି । କାମକୁ ପାରୁ ନାହିଁ । ବିଲବାରିରେ ଭଉଁରି ସଙ୍ଗେ ସେ ଖଟିବାକୁ ଗଲେ ଅଳ୍ପ ସମୟ କାମ କରୁଣୁ ହାଲିଆ ହୋଇ କେଉଁ ଗଛମୂଳରେ, ଅବା ପାଖରେ ଗଛ ନ ଥିଲେ ମୁଣ୍ଡରେ ଗାମୁଛା ପକାଇ ହିଡ଼ ମୁଣ୍ଡରେ ବସି ଝାଳ ଗମ୍‌ଗମ୍ ଦେହରେ ଦମ୍ ନେଉଛି । ଚାଷ କାମ ପାଇଁ ଭଉଁରି, ତା'ର ଗ୍ଲେଟୀ କଳ-ହୁଡ଼ୀ ବୋଉ ଓ ଠିକା ମୂଲିଆଙ୍କ ଉପରେ ନିର୍ଭର କରୁଛି । ଦିନୁଦିନ ଅପାରଗ ହେଉଥିବାରୁ ପରଙ୍କ କଥାରେ ବିଶ୍ୱାସ କରିବାକୁ ବାଧ୍ୟ ହେଉଛି । ସେମାନେ ଆଖି କାନ ଛୁଇଁ ନିୟମ କଲେ, ଧର୍ମକୁ ସାକ୍ଷୀ କରି ଯାହା ମିଛ ଗପିଗଲେ ପରତେ

ଯାଉଛି । ନିଷ୍କର୍ମୀ ଲୋକ ପକ୍ଷରେ ଅଧିକ କ'ଣ ବା କରିବାର ଅଛି ? ଆକଟି କହିବାକୁ ଟେଖିର କି ବହପ ?

ଟେଖି ଭବେ, ସେ ସିନା ବାହାର ହୋଇ ଏ ଘରର ବୋହୂ ହୋଇ ଆସିଛି, ଏ ଭୂଇଁରେ ତା'ର ଚେର ଲାଗି ପାରିନାହିଁ । ଦୁଇଟା ଛୁଆ ପେଟରେ ଧରି ସେ ଆଜି ଆଣ୍ଠୁକୁଡ଼ୀ ।

ଆଠ ବର୍ଷର ବାହାହେଲା ସଂସାର । ଆଗେ ଝରିଆ ତା'ର ହାଡ଼ୁଆ ଦେହକୁ ଏତେ ଶ୍ରଦ୍ଧା କରୁଥିଲା । ସେଇ ଦେହଟାକୁ ବାରମ୍ବାର ନିଜ ଦେହରେ ମିଶାଇ ଦେବାକୁ ଛଟପଟ ହେଉଥିଲା । ବେଳ ଅବେଳର ହୋବ ରଖୁ ନ ଥିଲା । କେଉଁ ଛଟକରେ ଓଲେଇ ବଲେଇ ପରି ଲୁଚି ଲୁଚି ପାଦ ଚପି ଚପି ଆସି ଘରେ ପଶୁଥିଲା । ତା'ର ସେ ଢଙ୍ଗ କପରି ବଦଳି ଓଲଟି ଯାଇଛି ? ଟେଖି ଆଜି ବଦଳିଛି । ସେ ତା'ର ଯୌବନରେ ପରିପୂର୍ଣ୍ଣ । ସେ ଲାଳସାରେ ଜରଜର । କାମନାରେ ଭରପୂର । ମା' ହେବାକୁ ଛଟପଟ । ଆକୁଳ ବିକଳ ।

ଟେଖି ଏ ଉହ୍ୟରେ ଏ କୁଟୁମ୍ବରେ ଚେର ଲଗାଇବାକୁ ଝରିଆକୁ ଆପଣା ପାଖରେ, ଆପଣା ଦେହରେ ଭିଡ଼ି ହୋଇଥିବା ଶାଢ଼ୀଟି ପରି ବେଢ଼ାଇ ଦେବାକୁ ଆଗ୍ରହୀ, ହେଉ ପଛେ ହାଡ଼ମାଳିଆ ।

ଆଗରୁ ଦୁଇମାଣ ଅସଲ କିସମର ଭୂମି ସେ ବିକି ସାରିଥିଲା ମଦପାଣିରେ, ଗଞ୍ଜେଇ-ଅଫିମରେ । ଶିବ-ବାବାଜୀଙ୍କର ଜଣେ ଅସଲ ଭକ୍ତ ହୋଇଥିବାରୁ ତାଙ୍କର ମଠ ତୋଳା ଓ ପୂଜା-ମେଳାରେ ଯେତକ ସେ ଉଡ଼ାଇ ଦେଇଥିଲା ।

ଏତେ ଭକ୍ତି, ଏତେ ତ୍ୟାଗ କଲାପରେ ବି ବାବାଜୀମହାତ୍ମାଙ୍କର ଟିକିଏ ଦୟା ହୋଇ ନ ଥିଲା । ସେ ତାଙ୍କର କଳାରୁ କାଣିଚାଏ ଦେଇ ତାଙ୍କର ଶକ୍ତିଶାଳୀ ଭୂତ୍ତକ-ଡେଉଁରିଆଟିଏ ତା'କୁ ଦେଇ ନ ଥିଲେ । ସେହି ଦୟାଟିକକ ପାଇବାକୁ ଝରିଆକୁ ପୁଣି ଆଉ ମାଣେ ପୁନାଥାଳି ଜମି ତା'ର ଗୁରୁଭାଇ ନାରଣ ପରିଡ଼ାଙ୍କ ସ୍ତ୍ରୀ ପୁନିଦେଇକୁ ବିକିବାକୁ ପଡ଼ିଲା ।

ପରିଡ଼ାଏ କେତେ ଟଙ୍କା ଦେଲେ ଟେଖିକୁ ଅଜଣା । ଡେଉଁରିଆ ଆସିଲା । ହାତରେ ବନ୍ଧା ହେବା ଦିନ, ଗୋଟାଏ ବଡ଼ ଜନ୍ନାଲ ମଠରେ ହୋଇଥିଲା । ସେହି ଜନ୍ନାଲରେ ଖାଲି ବାବାଜୀଙ୍କର ଚେଲାମାନେ ଯୋଗ ଦେଇ ନ ଥିଲେ । ଅଘର ଦୁଆର ଯିଏ ଆସିଲା ସେ ଯୋଗ ଦେଲା । ଦେବୀଙ୍କ ପ୍ରସାଦ ପାଇଲା । ପୁଞ୍ଜାଏ କାଳିଆ ବୋଦା ହଣା ଯାଇଥିଲେ, ମଠ ବାହାରେ ।

ଚଣ୍ଡୀ-ଚାମୁଣ୍ଡୀମାନେ, ଯେଉଁମାନେ କାଳିକା-ମାଈଙ୍କର ଦାସୀ-ପରିବାରୀ, ସେମାନେ କେତେ କାଳରୁ ଉପାସ ଥିଲେ । ଖାଲି ହାଉଁ ହାଉଁ ହେଉଥିଲେ । ମଣିକୁଦ

ଗାଆଁରେ ପଶି ଚରିବାକୁ କାଳିକାମାଈଙ୍କ ଅନୁମତି ମାଗୁଥିଲେ । ମା' ନାହିଁ ନାହିଁ କରି ଟିକିଏ ପଚାର କରିବାକୁ ସେମାନଙ୍କୁ ବୁଝାଇସୁଝାଇ ଆକଟି ଅଟକାଇ ରଖି-ଥିଲେ । ସେମାନେ ବୋଦାଙ୍କର ରକ୍ତ ପିଇ ଅସ୍ଥ ଧରିଲେ ।

ନଜେ ଗଦେଇ ଷଡ଼ଙ୍ଗୀ କେତେଥର ଏପରି ସପନ ଦେଖିଥିଲେ ବୋଲି ମେଳାରେ କହୁଥିଲେ । ମୋଟା ନାନା, ସିଏ ଆଗରୁ ଝିଅଆର ଦୁଇମାଣ ଜମି କିଣିଥିଲେ । କେତେ ଦେଇଥିଲେ ଗଦେଇ ଷଡ଼ଙ୍ଗୀ ଆଉ ଝିଅଆ ଜାଣିଥିବେ ସିନା, ଟଙ୍କା ତାର ଯୁଗକ ପାଆନ୍ତା କପରି ? ଝିଅଆକୁ ପଚାରିଲେ ମିଳନ୍ତା ଦ' ପୁଞ୍ଜା ବଧା ଗୁପଡ଼ା, ଗୋଇଠା । ଅଭଦ୍ର, ଅସଭ୍ୟ ଗାଳି ଯେ ଶୁଣିବାଲୋକ ଲାଜରେ ମଉଳି କାନରେ ହାତ ଦଅନ୍ତା ।

ମୋଟା ନାନା ଭାରି ଭଲମଣିଷ । କଥାରେ ମିଠାବୋଲା । ଶତ୍ରୁ ମିତ୍ର ତାଙ୍କ ପାଖରେ ସମସ୍ତେ ସମାନ । ପରଘରର ଝିଅବୋହୂଙ୍କୁ କାଖେଇ କୁଣ୍ଢେଇ, କଥା କେଉଁପଦରେ ସେ କହି ନଥାନ୍ତି । ଆପଣାର କରନ୍ତି । କିଏ କି ଜାତି, କିଏ ଧନୀ, କୁସିବାସିଆ, କି ଗରିବ ସେପରି ବାଛବିଚାର ତାଙ୍କର ନ ଥାଏ ।

ସେହି ମୋଟା ନାନା ମୋଟାମୋଟି ହୋଇ ମଧୁରଆଗୋଷ୍ଠ ବରଗର ସାଧାରଣ ଉତର ମାଇପିଟି । ମୁହଁଟି କୁନ୍ଦାଳପରି । ଯିଏ କହିବ କାଳି ସେ ଡ଼ୋଲରୁ ଓହ୍ଲାଇଛନ୍ତି । ଯେଉଁ ସାତୋଟି ଝିଅ, ଦେଢ ବର୍ଷ କରି ସାନ ବଡ଼, ତାଙ୍କୁ ମା' ବୋଲି ଡ଼ାକି କେହି କେହି ତାଙ୍କ କାନ ଧରି ପଛରେ ଗୋଡ଼ାଇ ଥାନ୍ତି, ସେମାନେ ତାଙ୍କର ସଉଭୁଣୀର ହେଲେ ହୋଇଥିବେ । ଭ୍ରୂଲତା ଟେକି, ମୁଣ୍ଡ ସାମାନ୍ୟ ଦୋହଲାଇ, ହସ ହସ ହୋଇ ସେ ଧୀର ବଚନ ପ୍ରକାଶନ୍ତି ।

ସେ ବି ସପନ ଦେଖିଲି କଥା କହୁଥିଲେ । ଯେଉଁ ଝିଅଆକୁ ସେ ଠାକୁରାଣୀ ଅଳପ ଗୃଷି, ଦାଗ ରଖି ଗ୍ରୁଡ଼ଯାଇଛନ୍ତି ଅନ୍ୟ ଠାକୁରାଣୀମାନେ ତାଙ୍କ ନପାରିଲି ପଣକୁ ନକଲ କରି ହସୁଛନ୍ତି । ଆଗର ଠାକୁରାଣୀ ଆଗ ତା'କୁ ନେବେ ବୋଲି ବଗୁରୁଛନ୍ତି ।

ଟଙ୍କା ବିଶ୍ବାସ କରେ । ମନକୁ ବୁଝାଏ, ଯାଉ ପଛେ ଆଉ ମାଣେ ଜମି, ଝିଅଆର ଜୀବନ ଥାଉ । ସେମିତି ଧଡ଼ିଆ ଧେଡ଼ଙ୍ଗ ହୋଇ ସେ ବଣାଣହେ ବର୍ଷ ବଂଚୁ । ଶିବବାବାଙ୍କ କଲ୍ୟାଣରୁ ଏ ଘରେ ତା'ର କେତେ ପୁଅ ନାତି ନାଚନ୍ତୁ, କୁଦନ୍ତୁ । ଏବେ ବି ଆଉ ଗୁରିମାଣ ମଟାଲି-କସମର ଗୃଷ ଜମି ଅଛି । ଫସଲ କରି ଜାଣିଲେ, ପେଟ ଅପୋଷା ରହିବ ନାହିଁ । ସେହି ମହାତ୍ମାଙ୍କର ଶୁଭଦୃଷ୍ଟି ପଡ଼ିଲେ ସମ୍ପତ୍ତି ଗଙ୍ଗାରୁ ଗଉତମ ମାଡ଼ିଯିବ ।

ସବୁ କାମ ସରଳ ।

ଝିଅଟା ତେଉଁରିଆ ପିନ୍ଧିଛି । ଟମି ଭିତରର ଗୁମଣ୍ଡାକୁ ତାର ଡର ନାହିଁ । ସେ ଗୁମଣ୍ଡା ଝିଅଟା ପାଖରୁ ଦୂରେଇ ରହେ । ସେଇଥିପାଇଁ ଝିଅଟା ଯେତେ ରାତିରେ ଫେରିଲେ ବି ଟମି ତା'ର ଯତ୍ନ ନେବାକୁ ପ୍ରାଣପଣ ଚେଷ୍ଟା କରେ । କେବେ କେଉଁ ଅବସ୍ଥାରେ, କେତେବେଳେ ସେ ଘରକୁ ବାହୁଡ଼େ ତା'ର ଠିକଣା ନ ଥାଏ ।

ଟମି ନ ଖାଇ ନ ପିଇ ଚେଇଁ ବସିଥାଏ । ଭଉଁରୀମା ଆସିଲେ ତାକୁ ପାଖକୁ ଡାକେ । ତା' ପାଖରୁ କେତେକାଳର କେତେ କଥା ଶୁଣେ । ସେହି କାଳହୁଡ଼ି ଶ୍ରେଷ୍ଠୀ ବାଉରାଣୀ ବୁଢ଼ୀ ମଣିକୁଦ ଗାଆଁରେ ଦୁଇକୋଡ଼ି ଦଶବର୍ଷ କି ଆହୁରି ବେଶୀ କାଳ ବୋଦ୍‌ପଣ କଲାଣି । ଏହି ଲମ୍ବା ଜୀବନରେ କେଉଁ କୁଟୁମ୍ବର ସେ କାମ ନ କରିଛି ? ସବୁ କୁଟୁମ୍ବର, ଜଣ ଜଣ କରି ପ୍ରତି ପୁରୁଷ ଓ ସ୍ତ୍ରୀଙ୍କ ଜୀବନର ସାର ଅସାର ବହୁ ଖବର ସେ କହେ । କେତେ ମରିହଜି ଗଲେଣି । ତା' ଦେଖନ୍ତାରେ ଯେଉଁ ପରଘରର ଝିଅଟିମାନେ ବୋହୂ ହୋଇ ଆସିଥିଲେ ସେମାନେ ଏବେ ତା'ରି ପରିକା ବୁଢ଼ୀ ହେଲେଣି । ଝିଅମାନଙ୍କୁ ପରଘରକୁ ପଠାଇ ପୁଅବୋହୂ ଧରି ଘର କରୁଛନ୍ତି । କାହାର ମୁଣ୍ଡରେ ସିନ୍ଦୂର ଏବେ ବି ଦାଉ ଦାଉ ହୋଇ ଜଳୁଛି । କାହାର ମୁଣ୍ଡରୁ ଦଇବ ସେତକ କେବଠାରୁ ପୋଛି ଦେଲାଣି ।

ବୁଢ଼ୀ ଗପୁଡ଼ିପଣକୁ ସରିଛି । କହେ, ମୁଁ ଦେଖି ଦେଖି ଆଇଲି, ଏ ସଂସାରର ଲୋକେ କେମିତି ମଉନମୁହାଁ । ପେଟରେ ଗୋଟିଏ କଥା ତ ମୁହଁରେ ଗୋଟିଏ କଥା । କାହାକୁ ବିଶ୍ୱାସ ? ଭଲ ମଣିଷ ତଳିତଳାନ୍ତ ହୋଇଛନ୍ତି । ଖରାପ ମଣିଷଙ୍କର ବଢ଼ନ୍ତି ହୋଇଛି । ପୁଣି, ମଲମଲ ଉଠିଛି । ସବୁ ଓଲଟ ପାଲଟ କରିଦେଇଛି ।

ଏଇ ଶିବବାବା କଥା ଦେଖ । କୁଆଡ଼ର କେଉଁ ବାବାଜୀଟା ! ଗୁରୁ କି ତସ୍କର କିଏ ଜାଣେ ? ଏ ଗାଆଁରେ ହୁନ୍ଦର ଲଗାଇଛି । ମରଦ ତ ମରଦ, କେତେ ମାଇପିଙ୍କୁ ବାଇ ଲଗାଇଛି । ଲୋକେ କୁହାକୁହି ହେଉଛନ୍ତି, ଭେଣ୍ଡାଗୁଡ଼ାଙ୍କୁ ନିଶା ଖୋଇ ଧନ ଓଟାରି ନେଉଛି । ତାଙ୍କୁସବୁ ଅମଣିଷ କରୁଛି । ଦେଖୁନ ଆମ ବାବୁଙ୍କୁ ? କ'ଣ ସେ ଥିଲେ, ଏବେ କ'ଣ ହେଲେଣି ?

ଟମି କହେ, ନିଜେ ସେ ବାବା ଶିବକଳା ନେଇ ଜନମ । ନିଜେ ମହାଦେବ । ତାଙ୍କର କି ଦୋଷ ? ଲୋକେ ଯଦି ମଦ ପାଣି ପିଇ, ଗଞ୍ଜେଇ ଖାଇ ବାଇ ହେବେ ଲୋ ଭଉଁରୀମା, ତାଙ୍କର ନିନ୍ଦା କରିବ କାହିଁକି ? ମୁଁ ପେଟରୁ ଦୁଃଖିନୀ । ତାଙ୍କ ହାତଧରି ଆସିଲି ବୋଲି ସେ ଏମିତି ହେଲେ । ମତେ ସେ ଶାସନ କଲେ, ଦଣ୍ଡ ଦେଲେ । ମୁଁ ସହିଲି । ମୋର ଛଳ ନାହିଁ । ମୁଁ ଯେତେଦିନ ପାରିବି ସହିବି । ସହି ନ ପାରିଲେ ମୋ' ବିଗୁରିଲା କାମ କରିଦେବି । ତେଣିକି ତାଙ୍କର ଯାହା ହେବ ତମେସବୁ ଦେଖିବ । ମୁଁ ତ ଦେଖିବି ନାହିଁ ?

ଆଲୋ ଭଅଁ ଗ୍ର ମା ! ମୁଁ ଏତେ କାଳପରେ ବି କ'ଣ ତାଙ୍କର ଦେହରେ ମାଉଁସ ଲାଗୁଛି ? ଓଲଟି ସେ ଦିନୁଦିନ କ୍ଷୀଣ ହେଉଛନ୍ତି । ତାଙ୍କର ବୟସରବୁଦ୍ଧି, ବିବେକ କଣ ସଂସାରମତ ଆଡକୁ ଫେରୁଛି ? ଓଲଟି ତାଙ୍କ ବୁଦ୍ଧିବିବେକ ଦିନୁଦିନ ଅରମା ଆଡକୁ ଧାଇଁଛି । ତୁ ମତେ ଦେଖ । କାହିଁକି କେଜାଣି ଦିନୁଦିନ ମୁଁ ବିରବିଡ଼ ପରି ଫୁଲି ଉଠୁଛି ।

ଭଅଁ ଗ୍ର ମା ପିଣ୍ଡାତଳକୁ ମେଞ୍ଚାଏ ଛେପ ଥୁ କରେ । କହେ, ସେମିତି କହନା ଗୋ ବୋହୂ ସାଁନ୍ତାଣୀ ! ବୁଢ଼ୀ ସାଁନ୍ତାଣୀ ଯଦି ବଞ୍ଚିଥାନ୍ତେ ତାଙ୍କ ଆଗରେ ଏମିତି ଅପସନ୍ଦ କଥା ପଦେ କିଏ କହିଥାନ୍ତା, ସେ ତା'ର ଚୁଟି ରଖନ୍ତେ ନାହିଁ । ମହିତ ସାରନ୍ତେ । ତମେ ପିଲାଟିଏ ହୋଇ ଆସିଥିଲ । ମା' ନ ଥିଲା ସ୍ତନମାନଆଁ ସଉରୁଣିଆଁ ଝିଅ । ବୋହୂପଣ କଲ । ଗ୍ରଇତଳେ ରହିଲ । ଯୁବତୀ ବୟସ ହେଲା । ଦେହରେ ଟିକିଏ ଲାଗନ୍ତା ନାହିଁ କି ? କୋଳରେ ଛୁଆ ଟିକିଟେ ହେଲେ ଦେହ ପୁଣି ଝଡ଼ିଯିବ ।

ଆଉ କେବେ କେବେ ପୁଣି ସେ ଭଅଁ ଗ୍ର ମା ଗପେ, ଗାଆଁରେ ଆପଣା-ସାର୍ଥିକା, ମରଟରସଗି କୁହାକୁହି ହେଉଛନ୍ତି ଗୋ, ବାବାଜୀ ଲୁଆଡ଼େ କାହାକୁ କହିଲା, ତମ ଭିତରେ କେଉଁ ଠାକୁରାଣୀ ଅଛି ଯେ ସେ ସମସ୍ତଙ୍କୁ ଖାଉଛି । ଠାକୁର-ଠାକୁରାଣୀ କାହା ଦେହରେ ନାହାନ୍ତି କହିଲ ? ଆମର ଗାଈଗୋରୁଙ୍କ କଥା ଭାବ । ତୁମ ଗୋଟିକେ ଠାକୁର ଗୋଟିଏ । କେତେ କାହାକୁ ସେମାନେ ଖାଇ ଦେଉଛନ୍ତି ? ସେମାନେ ଆମକୁ କ୍ଷୀର ପେଜ ବଣ୍ଟେଇଛନ୍ତି । ପୁଣି ଦେଖ, ସେମାନଙ୍କୁ ବି କେଉଁ କେଉଁ ଜାତିର କଂସେଇ ମାରି କାହାକୁ ସବୁ ମାଉଁସ ଖୁଆଉଛନ୍ତି । କଂସେଇକୁ ଦେବତାମାନେ ଖାନ୍ତି ନାହାନ୍ତି, କି ମାଉଁସଖିଆଙ୍କୁ ବି ଡାକିଯୋଗିନୀ ଛୁଉଁ ନାହିଁ । ଆଇଷ ପୂରିଲେ ମଣିଷ ମରେ । ଯମ ଘୋଷାରି ନିଏ । ସେତିକି ବେଳେ କୋଉ ଠାକୁରାଣୀ କୋଉଠୁ ଶୂନ୍ୟରୁ ଆସି ଜୀବନ ଶୋଷେ । ମୁଁ ଏଇଆ ଜାଣେ ।

ତରି ତରି ବେଦନାମିଶା ସ୍ୱରରେ ଟଗ୍ର କହେ, ଶିବବାବାଜୀ ମହାଦେବଙ୍କ ଅବତାର । ସେ ମୋତେ ଦେଖି ସେଇଆ କହିଲେ । ସ୍ୱେ ବିଶ୍ୱାସ କଲେ । ସତେ, ସମସ୍ତଙ୍କ ଜୀବନ ମୋ ଆଖି ଆଗରେ ଗଲା ନା ଭଅଁ ଗ୍ରମା !

ଟଗ୍ରର କଥାରେ ଅଟକି ଯାଏ ତା' ନିଜ ଅନୁଭବର ଘଟଣା । କେମିତି ସେ କହି ପାରନ୍ତା ଯେ ସେ ତା' ନିଜ ଭିତରର ଗୃମଣ୍ଡାର ଭୟଙ୍କର ରୂପ ବାହାରେ ଦେଖିଛି, ପେଟ ଭିତରେ ସେ ତା'ର ଅସ୍ତି ଅନୁଭବ କରିଛି ?

ଭଅଁ ଗ୍ରମା କହେ, ଆଗୋ ବୋହୂ ସାଁନ୍ତାଣୀ, ସେହି ବିଶ୍ୱାସ ଆମ ବାବୁଙ୍କ ମନରେ ନ ଜନମାଇଲେ ସେ ତାଙ୍କର ବୋଲକରା ଚେଲା ହେବେ କିପରି ? କଣା ପାଣିରେ ବାଇଆ ହୋଇ ସମ୍ପତ୍ତି ବିକି ପଇସା ବିନକାସ୍ତ କରିବେ କିପରି ?

ମଣିକୁଦ ଗାଆଁର ଜାଣିଲାଶୁଣିଲା ଗଣ୍ୟମାନ୍ୟ ଲୋକେ, ଆଉ ସାଆାନ୍ତଭାଇମାନେ ଏକଥା କୁହାକୁହି ହେଉଛନ୍ତି । ମଣି ଚଉଧୁରୀ, ବକୁଳ ନନ୍ଦ, ଅର୍ଜୁନ ଦଣ୍ଡହେରକା ଭାରି ବ୍ୟସ୍ତ ହେଉଥିଲେ । ସେମାନେ ସବୁ ତାଙ୍କମାନଙ୍କ ଘରେ ତାଗିଦା କରି କହୁଛନ୍ତି, ପୂର୍ବ ପୁରୁଷଙ୍କ ଅମଳାରୁ ଆମ ଗାଆଁରେ କେତେ ଠାକୁର, କେତେ ଠାକୁରାଣୀ ଅଛନ୍ତି । ସେଠିକି ଯିବ । ଯେଉଁଠି ଖାଲି ମଦୁଆ, ଗଞ୍ଜେଡ଼ିଆ, ଅଫିମିଆଁ, ଗ୍ରେର ଡକେଇତ, ଠକଦଳ ମେଲାମଉଚ୍ଛବ କରୁଛନ୍ତି ସେଠି ପାଦ ଥୋଇବ ନାହିଁ । ସେମାନେ ପୁଣି ବାବାଜୀ ନାଆଁରେ ଯେଉଁ ଅସନା କଥା କହୁଛନ୍ତି ଗୋ, ଛି, ଛି, କେମିତି କହିବ ?

ଶୋଇଲା ଲୋକକୁ ହଲାଇ ଉଠାଇଲା ପରି ଝଶ୍ରି ଚମକି ଉଠେ । କହେ, ତୁମେ ହ' ଲୋ, ବାଜ୍‌ଗ୍ରୁଳିଆ ବୁଢ଼ୀ । ମହାତ୍ମା ବ୍ରହ୍ମଗୃହୀଙ୍କ ନାମରେ ଯେଉଁମାନେ ନିନ୍ଦା ରଟାନ୍ତି, ତାଙ୍କ ପାଟିରେ ପୋକ ପଡ଼ୁ । ଯିଏ ତାଙ୍କୁ ଦେଖିଛି, ତାଙ୍କ ଆଖିର ତେଜରେ, ତୁଣ୍ଡର ବଚନରେ ମୋହି ହୋଇଛି । ସେ ସାକ୍ଷାତ୍ ଶିବମହାଦେବଙ୍କ ଅବତାର । କାଳିକାମାଈଙ୍କୁ ତାଙ୍କର ଦାସୀପଣରେ ସେବା କଲାବେଳେ ସେ ସ୍ତ୍ରୀରୂପ ଧରନ୍ତି । ସେଇଥିପାଇଁ ମୁଣ୍ଡରେ ରଖନ୍ତି ଲମ୍ବ କେଶ । ଜଟାଜୁଟ ହୋଇ ନାହାନ୍ତି ।

—ମୋତା ନାନୀ, ପୂଜା ଦେଈ, ମାଳତୀ ଦେଈ, ମୋ' ବଉଳ ସୁନା ଏମାନେ ତାଙ୍କୁ କାଳିକାମାଈଙ୍କ ପାଖରେ ସ୍ତ୍ରୀ ରୂପରେ କେତେଥର ଦେଖିଛନ୍ତି । ଜାଣିଛୁ କି, ତାଙ୍କର ବିଶ୍ୱାସୀ ଭକ୍ତ ନ ହେଲେ, ·ତାଙ୍କର ଅନୁଗ୍ରହ ନ ଥିଲେ, କାଳିକାମାଈଙ୍କ ପାଖରେ ତାଙ୍କୁ ସେ ରୂପରେ କିଏ ଦେଖି ପାରିବ ? ଶିବମହାଦେବ ଧ୍ୟାନବଳରେ ସେଠାକୁ ବିଜେ କରନ୍ତି ଟି । ସେମାନେ ସବୁ ଜଣ ଜଣ କରି କେତେ-ଥର ଦେଖିଛନ୍ତି । କ'ଣ ଦେଖନ୍ତି କହିବାକୁ ମନା । କହିଲେ ଗ୍ରୁଡ ଫାଟିଯିବ । କାଳିକମାଈ ବଂଶ ପଦା କରିଦେବ ।

ଭଅଁରୀ ମା ଜିଭ କାମୁଡ଼େ । ତଳେ ମୁଣ୍ଡକୋଡ଼ି କହେ, ଯାହା ଶୁଣିଲି, ସେଇଆ କହିଲି । ହେ ଶିବମହାତ୍ମା, ତମର ନିନ୍ଦା କରୁନାହିଁ । ମୋ ଦୋଷ ଧରିବ ନାହିଁ ।

ପୁଣି, ଆଉ କେବେ ଭଅଁରୀମା ଯାହା ଶୁଣିଥାଏ ଗପେ, ବାବାଜୀ କୁଆଡ଼େ ଲମ୍ପଟିଆ । ତା' ପଣ୍ଡିମା ଚେଲାଟା ବି ସେଇଆ । ଜଣେ ଯାଏ, ଜଣେ ଆସେ । ଯିଏ ଆସେ ସେଇଆ । ସୁନାର ପୁଅ ଶିବଚରଣ କୁଆଡ଼େ ଡ଼ମ୍ବରୁ ମାହାରଣା ଅଣପୁରୁଷାର ପୁଅ ନୁହେଁ । ସେଇ ଭଣ୍ଡବାବାଜୀର ପୁଅ । ମୋତା ନାନୀଙ୍କର କୁଆଡ଼େ ଶିବଅଂଶରେ ମାସଗଡ଼ିଲାଣି । ଏମିତି ଆଜି କେଉଁ ସବୁ ଗାଆଁର କେଉଁ ସବୁ ବାନ୍ଝି, କୁଆ ବାଞ୍ଝି ଆଉମାନଙ୍କର ବି । ସୁନାଦେଈର ପୁଣି କ'ଣ

ହେବ ବୋଲି ଡମ୍ବରୁ ତାର ପୁରୁଷପଣିଆଁର ବଡ଼ତ୍ୱ ଦେଖାଇବାକୁ କେଉଁମାନଙ୍କ ଆଗରେ ମନ ଖୁସିରେ ଗପିଲାଣି ।

ଟଗର ମନରେ ଚଆଁ ଲଗିଲା ପରି ସେ ଚହଲିଙ୍କି ଉଠେ । ଛଟପଟ ହୁଏ । ଗଦେଇ ନନାଙ୍କଠାରୁ ବୁଝି ଝିଅଟା ତା' ଆଗରେ ଗପିଲା ବୃତ୍ତାନ୍ତ ତା'ର ମନେ ପଡ଼େ—

—ଶିବମହାଦେବ କାମଦେବକୁ ପୋଡ଼ି ଭସ୍ମ କରିଥିଲେ ଯେ ସୃଷ୍ଟି ବିନଷ୍ଟ ହେବ ବୋଲି ପିଲାଟାକୁ ସେ ପୁଣି ବଞ୍ଚାଇଦେଲେ । କହିଲେ, ଯୁଆଡ଼େ ଖୁସି ରୁ ତେଣେ ଯା' । ଯାହା ଉପରକୁ ରୁ ତୋ ଫୁଲ-ଶର ମାରି ଖେଳିବୁ ତ ଖେଳୁଥା । ମୋ ପାଖ ପଶିବୁ ନାହିଁରେ ଚଗଲା ପିଲା ! ରୁ ମୋ ପୁତୁରାଟା ବୋଲି ଥରେ ତୋ ନବରଙ୍ଗିଆ ବୋପାର ଉପ୍ରୋଧରେ ତତେ ବଞ୍ଚାଇଲି । ଆଉ କେବେ ମୋ' ସଙ୍ଗେ ଖେଳିବୁ ତ ତତେ ପୁଣି ପୋଡ଼ି ପାଉଁଶ କରିବି ଜାଣିଥା । ନେ, ଏ ଅମରଲଡ଼ୁଟା ଖାଇଦେ । ଯା, ତୋ ହୁନ୍ଦରିଆ ବୋପା ପାଖକୁ । ତା'କୁ ତୋ' ବାଣ ମାରି ମାତଜା ଖେଳିବୁ । ସେ ଖାଲି ଅବତାର ହେଉଥିବ । ମର୍ତ୍ତ୍ୟମଣ୍ଡଳରେ ନାଟ ଲଗାଉଥିବ । ହାଟ ଲଗାଉଥିବ । ବୁଝିଲୁରେ ପୁଅ, ଭଲ ଦଶା ଅଛି ତ ମୋ ଆଗରୁ ପଳା —

—ସେହି ଦିନରୁ ସେହି ଟିକି ମଉଜିଆ ପିଲାଟା ଶିବ-ମହାଦେବଙ୍କ ପାଖ ପଶେ ନାହିଁ । ଶିବବାବା ତାଙ୍କର ଅବତାର । କେତେ ଅଧର୍ମ କଥା ଲୋକେ ତାଙ୍କ ନାମରେ ରଟାଉଛନ୍ତି ! ସେମାନଙ୍କ ନରକ ଯୋଗ ଅଛି ।

ଟଗ ନଜେ ନିଜ ପରଖୁଛି । ଝିଅଟାର ହାତରେ ଶିବକଳାରୁ ଧାପେ ଥାଇ ସେହି ଡେଉଁରିଆଟି ପିନ୍ଧିଲା ଦିନରୁ କେମିତି ସେ ନପାରିଲା ନିର୍ବଳ ହେଉଛି । ତାକୁ ଛାତିରେ ଧରି, ଦେହରେ ଦୁଇହାତ ଗୁଡ଼ାଇ ଆକର୍ଷିଲେ ମଧ୍ୟ ତା' ଦେହରେ ତେଜ ଚହଟୁ ନାହିଁ । ନଜର ଅଙ୍ଗରେ ନିଆଁ ଜଳିଲେ ସେ ନିଆଁର ତାପରେ କେବେ ସିନା ସେ ତାତି ଉଠେ, ନୋହିଲେ ସେ ତା ନରମଦେହ ଉପରେ ଆନନ୍ଦରେ, ଶାନ୍ତିରେ, ନିର୍ଶ୍ଚିନ୍ତରେ ଛୁଟ୍ କରି ଶୋଇ ପଡ଼େ ।

ତା' ନଜ ଭିତରର ଗ୍ରୁମଣ୍ଡା ପ୍ରାଣବିକଳରେ ଛଟପଟ, କଲବଲ ହୁଏ । ତା' ଦେହକୁ ଝିମିଝିମି କରେ । ଥରାଏ । ନାକପୁଡ଼ାରେ ଖର ନିଶ୍ୱାସ ଛୁଟାଇ ସେ ଗ୍ରୁମଣ୍ଡା କେଉଁ ଛଟକରେ ଖସି ପଳାଏ । ତା'ର ବାମ୍ଫୁଆ, ନିଦୁଆ, ନିସ୍ତେଜ ଆଖିକ ଘରଭିତରର ଆଖିସୁହା ଅନ୍ଧାରରେ ଗ୍ରୁମଣ୍ଡାର ଭୟଙ୍କର, ଡରଡର ରୂପର ଛାଇଟା ଦିଶି ଯାଉଥାଏ । ପଛକୁ ଗ୍ରୁହିଁଗ୍ରୁହିଁକା ସେ କବାଟ ଦେହରେ ମିଶି ଯାଉଥାଏ ।

ଝିଅଆ ଶୋଇ ପଡ଼ିଲାଣି । କ’ଣ ସେ ହେଲାଣି ? ଆଖି ପଶିଲାଣି କୋରଡ଼ରେ । ଦେହରେ ଜୀବନ ନଥିଲା ପରି ଲାଗୁଛି । କେଉଁଠି କ’ଣ ଖାଉଛି ତାକୁ ଜଣା । ଯେତେ ଯତ୍ନରେ, ଶାଶୁ ଶିଖାଇଥିବା ଢଙ୍ଗରେ ଯେତେ ପ୍ରକାରେ ସ୍ତନ ପାଖରେ ରଖିଲେ ତା’ ପାଟିକୁ ରୁଚୁ ନାହିଁ । ଘଣ ନିୟମ ପକାଇଲେ ଅଳପ ସ୍ତୁଷି ଉଠୁଛି । ବେଶୀ ବେଶୀ ଅଫିମ-ପାଣିରେ-ପାଗିଲା ଗଞ୍ଜେଇ ଧୂଆଁ ଟାଣି ଅନ୍ତ ଶୁଖି ଗଲାଣି । ଝିଅ ମରଗଲାଣି ପରି !

କ’ଣ ହେବ ଏହାର ଫଳ ? ସେ ତ ଈଶ୍ୱର କଥା ମାନୁ ନାହିଁ । ଏବେ ଆଉ ମାଡ଼ ମାରିବାକୁ ଚାହୁଁଙ୍କି ଆସୁ ନାହିଁ । ମଉନ ରହୁଛି । ସେ ନିଜ ଦେହର ଦୁର୍ବଳତା ଓ ନିପାରିଲାପଣ ବୁଝି ନିରଣ ହୋଇଛି । ସେହି ନିରଶା ତାକୁ ସଂସାରିକ ଜୀବନରୁ ଦୂରେଇ ରଖୁଛି ପରି ! କରଛଡ଼ା ଦେଇ ପାଖରୁ ଦୂରେଇ ରହିବାକୁ ସେ ଭଲ ପାଉଛି । ସାଙ୍ଗ ମେଳରେ ନିଶା ଧୂଆଁର କୁହେଳି ତଳେ ନିଜକୁ ଛପାଇ ରଖି ସେ ଶାନ୍ତି ପାଉଛି ।

ଈଶ୍ୱର ନିରୁଡିଆ ମନରେ ଏପରି କେତେ ଭାବନା ପଶୁଛି ।

କାହିଁକି ତା’ ବଉଳ ସୁନା ଏତେ ଡେରି କରୁଛି ? ସଞ୍ଜ କେତେବେଳୁ ହେଲାଣି । ବିଲୁଆପଲଙ୍କର ବୋବାଳି ଶୁଭୁଥିଲା, ସେ ବି ବନ୍ଦ ହେଲାଣି । ଅନ୍ଧାର ନିଘଞ୍ଚ ହେଲାଣି । ଆକାଶରେ ଖଣ୍ଡଖଣ୍ଡିକା ମେଘ । ତାରାଗୁଡ଼ିକ ମୁହଁଛପା ଦେଇ ପୁଣି ବାହାରି ଆସୁଛନ୍ତି । ଆଖି ମିଟିମିଟି କରି ପୁଣି ଛପି ଯାଉଛନ୍ତି ।

ଭଉଁରୀ ଏବେ ମଗରା ହେଲାଣି । ଏତେବେଳ ଯାଏ ସେ ଗଲା କୁଆଡ଼େ ? ଘରର ମାଲିକ ଘରଖବର ନ ବୁଝିଲେ, କୋଠିଆ-ଚାକରଙ୍କୁ ଅଖିଏ ଆଖିଏ ନ ରଖିଲେ, କଥା-ଅକଥାରେ ଆକଟ ନ କଲେ ସେମାନେ ଉପରମୁହାଁ ହେବେ । ମାଇପି ମଣିଷ ଈଶ୍ୱର କି ଘରି ? ପଦେ କହିବ ସିନା, ଶାସନ କରି ପାରିବ ନାହିଁ । ସେହି ଭଉଁରୀ ପୁଣି ଈଶ୍ୱର ଏକୁଟିଆ ଜୀବନର ସାହା ଭରସା ।

ଡେରି କରିବ ତ କରୁ ସେ ଭଉଁରୀ । କେଜାଣି, ତା ଖାଉଁଦ ଝିଅଆର ଆଦେଶରେ ସେ କାହାଠୁ ଗ୍ରେସରେ ଗଞ୍ଜେଇ, ଅଫିମ କିଣିବାକୁ ଯାଇଥିବ । କଥା ନିହସରେ ଦିନେ ସେ କହି ପକାଇଲା । ଗୁରିଗୁଣ ଦାମ୍ ଦେଇ ସେ କିଣେ ।

ଜିଭ କାମୁଡ଼ି, ନାକ-କାନ ମୋଡ଼ି ହୋଇ ସେ ଗୁହାରି କଲା, ସାଁତଙ୍କୁ ପଗ୍ଇରିବ ନାହିଁ ବୋହୂ ମା ! ସେ ମୋତେ ନିସ୍ତୁକ ଛେଚିବେ । ମନା କରିଥିଲେ ।

ଝୁମ୍ପି ନର୍କର ଜବାବ ଦେଇଥିଲା ଯେ ସେ ଜନ୍ମିବ ନାହିଁ । ଭଅଁରୀ ତା'ର ଧନ, ଜୀବନ ଓ ମହତର ଜଗୁଆଳ ।

ହଁ, ମହତର ! ଝିଅଆର ସାଙ୍ଗମାନେ, ଯେଉଁମାନେ ଝୁମ୍ପିକୁ ଦେଖି ହସନ୍ତି, ଉତ୍ତର ନ ପାଇଲେ ବି ପଦେ ଅଧେ ରସରସିଆ ଥଟ୍ଟାଳିଆ ଅସନା କଥା କହନ୍ତି, ଝିଅଆକୁ ଖୋଜିବା ଆଗରେ କବାଟରେ ଅସମୟରେ ହାତ ମାରି ଖଣ୍ଡିକାଶ ଦେଇ ଡାକନ୍ତି । ଭଅଁରୀ ଠେଙ୍ଗା ଧରି ଯିବେ । ପଚାରେ, ଆଜ୍ଞା, ଏ ଅବେଳାରେ ? ସାଆଁଟେ ମଠରେ ।

ପଚାରନ୍ତି, ଏତେ ରାତି ହେଲାଣି ! କାମ ଥିଲା ।

ଭଅଁରୀ କହେ, କିଏ ଜାଣେ କେତେବେଳେ ଫେରିବେ ? କାଲି ସକାଳେ ଆସିଲେ ଭେଟିବେ ।

କହନ୍ତି, ଯା, ଡାକିଆଣିବୁ । ତୋ' ବୋଉ ତ ଅଛି ।

ଭଅଁରୀ କହେ, ସେ ତ ରୋଗିଣୀ । ରୋଗଣା । ଠେଙ୍ଗା ପାହାରରେ ଚୋର, ତସ୍କର, ବାହାମିଆ, ଲୁଚ୍ଚା ଡାକୁଙ୍କର ମୁଣ୍ଡ କ'ଣ ଛେଚି ପାରିବ ? କାଲି ସକାଳେ ଆସିବ ଆଜ୍ଞା । ସେମିତି ଜରୁରୀ କାମ ଅଛି ତ ନାହାର ପିଣ୍ଡାରେ ବସିଥାଅ ।

ଧଡ଼୍ କରି କବାଟ ବନ୍ଦ କରେ । ଶିକୁଳୀ ଲଗାଏ ।

ଗୋଡ଼ ଲମ୍ବି ଲମ୍ବି ଝୁମ୍ପି ତା' ଶୋଇଲାଘରୁ ବାହାରେ । ହାତରେ ଜଳୁଟଣ । ଭଅଁରୀକୁ ପଚାରେ । ସେ ସବୁ କହେ । ବୀର ପଣ ଦେଖାଏ । ହୁଙ୍କାରେ, ଶଳା ଲମ୍ପଟଙ୍କା ସବୁଆଜି ମୁଁ ଚିହ୍ନେ ନାହିଁ ? ଘରଭିତରକୁ ପାଦ ବଢ଼ାଇଥାନ୍ତା ତ ମୁଣ୍ଡ ଛେଚୁ କରିଥାନ୍ତି ।

ଝୁମ୍ପି ନିଜ କୋଠରୀକୁ ଥରଥର ପାଦରେ ଫେରି ଆସେ । ଚଟାଣ ଉପରେ ପଡ଼ି ଭୁମି ଭୁମି କାନ୍ଦେ । ଛଟପଟ ହୁଏ । ଝିଅଆର ଆଗମନକୁ ଅପେକ୍ଷା କରୁଣୁ ତା'ର ନିଦ ଘୋଟି ଆସେ ।

ସେହି ସ୍ୱପ୍ନ ଅବସ୍ଥାରେ ସେ ଅନୁଭବ କରେ, ତା' ଭିତରର ସ୍ୱାମୀଣୀ କାରୁଣ୍ୟ କରୁଛି । ଅନୁନୟ କରି କହୁଛି, ସେ ଯଦି ଆସିଥାନ୍ତା, ତା'ର ରକ୍ତ, ମାଂସ, ଶେଷକୁ ଜୀବନ ଆହାର କରି ମୋ'ର ଭୋକରେ ଛଟପଟ ଆତ୍ମାକୁ ଶାନ୍ତ କରିଥାନ୍ତି । କାହିଁକି ମତେ ଉହୁଲା-ବଳକା କଲୁ ? ଯିଏ ତା'କୁ ଘଉଡ଼ି ଦେଲା ସେ ଝୁମ୍ପି ' ସେହି ଛନଛନିଆଁ ଯୁଆନ ଟୋକାର ରକତ ମାଉଁସ, ଜୀବନ ମୋତେ ଚାଖା । ମୋ'ର ଜାତି ଅଜାତି ବାଛ ବିଚାର ନାହିଁ ।

ଛଟପଟ ଝୁମ୍ପି ଅଧା-ବାଇଆଣୀ ବେଶରେ ଚଟାଣ ଉପରେ ଉଠି ବସେ । ନିଜ ଦେହର ପରିପୁଷ୍ଟତାକୁ ଚାହେଁ ଅସ୍ପଷ୍ଟ ଆଲୁଅରେ । ମନେ ମନେ ସ୍ୱାମୀଣୀକୁ କହେ, ଦେଖ୍, ମତେ ଆଉ କଲବଲ କର ନା । ମତେ ତୁ ଦୋଷୀରୁଣୀ ହେବାକୁ

ଭୁଙ୍କି ବତା ନା । ମତେ ତୁ ଖାଇ ଦେ ଚଣ୍ଡାଳୁଣୀ ! ତୋ' ପେଟ ପୂରିବ, ମୁଁ ସ୍ୱର୍ଗଗଡ଼ ପାଇଯିବି ।

ଆଜି କାହିଁକି ଡ଼ର ଡ଼ର ଲାଗୁଛି । ସଜବାଜ ହୋଇ କେତେବେଳଯାଏ ସେ ଏକଡ ସେକଡ ହେଉଥିବ ? ଆରେ, ଦାଣ୍ଡ କବାଟ ମୁକୁଳା ଅଛି !

ଟେର ସେ କଥା ମନେ ନ ଥିଲା । ସେ ନଳଟେଣ ଧରି ଅଗଣା ପାରି ହୋଇ ଦାଣ୍ଡରେ ପାଦ ଦେଲା । ତାକୁ ଦିଶିଲା, ହାତରେ ଉଜ୍ଜ୍ୱଳ ଆଲୁଅ ଝୁଲାଇ ଅଧା ଭାଲଗଛ ପରି କିଏ ଜଣେ ଦାଣ୍ଡଗୋହିରି ଆଡ଼କୁ ପବନରେ ନହକା ଗଛ ଦୋହଲିଲା ପରି, ଟଳଟଳ ହୋଇ ତାଙ୍କର ଘରଆଡ଼କୁ ମୋଡ଼ିହିଛନ୍ତି । ପାଖେଇ ଆସିଲାରୁ ଦିଶିଲା, ସେ ଡମ୍ବରୁ ମହାରଣା ।

ଧୋବ ଲୁଗା ପିନ୍ଧିଛନ୍ତି ସେ ଆଣ୍ଠୁ ଲୁଚୁ ନାହିଁ । ଖଇରିଆ ରଙ୍ଗର ଜାମା କହୁଣୀ ତଳକୁ ଲମ୍ବିଛି । ଜାମାଟି ପୁଣି ଲମ୍ବିଛି ଜଙ୍ଘ ଅଧ ଯାଏ । ଦୁଇ ଛାତିରେ ଓ ଦୁଇ କଡ଼ରେ ଚାରୋଟି ପକେଟ, ସାମାନ୍ୟ ଫୁଲିଫୁଲି ରହିଛି ।

ଡମ୍ବରୁ ମହାରଣା, ପାଞ୍ଚ ବର୍ଷ ପୂର୍ବେ ସେ ଯାହା ଥିଲେ, ଟେର କେତେ ଥର ଦେଖିଛି. ଆଜି ସେ ତା'ର ଅଧା ବି ନାହାନ୍ତି । ସେ ଅର୍ଦ୍ଧାସୁର-ରୂପୀ ମଣିଷ, ଯିଏ ଚାଚଣେଶ୍ୱରର ବେଶ ଧରି, କାନ୍ଧରେ ଆହୁରି ନଅ-ମୁଣ୍ଡଖଣ୍ଡା ଲମ୍ବ ପଟା ବାନ୍ଧି ମଥା ଉପରେ ଥାଇ ଜଳକାଳିଆ ରଙ୍ଗ ଗୁଡ଼ାଇଲେ ଦେଖଣାହାରିଙ୍କର ଛାତି ଦୁଲୁକି ଉଠେ, ସେ ଏବେ କି' ମରି ହେଲେଣି ! ଲମ୍ବାଳିଆ କଳା ମୁହଁରେ ଦାନ୍ତହାଡ଼ ହାଡ଼ ପରି ଠିଆ ହେଲାଣି । ଆଖି ପଶିଗଲାଣି । ଖାଲି ମୁଣ୍ଡର ବାଳ ବେତାକ ସେମିତି ଅଛି ।

ଟେର ଭାବିଲା, ତା' ଭିତରର ଚମଣ୍ଡାର ଧାପରେ ସିନା ଝରିଆର ରକ୍ତମାଂସ ମିଳେଇ ଯାଉଛି ବୋଲି ଶିବ-ବାବାଙ୍କ ଦୟା ଲାଭ କରିଥିବା କିଏ ସବୁ ମାଇପେ ତାକୁ ଶୁଣାଇଁ ଜନ ଜନ ଭିତରେ କଥାଭାଷା ହେଉଥିଲେ, ଡମ୍ବରୁ ମହାରଣାଙ୍କ କାହା ଭିତରର ଚମଣ୍ଡା ଶୋଷି ଖାଉଛି ? ବଡ଼ିଲ ସୁନାଦେଇ ଭିତରେ କି'ଣ ଚମଣ୍ଡାଟାଏ ଅଛି ?

ସେ ବାବାଜୀଙ୍କର ସ୍ନେହ କେବଠାରୁ ପାଇସାରିଲାଣି । ତାଙ୍କର ଶିବକଲାର କଣିକା ଲଭି ଶିବଚରଣ ପରି ସୁନ୍ଦର କହିଁଫୁଲିଆ କୌଢ଼ିକିଆ ପୁଅ ପାଇଲାଣି । ତାଙ୍କର ଦୟାରୁ ପୁଣି ତା' ପେଟରେ ଛୁଆ ରହିଲାଣି । ଖବର ମିଳୁଛି, ହେଲେ,

ଝଷିର ବଉଳ ତା'କୁ କିଛି କହି ନାହିଁ । ଏଡ଼େ କପଟୀ ସେ ! ଏତେ ହେଲ ପରେ ବି କଣ ରାମଣ୍ଡା ସୁନାଦେଇକୁ ଛାଡ଼ି ଚାଲି ଯାଇନାହିଁ ।

ଝଷିର ମନେ ହେଲା, ଅଫିମରସରେ ପରଖା ଗଞ୍ଜେଇ ଧୂଆଁ ଡମ୍ବରୁ ମହାରଣାଙ୍କ ଅନ୍ତ ଜାଳଦେଉଛି । ଝରଆର ବି । ବାବାଜୀ ମହାରାଜ ଯଦି ସେମାନଙ୍କୁ ସେହି ଧୂଆଁ ରାକ୍ଷସର ମୁହଁରୁ ବଞ୍ଚାଇ ପାରନ୍ତେ ତେବେ ତାଙ୍କର ଆଗର ଦେହ ଫେରି ଆସନ୍ତା । ଝରଆର ମନ ସ୍ଥିର ହୁଅନ୍ତା । ତା' ସଂସାର ଉଜୁଡନ୍ତା ନାହିଁ ।

ଆସୁଛନ୍ତି ଡମ୍ବରୁ ମହାରଣା । ତାଙ୍କ ପଛେ ପଛେ ଝରଆ । ଧୋବ ଲୁଗା ତ ସେ ପିନ୍ଧିଥିଲା । ଦେହରେ ଗେଞ୍ଜି, କାନ୍ଧରେ ଗାମୁଛା । ତା' ପଛରେ ସୁନାଦେଇ । ସଙ୍ଗରେ ଆଉ ଜଣେ ସ୍ତ୍ରୀ । ମୁଣ୍ଡର ଓଢ଼ଣା କପାଳ ଉପରକୁ ଟିକିଏ ଓହ୍ଲାଇ ଆସିଥିବାରୁ ହଠାତ୍ ଚିହ୍ନି ହେଉନାହିଁ । ସେମାନେ ପାହାଚ ପାଖକୁ ଆସିଲେ । ଝଷି ଏଥର ଚିହ୍ନିଲା । ଆର ସ୍ତ୍ରୀ ଲୋକଟି ଦ୍ୱାରକା ସାହୁ ଗୁଡ଼ିଆଙ୍କ ଘରଣୀ । ମୋଟାମୋଟି ହୋଇ ସାଧାରଣ ମାଇପିଟିଏ । ନଖୁଣ ଗୋଲଗାଲିଆ ମୁହଁ ।

ସାହୁଙ୍କର ଦୋକାନ ଅଛି । ଯାହା ଖୋଜିଲେ ମିଳେ । ଚଢ଼ା ଦର, ନେଲେ ନିଅ, ନ ନେଲେ ନାହିଁ । ତାଙ୍କ ଦୋକାନରେ ମିଶାମିଶି କାରବାର ନାହିଁ । ଖାଣ୍ଟି ଜିନିଷ !

ସେ ମହାଜନୀ ବେପାର କରନ୍ତି ନାହିଁ । କିନ୍ତୁ କେହି ଅଭାବରେ ପଡ଼ି ଅନ୍ୟ କେଉଁଠୁ ପାଇବାର ଆଶା ହରାଇ ଦ୍ୱାରକା ସାହୁଙ୍କ ପାଖକୁ ଗଲେ ସେ ନାହିଁ କରନ୍ତି ନାହିଁ । ହାଣ୍ଡନୋଟ ରଖି ବର୍ଷକୁ ଶତକଡା ବାର ଟଙ୍କା ସୁଧରେ ଋଣ ଦିଅନ୍ତି । ତେବେ, ମିଠେଇଖିଆ ବାବଦ୍ ଆଗ ଦଶ ଟଙ୍କା ହାରରେ ଋଣଦିଆ ଟଙ୍କାରୁ ସେ କାଟି ରଖନ୍ତି । ସେତକ ତାଙ୍କ ସ୍ତ୍ରୀ ମାଳତୀଙ୍କ ହାତପାଣ୍ଠି ।

ଶୁଚିଶୀଳା ମାଳତୀ ଲକ୍ଷ୍ମୀଠାକୁରାଣୀଙ୍କର ସେବା କରନ୍ତି । ନିଜେ ଲକ୍ଷ୍ମୀ-ପୁରାଣ ପଢ଼ନ୍ତି । ତାଙ୍କର ମନରେ ଗୋଟିଏ ଦୁଃଖ ରହି ଯାଇଛି । ବାପ ଘରେ କଣ୍ଢେଇ ଖେଳ ସରିନି ନ ଥିଲା । ଏଗାର ବର୍ଷ ବୟସରେ ଊଣେଇଶ ବର୍ଷର ଗୋରା-ତକତକ ପାତଳା ଅଲପ ଡେଙ୍ଗାଳିଆ ଦ୍ୱାରକା ସାହୁଙ୍କୁ ସେ ବାହା ହେଲେ । ତାଙ୍କ ମୁହଁଟି ଟିକିଏ ଲମ୍ବାଳିଆ ଥିଲା । ଚଉଡା କପାଳ । ମୁଣ୍ଡରେ ଲମ୍ବା ବାଳ । ଆଖି ଯୋଡ଼ିକ ବଡ ବଡ, କିନ୍ତୁ ନାକଟି ଛୋଟ ।

ପିଲାଦିନର କଥା ମାଳତୀ ଗପନ୍ତି । ଗପିବାକୁ ସୁଖ ପାଆନ୍ତି । ସାଙ୍ଗମେଳରେ ଗପିଲାବେଳେ, କେତେ ଲାଜର କଥା କହି ଦିଅନ୍ତି । ତାଙ୍କ ଦେଖିଲା, ଶୁଣିଲା, ପୁଣି ଅଙ୍ଗେ ଲଭିଲା ଘଟଣା । କାହା ଆଗରେ ଗପୁଛନ୍ତି, ତା'ର ବୟସ କେତେ, କେତେ ଦିନର ବୋହୂପଣ, ମାଳତୀ ବିଚାରକୁ ନିଅନ୍ତି ନାହିଁ । ଅନ୍ୟମାନଙ୍କୁ

ଚନ୍ଦ୍ରିକାନ୍ତ, ନଳଗିରି କଗନ୍ତ, ପ୍ରଚୁର ହସାନ୍ତ । କିନ୍ତୁ ସେ ନିଜେ ତହିଁରେ ଭାଗ ନିଅନ୍ତି ନାହିଁ ।

ସେ କହନ୍ତି, ଟଙ୍କା ଶୁଣିଛୁ, ବାହା ବେଳେ ସେ ନିଜେ ଥିଲେ ପାତଳା, ଶାବନା । ମୁହଁଟା ଗୋଲଗାଲିଆ । ମୁଣ୍ଡରେ ମୁଠାଏ ବାଳ ଯେ ଉକୁଣି ଭୁରଭୁରୁ; ଯେତେ ଉପାୟ କଲେ, ଯେତେ ବାଛି ମାରିଲେ, ସେଗୁଡ଼ା ପୁଣି ଜୀଉଁଠୁ ଜନମନ୍ତି । ରାଜବଣେଶ୍ୱର ବଂଶ ପରି । ଜାଣିକରି ତ ସେ ଟିକିଏ ଟେଙ୍ଗା ।

ଏଇଥିରୁ ବୁଝ ଗୋ, ମାଳତୀ କେଡ଼େ ରୂପବତୀ, କେଶବତୀ କନ୍ୟା ଥିଲା । ରାଜା ପୁଅମାନେ ତା'କୁ ପାଇବାକୁ ପର୍ବତ ଡ଼ିଅନ୍ତେ ? ସମୁଦ୍ର ପହଁରନ୍ତେ ? ଆକାଶରେ ଉଡ଼ନ୍ତେ ?

ବାପ ମାଆଙ୍କର ଚାରି ପୁଅ ତଳେ ମାଳତୀ ଥିଲା କୋଡ଼ପୋଛା ଝିଅ । ପୁଅ ହୋଇଥିଲେ ସମ୍ପତ୍ତିରୁ ଭାଗ ନେଇଥାନ୍ତା ତ । ସେଇଥିପାଇଁ ବାପେ ଜମି ବିକି କରି ନଗଦ ପାଞ୍ଚ ହଜାର ଟଙ୍କା ଦେଲେ । ବାହାଘର ହେଲା ।

ପନ୍ଦର ବର୍ଷ ହେଲାବେଳେ ପୁଆଣି ଘର । ଏକୋଇଶ ବର୍ଷ ପୂରିଲା ବେଳକୁ ପ୍ରଥମ ଝିଅ । ଚାରି ଚାରି ବର୍ଷ ଛାଡ଼ି ପୁଣି ଆଉ ଦୁଇ ଝିଅ ।

ନାତି ମୁହଁ ଦେଖିବେ ବୋଲି ଚାରି ବର୍ଷ କାଳ ଅପେକ୍ଷା କରି ଶଶୁରେ ସେପୁରକୁ ଗଲେ । ଶାଶୂ ବୁଢ଼ୀ ଦମ୍ଭ ଅଛନ୍ତି । ପାଚିଲା ପତର । କେବେ ଝଡ଼ି ପଡ଼ିବେ, ତାର କି ଠିକଣା ? ଶିବବାବାଜୀଙ୍କ ମହିମା ଖବର ଶୁଣି ସେହି ଶାଶୂ ମାଳତୀଙ୍କୁ ତାଙ୍କ ପାଖକୁ ବରଗି ଥିଲେ । କାଳେ ତାଙ୍କ ଦୟାରୁ ତାଙ୍କର ନାତିଟିଏ ମାଳତୀଙ୍କ କୋଳ ଉଜ୍ଜ୍ୱଳ କରିବ । ସାନ ନାଉଣୀକୁ ଛଅ ବର୍ଷ ହେଲାଣି । ମାଳତୀଙ୍କୁ ପଇଁତିରିଶ ପୂରିଲାଣି । ଶାଶୂ ଜାଣନ୍ତି, ତାଙ୍କ ବୋହୂର ପେଟରେ ପିଲାଧରିବାର ବୟସ ବଳେଇ ଯାଇ ନାହିଁ !

ଶିବବାବାଜୀଙ୍କର ସେବା ସେ ଦୁଇ ବର୍ଷ ହେଲା ଅନ୍ୟମାନଙ୍କ ପରି କଲେଣି । ସୁନା ମୋହରଟିଏ ଦେଇ ସେ ପ୍ରଣାମ କରିଥିଲେ । ହାତରେ ଶିବକଳା-ଭରା ତେଉଁରିଆ ପିନ୍ଧିଛନ୍ତି । ତାଙ୍କ ଭିତରେ ଯେ କୌଣସି ଗ୍ରମଣ୍ଡା ନାହାନ୍ତି, ଏହା ତ ଜଣେଇଜଣା ।

ବାବାଜୀଙ୍କର ଆଶୀର୍ବାଦ ସେ ଲଭ କରୁଛନ୍ତି । ସେ କେବଳ କହୁଛନ୍ତି, କପାଳର ଲେଖା ବଦଳିଲେ ସେ ପୁତ୍ରବତୀ ହେବେ । ସେତକ କରିବାର କ୍ଷମତା କେବଳ ଶିବଭଗବାନ୍‌ଙ୍କର ଅଛି । ସେଥିପାଇଁ ସ୍ୱାମୀ ଓ ସ୍ତ୍ରୀ ଦୁହିଁଙ୍କର ନିରୋଳା ଭକ୍ତି ଲୋଡ଼ା ।

ଦ୍ୱାରକା ସାହୁ ନିଜ ଧନ୍ଦାରେ ବ୍ୟସ୍ତ । ପାନ ଖଣ୍ଡେ ଖାଆନ୍ତି ନାହିଁ । ଗୁଡ଼ାଖୁ ଘସନ୍ତି ନାହିଁ । ଧୂଆଁର ପାଖ ସେ ପଶନ୍ତି ନାହିଁ । ମାଆଙ୍କର ବାଧ୍ୟତାରେ ଯେଉଁ ଦୁଇ

ଅନେକଥର ସେ ବାବାଜୀଙ୍କ ମଠକୁ ଯାଇଛନ୍ତି, କେବଳ ମୁଣ୍ଡିଆ ମାଣ, ସେଠାକାର କାରବାର ଦେଖି, ଲୋକଙ୍କର ଢଙ୍ଗ ପରଖି, ହସ ହସ ହୋଇ ଫେରିଛନ୍ତି । ଅଭକ୍ତ ନାହିଁ । କିନ୍ତୁ, ଅନ୍ଧ ଭକ୍ତରେ ସେ ଭାସି ଯାଆନ୍ତି ନାହିଁ । କାନ ଖୋଲି ଥାଏ । ଚକ୍ଷୁ କେବେ ଖୋଲନ୍ତି ନାହିଁ । ସବୁ ଆଲୋଚନା ମନକଣ୍ଠ ଦେଇ ଶୁଣନ୍ତି । କେହି ପଚାରିଲେ ନିଜର ମତାମତ ପ୍ରକାଶ କରନ୍ତି ଅଳପ କଥାରେ—ପାଞ୍ଚଜଣ ଯାହା ସ୍ଥିର କରିବେ, ଏକମତ ହେବେ, ସେଥିରୁ ମୁଁ ବାହାର ହେବି ନାହିଁ । ମତ ଦି' ଫାଙ୍କିଆ ଧରିଲେ ମୁଁ ମୋ'ର ଅଲଗା ।

ଝିଅ ଓନୋଟିଙ୍କୁ ମାଳତୀ କେବେ ମଠକୁ ଆଣି ନାହାନ୍ତି । ଥରେ ଅଧେ ଆସି ବାବାଜୀ ଓ କାଳିକାମାଈଙ୍କୁ ଓଳଗି ହୋଇ ବୁଢ଼ୀମା'ଙ୍କ ସଙ୍ଗେ ଗୋଡ଼େ ଗୋଡ଼େ ଫେରି ଯାଇଛନ୍ତି ।

ସାହୁଙ୍କର କଡ଼ା କଟକଣା—ଧର୍ମ କରିବାର ବେଳ ଓ ବୟସ ତାଙ୍କର ଆସି ନାହିଁ । ସେମାନେ ପର ଘରର ଦରବ । ଆମର ଖାଲି ତାଙ୍କୁ ପାଳି, ବଢାଇ, ଏବଂ କାଳିକା ପାଠ ବୋଲି କିଛି ପଢାଇ ଲେଖାଇ, ସଗୁଣ ଶିଖାଇ ପର ଘରେ ଥୋଇବା କଥା ।

ଏହିସବୁ କାରଣରୁ ମାଳତୀ ଏକା ଆସନ୍ତି । ସବୁ ଦିନେ ନୁହେଁ, ଦିନେ ଦିନେ ।

ସୁନାଦେଈ ଉପରେ ଶିବ-ବାବାଙ୍କର ଅଧିକ କରୁଣା । ସେ ଅବାଧରେ ତାଙ୍କର ବିଶ୍ରାମ ଘରକୁ ଯାଏ । କାଳିକାମାଈଙ୍କ ନିରୋଳା ପୂଜା ବେଳେ ତାଙ୍କୁ ସାକ୍ଷ-ଲକ୍ଷ୍ୟ-ପ୍ରତ୍ୟକ୍ଷରେ ଦେଖେ । ସେତେବେଳେ ଗର୍ଭର ଦ୍ୱାର ମୁକୁଳା ନ ଥାଏ । କି ଭୟଙ୍କର ସେ ରୂପ !

କିନ୍ତୁ ଶିବବାବା ପାଖରେ ଥିଲେ ଦେଖା ଶାନ୍ତମୂର୍ତ୍ତି ହୁଅନ୍ତି । ସୁନା ଦେଈ ହାତର ପ୍ରସାଦର ବାସନା ଭୋଗ କରନ୍ତି ।

ସେ ଭାଗ୍ୟବତୀ । ସେ କେବଳ ବାବାଜୀଙ୍କୁ କହି ମାଳତୀଙ୍କର ଭାଗ୍ୟଲେଖା ବଦଳାଇ ପାରିବ । ତାଙ୍କର ପୁଅ ଲାଭ ହେବ । ଏହି ଆଶାରେ ମାଳତୀ ତା'ର ସାଙ୍ଗ ଧରିଛନ୍ତି ।

ହସ ହସ ହୋଇ ଝିଅ ତାଙ୍କୁ ଯାଉଛି ନେଉଣୁ ତା'ର ଦୃଷ୍ଟିରେ ପଡ଼ିଲା ଆଉ କେତେ ଜଣ ମରଦ ଅନ୍ଧାରରୁ ଆଲୁଅ ଆଡକୁ କଥାଭାଷା ହୋଇ ଆଗେଇ ଆସୁଛନ୍ତି । ସେମାନଙ୍କୁ ସେ ଚିହ୍ନି ପାରିଲା ନାହିଁ ।

ସ୍ୱରରୁ ବାରିଲା, ଗଦେଇ ପଡ଼ଙ୍ଗୀ କ'ଣ ପଚାରୁଛନ୍ତି । ତା'ର ଉତ୍ତର ଦେଉଛନ୍ତି ନାରଣ ପରିଡ଼ା—ଶଳାର ଏଡ଼େ ମଗଜ, କ'ଣ ସବୁ ପାଇଁ ସେଠି ଫୋଡ଼ୁଛି ?

କାହାର ମଗଜ୍ କଥା ସେ କହୁଛନ୍ତି ଏବଂ କିଏ କାହା ଆଗରେ କ'ଣ ଫୋଡ଼ୁଛି ଟଗର ଜାଣିବାର ଉପାୟ ନ ଥିଲା । ସେ ଦୁଇ ସଙ୍ଗିନୀଙ୍କ ମେଳରେ ତାର କୋଠରୀ ଭିତରକୁ ଗଲା । ସିନ୍ଦୁକ ଉପରେ ଆଲୁଅ ରଖି ଦୁଇଜଣଙ୍କୁ ଖଟ ଉପରେ ବସାଇଲା । ନଉନ ହୋଇ କହିଲା, ମୋ'ର ଆଜି କେଡ଼େ ଭାଗ୍ୟ ସତେ ! ଏ ଘରେ ଅପୂର୍ବମାନଙ୍କର ପାଦ ପଡ଼ିଛି । ଆଜି ଯଦି ଶାଶୁ ଥାଆନ୍ତେ ।

ଟଗର କଣ୍ଠ ରୁଦ୍ଧ ହେଲା । ପୁଣି କହିଲା, ଘର ଉଜୁଡ଼ିବାକୁ ବସିଲାଣି । କ'ଣ ଦେଇ ତମର ଚର୍ଚ୍ଚା କରି ପାରିବ ? ଯିଏ ଏ ଘରର ସର୍ବେସର୍ବା ମୁରବି, ସେ ମଣିଷ ପଣରୁ ରହିଲେଣି । ଖବର ଅନ୍ତର ବୁଝିବାକୁ ତାଙ୍କର ବେଳ ନାହିଁ । ଘରେ ଦଣ୍ଡେ ରହୁ ନାହାନ୍ତି । କେବେ ରାତି ଅଧରେ ତ କେବେ ରାତି ପାହାନ୍ତାରେ ଫେରନ୍ତି । ଦିନେ ଦିନେ କେଉଁଠି ରହିଯାଆନ୍ତି । ମୁଁ ଢିହକୁଢ ପରି ଜଗି ପଡ଼ିଛି । ସେ ଯାହା କହୁଛନ୍ତି କରୁଛି । କେତେ ଦିନ ଏପରି ଚଳିବ ? ମୋ' ଭିତରେ ଗୃମଣ୍ଡା ଅଛନ୍ତି ବୋଲି ବାବାଜୀ କହିଲେ । ମୁଁ ବିଶ୍ୱାସ କରୁଛି । ତାକୁ ଅନୁଭବ କରୁଛି । ମୁଁ ନିଜେ ଜଣେ ମଶାଣିଚଣ୍ଡୀ ପରି ଏ ଘର ଜଗି ପଡ଼ିଛି ।

ଟଗର ଆଖିରୁ ଝରି ଆସିଲା ଲୁହଧାର । ଛାତି ଭିତରେ ଚକ୍‌ମକ ହୋଇ ଫାଟୁଥିବା ସହସ୍ର ବେଦନାର ବାର୍ତ୍ତା କାହିଁକି ପାଣେଇ ଆଖିରୁ ବୋହିଲା ? କାହିଁକି ପାଟିର ଢାଙ୍କୁଣି ଅସାଇ ସେହି ବେଦନାର ବାର୍ତ୍ତା ପଦାକୁ ବାହାରିଲା ?

ଟଗର ନିଜେ ବୁଝିପାରିଲା ନାହିଁ ।

ପରମୁହୂର୍ତ୍ତରେ ସେ ଲାଜେଇ ଉଠିଲା । ଆଖିର ଲୁହ ପଣତରେ ପୋଛିଲା । ଅପରାଧିନୀ ପରି ସୁନାର ଗୋଟିଏ ହାତ ଓ ମାଳତୀଙ୍କର ଗୋଟିଏ ହାତ ନିଜର ଦୁଇ ହାତରେ ଧରିଲା । ନେହୁରା ହୋଇ କହିଲା, କିଛି ମନେ କରିବ ନାହିଁ ଗୋ ! ମୋ ଭିତରର ଗୃମଣ୍ଡା କାଲେ କାହାକୁ ଗ୍ରାସିଦେବ, ଏଇ ଡ଼ରରେ ଗାଆଁ ମାଇପେ କେହି ଏହି ଘର ଦୁଆର ମାଡ଼ନ୍ତି ନାହିଁ । ସେହି ଡରରେ କାହାର ଅଗଣାରେ ପାଦ ଥୋଇବାକୁ ମୋ'ର ଭରସା ହୁଏ ନାହିଁ । ବାବାଜୀଙ୍କ ଦୟାରୁ ତମେ ଦିହେଁ ଆଜି ଖୁଣ୍ଟିଆଙ୍କ ଘରେ ପାଦ ଥୋଇଛ । ଏହାଠାରୁ ବଳି ଭାଗ୍ୟର କଥା, ଆନନ୍ଦର କଥା ଆଉ କଣ ହୋଇପାରେ ବଉଳ ?

ମୋ ଉଯନ୍ତି ମନ ଆପେ ଖୋଲିଗଲା । ଅବଗୁଣ ପାଇବ ନାହିଁ ।

ବୟସରେ କେତେ ସାନ ହେବ ସୁନା ! ଡ଼ମ୍ବରୁଙ୍କର ଝିଅ ସମାନ । କାଲପରି ଲଗୁଛି ଯେବେ ଡମ୍ବରୁ ତାକୁ ଆଣିଥିଲେ । ଶାବଳା, ପାତଲା ଝିଅଟା । ତେଲ ନ ବାଜି ମୁଣ୍ଡବାଲ କହରଆ ଅଡ଼ୁଆ ଫୁରୁ ଫୁରୁଆ । ଉକୁଣି ଭରଭର । ଖୁପୁ ରୁ ଖୁପୁ ରୁ ହେଉଥାଏ । ଗନ୍ଧ ଭଣଭଣ କୋଚଟ ମଇଲା ଆଠହାତଆ ଖଣ୍ଡେ ପିନ୍ଧଥାଏ । ଅଠର ଊଣେଇଶ ବର୍ଷର ଝିଅଟାର ଗ୍ରୁଡହାଡ଼ ଗଣି ହେଉଥାଏ । ତା' ଉପରେ ଫିଙ୍ଗି-ଗଉରବ ଶୁଖି ସେମିତି ଗ୍ରୁଡରେ ମିଶି ଯାଇଥାଏ । ଲାଜ କରିବାର କିଛି ନ ଥାଏ । ଗୋଲଆ କାରକ୍ରଆ ଶେଥାଲଆ ମୁହଁ । ତେବେ ଆଖି, ଭ୍ରୂଲତା, ଷ୍ଟେଟ ନାକଟି ସୁନ୍ଦରଆ । ସେଇଥିପାଇଁ ମୁହଁକୁ ସୁହିଁହୁଏ ।

ଟଣ୍ଡି ତାକୁ ହାବୁଡ଼ା ଝିଟକା କେତେ ଥର ଦେଖିଛି । ଗାଁ ଗୋହିରୀରେ, ବଡ଼ କେନାଲର ପାଣି ତୁଠରେ, ଅବା ନଈବାଲି କି ନଈତୁଠରେ । ତା' ସମ୍ବନ୍ଧରେ ମାଇପେ ଯେଉଁ କଥାବାର୍ତ୍ତା ହୁଅନ୍ତି, ଟଣ୍ଡିର କାନରେ କେବେ କେମିତି ପଡ଼ିଛି ।

ଦ୍ୱାରକା ସାହୁଙ୍କ ଘରଣୀ, ଏଇ ମାଳତୀ ଦେଈ, ସେ ତ ଫରଫର୍ଦ୍ଦା ଡ଼ବ-ଡ଼ବୀ ନୁହନ୍ତି, ତଥାପି ଦିନେ କୌତୁକ କରି କି କୁତୂହଳୀ ହୋଇ ନାରଣ ପରିଡ଼ାଙ୍କ ସ୍ତ୍ରୀ ପୂର୍ଣ୍ଣ ଦେଈଙ୍କୁ ପଚାରୁଥିଲେ, ନଈ ବାଟରେ, ଟଣ୍ଡି ପଛରେ ଯାଉଣୁ ଶୁଣିଛି, ଆଗୋ, ଏ କି ବଡ଼ମୂନା କହିଲ ? ଅଣପୁରୁଷା ଡ଼ମ୍ବରୁ ମହାରଣାଙ୍କୁ ଆଉ ଘରଲି ମିଳିଲା ନାହିଁ ? ଆଣିଲେ ଗୋଟାଏ ଭିଖାରୁଣୀ । ପ୍ରାଣ ଯାଉଛି କି ଆଉଛି । ଗାଈ ନୁହେ କି ମାଈ ନୁହେ । ଏ ପଧିକକୁ ଘରେ ରଖି ସେ କି ଭିଆଣ କରିବେ ?

ଟଣ୍ଡି ଶୁଣିବାକୁ କାନ ଡ଼େରି ପାଖେଇ ଗଲା । ପୁର୍ଣ୍ଣମିଦେଈ କହିଲେ, ଗ୍ରେପବା ହୋଇ ନ ଜାଣିଲା ପରି ପଚାରୁଛ ? କାମ କରିବ, ଘର ଜଗିବ । ପରିଆସ— ।

ସେହି ସୁନା ଦେଈ ଘରର ଘରଣୀ ସବେସବା ହେଲା । ଆଖି ପିଛୁଡ଼ାକେ ଚେରେଇ ଉଠିଲା । ସତେ କି ସେ କାଉଁରି ମନ୍ତ୍ର ଶିଖି ଆସିଥିଲା । ଶୁଣାଶୁଣିରେ, ପୁଣି ଟଣ୍ଡି ତା'ର ବଉଲ ହେଲାପରେ ନିଜେ ତା' ତୁଣ୍ଡରୁ ଶୁଣିଛି, ସୁନା ତା' ବାପା ବୋଉଙ୍କର ଗୋଟିଏ ବୋଲି ଅପଢ଼ଆଣୀ ଝିଅ । ତା' ଉପରେ ଓ ତଳେ କେତେ ଭାଇ ଭଉଣୀ ଜନମି ବାହୁଡ଼ି ଯାଇଥିଲେ । ତେଣୁ ସେ ଗରିବ ମହାରଣା ଘରର ଗେଲବସର ଝିଅ ।

ଘର ଡ଼ିହ ଓ ବାରି ମିଶି ଜମି ମାଣେ ହେବ ନ ହେବ । ନିତି ବଢେଇ କାମ କରି ତା' ବାପା ଯାହା ଭିଆଇ ଆଣନ୍ତି, ସେଥିରେ ଭଲରେ ଚଳେ । ତା ବାପା ନାମଜାଦା କାରିଗର । ତାଙ୍କର ଅନ୍ଦାଜ ଭଲ । ହାତ ଫୁର୍ତ୍ତି ।

କାମ ଚକ୍‌କଣ, କାଠ ଯୋଡ଼ିଲେ ପବନ ପଶିବାକୁ ବାଟ ପାଏ ନାହିଁ । ଶିଳ୍ପ-ଶାସ୍ତ୍ର ଜାଣନ୍ତି । ସେଥିପାଇଁ ଦୁଇଗୁଣ ମଜୁରି ଦେଇ ଲୋକେ ତାଙ୍କୁ ଡାକନ୍ତି ।

ସୁନା ଦେଈଙ୍କୁ ସେ ପାଠ ପଢ଼ାଉଥିଲେ । ସପ୍ତମ ଶ୍ରେଣୀରେ ବୃତ୍ତି ପରୀକ୍ଷା ଦେଇଥାନ୍ତି । ତାକୁ ଏଗାର ପୂରି ବାଆର ଚାଲିଥିଲା । ମାସ ଦିନୋଟି କଟିଥିଲେ ତେର ଚାଲିଥାନ୍ତା । ନିଜ ପାଠ ସାରି ସବୁଦିନେ ରାତିରେ ସେ ତା' ବାପା ଓ ବୋଉଙ୍କୁ ପୁରାଣ ପଢ଼ି ଶୁଣାଏ । ତିନି କ୍ଳାସରେ ପଢ଼ିଲା ବେଳରୁ ତା'ର ସେତିକି ଅଭ୍ୟାସ । ରାମାୟଣ ସେ ଦୁଇଥର ପଢ଼ି ଶେଷ କରିଛି । ମହାଭାରତ ବି ପଢ଼ିଛି । କେତେ କେତେ ଜାଗା ଅତି କୌତୁକିଆ ବୋଲି ସେ ନିଜେ ଏକା ଏକା ବହୁବାର ପଢ଼ିଛି । ଏବେ ବି ପଢ଼ୁଛି ।

ଗପେ ସେ ସୁନା ଦେଈ, କି ହଇଜା ଆସି ଗାଆଁରେ ପଶିଲା ଯେ, ଖାଲି ଘୋଷରି ପଡ଼ିଲା । କେତେ କୁଟୁମ୍ବ ପଦା ହୋଇଗଲେ । ସେହି ମଡ଼କରେ ତା'ର ବାପା ଓ ବୋଉ ତକାତକ ହୋଇ ଚାଲିଗଲେ ।

ସୁନା ଦେଈ ଅନାଥିନୀ ହେଲା । ପାଠ ତ ଚୁଲିକି ଗଲା, ଜୀବନ ରହିବ କିପରି ସେତିକି ହେଲା ବଡ଼ କଥା । ମାମୁଁ ବୋଧଶୋଧ କରି ତାଙ୍କ ଘରକୁ ନେଇ ଗଲେ । ରୋଗଣୀ ଉଗ୍ରଚଣ୍ଡୀ ମାଇଁଙ୍କର ବର୍ଷକୁ ଗୋଟିଏ ପିଲା ଜନମୁଥିଲେ । ଦେଖୁ ଦେଖୁ ପାଞ୍ଚଟି ହେଲେ । ପୁଅ ତିନିକୁ ଝିଅ ଦୁଇ ।

ନିତି ରୋଜଗାରିଆ ମାମୁଁ ଯାହା ଅର୍ଜନ୍ତି ଦି' ବେଳାରେ ବେଳାଏ ପେଟକୁ ଅଣ୍ଟେ ନାହିଁ । ଖାଦ୍ୟ ଅଭାବରୁ, ପୁଣି ଏଣୁତେଣୁ ଅଖାଦ୍ୟ, ଅସିଜା, ଅପରିଷ୍କାର ଖାଦ୍ୟ ଖାଇ ସମସ୍ତେ ବାରଦିନେ ତେର ରୋଗରେ ପାଣ୍ଡି ହେଲେ । ପିଲାଙ୍କର କଣ୍ଢା ଦୋହଲିଲା । ସବୁଠୁ ଅଧିକ ତ ସୁନାଦେଈର । ବୋଝ ଉପରେ କୋରଡ଼ା ମାଡ଼ ପରି ଜୀବନମୂର୍ଚ୍ଛା । କାମ ଉପରେ ମାଇଁଙ୍କର ବିଧା-ଗୋଇଠା-ମାଡ଼ ।

ତମ୍ବିରୁ ମହାରଣା ତାକୁ ସେହି ଯମପୁରରୁ ଉଦ୍ଧାର କରି ମହାପୁଣ୍ୟ ଅର୍ଜନ କରିଛନ୍ତି ।

ସେହି ଶାବନୀ ଝିଅଟା ସୁନା । ଦିବ୍ୟ ସୁନ୍ଦର ପୁଅର ମା' ହୋଇସାରିଲାଣି ଶିବବାବାଙ୍କ ଦୟାରୁ । ଶୁଣାଶୁଣିରେ ପୁଣି ତା'ର୍ କ'ଣ ହେବ ପରି ! ତା'ର ରଙ୍ଗ ଫିଟିଲାଣି । ସ୍ୱାସ୍ଥ୍ୟ ବଦଳିଲାଣି । ମୁହଁ ଦେହ ପୂରି ଉଠିଲାଣି, ସୁଠାମ ହେଲାଣି । ମୁଣ୍ଡର କହରି କେଶ କଳା ମିଚମିଚ ହେଲାଣି । କିଏ ତା'କୁ ଯତ୍ନରେ ବେଣୀ ପକାଇ ଗୋଜକାଠି ଦେଇ ମୁଣ୍ଡ ପଛଆଡ଼େ କଳାନାଗ ଗୁଡ଼େଇ ହେଲା ପରି ଭଉଁରି କରିଛି ।

କିଏ ଆଉ ? ସେହି ଯେଉଁ ଅଧାବୟସ ଡେଇଁ ବାର୍ଦ୍ଧକ୍ୟ ଆଡ଼କୁ ଆଗେଇ-ଥିବା ବିଧବା ସ୍ତ୍ରୀ ଲୋକଟି, କେଉଁ ଲେଖାରେ ତମ୍ବିରୁଙ୍କର ଅପା ହେବ, ଯିଏ

କେବଠାରୁ ଆସି ତାଙ୍କ ଘରେ ଆଶ୍ରା ନେଇଛ । ସେହି ଠୁଣ୍ଠାଅପା ହୋଇଥିବ । ସୁନା ଦେଇ ତା'ର କଥା ଗପେ । ସେ କୁଆଡ଼େ ଛୁଆରଙ୍କୁଣୀ ଯେ, ଶିବଚରଣ ତା'କୁ ଖର ଆରେଇଛ ।

ଝଉର କଥା ଶୁଣି ସୁନା ଦେଇ କହିଲା, ତମେ ଏତେ ଦୁଃଖ କରି କାନ୍ଦୁଛ କାହିଁକି ବଉଳ ! ବାବାଙ୍କର ଦୟା ହେଲେ ତମର ମନକାମନା ନିଶ୍ଚୟ ପୂର୍ଣ୍ଣ ହେବ । ସାଧନା କଲରେ ଦେବ ଦେବ ମହାଦେବଙ୍କୁ ମେ ଆପଣାର କରି ପାରିଛନ୍ତି । ତାଙ୍କର କଳା ନେଇ ବାବାଙ୍କର ଜନ୍ମ ! ତାଙ୍କୁ ସନ୍ତୋଷ କରି ପାରିଲେ ସେ କ'ଣ ଭକ୍ତର ଦୁଃଖ ହରଣ କରିବେ ନାହିଁ ?

ମାଲତୀ ଅପାଙ୍କ ଦୁଃଖ ସେ ବୁଝିଛନ୍ତି । କହୁଥିଲେ, ଭାଗ୍ୟ ବଦଳାଇବା କାଠିକର ପାଠ । ହେଲେ ବି ଶିବ ପ୍ରସନ୍ନ ହେଲେ ଭାଗ୍ୟ ବି ବଦଳି ଯିବ । ସେଥି-ପାଇଁ ଦୁଇ ପ୍ରାଣୀଙ୍କର ଭକ୍ତି ଦରକାର । ନରେଳା ଭକ୍ତି । ସାହୁଙ୍କର ସେତକ ନାହିଁ ।

ମାଲତୀଙ୍କର ମୁହଁର ଜ୍ୟୋତି ମଳିନ ହେଲା । ସେ ସୁନା ଦେଇର ହାତ ପାପୁଲି ମୁଠାଇ ଧରି ଟିକିଏ ଜୋର୍‌ରେ ହଲାଇ ଦେଲେ । କହିଲେ, ସେମିତି କହନା ସୁନା ! ସାହୁ ଗଞ୍ଜେଇ, ଅଫିମ, ମଦ ଛୁଅନ୍ତି ନାହିଁ । ତଥାପି, ବାବାଙ୍କ ପାଇଁ ସେ ଯେଉଁଠୁ ହେଲେ ଯୋଗାଡ଼ କରି ଗଞ୍ଜେଇ ପଠାନ୍ତି । ମହାଦେବଙ୍କର ସେଥିରେ ଶରଧା ବୋଲି ତାଙ୍କୁ ଜଣା, ଶିଅଳକୁ ବରାଦ ଦେଇଛନ୍ତି । ସେ କାହୁଁ କାହୁଁ ଖଜୁରିରସ ଅବା ତାଳରସ ଧରିଷ୍ଟାର ଠେକିରେ ଆଣି କାଳିକାମାଈଙ୍କ ପ୍ରସାଦ ପାଇଁ ଯୋଗାଇବ । ଦ୍ରବ୍ୟ ସବୁ ଅରୁଆ ଚାଉଳ, ବାସୁମତୀ ଧାନ କୁଟାଇ ମୁଁ ନିଜେ ତିଆରି କରିଥିଲି । ମୁଗଡାଲି, ଗୁଆ ଘିଅ, ବାରିର ପନିପରିବା, ପାଚିଲା-କଦଳୀ, ଏମିତି ଯେବେ ଯାହା ଲୋଡ଼ା, ସେ ପଠାଇ ଦେଉଛନ୍ତି ।

ସୁନା ଦେଇ କହିଲା, ହଁ ଗୋ ! ସେଥିପାଇଁ ଏତେ ଉଗୁର କାହିଁକି ? ତମର ଅଛି, ତମେ ଦେଲ । ଢ଼ଁଚେଇଲେ କି ହେବ ? ଯେଉଁ ଭଗବାନ ଦେଇଛନ୍ତି ତାଙ୍କର ପାଇଁ ତ ଦେଲ ? ସେ ମୁହଁ ମୋଡ଼ି ଦେଲେ ମୁହୂର୍ତ୍ତିକରେ ସବୁ ଫୁର୍‌ର କରି ଉଡ଼ିଯିବ । ସାହୁଙ୍କର ଭକ୍ତି ନାହିଁ । ସେ ଯାହା ସବୁ କରୁଛନ୍ତି, କେବଳ ତମର ଉପ୍ରୋଧରୁ । ନୋହିଲେ, ସେ ନିଜେ ଆସି ବାବାଙ୍କ ଶରଣ ପଶନ୍ତେ ନାହିଁ ? ଯେଉଁ ସନ୍ଥାଳ ହେଲା, ଶୁଣିଛି, ପଙ୍ଗତରେ ସେ ଯୋଗ ଦେଇ ନ ଥିଲେ । ହିନାଥ ମେଳାରେ ସେ କେବେ ବସି ନାହାନ୍ତି । କେବେ ପ୍ରସାଦ ଖାଇ ନାହାନ୍ତି ।

ମାଲତୀ ଦୁଃଖ କରି କହିଲେ, ସବୁଦିନେ ଆସିବାକୁ ତାଙ୍କର ବେଳ ନାହିଁ । ଆସିଲେ ବି ବେଶୀ ବେଳ ରହି ବେପାର ନଷ୍ଟ କରିବାକୁ ସେ ଚାହାଁନ୍ତି

ନାହିଁ । ସେ ମାଛ ମାଂସ ଛୁଅନ୍ତି ନାହିଁ । ମହାଦେବଙ୍କ ପ୍ରସାଦରେ ଗଞ୍ଜେଇବଟା ପଡ଼ିଥିବ କାଳେ, କାଳେ କାଳିକାମାଈଙ୍କ ପ୍ରସାଦରେ ଖଜୁରି ଅବା ତାଳରସ ମିଶିଥିବ, ସେ ତ୍ରୁଣ୍ଟରେ ଦେବେ କିପରି କହିଲ ? ପାଞ୍ଚ ଦେହରେ ଟିପ ଚ୍ଛୁଇଁ କପାଳରେ ଟିପ ଲଗାନ୍ତି । ସେଇ କ'ଣ ଭକ୍ତି ହେଲା ନାହିଁ ?

ଝିଅ କହିଲା, ହଁ ବଉଳ, ଭକ୍ତି ହେଲା । ନିଶା ଦରବରେ ଗୋଳେଇ ଘାଣ୍ଟି ହେଲେ ଭକ୍ତି ଅଧିକ ହେଲା ବୋଲି କହିବା ଉଚିତ ନୁହେଁ । ମୁଁ ଜାଣିଛି, ମୁଁ ଦେଖିଶୁଣି, ନିଜେ ଅନୁଭବ କରି ବୁଝିଛି ଲୋ ବଉଳ, ନିଶା ଦରବର ଜୀବନ ଅଛି । ନିଶା ଦରବ କମିଆଁ ଜାଣେ । ମଣିଷ ଜୀବନ ଟିପି ଚଢ଼େଇ, ନିଶା ସେ ଅଠାକାଣ୍ଡିଆ । ·

ମୁଣ୍ଡ ହଲାଇ, ତା' ସଙ୍ଗେ କାନରେ ନାଇଥିବା ଗ୍ଲେଟ ଗ୍ଲେଟ ନୂଆ ଫୁଲି ହଲକ ହଲାଇ ସୁନା ଦେଈ କହିଲା, ତୋ' କଥା ମୁଁ କିଛି ବୁଝିପାରୁନାହିଁ ବଉଳ ! ଠିଆ ହୋଇଛୁ କାହିଁକି ? ଆ, ଏଇଠି ବସ୍ । ଆଉ ତୋ ଉପଲାସ-ଦିଆ ପଦ-ଗୁଡ଼ିକ ବୁଝାଇ ଦେ ।

ଝିଅର ହାତ ଧରି ସୁନା ଦେଈ ପାଖରେ ବସେଇଲା । ଝିଅ କହିଲା, ମୁଁ ବେଶୀ ପାଠ ପଢ଼ିନାହିଁ ମ' ଗୃହଶାଳୀରେ ବସି ପଢ଼ି ଲେଖି ଶିଖିଛି । ତୋ' ପରିକା ପାଠୋଇ ଝିଅକୁ ମୁଁ କଣ ବୁଝାଇ ପାରିବି ? ମୁଁ ମୋ ଗେରସ୍ତଙ୍କ କଥାରୁ ବୁଝିଛି । କେଡ଼େ ଭଲ କେଡ଼େ ସ୍ନେହୀ, ଆଉ ପାରିଲାର ସେ ଥିଲେ ଲୋ ବଉଳ ! କାହାକୁ କିପରି ମୁଁ ବୁଝାଇ ପାରିବି ? ଭୂତ ପିଲା ବକଟେ, ଆମରି ଆଗରେ ମଣିକୁନ୍ଦ ଗାଆଁରେ ଗୋଡ଼ ଦେଇଛୁ ।

ମାଳତୀ କହିଲେ, ସତ, ସତ ଖୁଣ୍ଟିଆଘର ପୁଅ ! ଧନେ ତାଙ୍କ ଘର ଏ ଗାଆଁର ଗୋଟାଏ ଟାଣ ଖୁଣ୍ଟପରି ଥିଲେ । ସେହି ବଂଶର ସୁଧାର ପୁଅ ଥିଲେ ଝରିବାବୁ ।

ଝିଅ କହିଲା, ଶୁଣିଛି । ମୋ ଶଶୁର, ଦେ' ଶଶୁର ଦୁଃଖୀରଙ୍କୀ ଅତିଥି-ଅଭ୍ୟାଗତଙ୍କ ପତରରେ ବଢ଼ାହେଲା ଭାତ ଡାଲି ଚିଅଣ ମନ ଖୁସିରେ ଅଜାଡ଼ି ଦେଉଥିଲେ । ସେଇ ଘରର ପୁଅ ମୋ ଗେରସ୍ତ । ଗେଲରେ ଗେଲରେ ସମସ୍ତଙ୍କୁ ଲୁଚାଇ କେଜାଣି ଭାଙ୍ଗପାଣି ଚଳେ ପିଇଥିବେ । ଦେହରେ ବଳ ହେବ ବୋଲି ସଜ ଖଜୁରି-ରସ ଆଞ୍ଜୁଳାଏ ଢୋକିଥିବେ । ଜଗନ୍ନାଥ ମହାପ୍ରଭୁଙ୍କ ଅପମାନ ନ ହେବା ପାଇଁ କେବେ ଗଞ୍ଜେଇ-ଚିଲମ କପାଳରେ ଚ୍ଛୁଇଁଥିବେ ।

ସୁନା ଦେଈ କହିଲା, ହଁ, ସେଇଆ ।

ଟଶ୍ମ କହିଲା, ସେଇଆ ଯେ, ଏବେ ଦେଖ ତମ୍ବୁରୁ ମହାରଣା, ଖୁଣ୍ଟିଆଙ୍କ ପୁଅ, ଆଉ ତାଙ୍କର ଭଗତିଆ ସାଙ୍ଗମାନଙ୍କୁ । ସେମାନଙ୍କର କି ରୂପ ଥିଲା, ଏବେ କି ରୂପ ଧରିଲେଣି । ନିଶା ଦରବ ପେଟକୁ ଗଲେ ତାଙ୍କର ଯେଉଁ ତେଜ । ଦେଖିଛୁ ତ ସ୍ବା'ଙ୍କୁ । ସତେକି ପବନସୁତ ହନୁମାନ, କି ଭୀମସେନ ହୋଇଗଲେ ଦଣ୍ଡକ ପାଇଁ । ସେଇଠୁ ସେ ନିଶା ଉଣ୍ଡା ମୋଡ଼ିଦିଏ । ବେକ ମୋଡ଼ିଦିଏ । ତେବେ ବି ଅଠାକାଣ୍ଡିଆ ଛାଡ଼େ ନାହିଁ ।

ଆଗୋ, ଦେହରୁ ବଳ ଗଲା, ମୁଣ୍ଡରୁ ବୁଦ୍ଧି ହଜିଲା, ମନରୁ ସ୍ନେହ-ଶରଧା, ବିବେକ ଲୁଚି ପଳାଇଲା । ଅଠାକାଣ୍ଡିଆରେ ଲାଗି ଟିପି ଚଢ଼େଇ ଯେମିତି ଛଟିପିଟି ହେଉଥାଏ, ଯେତେ ଛଟପଟ ହେଉଥାଏ ସେତିକି ବେଶୀ ଲଟପଟ ହୋଇ ଲାଖି-ଯାଉଥାଏ, ନିଶାଖିଆର ଜୀବନଟା ସେମିତି କଲବଲ ବିକଳ ହେଉଥାଏ !

ସୁନା ଦେଈ ଅଁକୁଳ-ଆଖିରେ ବାହାରର ଅନ୍ଧାର ଆଡ଼କୁ ଅନାଇଁ ଦୀର୍ଘଶ୍ବାସ ଛାଡ଼ିଲା । ମାଲତୀ କହିଲେ, ମୋଠାରୁ ତୁ ସାତ ସାନ ଲୋ ଟଶ୍ମ ! ମତେ ଆଜି ତୁ ବ୍ରହ୍ମଜ୍ଞାନ ଶିଖାଇଲୁ । ଝିଅ କାହାର, ପୁଅ କାହାର ? ଧନ ଝିଅଙ୍କୁ ବାହା ଦେଲେ ଧନ କୋଳେ ପାଇବ । ସେହିମାନେ ହେବେ ମୋର ପୁଅ ।

ଶାଶୁ କହୁଛନ୍ତି ପୁଅ ନ ହେଲେ କିଏ ବଡ଼ବଡ଼ୁଆଙ୍କୁ ପାଣି ଟେକିବ ? ତାଙ୍କୁ ମୁଁ କହିଦେବି, ମୁଁ ପଛେ କେଉଁ ପୁରୁଷେ ଛଡ଼ା ଦିଅରଙ୍କ ପାଖରେ ହାତ ପାତି ପୁଅଟିଏ ମାଗି ଆଣିବି, ମୁଁ ସାହୁଙ୍କୁ କେବେ ନିଶା ଛୁଆଁଇ ଦେବି ନାହିଁ । ମୋ ସୁନା ଗେରସ୍ତଙ୍କୁ ମଦୁଆ, ଗଞ୍ଜୋଡ଼, ଅଫିମୀ ହେବାକୁ ଛାଡ଼ି ଦେବି ନାହିଁ । ଜାଣିଛି ମୋ'ର କପାଳରେ ପୁଅ ନାହିଁ । କପାଳ ଲିଖନ କେ କରିବ ଆନ ?

ଯାଉଛି ଗୋ ! ବହୁତ ଡେରି ହେଲାଣି । ଶିବବାବାଙ୍କ ପ୍ରସାଦରୁ ଅନ୍ଧାର ରାତିରେ ଗାଁ ଦାଣ୍ଡରେ ମୋ'ର କେଉଁ ଚଣ୍ଡୀଚାମୁଣ୍ଡା କିଛି କରି ପାରିବେ ନାହିଁ । ତାଙ୍କର ଜେଉଁରିଆ ପିନ୍ଧିଛି । ବଳେ ସେମାନେ ଆଡ଼େଇଯିବେ ।

ମାଲତୀ ଉଠିଲେ । ସୁନା ଦେଈକୁ ଅନାଇଁ ହସ ହସ ହୋଇ କହିଲେ, ଆଲେ, ବେଳ ବିଅଯ ମୋ'ର ନାହିଁ, ଯେ ପାରିବି ପୁଜି ଉପୁଜାଇ । ଆଲୋ ଝଶ୍ମ ! ବେପାର ବଣିଜ ଖବର ଅନ୍ତର ବୁଝି ମାହାଜନୀ ହିସାବପତ୍ର ଠିକଣା କରି ସାହୁଏ ରାତି ଅଧରେ ଅଗଣାକୁ ଆସନ୍ତି । ଶାଶୁ ବୁଢ଼ୀ ବସି ଢୁଳୁଉଥାନ୍ତି । ସେଇ ଉଠି ପୁଅଙ୍କୁ ବାଢ଼ି ଦିଅନ୍ତି । ମୋ'ର ଦି' କଡ଼ ନିଦ ହୋଇ ସାରିଥାଏ । ଏ ପାଖେ ହାନ ଝିଅ, ସେ ପାଖେ ମଝିଆଁ । ବଡ଼ଟା ଶାଶୁଙ୍କ ପାଖରେ କଣ-ବଖଟରେ ।

ଶାଶୁ ମତେ ଡାକି ଉଠାନ୍ତି । କହନ୍ତି ଯା', ପୁଅ ମୋ'ର ହାଲିଆ ହୋଇଛି, ତା ଗୋଡ଼ ଘଷିଦେବୁ ।

ଏଣିକ ମୁଁ ଜବାବ ଦେବ, କୋଉ ହାଣ୍ଡି ନ ଥିଲେ, ହାଲିଆ କାହିଁକି ହେବେ ? ଯାଇ ଶୋଇ ପଡ଼ନ୍ତୁ । ବୁଢ଼ୀ ଘର ଜଣେ ମ ! କଣ୍ଟାଳ କଲେ କହିବ, ବଡ଼ ନାରୁଣୀକୁ ପଠାଇ ଦିଅ । ତା' ହାତ ବେଶ କାଟେ ।

ଟେଙ୍ଗି ପଗ୍ଗରିଲା କାହିଁକି ଏପରି କହୁଛ ?

ମାଳତୀ କହିଲେ, ତମ ଜାଣିବାକୁ । ବାବାଙ୍କର ମୋ ପ୍ରତି ଦୟା ହେଲା ନାହିଁ । ଗୋଡ଼ ଘଷିବାକୁ ଯିବ କ'ଣ ଆଉ ଗୋଟାଏ ଝିଅର କୁଆଁ କୁଆଁ ଶୁଣେଇବାକୁ ? ଯାଉଛୁ ଲୋ । ମୋ'ର ପୁଅ ଲୋଡ଼ା ନାହିଁ । ଯେତିକ ହେଲା ସେତିକ । ତମର ସବୁ ଶିବବାବାଙ୍କ କଇଲଣରୁ ପାଞ୍ଚଟା ସାତଟା ଲେଖାଏଁ ପୁଅ ହେଉନ୍ତୁ । ପାଣ୍ଡୁ ରାଜାଙ୍କର ଦି'ଟା ଘରଯାକୁ ପାଞ୍ଚଟା ପୁଅ, କୁନ୍ତୀଙ୍କର ତିନଟାକୁ ମାଦ୍ରୀଙ୍କର ଯୋଡ଼ାଏ । ପାଣ୍ଡୁ ଅଣପୁରୁଷା ନ ଥିଲେ କ ହେଲ, ତା' ଠାରୁ ହୀନ ଥିଲେ । ଯଇତା ମାଇପଙ୍କର ଭେଟାଭେଟି ହେଉ ନ ଥିଲା । କୁନ୍ତୀ ଯେଉଁ ମନ୍ତ୍ର ଜାଣିଥିଲେ, ଶିବବାବା, ସେ ତ ସାକ୍ଷାତ୍ ମହାଦେବ, ଆମ ସୁନା ଦେଈଙ୍କୁ ସେ ସେହି ମନ୍ତ୍ର ଶିଖାଇ ଦେଇଛନ୍ତି । ତାଙ୍କର ଶରଣ ପଶ ଲୋ ଟେଙ୍ଗି । ତତେ ସେ ସେହି ମନ୍ତ୍ର ଦତାଇ ଦେବେ ।

ଦ୍ୱାରବନ୍ଧ ଆରପାଖରୁ ମାଳତୀ ମୁହଁ ବୁଲାଇ ପୁଣି କହିଲେ, ଯାଉଛୁ ଲୋ ! ପଛରେ ଗାଳି ଦେବ ନାହିଁ । ଦିନ୍ଥିଲେ ଆଉ କେବେ ଦେଖା ହେବ ଯେ ।

ମାତ ମାରିଲା ପରି କଥାଗୁଡ଼ିକ କହି ମାଳତୀ ଅନ୍ଧାରରେ ଉଭେଇଗଲେ ।

—୩—

ଟେଙ୍ଗି ଓ ସୁନା ଚକିତ, ସ୍ତମ୍ଭିତ, ନିର୍ବାକ୍ ହୋଇ ଅଗଣାର ଅନ୍ଧାର ଆଡ଼କୁ ଚାହିଁ ରହିଲେ ।

ଲେଖାପଢ଼ା ଝିଅ ସୁନା ମାଳତୀଙ୍କର କଥାର ମରମ ବୁଝିଲା । ଶୁଣି ଶୁଣି ଜାଣିଲା ଝିଅ ଟେଙ୍ଗି କ'ଣ ଯେପରି ଅନୁମାନ କଲା । ସୁନା ବେଖାତରିଆ ହସ ହସି ଦୋହଲି ଦୋହଲି ଟେଙ୍ଗିର ପିଠିରେ ଲେଟିପଡ଼ିଲା । ତା'କୁ ହାଲୁକା ହାତରେ କୋଳାଇ ଧରି, ହସ ଅମାଇଁ କହିଲା, ଦେଖିଲୁ ବଉଳ ! କେମିତି ସେ ନିଜକୁ ଧରା ପକାଇ ଦେଲା ? ମୁଁ ଆଗରୁ ଜାଣିଥିଲି, ଧନର ଗରବରେ ସେ ଘର ଫୁଲେଇ, ଏହା କଏ ନ ଜାଣେ ?

ସୁନାର ଆଲିଙ୍ଗନରୁ ନିଜକୁ ମୁକୁଳାଇ ଟେଙ୍ଗି ପ୍ରତିବାଦ କଲା, ସେମିତି କହନା ବଉଳ । ଧର୍ମପରର ବୋହୂ ହେଲେ କ'ଣ ଠାକୁର ଠାକୁରାଣୀ, ମୁନି ସନ୍ନ୍ୟାସୀଙ୍କର ଦୟା ପାଇବାକୁ ସେ ଉପଯୁକ୍ତ ନୁହନ୍ତି ? ପୁଅଟିଏ ପାଇବା ଆଶାରେ ସେ ବାବାଙ୍କର

ଶରଣ ପଶିଥିଲେ । ବାବା ତ ନିଜେ ମହାଦେବଙ୍କର କଳାରେ ଜନମ । ଜାଣ ନିଜେ ସେ ଶିବ-ଶଙ୍କର । ଗ୍ରହ ଡରିଲାଟାର କପାଳର ଲେଖା ଟିକିଏ ବଦଳାଇ ପାରିଲେ ନାହିଁ ଯେ ବଗ୍ରୁଷ୍ଟ ଶେଷକୁ ହତାଶ ହେଲା ? ତୁ ନିଜେ ବିଗ୍ଚର କର । ଦ୍ୱାରକା ମହାଜନ ଯଦି ନିଶା ଅମଳ ଧରି ମୋ' ଗେରସ୍ତଙ୍କ ପରି ଦରମରା ବାଉଳ ହୁଅନ୍ତେ, ତାଙ୍କର ଧନ ସମ୍ପତ୍ତି ଉଜୁଡ଼ି ଯାଆନ୍ତା ନାହିଁ ? ସେ ଯେଉଁ ଭାବ ଧରିଲେଣି, ସେମାନଙ୍କର ପୁଅଟିଏ ହେବ ବା କେମିତି ? ଯଦି ବାବାଙ୍କ ଦୟାରୁ ହୁଏ, ସେ କ'ଣ ଖାଇ ବଞ୍ଚିବ ? ଘରଭିହ ବି ବିକି ସରିଥିବ ଲୋ ! ମାଳତୀଦେଈଙ୍କୁ ଠାକୁରେ ଦୟା କରିଥିଲେ ତାଙ୍କର ମହିମାର ଟେକ ରହିଥାନ୍ତା ।

ସୁନା ଦେଈ କହିଲା, କାହିଁକି ଦୟା ନ କରନ୍ତେ ? ସେ ତ ସର୍ବଜ୍ଞ । ସମସ୍ତଙ୍କର ଭିତର ଓ ବାହାର ତାଙ୍କ ଆଖିକୁ ଜଳଜଳ ହୋଇ ଦିଶେ । ତମ ଦେହର ବସନ, ଆଉ ବସନ ତଳର ଚମ କ'ଣ ତମ ମନର କପଟତା ତାଙ୍କ ଆଖିରୁ ଛପାଇ ପାରିବ କି ବଉଳ ?

ମାଳତୀ ଦେଈଙ୍କ ମନରେ ଗୁଡ଼ାଏ ମଇଳା । ଠାକୁରଙ୍କୁ କ'ଣ ଅଜଣା ? ହଇଲେ ବଉଳ, ତାଙ୍କ ପେଟରାରେ ଲୁହାବାକ୍ସ ଲୁଚିଛି । ତା' ଭିତରେ ସୁନା-ମୋହର ଖୁନ୍ଦି ହୋଇଛି । କିଏ ଭୋଗ କରିବ ? ଝିଅଗୁଡ଼ାକ ପରଘରକୁ ଯିବେ । ଠାକୁରଙ୍କ ସେବା ପାଇଁ ସେଥିରୁ ଦି ମୁଠା ଆଣି ବାବାଙ୍କ ପାଦତଳେ ଥୋଇ ମୁଣ୍ଡିଆ ମାରିଲେ କୈଳାସରେ ସେହି ଶିବଶଙ୍କରଙ୍କର ଆସନ ଟଳନ୍ତା ନାହିଁ ? ମାଳତୀଙ୍କ କପାଳର ଲେଖା ବଦଳନ୍ତା ନାହିଁ ? ତୁ କହ ।

ଟେଁଶ ଚମକି ଉଠିଲା । ଡରିଲା କଣ୍ଠରେ ପଚାରିଲା, ମହାଜନ ଭାରି ଗାଢ଼ । ଭାରି ହିସାବୀ । ହିସାବ ରଖିଥିବେ । ଦେବାକୁ କ'ଣ ସେ ମଙ୍ଗିବେ ?

ସୁନା କହିଲା, ସେ ଜାଣିବେ କାହିଁକି ? ମାଳତୀ ଘରର ଘରଣୀ । ସେ ନିଜେ ଆଣିବେ । ପୁଅ ପାଇସାରିଲା ପରେ କହିଲେ କହିବେ । ମାଳତୀ ଦେଈଙ୍କୁ ମୁଁ ଗୁପ୍ତରେ ବୁଦ୍ଧି ବତେଇଥିଲି ।

ସେ ଓଠ ନେଫେଡ଼ି ଦେଲେ । କହିଲେ ଛୁଆଲୋ, ମୁଁ କାହୁଁ ପାଇବି ? ଲୋକେ ମିଛରେ ପରଚର୍ଚ୍ଚା କରୁଥିବେ । ଯାହା କହନ୍ତି, ନ ଦେଖିଲି ଓଉ ଛ'ଫଡ଼ା । ଦେଖୁନା ମୋ ଦେହକୁ । କାନରେ ଗ୍ରେଟ ଗ୍ରେଟ ସୁନା କଡ଼ି, ନାକରେ ନୋଳକ, ନାକପୁଡ଼ାରେ ନାଲିକାଚବସା ଲବଙ୍ଗ । ବେକରେ ନିରସା ସୁନାର ତାରଛିଦା ହାରଟିଏ ସେ ଭରିକରୁ ଊଣା । ହାତର ଖ୍ରିର ଖ୍ରିର ପଟି ରୂପାକାଚ, ଘୋରିହୋଇ ପାକୁଆ ହେଲାଣି । ଏଇଥିରୁ ବୁଝିବ, କେତେ ସୁନା ମୋହର ରଖିଛି ।

ଏଇଥିରୁ ବୁଝିବୁ ବଉଳ, କେଡ଼େ କପଟୀ ସେ ମାଳତୀ ଦେଈ । ଶିବବାବାଙ୍କୁ କ'ଣ ଅଛପା ? ତାଙ୍କ ପାଖରେ ତମେ ଆପଣାକୁ ସମର୍ପି ନ ଦେଲେ ତମର ମନ

ନିର୍ମଳ ହେଲ, ହୃଦୟରୁ ଅବିଶ୍ୱାସ ଓ କପଟ ଦୂର ହେଲା ବୋଲି ନ ଜାଣିଲେ ସେ ଦୟା କରିବେ କିପରି ? ତମ ମନକାମନା ପୂରଣ ହେବ କେମିତି ? ବୁଝିଲୁ ?

ଟେଙ୍ଗି ମୁହଁ ନ ଖୋଲି ମୁଣ୍ଡ ହଲାଇ ସ୍ୱୀକୃତି ଜଣାଇଲା । ସେ ଅନ୍ୟମନା ହୋଇ ମାଲତୀଙ୍କର ଉପଲକ୍ଷ ଦିଆ ଛଳ-ଛଟୁଳି ବଚନର ଉଦ୍ଦେଶ୍ୟ କଳନା କରିବାକୁ ଚେଷ୍ଟା କରୁଥିଲା ।

ମିରିଗର ରୂପ ଧରି କେଉଁ ମିରିଗୁଣୀ ସଙ୍ଗେ ଘେନାଘେନି ବେଳେ ଜଣେ ଋଷିଙ୍କୁ ଅଗନାଗିନ୍ନ ବନସ୍ତ ଭିତରେ ଗଛ ଲଟାର ଉହାଡ଼ରୁ ଅଜାଣତରେ ପାଣ୍ଡୁରଜା ଶର ବିନ୍ଧିଥିଲେ । ମରଣ ଆଗରୁ ଋଷି ତାଙ୍କୁ ଅଭିଶାପ ଦେଇଥିଲେ । କାହା ସଙ୍ଗେ ମିଶିବୁ ତ ଏମିତିବେଳରେ ଛାତି ଫାଟି ମରିବୁ, ଜାଣିଥା ।

ରାଜାଙ୍କର ଦୁଇ ଭାରିଯା । ଦେବତାଙ୍କ ଅଂଶରେ ସେମାନଙ୍କର ପାଞ୍ଚ ପୁଅ ହେଲେ । ପାଟରାଣୀ କୁନ୍ତୀଙ୍କର ବାହାଘର ଆଗରୁ ମନ୍ତ୍ରପଢ଼ି କୌତୁକରେ ଡାକୁଣୁ ସୂର୍ଯ୍ୟଠାକୁର ଆସିଥିଲେ, ଆଉ ତାଙ୍କର ଅଂଶରେ ପୁଅଟିଏ ହୋଇଥିଲା । ଲାଜରେ ତାଙ୍କୁ ପତର ଠୁଙ୍ଗାରେ ନଈସୁଅରେ ଭସାଇ ଦେଇଥିଲେ ।

ବଉଳ ସୁନା ଦେଇର କ'ଣ ସେମିତି ଶିବଙ୍କ ଅଂଶରେ ଶିବ ଚରଣ ପରି ଏଡ଼େ ସୁନ୍ଦର ପୁଅଟିଏ ହୋଇଛୁ ? ଆଉ କଅଣଟିଏ ହେବାକୁ ଯାଉଛୁ ! ବଉଳ କ'ଣ ଦୋଗ୍ଧାରୁଣୀ ହୋଇ ନାହିଁ ? ପଗ୍ଭରିବ କି ?

ତା'ର ଭୁମିଡାନଆଁ ଅନ୍ୟମନସ୍କ ଭାବ ଓ ମଉଳା ଗମ୍ଭୀର ମୁହଁ ଦେଖି ସୁନା ଦେଇ ପଗ୍ଭରିଲା, ତୁ କ'ଣ ଏତେ ଭାବୁଛୁ ? ଉତ୍ତର ହେଲାଣି । ରାତି ବଳଉଛୁ । ଶିବବାବାଙ୍କ ପାଦ ଧରି ତୋ ପାଇଁ ମୁଁ କେତେଥର ଗୁହାରି କରିଛି । କାଳିକା-ମାଈ ତା'ର ସାକ୍ଷୀ । ସେହି ଏକା ଦେଖିଛନ୍ତି । ନିସ୍ତୋଳା ରାତିରେ । ନିର୍ଘୁଷ୍ଟିଆ ନିକାଞ୍ଚନ ଥାନ ଦେବୀଙ୍କ ଆଗରେ । ଅନ୍ୟ ଭକତେ ଠାକୁରାଣୀଙ୍କର ପୂଜା-ଆରାଧନା ସାରି ବୁଲଯାଇଥାନ୍ତି । ବାବା ଶିବ ରୂପ ଧରି ଦେବୀଙ୍କ ସଙ୍ଗେ ଆଳାପ କରନ୍ତି । ହସ-ଖୁସିରେ ।

ଟେଙ୍ଗି ବିସ୍ମୟରେ ଅଭିଭୂତ ହେଲା । ପଗ୍ଭରିଲା, ଶୁଣିଛୁ ?

ସୁନା ଦେଇ ଉତ୍ତର ଦେଲା, ପରତେ ଯାଉନୁ ? ଅବିଶ୍ୱାସ କରୁଛୁ ? ଅରେ ଲୁହ, ସହସ୍ର ଥର ମୁଁ ଶୁଣିଥିବି । ବାବା ଶିବ ଅବତାର ପ୍ରକଟ କଲେ, କାଳିକା-ମାଈ ଦୁର୍ଗା ରୂପ ଧରନ୍ତି । ସେମାନେ ଗେରସ୍ତ-ଭାରିଯା । ସୁଖ-ଦୁଃଖ ହେବେ ନାହିଁ ? ଭକତମାନଙ୍କ ସୁଖ-ଦୁଃଖ ଖବର ଅନ୍ତର ଆଲୋଚନା କରିବେ ନାହିଁ ?

ତୋ' ଆଗରେ ? ଟେଙ୍ଗି ପଗ୍ଭରିଲା ।

ସୁନା ଦେଇ ଜବାବ ଦେଲା, ମୁଁ ତାଙ୍କର କଙ୍କରୀ । ସବୁ ଭଗତ ତାଙ୍କର କଙ୍କର-କଙ୍କରୀ; ଜାଣ, ପୁଅ ଝିଅ । ସେମାନେ ସର୍ଜନା, ପାଳନା, ଆଉ ବିନାଶ

କରନ୍ତି । କିଏ ଅଛି, ନ ଅଛି ସେଥିକି ତାଙ୍କର କି ମୂଲ୍ୟଇଜା ? ତେବେ, ହଁ, ମହାଦେବ ଅବତାର ହୋଇ ଷୋଳକଳାରେ ମଣିଷଦେହ ଧରିଛନ୍ତି, ଶିବବାବା ହୋଇଛନ୍ତି । ତାଙ୍କର ବଚନ ମଣିଷକାନରେ ତମେ ଶୁଣିବ । ବୁଝିବ । କାଳିକା-ମାଈ ଯେ ଦୁର୍ଗାଠାକୁରାଣୀ । ତାଙ୍କର ମୂର୍ତ୍ତିରେ ସେ ଅବତରିବେ ପିନା, ସେ ମୂର୍ତ୍ତିର କଥା ତମେ ଶୁଣିବ କିପରି ? ଶୁଣିବ ଯେ, କାନରେ ନୁହେ, ମନରେ । ବୁଝିଲୁ ବଉଳ ?

ଉରତର ଟେଞ୍ଚ କହିଲା, ହଁ, ବୁ-ଝି-ଲି ।

ସୁନା ଦେଈ କହିଲା, ତୋ’ ପାଇଁ ଗୁହାରି କଲାରୁ ବାବା ଶେଷକୁ ମାନିଲେ । ତୋ’ ପାଇଁ ସେ କାଳିକାମାଈଙ୍କୁ ମନାଇଛନ୍ତି । ସେ ତୋ’ ଦେହରେ ପଡ଼ିକି ପାଇଁ ବରଜିବେ । ତୋ’ ଭିତରେ ଥିବା ରାମଣ୍ଡା ଛୁଞ୍ଚୁଆଁ ହୋଇ ଦଣ୍ଡକ ଭିତରେ ଆପଣା ଗ୍ରୁଏଁ ପ୍ରାଣ ବିକଳରେ ପଳାଇବ । ତା’ ତରିଛ ତାକୁ ଗୋଡ଼ାଇବ ଲୋ ବଉଳ ! ଆଉ କେବେ ସେ ତୋ’ ପାଖ ପଶିବକୁ ସାହସ କରିବ ନାହିଁ ।

ଟେଞ୍ଚ ବୁଝିଲା । ଆଲୁଅ ଆଡ଼କୁ ଚାହିଁ କହିଲା, କାଚଟା ଉପର ଆଡ଼ୁ କଳା ହୋଇ ଆସିଲଣି । ତୁ ବସିଥା ବଉଳ, ମୁଁ ସଫା କରି ଦିଏଁ । ସେମାନେ ଆଜି କାହିଁକି ମେଳ ହୋଇ ଆସି ଦାଣ୍ଡରେ ପାଟିତୁଣ୍ଡ କରୁଥିଲେ । ଆଉ ପାଟି ଶୁଭୁ ନାହିଁ । କୁଆଡ଼େ ସବୁ ଗଲେଣି ଏ ଅନ୍ଧାର ରାତିରେ । ତାଙ୍କର କ’ଣ ଡରଭୟ ନାହିଁ ? ସମସ୍ତେ ମିଶି ଆଜି କ’ଣ ଗୋଟାଏ ମତଲବରେ ଯାଇଛନ୍ତି ।

ସୁନା ଦେଈ କହିଲା, ସେମାନେ ଗ୍ଲଗଲେଣି ଯେ ଦାଣ୍ଡରେ କିଏ କଥା-ଭାଷା ହେଉଛନ୍ତି । ଆଲୁଅ ଝିକ୍‌ର ଅଲପ-ଝଲସା ଅନ୍ଧାର ଅଗଣାକୁ ଆସୁଛି । ଭଅଁରା ବାଉଁଶ, ଆଉ ତା ବୋଉ ଆସିବେଣି । ତୁ ଡେରି କରନା । ଘରଭିତର ଅଣନିଶ୍ୱାସୀ ଲାଗୁଛି । ମୁଁ ଦାଣ୍ଡକୁ ଯାଉଛି ।

ଟେଞ୍ଚ ଡେରି କଲା ନାହିଁ । ଲଳଟେଣ ସଫାକରି ପୁଣି ଜଳାଇଲା । ଡିବିରି ଦିଓଟି ଜଳାଇ ଭିତର ପାଖ ପିଣ୍ଡାରେ ଓ ବାଟଘର ଠଣାରେ ରଖିଲା । କୋଠରି-ଗୁଡ଼ିକରେ କୋଲପ କଳି ଅଣ୍ଟାରେ ବାନ୍ଧିଥିବା ଡୋରରେ ଚାବି ପେନ୍ଥିକି ଝୁଲାଇଲା । ଲୁଗା ଝାଡ଼ି ଚାଲିବାକୁ ସଜ ହେବ ବୋଲି ସଜାଡ଼ି ପିନ୍ଧିଲା । ଯେଉଁ ବାଉଁଶ ପାଚିଆ ନୂଆ ଝୁଡ଼ିରେ ସେ ଆଗରୁ ଫୁଲ, ଚନ୍ଦନ, ସିନ୍ଦୂର, ପାଚିଲା କଦଳୀ ରଖିଥିଲା, ତାକୁ ଗୋଟିଏ ହାତରେ ଓ ଆର ହାତରେ ଲଳଟେଣ ଝୁଲାଇ ଦାଣ୍ଡକୁ ଆସିଲା ।

ଭଅଁରା ଓ ତା ବୋଉକୁ କହିଲା, ଆଜି ପୂଜାର ଦିନ, ସହଳ ଆସିବାକୁ କହିଥିଲି ଯେ, ଉଛୁର କରି ଆସିଲ ? ରାତି ପହରେ ହେଲାଣି । ପୂଜା ଶେଷ କରି ଫେରିବାକୁ କେଡ଼େ ଡେରି ହେବ କହିଲ ? କୁଆଡ଼େ ରହିଗଲ ମ !

ସେମାନଙ୍କର ଆଲୋଚନା ଅଧାରୁ ଅଟିଗଲା । ସୁନା ଦେଇ ଟିକଏ ବିବ୍ରତ ଓ ଉତ୍ତେଜିତ ହେଲାପରି ମନେ ହେଉଥିଲା । ସେ ଖରଶ୍ୱାସ ଛାଡୁଥିଲା । ତା ମୁହଁଟି ଉଜ୍ଜ୍ୱଳ ନାଲଟଣ ଆଲୁଅରେ ସ୍ପଷ୍ଟ ଦେଖାଯାଉଥିଲା ।

ଭଅଁରି କହିଲା, ମୋ'ର ଦୋଷ ନାହିଁ, ବୋହୂମା । ସାଆନ୍ତେ ମତେ ଯେଉଁ କାମରେ ବରଗିଥିଲେ, ସେତକ କରିବାକୁ କେତେ ଆଉ ବୁଲିଲି । ଯାହା ହେଉ, ମାଲ୍ ମିଳିଗଲା । ଶଳା ଦହୁଚ ରଖିଛି । ଭାରି ଚଢ଼ା ଦର୍ । ସା'ନ୍ତଙ୍କ ବାଟରେ ଭେଟିଲି । ଦେଲି । ଆଣି ନ ଥିଲେ ସେ ମୋ' ପିଠିରୁ ଛାଲ ଉତାରି ଦେବେ, କହିଥିଲେ । ମୋ'ର କି ଦୋଷ ? ଘରକୁ ଆସିଲି । ପଖାଳ ଗଣ୍ଡାଏ ଖାଇ ଆଲୁଅ ଧରି ବୋଉକୁ ସଙ୍ଗରେ ନେଇ କେତେବେଳରୁ ତ ଆସିଲିଣି । ତମେ ସେ ଘରେ କଥାଭାଷା ହେଉଛ ।

ଭଅଁରି ମା କହିଲା, ମୁଁ ବେଶୀ ବେଶୀ ଅନ୍ଧାରକାଣୀ ହେଉଛି ସାନ୍ତାଣୀ ! ଅନ୍ଧାରରେ ବାଟ ଠାବ କରିପାରୁ ନାହିଁ । ସାହାସିଆ ପଣରେ ଠାସୁକି ମାରି ଚନ୍ଧା ବାଟରେ ଆସୁଣୁ କେଉଁଠି ଯାଇ ହାବୁଡ଼ୁଛି । ଭଅଁରିକୁ ଗୁହିଁ ବସିଥିଲି ତ !

ଟଗ୍ରି କହିଲା, ତମେ ଦହେଁ ଘର ଜଗିଥାଅ । ଆରେ ଭଅଁରି, ଗୋରୁ-ଗୁହାଳରେ ପସି ଧୂଆଁ ଦେବୁ । କୁଣ୍ଡା ତୋରାଣି ମୋହିବୁ । ସେମାନେ ଛଟପଟ ହେଉଛନ୍ତି । କଥା ନହସରେ ମୁଁ ଭୁଲିଯାଇଛି । ବଉଳ ସଙ୍ଗରେ ମୁଁ ଧଅସି ଫେରିବି ଯେ ! ପୂଜା ସରିବାକୁ ଯଦି ଟିକଏ ଡେରି ହୁଏ, ମୋ ଆଗରୁ ଯଦି ତମ ସାଆନ୍ତେ ଫେରି ଆସନ୍ତି—'

ଟଗ୍ରି ତା' କଥା ଅଧା ରଖିଲା । ବିଗୃରିଲା, କେଜାଣି ସେ ଭଲ ମଣିଷ ହୋଇ ଫେରିବେ, କି କେଉଁ ନିଶା କବଳରେ ପଡ଼ି, ମତୁହୁଗ୍ରି ହୋଇ ଟଳଟଳ, ବାଟଯାକ ଅଟକ ଅଟକ, ପଡ଼ି ଉଠି ଦେହ ଖଣ୍ଡିଆ ଖାବରି କରି ଫେରିବେ ? ଅବା ନିଶା ଗୁଡ଼ିବା ଯାଏ ଜ୍ଞାନହୁଗ୍ରି ହୋଇ କେଉଁଠି ଶୋଇ ପଡ଼ିବେ ? ଆହା, ରେ କପାଳ !

ଟଗ୍ରିର ଭାବନା ଭାଙ୍ଗି, ତା' ମନରୁ ଦକ ତଡ଼ି ଭଅଁରି କହିଲା, ତମ ଆଗରୁ ସେ ଫେରିଲା ପରି ଲାଗୁ ନାହିଁ ବୋହୂମା ! ଯଦି ଫେରନ୍ତି, ମୁଁ ଟେଇଁ ବସିଥିବି । ତାଙ୍କର ଯତ୍ନ ନେବି ।

କେତେବେଳୁ ସୁନା ଦେଇ ପାହାଚ ଓହ୍ଲାଇ ଦାଣ୍ଡରେ ଠିଆ ହୋଇଥିଲା । ସେ ଉଚ୍ଛନ୍ନ ହୋଇ ଡାକି କହିଲା, ଆଉ ଡେରି କର ନା ମ ! ଆମର ଆଲୁଅ କି ହେବ ? ଥୋଇଦେଇ ଆ । ଶିବବାବାଙ୍କ ସେବା ପାଇଁ ଯିବା ଲୋକର ବାଟରୁ ନ' ନୂଆଣି ଦୂରେଇ ଯାଆନ୍ତି । ଭୂତପ୍ରେତ ଓ ଡାହାଣୀ ଚିରୁଗୁଣିମାନେ, ଯେତେ ଅନ୍ଧାର ବଲବଲ ଝାଁଝାଁଆ ସ୍ଥିତ ହୋଇଥାଉ, କୁଆଡ଼େ ଲୁଚିଛପି ଯାଆନ୍ତି ! ଗ୍ଳଲଆ ।

ଅନ୍ଧାର ଆଖିସହା ହେଲା ।

ସୁନା ଦେଇ ହାତରେ ନଲଣ୍ଠଣ ଝୁଲୁଥାଏ । ବତ୍ତି କମାହୋଇ ଆଲୁଅ ଅଳପ ଜଳୁଥାଏ । ସେମାନଙ୍କର ଗୃହପାଖରେ ଖଣ୍ଡେଦୂର ଯାଏ ଉଜ୍ଜ୍ୱଳ କରୁଥାଏ । ବଉଳ ଦହେଁ ବନ୍ଧ ଉପରେ ପାଖକୁ ପାଖ ଲାଗି ଧୀରେ ଧୀରେ ଗୃହଥାନ୍ତି । ଆଲୁଅ ସାହାଯ୍ୟ ନ କରି ବରଂ ଆଖି ଜଳକା କରୁଥାଏ ।

ଦୁହେଁ ଚୁମାଚାମା । ଦୁହିଙ୍କର ଗୋଡ଼ ଛନ୍ଦବାନ୍ଧ ହେଉଥାଏ । ଆଲାପର ସବୁ ବିଷୟ ସରେକ ସରିଯାଇଥାଏ । ଅଣଓସାରିଆ ନଇବନ୍ଧ । ତା ଉପରେ ପଡ଼ିଥିବା ଚଲାବାଟର ସାପଗତିଆ ଅସ୍ପଷ୍ଟ ଧୂଳିଆ ଆଭାସ । ଜ୍ୟେଷ୍ଠ ମାସ ଅନ୍ଧାର ପକ୍ଷ ଦ୍ୱାଦଶୀର ପ୍ରଥମ ପ୍ରହର । ଚଲ୍ଲ ବଉଦର କାନ୍ଦ ଉହାଡ଼ରେ ତାରା-ଛପିଲା ନଥର ଆକାଶ । ତା'ତଳର ଗୁଳୁଗୁଳିଆ ବାଆ-ନ-ଥିଲା ଝାଁଇ-ଝାଁଇଆ ନଗ୍ରଟିଆ ପରିବେଶ । ବଉଳ ଦହେଁ ବାଟ ଗୃହଥିଲେ । ଅଭ୍ୟାସପାଲଟା ପାଦ ଆପେ ଆପେ ସ୍ରାହା ଠାବ କରୁଥାଏ । ଦେହ ଝାଳେଇ ଉଠୁଥାଏ ।

ବାଁ ପାଖରେ ବାଲିଆ ବିସ୍ତୀର୍ଣ୍ଣ ନଇପଠା । ସେଇଠୁ ନଇଖଣ୍ଡି । ତା' ତଳକୁ ଲମ୍ବିଥିବା ଧୂସର ବାଲି । ସରୁଆ ଅଣଗହୀର ପାଣିଧାର । ପୁଣି ଟିକେ ଉଚ୍ଚ ଝଣ୍ଡି ପରେ ସେପାଖର ନଇବନ୍ଧ, ଗଛଗହଳି । ଡାହାଣ ପାଖରେ ବନ୍ଧତଳ ବାରିବଗିଚ୍ଛ, ଗୃଷଜମି, ଗ୍ରେଷ୍ଟ କରନାଲୀ, ସାହିର ଘରଧାଡ଼ି ।

ଅନ୍ଧାରର ଆବରଣ ତଳେ ସବୁ ଅସ୍ପଷ୍ଟ । ସେ ଆଡ଼କୁ ଗୃହିଁବାକୁ ଆଗ୍ରହ ନାହିଁ । ଦେଖି ଦେଖି ଆଖି ଅଭ୍ୟସ୍ତ । ମନରେ ବି ସବୁ ଦୃଶ୍ୟ ଲାଖିରହିଛି । କିନ୍ତୁ ଚେତନା ଦେଖୁଛି ଭିନ୍ନ ରୂପ ।

ଆଖି ଜଳ ଜଳ ଗୃହିଁଛି । ପାଦ ଧୀରେ ଧୀରେ ଓଟାରି ନେଉଛି ଦେହକୁ । ପ୍ରତ୍ୟୟର ଅଦେଖା ଡୋରି ଲାଗିଛି ଝଗର ଅଦମନୀୟ ଆଶାରେ । ଆଜି ତା' ଭିତରର ଗୃମଣ୍ଡା ବଦାବଦ ହୋଇଯିବ । ସ୍ୱୟଂ ମହାଦେବ ଶଙ୍କରଙ୍କର ଷୋଳକଳା ନେଇ ଜନ୍ମ—

ତାଙ୍କର ଅବତାର ଶିବବାବା କରୁଣା କରିବେ । କାଳିକାମାଈ ଦୁର୍ଗା ରୂପରେ ତା' ଦେହରେ ପ୍ରସନ୍ନ ହେବେ । ତେବେ ଯାଇଁ ଶିବବାବା ତାଙ୍କର ଶିବ କଳାର ଧାପେ ତା' ଦେହରେ ଥାପନା କରିବେ ।

ସେ କଳାର କଳନା ନାହିଁ । ସେହି କଳା ଅକ୍ଷୟ । ତାର ଅନ୍ତ ନାହିଁ । ସୁନା ଦେଇ କେତେଥର ଏ ସବୁ କଥା ତା'କୁ ବୁଝାଇ କହିଛି । ଶିବକଳାରେ ଝଗଆର ପୁଅ ଜନ୍ମ ହେବ । ଫଗୁଟୁଣ୍ଡିଆ ଓ ତାଙ୍କ ପୂର୍ବପୁରୁଷଙ୍କ ଅଂଶ ଏ ଦୁନିଆରେ

ଥାମତି ହେବେ । ଝିଅ ନିଶ୍ଚୟ ବାଟକୁ ଆସିବ । ସେ ପୁଅମୁହଁ ଦେଖି ସବୁ ବଦ୍‌ଖୋଇ ଛାଡ଼ିବ । ସମ୍ପତ୍ତି ବଢ଼ିବ । ସମସ୍ତେ ସେମାନେ ସୁଖରେ ରହିବେ ।

ଟଚାର ଛାତି ତଳେ କ'ଣ ଯେମିତି ଆଉଣ୍ଡି ହେବାକୁ ଲାଗିଲା । ସେହି ଅଲକ୍ଷଣୀ ଚାମୁଣ୍ଡା ହୋଇଥିବ ! ଏ ପିଣ୍ଡରେ ତା'ର ରହଣିର ବେଳ ସରିଆସିଲାଣି । ସେ ଜାଣିପାରିଲାଣି । କାବୁ ହେଲାଣି । କଳବଳ ଛଟପଟ ହେଲାଣି । ସେ କ'ଣ ଟଚାର ପିଣ୍ଡରୁ ବାହାରି ଯିବାକୁ ଆତୁର ହେଲାଣି ?

ଟଚାର ମୁଣ୍ଡ ସାମାନ୍ୟ ଭ୍ରମିବାକୁ ଲାଗିଲା । ପାଦ ଅବାଟରେ ପଡ଼ିଲା । ଦେହ ଟଳଟଳ ହେଲା । ବାଁ ହାତରେ ସୁନାର ଡାହାଣ କଚଟି ଧରି କହିଲା, ଟିକିଏ ରହ ବଉଳ ! ଦେହଟା କେମିତି ଥରିଲାପରି ଲାଗୁଛି ।

ସୁନା କହିଲା, ସତେ ତ ! ତୋ' ହାତ ଥରୁଛି । ଜାଣି ପାରୁନୁ, ଏଇଠି ବନ୍ଧରୁ ତଳକୁ ଗଡ଼ିବାକୁ ହେବ ? ହେଇ କ'ଣ, ବନ୍ଧ ଗଡ଼ାଣି ତଳେ ସେହି ପୁରୁଣା ଥୁଣ୍ଟାଳିଆ ଆମ୍ବଗଛଟା ! ତା' ପାଖର ଶାହାଡ଼ା ଗଛରେ ସାହାଡ଼େଇ ଠାକୁରାଣୀ ଅଛନ୍ତି । ଆସ୍ତେ ଗଡ଼ି ଚାଲ୍‌କି, ସେହି ଗଛ ତଳେ ଟିକିଏ ବସିବୁ । ଆ, ମୁଁ ତୋ' ହାତ ଧରୁଛି । ହାଉଲେ ଓହ୍ଲା ।

ଆମ୍ବଗଛ ମୂଳେ ଆଲୁଅ ତଳେ ରଖି ସୁନା ଟଚାର ହାତରୁ ଫୁଲ ଚାଙ୍ଗୁଡ଼ିଟି ଧରିଲା । କହିଲା, ବସିଯା ଟିକିଏ । ଆଜି କ'ଣ ତୋ'ର ଖିଆପିଆର ଠିକଣା ନ ଥିଲା ? ଘରଯାକର କାମ କରି ହାଲିଆ ହୋଇଥିଲୁ ? କିଛି ନ ଖାଇ ନ ପିଇ ଖାଲି ପେଟରେ ଚାଲି ଆସିଛୁ ? ଘରକୁ ଘରଣୀ ଏକା ହେଲେ ଯାହା ହୁଏ । ଅପା ଆମ ଘରକୁ ଆସିବା ଯାଏ, ମୁଁ ଯାହା ଭୋଗୁଥିଲି ସେଇଆ ।

ଟଚା କପାଳରେ ଦୁଇ ହାତ ଦେଇ ଆଖି ବୁଜି ସୁନାର କଥା ଶୁଣୁଥିଲା । ସତ ଯେ, ଉପାସ ଭୋକରେ ବେଳେ ବେଳେ ତା'ର ସମୟ କଟେ । ଦେହ ଥରେ । ମୁଣ୍ଡ ଝାଇଁଝାଇଁ ହୁଏ । ତଥାପି, ତା'ର ଦେହରେ ମାଉଁସ ଲାଗେ । ଅସଲ କଥାଟି ସେ ଭୁଣ୍ଡି ଖୋଲି ପ୍ରକାଶ କରି ପାରିବ ନାହିଁ । କିପରି ସେ କହି ପାରିବ ଯେ, ଏଇଟା ଚାମୁଣ୍ଡାର କାମ ! ହେଇଟି, ସେ ବାହାରି ଯାଉଛି ।

କିଛି ସମୟ ପରେ ସେ କପାଳ ଉପରୁ ହାତ ଓହ୍ଲାଇଲା । ଆଖି ଖୋଲିଲା । ଦେହଟା ଲଘୁ ହେଲାଣି । ଛାତି ଭିତର ଶାନ୍ତ ପଡ଼ିଲାଣି । ଯୋଗିନୀଟା ତା' ଦେହ ଛାଡ଼ି ପଳାଇ ଯାଇଛି । ତା'ର ବିକଟାଳ ରୂପ ଦୂରର ଗଛ ଗହଳିର ନିଘଞ୍ଚ ଅନ୍ଧାର ସାଥିରେ ମିଶିଗଲାଣି । ସେ ଏବେ ତା'ର ଦାଉରୁ ମୁକ୍ତ ।

ଟଚା ଉଠିଲା । ପବନ ସୁଲୁସୁଲୁ ବହିଲାଣି । ଝାଳୁଆ ଦେହ ଉଲୁସାଉଛି । ଦେହରେ ନୂଆ ଜୀବନ ସଞ୍ଚାରୁଛି । ମନ ପ୍ରଫୁଲ୍ଲ ହେଉଛି । ଚାହିଁଲା, ସୁନା ଅଳପ ଦୂରରେ ହାତରେ ଆଲୁଅ ଧରି କେଉଁମାନଙ୍କ ସଙ୍ଗରେ ଆଳାପ କରୁଛି । ସ୍ତ୍ରୀଲୋକ-

ଗୁଡ଼େଏ । ପୁରୁଷ କେଇଜଣ ଦଣ୍ଡାଗ୍ରସ୍ଥା ଉପରେ ଠିଆ ହୋଇଛନ୍ତି । ସେମାନେ ବ କଥାଭାଷା ହେଉଛନ୍ତି । ଦିଆସିଲି କାଠି ଜଳାଇ ବଡ଼ି ଟାଣୁଛନ୍ତି ।

ଟଗ୍ର ସୁନା ପାଖକୁ ଗଲା ।

ସେମାନେ ଗାଁର ମାଇପେ । ଅଧା-ବୟସିଆ । ଚହ୍ଲା ଚହ୍ଲା ଲାଗୁଛି । କଏ କାହାର ଘରଣୀ, କ ମା', ଗୁଡ଼େଇ ଟଗ୍ର ଜାଣେ ନାହିଁ । ସମସ୍ତେ ସଧବା । ସେମାନଙ୍କର ସ୍ୱାସ୍ଥ୍ୟ, ପିନ୍ଧିଥିବା ଶାଢ଼ୀ ଓ ଦେହର ଗହଣା ଜଣାଇ ଦେଉଛି ଯେ ସେମାନେ ଖିଲାପରର ଘରଣୀ ।

ଜଣେ ସ୍ନେହଶୀଳା ଟଗ୍ରର ପିଠିରେ ହାତ ଥାପଡ଼ି କହିଲେ, ଦେଖ ମ ଖୁଣ୍ଟିଆପରର ବୋହୂକୁ । କ ଶୋଭା ରୂପ ! କଏ ଗାଁରେ ତା'ର କେବେ ଗ୍ରୁଇ ମାଡ଼ିଛି ! ଘରକୁ ଏକା । ଆହା, ଭାର ଦୁଃଖୀଟିଏ । ଶୁଣିଛି, ଜନମରୁ ଦୁଃଖୀ ! ସତେ ବାବା ତାକୁ ଦୟା କରିବେ, ପୁଣି ଖୁଣ୍ଟିଆ ଘର ଆଗପର ହସିଉଠିବ ?

ସେ ମଣିଚଉଧୁରୀଙ୍କ ଘରଣୀ ତାରା । ରଙ୍ଗ ଉଣା ହେଲେ କ ହେବ, ମୁହଁଟି କୁନ୍ଦଲ ପରି । ଗ୍ରେଟ, ଖାଖ ନାକ । ମାଲାକାର ଘରର ବୋହୂ । କୁଲବେଳସା ଶଶୁରଙ୍କ ଅମଳରୁ ଗ୍ରୁଡ଼ିଲେଣି । ମଣି ଚଉଧୁରୀ ଗାଆଁର ଜଣେ ବଡ଼ ଗୃହୀ । ମାମଲତ୍କାର । ବଡ଼ପୁଅ କଲିକତାରେ କେଉଁ କାରଖାନାରେ ବଡ଼ମିସ୍ତ୍ରୀ କାମ କରେ । ସାତ ଶହ ଟଙ୍କା ଦରମା । ବଡ଼ ବୋହୂ, ଦିଓଟି ନାତି ଓ ସ୍ୱର ମାସର ନାତୁଣୀ ପୁଅ ପାଖରେ । ସ୍ୱଚମତ ଟଙ୍କା ପଠାଏ ।

ଚଉଧୁରୀ ଶିବବାବାଙ୍କ ନାମରେ ଚାରି କଥା ଶୁଣି, ନଜେ ଆଖିରେ ଦେଖିଲି ପରି ପାଞ୍ଚ କଥା ଯୋଡ଼ି ପ୍ରଚ୍ଛର କରନ୍ତି । ତାଙ୍କ ସ୍ତ୍ରୀ କନ୍ତୁ ବେଳେ ବେଳେ ମଠକୁ ଆସି ବାବାଙ୍କୁ ମୁଣ୍ଡିଆ ମାରି ଯାଆନ୍ତି । ପିଲାମାନଙ୍କୁ ଘଣ୍ଟ ଘୋଡ଼ାଇ ରଖିବାକୁ ମାନସିକ କରନ୍ତି । କାଳିକାମାଈଙ୍କ ପାଖରେ ଭୋଗ ଲଗାଇ ସେ ଭୋଗ ମଠରେ ରୁଣ୍ଡହୋଇଥିବା ଲୋକଙ୍କ ଭିତରେ ବାଣ୍ଟିଦିଅନ୍ତି ।

ଭୋଗ ଲଗାଇବାକୁ ପୂଜାରୀ ନାହିଁ । ଅଲଗା ଲୋକ ବି ନାହିଁ । କାଳିକାମାଈ ସମସ୍ତଙ୍କର ମା । ସେ ବାସନାଭୋକ୍ତ୍ରୀ । ତାଙ୍କୁ ଯିଏ ଯାହବ, ସେ ତା'ର ବାସନା ଗ୍ରହଣ କରିବେ । ତାଙ୍କ ପାଦତଳୁ ଫୁଲଟିଏ, ଚନ୍ଦନ, ସିନ୍ଦୂର, ପାଣି ଯାହା ଟିକିଏ ଆଣି ଭୋଗରେ ଲଗାଇଲେ, ସେ ଭୋଗ ପ୍ରସାଦ ହୁଏ । ବାହାର ଆଜ୍ଞା, ନା ଶିବବାବାଙ୍କର ଆଜ୍ଞା ।

ତାରା ଚଉଧୁରାଣୀଙ୍କ କଥା ଶୁଣି ବକଲ ନନ୍ଦଙ୍କ ଘରଣୀ ଲତିକା କହିଲେ, ଏ ଝିଅକୁ ଦେଖିଲେ କଏ କହିବାକୁ ସାହସ କରିବ ଗୋ, ଯା ଭିତରେ କେଉଁ ଚଣ୍ଡୀ ଚାମୁଣ୍ଡୀ ଥାଇ ବଂଶ ପଦା କରି ଦେଉଛି ? ଶୁଣିଛି, ଝୁଣ୍ଟିଅଙ୍କ ପୁଅ ଝରିଆ ପ୍ରାଣ-

ବକଲରେ ବାବନାଭୂତ ହୋଉଛ । ହାତ ଧଲେ ଘରଣୀର ଟାଣ ଶୁଣୁନାହିଁ । ଖାଲି ପଦାରେ ପଦାରେ ବୁଲୁଛ । ପ୍ରାଣ ବଞ୍ଚାଇବାକୁ ଶିବଶଙ୍କର ଭୋଳାନାଥ ବାବାଙ୍କର ଆଶ୍ରା ନେଇଛନ୍ତି । କି ସଂସାର ସେମାନେ ଆଉ କରିବେ ? ଆଣ୍ଠୁକୁଡ଼ା ଅଣ୍ଠୁକୁଡ଼ୀ ହେଲେ ଖୁଣ୍ଟିଆ ବଂଶରେ କିଏ ରହିବ ଯେ ପୂର୍ବପୁରୁଷଙ୍କୁ ପାଣି ଟେକିବ ? ଶିବବାବା ଯଦି ଏ ଝିଅଙ୍କୁ ଦୟା କରିବେ —

ପାକୁଆ ପାଟିରେ ହସ ଖେଳିଗଲା । ସୁବର୍ଣ୍ଣବର୍ଣ୍ଣ, କଖାରୁ-ଦେହ, ଛୋଟ-ମୁଣ୍ଡୀ, ବେଙ୍ଗୁଲି-ବଦନୀ ବକଲା ନନ୍ଦଙ୍କ ସ୍ତ୍ରୀ ଲଇକା ଚୁ ଚୁ କଲେ । ବୟସ ବେଶୀ ନୁହେଁ, କିନ୍ତୁ ତାଙ୍କୁ ଅକାଳେ ବାର୍ଦ୍ଧକ୍ୟ ଘୋଟିଛି । ଏଗାର ବର୍ଷରେ ବାହା । ପନ୍ଦର ବର୍ଷ ବୟସରେ ପୁଆଣୀ । ସତର ବର୍ଷ ବୟସରେ ପ୍ରଥମ ପୋଖତ । ଦୁଇ ବର୍ଷରୁ ତିନି ବର୍ଷ ଗୁଡ଼ା ଗୁଡ଼ିକା ଝିଅ ଜନମ ଗୁଳୁଛି ଯେ ସବା ସାନଟିକୁ ଛ' ଗୁଳଲାଣି ।

ଝିଅମାନେ ଭଲ ଭଲ ଘରର ବୋହୂ । ରୂପ ଦେଖି ସମୁଦିମାନେ ଯାହା କହନ୍ତି ତୁଳସୀପତ୍ର ପାନ ନେଇଛନ୍ତି । ଘର ପୁଅରୁ ବଡ଼ ଦହେଁ ପାଠପଢ଼ି କେଉଁଠି ଚାକିରି କଲେଣି । ମଝିଆଁ ଦଡ଼ ଭାଇଙ୍କ ପାଖରେ ପଢୁଛି । କୋଡପୋଛାଟି ଗାଁରେ ପଢୁଛି ଯେ ବୁଢ଼ୀ ବିଧବା ଶାଶୁଙ୍କର କାନ ଧରି ସେ ଗୋଡାଇଥାଏ ।

ବୋହୂମାନେ ପୁଅମାନଙ୍କ ପାଖରେ । ସେମାନେ ବି ମା' ହେଲେଣି । ପଚିଶି ବର୍ଷ ବୟସରୁ ମୁଣ୍ଡବାଳ ପାଚିଲାଣି ନନ୍ଦ-ଘରଣୀଙ୍କର । ତିରିଶ ହେଉଣୁ ନ ହେଉଣୁ ସରସା ଦାନ୍ତ ପଡ଼ିବାକୁ ଲାଗିଲାଣି । ନଅଟି ନାତିନାତୁଣୀ ଦେଖିଲା ପରେ ବି ବୁଢ଼ୀଶାଶୁ ଆହୁରି ଶୁଭ ମନାସୁଛନ୍ତି, ଠାକୁରେ ତାଙ୍କୁ ପଞ୍ଚୁ ପାଣ୍ଡବ କର ! ବକଲାର ବାପ-ଜେଜେଙ୍କୁ କି ସମ୍ପତ୍ତି ବା ଦେଇଥିଲ ? ଯଜମାନି କରି ଚଳିବା କଥା । ସାମାନ୍ୟ ମହାଜନୀ । ଲକ୍ଷ୍ମୀ ବୋହୂଟିଏ ଘରେ ପାଦ ଦେଲାଦିନୁ ମହାଜନୀ କାରବାର ବଢ଼ିବାକୁ ଲାଗିଲା । ଏବେ ଅଭାବ କଣ ? ଜମିବାଡ଼ି, ବାଗ-ବଗିଚା, ପୋଖରୀ, ପୁନ୍ଦାଏ ଦୁହାଁଳି ଗାଈ, ଘର ବଖରା କୋଠା ଘର । ସବୁ ତ ଦେଲ, ତାକୁ ଭୋଗ କରିବାକୁ ବେଶୀ ନୁହେଁ ମୋଟେ ପାଞ୍ଚଟି ନାତି ଦିଅ ।

ଆଗୋ ବୋହୂ ! ବକଲାଟା ବାଇଆ ହୋଇଛି । ଶିବମାହାପ୍ରଭୁ ଏ ଗାଁକୁ ବିଜେ କରିଛନ୍ତି । ଥରେ ଯାଇ ଦେଖି ଆଇଲି । ଆହା, ସେ କି ରୂପ ! କୋଉଠୁ କ'ଣ ଶୁଣି ନିଜ ଧନ୍ଦା ଗୁଡ଼ି ସେ ତାଙ୍କୁ ନିନ୍ଦା କରୁଛି । ଆଲୋ ମା, ସେ କୋପ କଲେ ସବୁ କୁଆଡ଼େ ଉଭେଇ ଯିବ । ଯେତେ ମନା କଲି ବକଲା ମାନୁ ନାହିଁ । ଗାଁ ମାଇପଙ୍କ ସଙ୍ଗେ ତୁ ଯା । ଭୋଗରାଗ ନେଇ ଯା, ମୁଣ୍ଡିଆ ମାରି ଫେରି ଆସିବୁ । ବକଲାର ଅପରାଧ କ୍ଷମା କରିବାକୁ ମୁଁ ତାଙ୍କୁ ଏଇଠି ମୁଣ୍ଡିଆ ମାରି ଜଣାଣ କରିବି । ଚନ୍ଦୁଟା ଆଜି କାହିଁକି ଗିଳିଉଛି । ତା ଦେହ ଭଲ ନାହିଁ । ବାପର ଅପରାଧ ପିଲାଙ୍କ ଉପରେ ପଡ଼େ କି ! ମୋର ଆଗ ମରଣ ହେଉ । ତୁ ଆଗ ଯିବୁଟି । ବକଲା ଜାଣିବ

କାହିଁକି ? ଜାଣି ଯଦି ତଳେ ଗାଳିଦେବ ନା ଏଇ ବାଡ଼ିରେ ତା' ପାଦରେ ପାହାରେ ଦେବ । ନିଜ ଧନ୍ଦା ଛାଡ଼ି କେମିତି ସେ ମାମଲତି କରୁଛି ଦେଖିବ ।

ବିକଳ ନନ୍ଦେ ଶିବବାବାଙ୍କ ବିରୁଦ୍ଧରେ ତାଙ୍କ ଘରଣୀଙ୍କ ଆଗରେ ବି ଗପନ୍ତି । କେତେ ଅସନା କଥା କହନ୍ତି । ଖବରଦାର୍, ମଠ ଦ୍ୱାରମୁହିଁ ମାଡ଼ିବ ନାହିଁ । ସେଇଟା ମହାଭଣ୍ଡ । ଗ୍ରେଟ୍ ଧପ୍‌ପାବାଜ କୁଆଡ଼ର ! କିଏ ଜାଣେ, କେଉଁଠିକାର ଡ଼କାୟତି ସରଦାର ଅବା ଚୋର ହୋଇଥିବ । ଖୁଣୀଆସାମୀ ବି ହୋଇ ଥାଇପାରେ । ଲୁଚି ଲୁଚି ବୁଲୁଛି । ଯେତେ ସବୁ ମଦୁଆ, ଗଞ୍ଜେଡ଼ି, ଅଫିମୀ ଡ଼ରୁଆଛେଉଁରିଆ,ଅପାରଗ, ଲୁଚି ଲୁଚି, ବୁଡ଼ି ବୁଡ଼ି ପାଣି ପିଉଥିବା ଗ୍ରେଟ୍ ଧପ୍‌ପାବାଜଆଙ୍କୁ ପାଖରେ ଭେଳେଇଛି । ଦୁଷ୍ଟଶିଷ୍ୟ କାହାଁକା । ଦିନେ ପାନେ ପାଇବ । ପୁଣ୍ୟଦାନ କରିବାକୁ କେତେ କାହାଠୁଁ କି'ଣ ନେଇଛି, ଆଉ କୁଆଡ଼େ ସେ ପୁଣ୍ୟଦାନ କରୁଛି । ଖବରଦାର୍ ।

ବୃଦ୍ଧାଶାଶୁଙ୍କର ଆଦେଶ ଅମାନ୍ୟ କରି ତାଙ୍କ ବିଶ୍ୱାସକୁ ଟଳାଇ, ସେପୁରକୁ ଗୋଡ଼ ଟେକିଥିବା ହାଡ଼ମାଳିଆ କଙ୍କାଳର ମନରେ ଆଘାତ ଦେବାକୁ ନନ୍ଦଘରର ଘରଣୀ ଲକ୍ଷ୍ମୀକାଙ୍କର ଇଚ୍ଛା ହୁଏ ନାହିଁ । ପୁଣି ଶାସ୍ତ୍ରଜ୍ଞ ସୁପଣ୍ଡିତ ସ୍ନେହଶୀଳ ସ୍ୱାମୀ-ଦେବତାଙ୍କର ଉପଦେଶକୁ ବି ମନ ଡାକେ ନାହିଁ । ଦୋଦୋପାଞ୍ଚ ହୋଇ ସେ ସ୍ୱାମୀଙ୍କର ଶରଣ ପଶନ୍ତି । କହନ୍ତି, ଯାଏଁ ଗୃହିଁ ଦେଇ ଫେରି ଆସେଁ । କାହିଁକି ଶାଶୁ ଠାକୁରାଣୀଙ୍କ ମନ ଉଣା କରିବି ? ବାବାଜୀଙ୍କ କରୁଣା ଆମର ଲୋଡ଼ା ନାହିଁ । ଯିଏ ପେଟରେ ଓଦାକନା ଦେଇ ଏ ସଂସାରକୁ ଭିଆଣ କରିଛନ୍ତି, ତାଙ୍କର କଲ୍ୟାଣର ବୃନ୍ଦ ଆରେ ପିମ୍ପୁଡ଼ି ଗିଳିବା ପ୍ରମାଣେ ଛିଦ୍ର ନ ହେଉ । ବିକଳ ନନ୍ଦେ ହଁ ନାହିଁ ନ ଉତ୍ତର କହନ୍ତି, ଯାହା ଠିକଣା ବୁଝୁଛ କର ।

ଅର୍ଜୁନ ଦଉଙ୍କ ଘରଯା ଛଇଳା, ଚଉହାତିଆ, ଭରପୁରଦେହୀ, ମଧୁରିଆ-ଗୋରୀ, ଲମ୍ବମୁହିଁ ସ୍ତ୍ରୀଲୋକଟି । ନନ୍ଦଘର ବୋହୂଙ୍କ ତୁଣ୍ଡର ଅଧା ବାକ୍ୟଟିକୁ ଶେଷ କରିବାକୁ କହିଲେ, କାହିଁକି ଦୟା ନ କରିବେ ? କେତେ ବାଂଝିଙ୍କର ବାଂଝିପଣ ସେ ବାବାଜୀ ଭାଙ୍ଗିଲେଣି । ସେ ବୋହୂର କି ଅପ୍ରାଧ ହେଲା କି ? କେଡ଼େ ବଡ଼ ମହିମା ସେ ବାବାଜୀ ! ତାଙ୍କର ଆଖି ଦୁଇଟା ନିଆଁ ପରି ଜଳୁଥାଏ । କପାଳ ଉପରେ ବି କୁଆଡ଼େ ଗୋଟାଏ ଆଖି ବାହାରେ, ଯେବେ ସେ ମନ କରନ୍ତି । ସେଇଟା ବି କୁଆଡ଼େ ଦାଉ ଦାଉ ହୋଇ ଜଳେ । ମୁଁ ଦେଖିନି ନାହିଁ । ସେ ବାବାଜୀ ଅଣ-ପୁରୁଷାଙ୍କୁ ପୁରୁଷା କରି ଦିଅନ୍ତି । ଖୁଣ୍ଟିଆଙ୍କ ପୁଅ ଅଣପୁରୁଷା ତ ନୁହେଁ ! ଖାଲି ଏଇ ସୁନ୍ଦରୀ ବୋହୂର ପେଟ ଭିତରେ ଯେଉଁ ରକ୍ତମୁଖା ଠାକୁରାଣୀଟାକୁ ତଡ଼ିବେ । ତାଙ୍କ ପାଖରେ ଭେଟି ଦେଇ ଅଧିଆ ପଡ଼ିଲେ ସେତକ ସେ ବଳେ କରିଦେବେ ।

ଟିକିଏ ରହି ସେ ପୁଣି କହିଲେ, ଅସ ଗୋ, ଆମର ଡେରି ହେଉଛି । ସେ ଦିନେଁ ବି ଯାଉନ୍ତୁ । ତାଙ୍କର ଉଚ୍ଛୁର ହେବ । ଭିତର-ଖଞ୍ଜାରେ କାଳିକା-

ମାଇଙ୍କର ପହଡ଼ ପଡ଼ିବ । ଆଜି ମଠଟାରେ ବେଶୀ ଭଗତ ନାହାନ୍ତି । ଝିନାଥ ମେଳା ବି କାହିଁକି ହେଉ ନାହିଁ ।

ଅର୍ଜୁନ ଦତ୍ତ ଖଣ୍ଡାଇତ ଘର ପୁଅ । ଅତି କଷ୍ଟରେ ଗାଁ ଚାହାଳିରେ ପାଠ ସାରିଥିଲେ । ତାଙ୍କ ବାପେ ମୂଲ ଲାଗୁଥିଲେ । ମାଆ ବି । ଘରଛପର କାମରେ ସେ ଥିଲେ ନିପୁଣ । ଅର୍ଜୁନ ଓ ତା' ତଳଭାଇ ନକୁଳ ପିଲାଦିନେ ଗୋରୁ ଜଗୁଥିଲେ । ବୟସ ହେଲାରୁ ଭାଇ ଦିହେଁ ବନ୍ଧ-କାଣ୍ଟ୍ରାଟିଙ୍କ ମାଟି ଖୋଳା କାମରେ ମାଟି ବୋହୁଥିଲେ । ପିଲାଟି ଦିନରୁ କଥା—ଅକଥାରେ କେତେ ଲୋକଙ୍କଠାରୁ ମାଡ଼ ଗାଳି ଖାଇଛନ୍ତି । ଉପାସ ଭୋକରେ ବେଳ କାଟିଛନ୍ତି । ରୋଗରେ କତରା ଲାଗି ହୋଇ ବି ଔଷଧ ଟିକେ ପାଇ ନାହାନ୍ତି । ଭାଇ ଦିହେଁ, ଦୁନିଆର ଲୋକଙ୍କୁ ସେମିତି ଚିହ୍ନିଛନ୍ତି, ଲକ୍ଷଖିଆ ଦେବାଦେବୀଙ୍କୁ ବି ସେମିତି ଜାଣିଛନ୍ତି । ସେମାନେ ଗରିବ ନିଆଶ୍ରାଙ୍କର ନୁହନ୍ତି । ସେମାନେ ଥିଲାବାଲାଙ୍କର । ଏପରି ଧାରଣା ତାଙ୍କର ମୁଣ୍ଡରେ ପିଲାଦିନରୁ ବସାବାନ୍ଧିଛି ।

ଅର୍ଜୁନ ନିଜ ଶିଙ୍ଗରେ ମାଟି ଖୋଳିଲେ । ମାଟିକାମର ହିସାବ ଗୁମାସ୍ତା । ପେଟି କାଣ୍ଟ୍ରାଟି । ଗ୍ରେଡ-କାଣ୍ଟ୍ରାଟି । ବଡ଼ କାଣ୍ଟ୍ରାଟି । ସେ ଏବେ ଅର୍ଜୁନବାବୁ । ଲକ୍ଷଲକ୍ଷ ଟଙ୍କାର କାମ ସେ ନିଅନ୍ତି । ବଉଁଶଯାକ ସେଥିରେ ଲାଗି ପଡ଼ନ୍ତି । ସହରରେ କୋଠା ଘର, ଦି' ଦି'ଟା ଟ୍ରକ୍, ଗୋଟାଏ ଜିପ୍ । ଗାଁରେ ଜମିବାଡ଼ି । ନୂଆ କୋଠାଘର । ଠାକୁରମାନଙ୍କ ପୂଜା ପାଇଁ ମୋଟା ଚାନ୍ଦା ଦିଅନ୍ତି । ଅନ୍ୟମାନେ ତାଙ୍କ ପାଇଁ ପୂଜା ପ୍ରାର୍ଥନା କରନ୍ତି । ଏ ସବୁ କରିବାକୁ ତାଙ୍କର ବେଳ ନ ଥାଏ । ସେ ବୁଝିଛନ୍ତି, ଡାହୁଁ ଦଳ, ତାହୁଁ ବଳ ଯେଉଁ ଦି' ଗୋଡ଼ିଆ ଭୋଗ-ଲାଳସୀ ଠାକୁରମାନେ ଅଛନ୍ତି, ସେମାନଙ୍କୁ ପୂଜା କଲେ ସେମାନେ ଗୁହାରି ଶୁଣନ୍ତି । ବରଦ ହୁଅନ୍ତି । ଅଚଳ ଠାକୁରଙ୍କର ପୂଜା କେବଳ ବାଆକୁ-ବତା । ବିଶ୍ୱାସ ନୁହେ ଯେ ପତିଆରା ।

ଅର୍ଜୁନ ଓ ନକୁଳ, ସେମାନଙ୍କର ବିଚକ୍ଷଣ ବୁଦ୍ଧି, ଅଭାବରେ ସନ୍ତୁଳି ହୋଇ ପ୍ରାଣ ବଞ୍ଚାଇବାକୁ, ପାଠ ଛାଡ଼ି ପରଘରେ ମୂଲ ଲାଗିଥିଲେ । ଅଇଁଠା ଭାତ ଖାଇ, ମାଡ଼ ଗାଳି ସହିଥିଲେ । ପିଲା ଦିନରୁ ମଣିଷଙ୍କୁ ଚିହ୍ନିବାର ସୁଯୋଗ ତାଙ୍କର ହୋଇଥିଲା । ଧର୍ମ ସଞ୍ଚିବାକୁ ଯେଉଁମାନେ ହାଡ଼ା ବଳଦ, ବୁଲା ଷଣ୍ଢଙ୍କୁ ପରିବା ଚୋପାମିଶା ପେଜ-ତୋରାଣି ଦେଉଥିଲେ, ବାଗ ଉଣ୍ଡି ସେମାନେ ପର ଖଳାରୁ ଚୋରି କରୁଥିଲେ । ଯେଉଁମାନେ ହାତ ଟେକି ଟେକି ସଂକୀର୍ତ୍ତନରେ ନାଚି ନାଚି, ତନ୍ମୟ ହୋଇ ଦେହ ଶିହରାଉ ଥିଲେ, ସେମାନେ ରାଣ୍ଡୀ-ନିଆଶ୍ରୀଙ୍କ ଝିଅଆରି ଡାକି ଭିଡ଼ି ହେଳକୁଆ ଚୋରି କରି ବାଢ଼ିବାଢ଼ି ଶିକାର କରୁଥିଲେ ।

ଆଉ କେତେ ଟଡ଼ା-ଚଇତନିଆଁ, ମଠାଲୁଗା ପିନ୍ଧି ପର ବାଗରୁ ଫୁଲ ଚୋରି କରି ଜଗନ୍ନାଥଙ୍କ ଫଟୋରେ ଚଢ଼ାଉଥିଲେ । ତାନମାନ ଧରି ପୁରାଣ ପଢ଼ି, ଅନ୍ୟଙ୍କ ଆଗରେ ନିଜର ଗଭୀର ଧର୍ମ-ଜ୍ଞାନର ପ୍ରମାଣ ଦେବାକୁ ଧର୍ମତତ୍ତ୍ୱ ବୁଝାଉଥିଲେ । ସେମାନେ ଧର୍ମଦ୍ରୋହୀ ବୋଲି ସର୍ବତ୍ୟାଗୀ, ବ୍ରହ୍ମଜ୍ଞାନ, ଅଲେଖ-ବାବାଙ୍କ ବାଟରେ ଘାଟରେ କଟୁ କଥା କହି ସନ୍ନ୍ୟାସୀଙ୍କର ଉଦାର-ଆତ୍ମାରେ ଦୁଃଖର ହୁତାଶନ ଜଳାଉଥିଲେ । ସେହି ଜାତୀୟ ଭଣ୍ଡ-ଧର୍ମଧ୍ୱଜୀମାନଙ୍କୁ, ଧୂର୍ତ୍ତ ଓ ପ୍ରଚାରକ ସାଧୁପୁରୁଷମାନଙ୍କୁ, କପଟାଗ୍ରସ୍ତ ଦେବଭକ୍ତମାନଙ୍କୁ, ସମାଜସେବୀମାନଙ୍କୁ ହାତରେ ନ ରଖିଲେ ଅର୍ଜୁନଙ୍କର ବେପାର ଚଳନରେ ବାଧା ଉପୁଜନ୍ତା ।

ଚାନ୍ଦା ମାଗୁଛ ? ପଚାଶରେ କେମିତି ହେବ ? ଭଲ କରି କର । ଗ୍ରାମର ଟେକ ରଖ । ନଅ ଶହେ । ଏପରି ଯେଉଁ ଅର୍ଜୁନ ଦଣ୍ଡେ, ଯିଏ ଶିବବାବାଙ୍କ ମଠ ତୋଳା ପାଇଁ କାଠ, ବାଉଁଶ, ଇଟା, ପଥର ସିମେଣ୍ଟ, ମୂଲିଆ ଲୋକଙ୍କର କହିବା ମାତ୍ରେ ଯୋଗାଇ ଦେଇଥିଲେ, ବେଶି କିଛି ଟଙ୍କା ବି ଦେଇ ଭଗତମାନଙ୍କ ମଧ୍ୟରେ ମହାଭକ୍ତ ଓ ଧର୍ମାତ୍ମା ବୋଲି ନିଜକୁ ପରିଚିତ କରିଥିଲେ, ସେ ବି ବିଗିଡ଼ି ଗଲେ । ତାଙ୍କର ଧାରଣା ହୋଇଗଲା ଯେ, ସେଇଟା ଗୋଟାଏ ଛଦ୍ମବେଶୀ ଠକ । ଲୋକଙ୍କୁ ନିଶାଖୋର କରି ସେମାନଙ୍କର ସଂସାର ଉଜାଡ଼ୁଛି । ସେମାନଙ୍କର ଘରଣୀମାନଙ୍କୁ ଭୁଲାଇ ତାଙ୍କର ସଞ୍ଚିତ ଧନ ଲୁଟିନେଉଛି ବିଶ୍ୱାସ ଜନ୍ମାଇ । ଲୋକଟା ବ୍ୟଭିଚାରୀ ବୋଲି ତୁନିତୁନିକା କୁହାକୁହି ହେଲେଣି ।

ଅର୍ଜୁନ ଦଣ୍ଡଙ୍କ ଘରଣୀ, ମୂଲିଆଣୀରୁ ଯିଏ ଏବେ ସାଆନ୍ତାଣୀ ହେଲେଣି, ମଉନମୁହାଁ କି କୁହାଳିଆ, ତୁଣ୍ଟୁ ତୁର୍ଣ୍ଣିଆ କି ବୁଢ଼ିବୁଢ଼ା ପାଣିପିଆ ମରଦ ଓ ମାଇପିଙ୍କ ସ୍ୱଭାବପ୍ରକୃତି ପିଲାଟି ଦିନରୁ ଜାଣିଜାଣି ସିଦ୍ଧାଣିଆ, ଶିବବାବାଙ୍କୁ ଗଣ୍ଡେଇ ଦିଅନ୍ତି, ଓଲଗି ହୁଅନ୍ତି, ମନେ-ମନେ ପୁଅପୁତୁରା, ଝିଅଝିଆରୀ, ନାତିନାତୁଣୀଙ୍କର ଶୁଭ ବି ମନାସନ୍ତି, ଆଉ ଆଖି କାନ ସଜାଗ ରଖି ସମସ୍ତଙ୍କ ଢଙ୍ଗ ଦେଖନ୍ତି, ଶୁଣନ୍ତି, ମନରେ ସାଇତି ରଖନ୍ତି । ଗେରସ୍ତ ଓ ଦିଅରଙ୍କ ଆଣ୍ଡୁ ଆପଣ ସତ କି ମିଛ ପରଖି ପରଖି ଯାଆନ୍ତି । କାଳେ ସେ ଶିବଶଙ୍କର ଭୋଳାନାଥଙ୍କର କଳାରେ ଜନମିଥିବେ, ନିଜେ ଯାଇ କିଛି ଦେଇ ଭକ୍ତି ବଦଳରେ କଲ୍ୟାଣ ସାଉଁଟି ରଖିଲେ ଗେରସ୍ତ ଦିଅରଙ୍କ କରିଛଡ଼ା ଅଭକ୍ତି ପାଇଁ ଗଜୁରି ଆସୁଥିବା ପାପ ମୂଳରୁ ନାଶ ହୋଇଯିବ ।

ବନ୍ଧ ଉପରକୁ ମୁହାଁଇ ଯାଉଣୁ ସେ ଡାକ ଛାଡ଼ିଲେ, ଆଲୋ ପୁନା, ଆଲୋ ଟଗି, ଠିଆ ହୋଇ ରହିଲ କାହିଁକି ? ଯାଉନ ! ନିରୋଳା ବେଳ • । ବାବାଙ୍କ ପାଖରେ ବେଶି କେହି ନାହାନ୍ତି । ଜଲଦି ପୂଜା ସାରି ନ ଫେରିଲେ ତମର ଲେଉଟାଣି ବାଟ ନିଘୁଞ୍ଚିଆ ହେବ । ଡରଡର ଲାଗିବ । ଯାଆ ଲୋ ଗୁହାଳିଆଣୀମାନେ ।

ସେମାନେ ଅନ୍ଧାରରେ ଅଦୃଶ୍ୟ ହୋଇଗଲେ ।

ସୁନା ଓ ଝୋଷ୍ଟି ଆଗପଛ ହୋଇ ଦଣ୍ଡାବାଟରେ ଆଗେଇ ଚାଲିଲେ । କାହାର ତୁଣ୍ଡରେ ଭାଷା ନାହିଁ । ଆଉ କେତେ ଜଣ ସ୍ତ୍ରୀ ଓ ପୁରୁଷ ମଠଆଡୁ ଆସି ସେମାନଙ୍କୁ ଗାରଡ଼େଇ ଚାହିଁ ଗ୍ରାମ ଆଡ଼କୁ ଚାଲିଗଲେ । ପୁଣି ବାଟ ନିର୍ଜନ ହେଲା ।

ସୁନା କହିଲା, କିଏ କେତେ କଥା କହିବେ ଲୋ ବାଉଳି ! ଯାହାକୁ ସେମାନେ ଉପଲକ୍ଷରେ ଝିଙ୍ଗାସି ନ ପୂରିଲା ଆଶାରୁ ଫୁଲାଏ ଫିଙ୍ଗିଦେଇ ଯିବେ, ତା' ଦୁଃଖରୁ କଣିଗ୍ରାଏ ନେଇ ଯିବେ କି ? କାଲିକା ମୂଳଆଣୀ ଆଜିକା ସାଆନ୍ତାଣୀ । ଦେଖିଲୁ ତ, ରୂପ-ଘଇତା ବାବାଙ୍କ ବିରୁଦ୍ଧରେ ପ୍ରଚାର କରୁଛି । ମାଇପ ଭକ୍ତ ଦେଖାଇବା ଆଗରେ ଚାର-ବେପାର କରୁଛି । ବାବା ତା' ପେଟର କଥା ଜାଣନ୍ତି । କି ପାଇବି ତା ଦେଆଡ଼ା କଥାରୁ ?

ଝୋଷ୍ଟି ଡରି ଡରି ପଚାରିଲା, ଲୋକେ ଶିବବାବାଙ୍କ ନାମରେ କ'ଣ ସବୁ ପ୍ରଚାର କରୁଛନ୍ତି କାହିଁକି ? ସେ କ'ଣ ସତରେ କାହାକୁ ସବୁ ଦୋଷୀରୁଣୀ କରିଛନ୍ତି ?

ସୁନା ଫାଟି କରି ହସି ଉଠିଲା । ହସ ଥମାଇ କହିଲା, ଆଲୋ, ଯେଉଁ ମୂର୍ଖ-ମାନେ ଏମିତି ମାହାତ୍ମାଙ୍କ ନାମରେ ନିନ୍ଦା ରଟାଉଛନ୍ତି; ସେମାନଙ୍କ ଭିତରୁ କିଏ କାହାକୁ ଦୋଷୀରୁଣୀ ହେବାର ଦେଖିଛି, ତୁ କହିଲୁ ? ମୋ ଶିବଚରଣକୁ ଦେଖି ସେମାନେ ବିଶ୍ୱାସ କରି ପାରି ନ ଥିବେ ଯେ ସେ ମହାରଣାଙ୍କ ପୁଅ ! ଆଗରୁ ତ ତାଙ୍କର ଦୁର୍ନାମ ଥିଲା । ତୁଚ୍ଛା ମିଛ । ସେଇଠୁ ବାବାଙ୍କ ନାମରେ ଦୁର୍ନାମ ଆରମ୍ଭ ହୋଇଥିବ । କାହା ଅପବାଦଧିଆ କଥାରୁ ମତେ କି ମିଳିବ ? ମୋ ଗେରସ୍ତ ମୋର, ମୋ ପୁଅ ମୋର । ମୋ' ଗେରସ୍ତ ଜାଣେ, ମୁଁ କ'ଣ । ମୁଁ ଜାଣେ ସେ କ'ଣ । କୁକୁର ଭୁକିବାର ଭୁକନ୍ତୁ । ଆମର କି ଖାତିର ? ଆମର କି ଡ଼ର ?

ଝୋଷ୍ଟି କହିଲା, ମତେ ଭାରି ଡ଼ର ଲାଗୁଛି । ମୁଁ ଯେତେବେଳେ ସେହି ଆମ୍ବଗଛ ମୂଳରେ ବସିଥିଲି ଚାମଣ୍ଡାଟା ମୋ' ଭିତରୁ ଖସି ପଳାଇଲା । ଅନ୍ଧାର ଭିତରେ କେଉଁଠି ଅନ୍ତର୍ଦ୍ଧାନ ହୋଇଗଲା । ବାବାଙ୍କର ଆସ୍ଥାନ ପାଖେଇ ଆସିବାରୁ ସେ ଡ଼ରରେ ବିକଳ ହୋଇ ପଳାଇଛି ।

ସୁନା କହିଲା, ମୁଁ ତାକୁ ଦେଖିପାରି ନାହିଁ । ସତ କହୁଛି ବଉଳ, ମୁଁ କେବେ କେଉଁଠି, ଏମିତିକି ମଶାଣି ପାଖ ରାସ୍ତାରେ କି ଭୂତପ୍ରେତ ଆଶ୍ରା କରି ରହିଥିବା କେଉଁ ଗଛ ତଳେ ଅନ୍ଧାର ରାତିରେ ଏକା ଆସିଲା ବେଳେ ବି ଦେଖି ନାହିଁ । କିନ୍ତୁ ମୁଁ ଜାଣିଛି, ସେମାନେ ଅଛନ୍ତି । ମଣିଷକୁ ଡ଼ରାନ୍ତି । ଭେଟଣା କରାନ୍ତି । ତାଙ୍କର ରକ୍ତ ଶୋଷି ଖାଆନ୍ତି । ତାଙ୍କର ଜୀବନ ନିଅନ୍ତି ।

ଝୋଷ୍ଟି ପଚାରିଲା, ସେମାନେ ଅଛନ୍ତି ବୋଲି ତୁ କେମିତି ଜାଣିଲୁ ? ସତ କହିବ ? ବାହା ହୋଇ ମଣିକୁଦକୁ ଆସିବାଯାଏ କେଉଁ ଚାମଣ୍ଡା ମୋ ଭିତରେ

ଆଶ୍ରାନେଇ ଜନ୍ମରୁ ରହିଛି ଏହା ମୁଁ ଜାଣି ନ ଥିଲି । ଆମ ଘରର କି ଆମ ଗାଆଁର ବି କେହି ଜାଣି ନ ଥିଲେ । ମୋ' ଶାଶୁଘରେ ଶାଶୁ, ଶଶୁର, ଗେରସ୍ତ, ଗଲା ଆଇଲା ଗାଁ ମାଇପେ କେହି କେବେ ଜାଣି ନ ଥିଲେ । ଦେଖିବା ତ ଦୂରର କଥା ।

ଖ୍ରିଷ୍ଟମାସ ତେଣିକି ପାଞ୍ଚ ମାସର ଛୁଆ ମୋ' ପେଟରେ ଓଲଟିଥିଲା । ସେତେବେଳେ ସ୍ୱାମୀଙ୍କର ହାତାପଣକା ଦେହ । ବଳି ବି । ମୁଁ ଜାଣି ମଣା ବକଟେ । ମୋ' କୁହା କ'ଣ ମାନିଲେ ? ମୋତେ ତ ଦଳି ଦେଲେ । କେଉଁ ଗ୍ରହମଣ୍ଡାର କି ଦୋଷ ?

ଟଗି ଆଉ କହି ପାରିଲା ନାହିଁ । କଣ୍ଠ ରୁଦ୍ଧ ହେଲା । ଆଖିରୁ ଲୁହ ଝରିଲା ।

ସୁନା ସେ ଲୁହ ଦେଖିଲା ନାହିଁ । ବୁଝିଲା । ବୟସରେ ସାନ, କିନ୍ତୁ ମା' ପଣରେ ସେ ବଡ଼ । ସେ ସାନ୍ତ୍ୱନା ଦେଲା, ଗଲା କଥା ଗଲାଣି । ତା'କୁ ମନେ ପକାଇ ଦୁଃଖ କର ନା । ହେଇଟି, ମଠର ହତା ହେଲାଣି । ଆମର ଡେରି ହୋଇଗଲା । ମଠଆଡ଼ୁ ପାହିତ୍ରଣ୍ଡ ଶୁଭୁ ନାହିଁ । ଆଜି ଜଗନ୍ନାଥ ମେଲା କି ହେଉ ନାହିଁ । ଭଲ ହେଲା । ନସୋଲା ବେଳ । ବାବାଜୀ ଶିବଙ୍କୁ ଧ୍ୟାନ କରୁଥିବେ । ତାଙ୍କ ସଙ୍ଗେ ସେ ମନ ଖୁସିରେ ଆଳାପ କରୁଥିବେ । ତୋ'ର ଦୁଃଖ ସେ ଜାଣନ୍ତି ଯେ !

କ୍ଳାନ୍ତ ହୋଇ ଟଗି ଆମ୍ବଗଛ ତଳେ ବସିଲା । ସୁନା ବି ।

ଗତ ଘଟଣାକୁ ମନେ ପକାଇ ମୁଁ ଦୁଃଖ କରୁନାହିଁ ଲୋ ବଉଳ, ଟଗି କହିଲା, ମୋ ଶାଶୁ ଶଶୁର ଆଉ ସେକାଳର ଗେରସ୍ତ ମନେ ପଡ଼ିଲେ ଯେ । ମୋ ମୁଣ୍ଡ କାହିଁକି ଭରମିଲାଣି ।

କ'ଣ କହୁଥିଲି କି, ମୋ ଶାଶୁଶ୍ୱଶୁର କଷ୍ଟେ ଘଟଣାଟି ଅନୁମାନ କରି ଜାଣିଥିଲେ । ସେମାନେ ତ କେବେ କହି ନ ଥିଲେ ଯେ ମୋ ଭିତରେ କେଉଁ ଚଣ୍ଡୀ, ଗ୍ରହମଣ୍ଡା ଅବା ଆଉ କେଉଁ ଠାକୁର ଘର କରି ରହିଛି ?

ପୁଣି ଯେବେ ପିଲା ମୋ' ପେଟରେ ରହିଲା, ଜାଣୁ କି ବଉଳ, ମୋ ଶାଶୁ କି ଦିନ କି ରାତି, ମୋତେ ପାଖଛଡ଼ା କରୁ ନ ଥିଲେ । ଶଶୁରଙ୍କୁ ଦାଣ୍ଡଘରକୁ ପଠାଇ ସେ ମୋତେ ପାଖରେ ଶୁଆଉଥିଲେ ।

ସେ ଆଉ ଶଶୁର ଜାଣି ସାରିଥିଲେ ଯେ ତାଙ୍କର ଏକୋଇର ଦୁଲାଳ ତା' ପାଖରେ ମୁଁ ନ ରହିବାରୁ ରାତି ଅଧରେ ବାଇଆବାଉଳଙ୍କ ପରି ଫେରୁଛି । ଖଜୁରି-ରସ ପିଇ ମାତାଲଙ୍କ ପରି ଟଳ ଟଳ ହେଉଛି । ପିଆପିଆ ଠିକଣା ରହୁ ନାହିଁ । ଶୋଇ ପଡ଼ୁଛି ଏକା । ମୋର ମନରେ ସନ୍ଦେହ ନାହିଁ ବୁଝି, ଆଉ କିଛି ବିପଦ ନାହିଁ ବୋଲି ଅନୁମାନ କଲେ । କହିଲେ, ପାଖରେ ତତେ ନ ଦେଖି ସେ ଘରଛଡ଼ା ହେଲାଣି । ମଦ ଖାଇଲାଣି । ଗୃହ ଆଉ ଘରକୁ ।

ଗଲା ।

ଗୋଟିଏ ଦିନ ବି ଶାନ୍ତିରେ କଟିଲା ନାହିଁ । ମଦ ନିଶାରେ ସେ କ'ଣ ଭଲମନ୍ଦ ବିଚାର କଲେ ? ଖ୍ରିମଦକୁଆର ପାଖରେ ମୋର ବାଧା ପ୍ରତିବାଦର କି ଫଳ ଫଳନ୍ତା ? ଶେଷକୁ ବିଧାତାଗୋଇଠା ।

ମୁଁ ହତଜ୍ଞାନ ହେଲାପରି ପଡ଼ି ରହିଲି । ସେ ଗୋଟାଏ ପଶୁ ପାଳିଥିଲା । ଯାହା ଫଳ ହେଲା ଜଣା । ଶାଶୂ ଜାଣିଲେ । ଶ୍ୱଶୁର ବି ଜାଣିଥିବେ । ସେ ଜାଣିବ କେମିତି ? କେଉଁ ସାହସରେ ମଦୁଆ, ଗଞ୍ଜେଡ଼ିଟାକୁ କହି ପାରନ୍ତି ଯେ ସେ ନିଜର ଘରମାଗର କସିକୁ, ପୁଣିଅରେ ମୋ ଭିତରେ ନାଶ କରିଛି ?

ଘରେ ବସନ୍ତେଇ ଠାକୁରାଣୀ ବିଜେ କଲେ । ତାଙ୍କୁ ଅଇଁଠା କରି ଛାଡ଼ି ଦେଲେ, କିନ୍ତୁ ଶାଶୁ ଶ୍ୱଶୁରଙ୍କୁ ନେଇଗଲେ । ମତେ ଛୁଇଁଲେ ନାହିଁ । ତା' ପରେ ସେମିତି ମଦ ନିଶାରେ ମୋ'ର ପେଟରେ ଆଠ ମାସର ଛୁଆକୁ ବି ସେ ଅବିବେକୀ ନାଶ କଲା । ଡିନୋଟି ଜୀବନ ସଂସାରକୁ ନ ଆସୁଣୁ ସେ ଚଣ୍ଡାଳ ନଷ୍ଟ କରିଛି ।

ସୁନା କହିଲା, ମଣିଷକୁ ଚାହିଁ ଦେଲେ ଶିବବାବା ତା'ର ବାହାର ଭିତର ସବୁ ଦେଖି ପାରନ୍ତି । ତା' ମନର କଥା ଜାଣନ୍ତି । ସେ ବୁଝିଲେ ଯେ ତାଙ୍କର ଆଶ୍ରାରେ ଥିବା ଭକ୍ତ ଝିଙ୍କବାବୁ ପିଲାଟିଏ ପାଇଁ ବ୍ୟାକୁଳ । ଗୁଣ୍ଡ ନ ଖୋଲିଲେ ନାହିଁ । ତୋ' ଭିତରେ ଘମଣ୍ଡୀ ଲୁଚି ରହିଥିବା ଯାଏ ବଞ୍ଚିଲା ପିଲା ଜନ୍ମ ହେବ ନାହିଁ । ଯଦି ଜନ୍ମେ, ତାକୁ ସେ ରଖାଇ ଦେବ ନାହିଁ । ଏ ଦୁଃଖରୁ ସେ ଦୁଃଖ ବଳେଇ ପଡ଼ିବ । ଆଲୋ, ଝିଙ୍କବାବୁଙ୍କୁ ମତେଇଥିଲା ତୋ' ଘମଣ୍ଡୀ । ବାବାଜୀଙ୍କୁ ପ୍ରତିକାର ଜଣା ବୋଲି ତମରି ଭଲ ପାଇଁ ସେ କହିଲେ । ଆଉ କାହିଁକି ସେସବୁ ପଛକଥାର ବିଗ୍ଭର ? ଆଜି ସେ ତା'ର ପ୍ରତିକାର କରିବେ । ତୁ ବିଶ୍ୱାସ ରଖ ।

ଟିସି ଉଠିଲା । ମୁଣ୍ଡ ଝାଙ୍କିଲା ପରି ଲାଗୁଥାଏ । ଶୋକରେ ପେଟ ଗର୍ଜି ଉଠୁଥାଏ । କେଉଁ ଅଜଣା ଆଶଂକାରେ ପାଦ ଟଳଟଳ ହେଉଥାଏ । ସୁନାଦେଈର ସେ ଅନୁସରଣ କଲା । କାହାରି ତୁଣ୍ଡରେ କଥା ନାହିଁ ।

—୪—

ସେମାନେ ମଠ ଭିତରେ ପଶିଲେ ।

ସବୁଦିନ ପରି ଗହଳି ନାହିଁ । ଆଲୁଅ ବି ବେଶି ଦିଶୁ ନାହିଁ । କେଉଁ ପାଖ ଗ୍ରାମର, ଅବା ମଣିକୁଦର କେଉଁ ସାହିର ଗୁଡ଼ିଏ ସ୍ତ୍ରୀଲୋକ କଥାଭାଷା ହୋଇ ଭିତର ଖଞ୍ଜାଆଡ଼ୁ କାଳିକାମାଈଙ୍କ ପୂଜା ସାରି ବାହାରି ଆସୁଛନ୍ତି । ସେମାନଙ୍କ ସଙ୍ଗରେ ଗୁଡ଼ିଏ ପିଲାଛୁଆ ଅଛନ୍ତି । ଟିସି ଓ ସୁନାଙ୍କୁ କଣେଇ ଚାହିଁ ସେମାନେ ଆଗେଇ ଗଲେ ।

ତାଙ୍କ ପଛେ ପଛେ ମୋତାନାଜୀ । ଏମାନଙ୍କୁ ଦେଖି ଅଟକି ଗଲେ । ହସହସ ହୋଇ କହିଲେ, ଏତେ ଉଚ୍ଛୁର କରି ଆଇଲ ? ବାବା ବାହାର ଆସ୍ଥାନରୁ

ଦର୍ଶନ ଦେଇ ତାଙ୍କ ବିଶ୍ରାମଘରକୁ ଚାଲିଯିବେଣି ପରା । ଯିବାକୁ ଉଠୁ ଉଠୁ ହେଉଥିଲେ । ଧଅସି ଯାଆଲେ ।

ମୋଟାନାଳୀ ଭୋଗ ଥାଳ ଓ ପାଦୁକା ଚାଙ୍ଗୁଡ଼ି ଧରି ଦୁହିଁଙ୍କ ମୁହଁକୁ ଚାହିଁ ହସିଦେଲେ । ଆଗେଇ ଗଲେ । କାହିଁ କୁଆଡ଼ର କେତେଜଣ ଲୋକ, ଦେହରେ ଜାମା ଅଛି, ମୁଣ୍ଡରେ ଲମ୍ବ ଲମ୍ବ ସିନ୍ଦୂର କଳି ଲଗାଇ ଟଭି ଓ ସୁନାଙ୍କୁ କଣେଇଁ ଚାହିଁଲେ । ଆଗେଇ ଗଲେ । ସେମାନେ ଚଉହାଡଆ ମଣିଷ । ସିଧାସଳଖ ବଜୁଆ ଚାଲି । ଏକ ସଙ୍ଗରେ ଟଭି ଓ ସୁନା ପଛେଇ ଚାହିଁଲେ । ସେମାନେ ବି ଫେରି ଚାହିଁ ଥିଲେ । ଚାଉଟା ମିଶିଧ । ବାଘପରି ମୁହଁ । ଗୋଲ୍ଲାଆ ଲମ୍ବ ଲମ୍ବ ନଖ ଥିଲା ପରି ଆଲୁଅର କ୍ଷୀଣ ଝଲକରେ ମନେ ହେଲା । ସେମାନେ ମୁହଁ ବୁଲାଇ ଚାଲିଗଲେ ମଠ ବାହାରକୁ । ଟଭି ଓ ସୁନା ଦୃଷ୍ଟି ଫେରାଇ ଆଗେଇ ଚାଲିଲେ ।

ବାହାର ଆସ୍ଥାନ ଉପରୁ ଶିବବାବା ଉଠି ଯାଉଥିଲେ । ବିଶ୍ରାମଘରକୁ ଯାଇ ନ ଥିଲେ । ସୁନା ଦେଈ ଓ ଟଭିଙ୍କୁ ଆସୁଥିବାର ଦେଖି ଦୟାରେ ବିଗଳିତ ହୋଇ ସେ ଅପେକ୍ଷା କଲେ ।

ଆସ୍ଥାନର ଚାରି କଡ଼ରେ ଆସ୍ଥ ନ ପାଖରୁ ଖଣ୍ଡେ ଦୂର ଗୁଡ଼ା ଦେଢ଼ ହାତ ଉଚ୍ଚ ପିଣ୍ଡିମାନଙ୍କ ଉପରେ ଚାରୋଟି ବଡ଼ ନଳଟଣ ଉଜ୍ଜ୍ୱଳ ହୋଇ ଏବେ ଯାଏ ଜଳୁଥିଲା । ଆସ୍ଥାନ ପିଣ୍ଡିକାଟି ଭୂମି ପତନରୁ ମୁଠୁଣିଏ ଉଚା । ଚାରି କୋଣରେ ଉଚ୍ଚ ଶାଳଖୁଣ୍ଟ ଉପରେ ମଉଡ଼ ଘର । ଦେଢ-ପୁରୁଷରୁ ଅଧିକ ଉପରେ କମକୁଟ ସୁନ୍ଦର ପିପ୍‌ପିଲିଚାନ୍ଦୁଆ ଟଣା ହୋଇଛି । ପିଣ୍ଡି ଉପରେ ମୋଟା ଦରି । ଚଉଖୁଣ୍ଟିଆ । ଦଶ ହାତ ଲମ୍ବ ଓ ସେତକ ଚଉଡ଼ା ପିଣ୍ଡିର ମଝିଆ ମଝି ଗୋଟିଏ କଡ଼ରେ ବାଦାମୀ ରଙ୍ଗର ମୋଟ ଆସନ । ତା' ଉପରେ ମହାବଳ-ବାଘର ଛାଲ । ମୁଣ୍ଡଟା କଟିଛି ।

ସେଇଠି ଶିବବାବା ବସିଥିଲେ । ଭକ୍ତମାନଙ୍କୁ ଦର୍ଶନ ଦେଉଥିଲେ । ଅଢ ଅଳ୍ପ କଥା ସେ କୁହନ୍ତି । କେବଳ ଭକ୍ତମାନଙ୍କର ସେ ଗୁହାରି ଶୁଣନ୍ତି । କେବେ କେବେ ହସନ୍ତି । ମୁଣ୍ଡ ହଲାନ୍ତି । ହାତ ଟେକ ଆଶୀର୍ବାଦ କରନ୍ତି । ଆଗନ୍ତୁ ଭକ୍ତର ହାତରେ ଶିବକଳାଭରା, ମନ୍ତ୍ରସିଦ୍ଧ, ମନକାମନା ପୂରଣକାରୀ ତମ୍ବାର ତେଉଁରିଆ ବାନ୍ଧି ଦିଅନ୍ତି ।

ତାଙ୍କ ବସିଲା ଆସ୍ଥାନ ଆଗରେ ପିଣ୍ଡିପାଖରୁ ଅଳ୍ପ ଦୂର ଗୁଡ଼ା କାଳିକା-ମାଇଙ୍କ କୋଠରୀ । ଯାଉଁଳି କବାଟ ଲାଗିଛି । କୋଠରୀଟିର ପଛ କାନ୍ଥକୁ ଅଳପ ଗୁଡ଼ା ଉଚ୍ଚ ପିଣ୍ଡି ଉପରେ ଦେବୀ ଠିଆ ହୋଇଛନ୍ତି । ସେହି ପିଣ୍ଡିକା ତଳେ ଘିଅ ଦୀପମାନ ଜଳୁଛି । କେତେଗୁଡ଼ାଏ ଛୋଟ ଓ ବଡ଼ ତମ୍ବା ଏବଂ ପିତଳର ଥାଳି, କଂସା, ଲୋଟା କାନ୍ଥକଡ଼ରେ ରଖା ହୋଇଛି । ଘରଭିତରକୁ ପଶିଗଲେ ଘିଅ,

ଫୁଲ, ଧୂପ ଏବଂ ଦେବୀଙ୍କ ପ୍ରିୟ ପାଚିଲା କଦଳୀ ଓ ଦେଶୀ ଗୁଡ଼ର ମିଶାମିଶି ମହକରେ କେମିତି ନିଦୁଆଁଳିଆ ଘୋଟି ଆସେ ।

ଦେବୀପ୍ରତିମାର ବାମକଡ଼ରେ ପ୍ରାୟ ଛଅ ହାତ ଖୁଣ୍ଟ ପଡ଼ିଛି ପଲଙ୍କଟିଏ । ଗଦି ଉପରେ ବିଛଣା । ମୁଣ୍ଡ ଏବଂ ଗୋଡ଼ ତଳେ ପରିଷ୍କାର ଲମ୍ବ ତକିଆ । ନିଶୂନ ରାତିରେ ମନ ହେଲେ ଦେବୀ ସେଠାରେ ବିଶ୍ରାମ କରନ୍ତି । ଭକ୍ତମାନେ ସେହି ପଲଙ୍କ ଉପରେ ବାସନା ଫୁଲ ପକାଇ ଓଲଗି ହୁଅନ୍ତି । ଦେବୀ ବିଶ୍ରାମ ନ ନେଇ ସଂସାର ବୁଲିଗଲେ ସେ ଫୁଲ କେତେ ଦିନଯାଏ ସେମିତି ସଜ ଓ ସତେଜ ରହିଥିବାର ଭକ୍ତମାନେ ଲକ୍ଷ୍ୟ କରନ୍ତି । ଦେବୀ ବିଶ୍ରାମ ନେଇଥିଲେ ଫୁଲ ତ ମଉଳି ଯାଏ, ସେହି ମଉଳା ଫୁଲକୁ ବାବାଜୀଙ୍କ ଚେଲା, ଅବା ସୁନା ଦେଇ ପରି କେଉଁ ଭକ୍ତ କାଢ଼ି ନିଅନ୍ତି । ନୂଆ ଫୁଲ ଥିଲେ ବିଛଣାରେ ପକାନ୍ତି ।

ଟଭି ଓ ସୁନାଦେଈ ଦେଖିଲେ, ଅଧିକ ଭକ୍ତ ନ ଥିବାରୁ ଏଣେ ରାତି ଅଧିକ ହୋଇଥିବାରୁ ଶିବବାବାଙ୍କର ଅନୁଗତ ପିଆଡ଼ର ନୂଆ ଚେଲା ଟୋକାଟି ଦେବୀଙ୍କ କୋଠରୀକୁ ଭିତରୁ କିଳି ଦେଇଛି ।

ସେହି କୋଠରୀକୁ ଲାଗି ବାବାଙ୍କର ରହଣିଘର । କୋଠରୀଟି ମଧ୍ୟଭଳିଆ ଆକାରର । ବାବାଜୀଙ୍କ ଶୁଆଁ, ନିଜେ ଓମ୍ବରୁ ମାହାରଣୀର ହାତତିଆରି ଚଉଡ଼ା ଓ ଲମ୍ବରେ ବଡ଼ ତକ୍ତପୋଷ ଉପରେ କେବଳ ଖଣ୍ଡିଏ ଶତରଞ୍ଜି ପଡ଼ିଛି । ମୁଣ୍ଡ ପାଖରେ ଖାଲି ଲମ୍ବ ତକିଆଟିଏ । ଶିବ-ବାବା ସେହି କଠିଣ ଶଯ୍ୟାରେ ମନ ହେଲେ କେବେ ଟିକିଏ ବିଶ୍ରାମ ନିଅନ୍ତି ।

ତାଙ୍କ ମୁଣ୍ଡ ପାଖରେ କାନ୍ଥରେ ଯାଉଁଳି-କବାଟ-ଲଗା ଦ୍ୱାରଟି ରାତିରେ ଖୋଲା ରହେ । ବିଶ୍ରାମ ନ ନେଲେ ସେହି ବାଟେ ଯାଇ ଦେବୀଙ୍କ ଆଗରେ ଯୋଗ-ସାଧନା କରନ୍ତି । ଦେବୀଙ୍କର ଆରାଧନା ବି କରନ୍ତି । ଅତି ପାଖର ଭକ୍ତ କେହି କେହି, ସେମାନଙ୍କ ଭିତରୁ ସୁନା ଦେଈ ବି ଜଣେ, ଗୁପ୍ତରେ କହନ୍ତି ଯେ ଶିବବାବା ଦେବୀଙ୍କ ସଙ୍ଗେ ଆଳାପ ଆଲୋଚନା କରନ୍ତି । ସେମାନେ ଶୁଣିଛନ୍ତି । ଥରଥର ଦେବଭାଷା । ଶବଦ କାନରେ ପଡ଼ିଛି । ବୁଝିବ କିଏ ? ବାପା ଓ ମାଆଙ୍କ ସ୍ନେହ-ଶରଧାର ଆଳାପ ! କାନରେ ଶବଦର ଆଭାସ ମିଳିଲେ ଆଙ୍ଗୁଠି ଗେଞ୍ଜି ଖଣ୍ଡେ ପାଖରୁ ଅନ୍ତର ହୋଇ ଦୂରେଇ ଯିବାର ବିଧି । ପଦେ ଶୁଣିଲେ ସାତଜନ୍ମଯାଏ ପାପ ଖଣ୍ଡନ ହେବନାହିଁ ।

ସୁନାଦେଈ ପାଖକୁ ଯାଇ ଶିବବାବାଙ୍କ ଆଗରେ ଆଣ୍ଠୁମାଡ଼ି ବସି ଦୁଇ ହାତରେ ଦୁଇ ପାଦ ଛୁଇଁ ମୁଣ୍ଡ ନୁଆଁଇଲା । ପାଦପାଖରେ ଆସନ ଉପରେ ବାରମ୍ବାର ମଥା ଲଗାଇ ପ୍ରଣାମ କଲା । ଟଭି ଦେଖିଲା, ସେହି ବିରାଟ, ଭୟଙ୍କର, ଅଥଚ ସୁନ୍ଦର, ଭରପୁର ଗୌର ମୁହଁର ଉଜ୍ଜ୍ୱଳ ଆଖିରେ କିପରି ମନ ମୋହିଲା

ଶୀତଳ ଆଲୁଅ ଝଲସି ଉଠିଲା । ଓଠଖନାକ ତଳର ଗୋଛାଳିଆ କଳା ମିଚମିଚ ନଶରେ ଅଧଘୋଡ଼ା ଓଠରେ ଦରହାସ ପ୍ରକଟି ଉଠିଲା । ସେ ମୁଣ୍ଡ ହଲାଇଲେ । ଗ୍ଳାତ ଅଧାଯାଏ ଲମ୍ବି ଆସିଥିବା ଘଞ୍ଚ ଗୋଛାଳିଆ ଦାଢ଼ି ସାମାନ୍ୟ ହଲି ଉଠିଲା ।

ସେ ମୁହଁ ଖୋଲଲେ, ଉଠ୍—

ସୁନାଦେଈ ଉଠିଲା । ଦୁଇ ହାତ ଯୋଡ଼ି ଜଣାଣ କଲା, ବାବା, ଝରେ-ବାବୁଙ୍କର ସ୍ତ୍ରୀ ସ୍ନେହ, ମୋ ବଉଳ ଝଗ୍ରି ଦେଈକୁ ଆପଣ ଜାଣନ୍ତି । ତା'ର ଦୁଃଖ ଆପଣଙ୍କୁ ସବୁ ଜଣା । ତା'ର ଜୀବନ ହତାଶାରେ ସନ୍ତୁଳ ହେଉଛି । ଘରସଂସାର ଉଚ୍ଛନ୍ନ ହେବାକୁ ବସିଛି । ସେ ଆପଣଙ୍କ ପାଦରେ ଶରଣ ପଶିବାକୁ ଆସିଛି । ତାକୁ ଦୟା କର ବାବା !

ଶିବବାବା ଝଗ୍ରିର ମୁହଁକୁ ଚାହିଁ ମୁଣ୍ଡ ହଲାଇଲେ ।

ଝଗ୍ରିର ଗ୍ଳାତ ଥରୁଥିଲା । ପାଦ ବି ଥରୁଥିଲା । କେଉଁ ଅଜଣା ଆଶଙ୍କାରେ ଭୟଭୀତ ହୋଇଥିଲା । ସେଇଥିପାଇଁ ସବୁଥର ପରି ଅନ୍ୟମାନଙ୍କ ଅନୁକରଣରେ ସେ ସଙ୍ଗେ ସଙ୍ଗେ ଯାଇ ଶିବବାବାଙ୍କର ପାଦ ଧରି ଓଳଗି ହୋଇପାରି ନ ଥିଲା ।

ଝଗ୍ରିର ମୁହଁକୁ ସୁନାଦେଈ କଟମଟ କରି ଅନାଇଁଲା । ଝଗ୍ରିର ଭ୍ରମିଲା ମୁଣ୍ଡ ସତ୍ତ୍ୱେ ସେ ବୁଝିଲା ଯେ ତା ବଉଳ ବାବାଙ୍କୁ ଓଳଗି ହେବାକୁ ତା'କୁ ନିର୍ଦ୍ଦେଶ ଦେଉଛି । ଦାଉଁ ଦାଉଁ ଗ୍ଳାତରେ ସେ ଟଳିଟଳି ଆଗେଇ ଯାଉଁଣ୍ଟୁ ବାବା ପଛେଇ ଗଲେ । କହିଲେ, ରହ, ଦେଖ ।

ଝଗ୍ରି ଅଟକି ଗଲା । ଡରି ଡରି ଆଖିରେ ଶିବବାବାଙ୍କ ମୁହଁକୁ ଚାହିଁଲା । ତାଙ୍କର ଆଖି ଦିଓଟି ନିଆଁ ପରି ଜଳୁଥିଲା । ସେ ହସହସ ହେଉଥିଲେ । ଲମ୍ବ, ବଳିଷ୍ଠ ହାତଟି ବଢ଼ାଇ ଝଗ୍ରିର ମୁଣ୍ଡରେ ଥାପନା କଲେ । କୋମଳ କଣ୍ଠରେ ଦରଖଣ୍ଡିଆ ହିନ୍ଦମିଶା-ଓଡ଼ିଆରେ ଯାହା କହିଲେ ତା'ର ଅର୍ଥ ହେଉଛି—ସେହି ଦୁଷ୍ଟ ଗ୍ରମଣ୍ଡାଟା ଯିଏ ତୋ' ଭିତରେ ଜନ୍ମରୁ ରହିଛି, ମୋତେ ଦେଖି ନିଜେ ଡରି-ଯାଉଛି । ସେ ବୁଝିସାରିଲାଣି ଯେ ତୋତେ ଗ୍ଳାଡ଼ି ଆଜିଠାରୁ ସେ ଚିରଦିନ ଲାଗି ଗ୍ଳଲିଯିବ । ସେଇଥିପାଇଁ ତୋତେ ସେ ଡ଼ରାଉଛି । ତୁ ଭୟରେ ପଳାଇଲେ ତା'ର ଜୟ ହେବ । ବଞ୍ଚିଥିବା ଯାଏ ତତେ ସେ ତା'ର ବାହନ କରି ରଖିବ । ବହୁତ ଉପଦ୍ରବ ଘଟାଇବ । ବୁଝିଲୁ ?

ଝଗ୍ରି ଯେତିକି ବୁଝିଲା ସେତିକିରେ ଶିବବାବାଙ୍କ ପାଦ ପାଖରେ ବସି ପଡ଼ିଲା । କାନରେ ବାନ୍ଧିଥିବା ସୁନାର ହାରଟି ପାଦ ଉପରେ ରଖିଲା । ମୁଣ୍ଡ ତଳେ ଲଗାଇ ପୁଣି ଟେକିଲା । ଆଖିରୁ ଧାର ଧାର ଲୁହ ଝରି ପଡ଼ୁଥାଏ । ସେ ଦୁଇ ହାତ ଯୋଡ଼ି କପାଳରେ ଲଗାଇଲା । ବାଷ୍ପ ଗଦ୍‌ଗଦ କଣ୍ଠରେ, ଥରିଲା-ସ୍ୱରରେ କହିଲା,

ଏଇ ଗ୍ଲେଟ ହାରଟି ମୋ'ର ସମ୍ବଲ ଥିଲା ଶିବମହାତମା, ମୋ' ଶାଶୁ ମୋତେ ଦେଇଥିଲେ ।

ଟଗ୍ର ଦୁଇ ହାତ କପାଳ ଉପରୁ କାଢ଼ି ଦୁଇ କାନର ବଉଳରେ ଲଗାଇ କହିଲା, ଏଇ ଗ୍ଲେଟ ଗ୍ଲେଟ ଫୁଲ ଦଉଟି ବି ଅଛି । କାନରେ ବସିଯାଇଛି । ଖୋଲି ହେଉ ନାହିଁ । ଦିନେ ଖୋଲୁଥିଲି । ଆଜି ହେଉ ନାହିଁ । ନିଜ ହାତରେ ତମେ ଖୋଲି ନିଅ ବାବା ! ମୋର ମନରେ କଳନା ନାହିଁ ।

ଶିବବାବା ତା'ର ହାତ ଧରି ଉଠାଇଲେ । ପିଲାଟିଅଟିଏ ପରି ଟଗ୍ରର ମାଂସଳ ପିଠିରେ ହାତ ଗ୍ରପଡ଼ି ସ୍ନେହ-ପରବଶ ହୋଇ କହିଲେ, ଆଉ ସେ ଦଉଟି, କାନକୁ ବେଶ୍ ମାନୁଛି । ଝିଅ୍ଆ ମୋର ଭଗତ । ତୁ ତାର ସ୍ତ୍ରୀ ବି ମୋ'ର ଭଗତ ହେଲୁ ।

ଟଗ୍ରର ଭୟ ଟିକିଏ ଊଣା ହୋଇଥିଲା । ଗହଣାଟି ବାବା ନେଉନ୍ତୁ ପଛକେ ତାଙ୍କର ଦୟାଶୀଳ କୋମଳ କଥା ଓ ବ୍ୟବହାର ତା'ର ମନରେ ଧାରଣା ଆଣିଥିଲା ଯେ ନ ଜାଣିଲା ଲୋକେ, ଯାହାଙ୍କ ମନରେ ଭକ୍ତି ନଥାଏ, ଯେଉଁମାନେ କୁଟିଳ ଛନ୍ଦକପଟିଆ, କୁକର୍ମୀ, ସେମାନେ ଧାଖ ପଶିବାକୁ ନ ଡରି ଅପବାଦ ରଟାନ୍ତି ।

ବାବା ତାକୁ ଭଗତ କରିଛନ୍ତି । ସେ ତାଙ୍କର ଝିଅଠାରୁ ଅଧିକ । ସେଇ ସ୍ନେହରେ ସେ ତା'ର ଫୁଙ୍ଗୁଲା ପିଠିରେ ହାତ ଗ୍ରପଡ଼ି ତା'କୁ ଆଦର କରିଛନ୍ତି । ଆଶ୍ୱାସ ଦେଇଛନ୍ତି । ସେହି ବଳ, ସେହି ସାହସରେ ସେ ମାଗୁଣି କରିବ କି, ବାବା, ମୋର ସଂସାର ସରିଯାଉଛି । କାହିଁକି ଆଜି ମୋ ଉପରୁ ଗ୍ରମଣ୍ଡାକୁ ତଡ଼ିବ ? କାହିଁକି ମୋତେ ଶୁଦ୍ଧ, ନିର୍ମଳ କରିବ । କାହା ପାଇଁ ? ମୋ ଗେରସ୍ତ ଝିଅ୍ଆର ଅବସ୍ଥା ଦିନୁଦିନ କ'ଣ ହେଲାଣି ଦେଖୁଥିବ ତ । ମଦ, ଗଞ୍ଜେଇ, ଅଫିମ ଖାଇ ତା'ର ଅନ୍ତ ଶୁଖିଗଲାଣି । ମଣିପପଣିଆଁ ସୁକୁ ସୁକୁ ହେଉଛି । ସବୁ ସମ୍ପତ୍ତି ସେ ଜୁର କରୁଛି । ସେ କ'ଣ ବେଶୀ ଦିନ ଆଉ ଆଜିବ ? ଆକଲେ, ସେ କ'ଣ ବାପ ହୋଇ ପାରିବ ? ବାମ ହେଲେ, ଖୁଣ୍ଟିଆ ବଂଶର ପିଲା କ'ଣ ଖାଇ ବଞ୍ଚିବ, ବଢ଼ିବ, ମଣିଷ ହେବ ? ତମେ ତାକୁ ରକ୍ଷାକର, ଶିବମହାତମା ! ତମେ ଆଗ ତା'କୁ ନିଶା ରାକ୍ଷସର ଦାଢ଼ରୁ ବଞ୍ଚାଅ ।

ମନେ ମନେ ସେ ସବୁ କହିଣ କଲା । ମୁହଁ ଖୋଲି ପ୍ରକାଶ କରିବାକୁ ସାହସ ଅଣ୍ଟିଲା ନାହିଁ । କିନ୍ତୁ ତା'ର ମନ କଥା ଜାଣିଲା ପରି ଶିବବାବା ତାଙ୍କର ବିଶାଳ ମୁଣ୍ଡ ହଲାଇ ହସିଲେ । ସୁନାଦେଈ ଟିକିଏ ଗ୍ରଡ଼ି ଟଗ୍ରର ପଛରେ ଠିଆ ହୋଇଥିଲା । ତାକୁ ମୁଣ୍ଡ ଟୁଙ୍ଗାର ପାଖକୁ ଡାକିଲେ । ସେ ପୁଣି ଆସି ଟଗ୍ର ପାଖରେ ଠିଆ ହେଲାରୁ ଶିବବାବା ତା'କୁ କହିଲେ, ଏ ଦେହୀକୁ ସମଝାଇ ଦେ, ସେ ଯାହା ଶୋଚୁଛି, ସବ୍ ହାମକୋ ମାଲୁମ ହେଲା । କାଳିକାମାଈକା କରୁଣାମେ ସବ୍ କୁଛ୍

ଠିକ୍ ହୋ'ଯାଏଗା । କାଳିକାମାଈ ପାଶକୁ ଲେଯାଓ । ଅନ୍ଦର ମେ । ସବ୍ ବତାଇ ଦୋ ।

ଏତିକି କହି ଶିବବାବା ଆଉ ମୁହୂର୍ତ୍ତେ ଅପେକ୍ଷା ନ କରି ତାଙ୍କର ବଳିଷ୍ଠ ବପୁ ବୁଲାଇ ପିଣ୍ଡିକାରୁ ଓହ୍ଲାଇଲେ । ସେ ତାଙ୍କର ବିଶ୍ରାମ ଘରକୁ ଗଲେ ନାହିଁ । ସେହି ଘରର ଗ୍ରେଟ ବାରଣ୍ଡାକୁ ଲାଗି ଆଡ଼ୁଆ ଡୋଲା ହୋଇଥିବା ଦୁଇ ବଖରି ଘରର ପ୍ରଥମଟିରେ ଚେଲା-ମହାରାଜ ରହନ୍ତି । ସେଇଟି ପୁଣି ଭଣ୍ଡାରଘର । ତା' ପାଖ ବଖରିଟି ଗ୍ରେଟ । ସେଇ ଘରେ ଆଲୁଅ ଜଳୁଥିଲା ।

ଶିବବାବା ମୁଣ୍ଡ ନୁଆଇଁ ସେହି ଘରକୁ ଗଲେ । କବାଟ ବନ୍ଦ କଲେ । ସେ ଘରୁ ବାହାରକୁ ଯିବାକୁ ଦରଜା ଅଛି । ବାହାରେ କୂଅ । ଗ୍ରେଟ ଘରକୁ ଲାଗି ଯେଉଁ ବଡ଼ ଖୋଲା ଘରଟି, ସେଥିରେ ମଧ୍ୟ କବାଟ ଲାଗିଛି । ସେ ବାଟେ ମଧ୍ୟ ବାହାରଆଡ଼କୁ ଯାଇ ହୁଏ, କିନ୍ତୁ ସେହି କବାଟରେ ସନ୍ଧ୍ୟାବେଳେ ଚେଲାବାବା କୋଲପ ପକାନ୍ତି ।

ଶିବବାବା ଅଦୃଶ୍ୟ ହେଲାରୁ ସୁନାଦେଈ ଟଙ୍କର ହାତଟିଏ ଧରି କହିଲା, ବାବା ତୋ ମନର ସବୁ କଥା ବୁଝି ପାରିଛନ୍ତି । ସେଇଆ ସେ କହିଗଲେ । ସେ ତତେ ସାନ୍ତ୍ୱନା ଦେଇ ପୁଣି କହିଲେ ଯେ, ସବୁ ଠିକ୍ ହୋଇଯିବ । ତେବେ କାଳିକାମାଈଙ୍କର ଦୟା ନ ହେଲେ, ତୋ' ଭିତରୁ ଆଗ ଗ୍ରମଣ୍ଡା ଘର ଭାଙ୍ଗି ଯିବ କିପରି ? ତେଣୁ, ତତେ ଆଗ କାଳିକାମାଈଙ୍କୁ ସନ୍ତୋଷ କରିବାକୁ ହେବ । ଆ' ମୋ' ସଙ୍ଗେ । ମୁଁ ତତେ ସବୁ ବତାଇ ଦେବି । ଫୁଲ ଗୁଞ୍ଜୁଡ଼ା ହାତରେ ଧର ।

ତଳେ ପଡ଼ିଥିବା ସୁନା ହାରଟି ଆଡ଼କୁ ଆଙ୍ଗୁଠି ଦେଖାଇ ଟଙ୍କି କହିଲା, ଗ୍ରେଟିଆଟିଏ ବୋଲି ଏଇଟି କ'ଣ ବାବାଙ୍କ ମନକୁ ପାଇଲା ନାହିଁ କି ବଉଳ, ସେ ନେଲେ ନାହିଁ ତ ! ମୋର ସେତିକି ସମ୍ବଳ ଥିଲା । କାନଫୁଲ ଦୁଇଟି ଥରେ କାଢ଼ିଥିଲି, ପୁଣି ପିନ୍ଧି ଦେଲି, ଖୋଲି ପାରିଲି ନାହିଁ । କାନ ଦରଜ ଲାଗୁଛି । ତୁ ଏ ଦିଓଟି ଖୋଲି ଦେ, ସ୍ୱାଙ୍କୁ ବି ଦେବି । ଏଗୁଡ଼ା ମୋର କ'ଣ ହେବ ? ବାବା ଯଦି ଦୟା କରିବେ, ଯଦି ମୋ ଗେରସ୍ତଙ୍କୁ ଭଲ ବୁଦ୍ଧି ଦେବେ, ସେ ଯଦି ନିଶା ଛାଡ଼ି ପୁଣି ଭଲ ମଣିଷ ହେବେ, ସବୁ ଭୂମିବାଡ଼, ଧନ ଦରବ, ଗହଣା-ଗାଣ୍ଠି ମୁଁ ଫେରି ପାଇବି ।

ଟଙ୍କି ଲୁହ ଭରି ଆଖିରେ କାନରେ ହାତ ଦେଲା । ସୁନାଦେଈ କହିଲା, ସେ ସୁନାଫୁଲ ହଳକ ଥାଉ । ତୋ ମୁହଁକୁ ଶୋଭା ପାଉଛି ବୋଲି ବାବା କହିଲେ । ତୁ ବୁଝିଲୁ ନାହିଁ କି ? ସବୁ ଠିକ୍ ହୋଇଯିବ ବୋଲି ବାବା କଲ୍ୟାଣ କରି ଗଲେ । ଆଲୋ ତୁ ଆତୁରା ହେଉଛୁ କାହିଁକି ? ବାବା ନିଜେ କେବେ ଟଙ୍କାପଇସା ସୁନା-ରୁପା ହାତରେ ଛୁଅନ୍ତି ନାହିଁ । ଚେଲାବାବା କାଳିକାମାଈଙ୍କ ଘରେ ପୂଜା

କରୁଛନ୍ତି । ତାଙ୍କୁ ଭୁଞ୍ଜାଉଛନ୍ତି । ଦେବୀଙ୍କୁ ସେ ପହୁଡ଼ାଇବେ । ସେ ଅଇଗ୍ଣ ଆସିବେ । ହାରଟି ନେବେ । କିଛି ଦିନ ପରେ କୈଳାସପୁରରୁ ଆଉ ଜଣେ ଚେଲା ଆସିବେ ଯେ, ଯାହା ଭିକ୍ଷା ମିଳିଥିବ ସେ କୈଳାସପୁରକୁ ନେଇଯିବେ ।

ସୁନାଦେଈର କଥା ଶେଷ ହେଲା ବେଳକୁ, ସତକୁ ସତ ଚେଲାମହାରାଜ ବାବାଙ୍କର ବିଶ୍ରାମଘର ଭିତରୁ ବାହାରିଲେ । ସେ ମଧ୍ୟ ଦେଖିବାକୁ ହୃଷ୍ଟପୁଷ୍ଟ ବଡ଼ ମଣିଷ । ମୁହଁଟି ସୁନ୍ଦର । ତାଙ୍କର ବି ବଡ଼ ବଡ଼ ନିଶ-ଦାଢ଼ି ଅଛି, ବେଣୀ ଲମ୍ବି ନାହିଁ । ସେମିତି ଖାଖ ନାକ । ବୟସ ଅଧିକ ହେବ ନାହିଁ । ଦୁଇ ବର୍ଷ ତଳେ ସେ ଆସିଥିଲେ । ଅବଶ୍ୟ ଥରେ କେବେ କିଛି ଦିନ ପାଇଁ ମଝିରେ କୈଳାସପୁରକୁ ଯାଇଥିଲେ ।

ସେ ଭକ୍ତମାନଙ୍କ ସଙ୍ଗେ ଅଧିକ ମିଶନ୍ତି । କେବେ କେବେ ତାଙ୍କର ତ୍ରିଶୂଳ, ଡମ୍ବରୁ ଓ କମଣ୍ଡଳୁ ଧରି ଭକ୍ତମାନଙ୍କ ସଙ୍ଗରେ ମଣିକୁଦ ଓ ତା'ର ଆଖପାଖ ଗ୍ରାମ-ମାନଙ୍କରେ ବୁଲନ୍ତି । ଧର୍ମପ୍ରାଣ ଲୋକଙ୍କର ଭିକ୍ଷା ଗ୍ରହଣ କରନ୍ତି । ଦରିଦ୍ର ଭିଖାରୀଙ୍କୁ ବି ବାଣ୍ଟନ୍ତି । ଲୋକଙ୍କ ସଙ୍ଗେ ଆଳାପ ଆଲୋଚନା କରନ୍ତି । ଶିବବାବାଙ୍କର ଦୈବୀଶକ୍ତିର ଗୁଣ ବଖାଣନ୍ତି । ଅଳ୍ପ ଦିନ ମଧ୍ୟରେ ସେ ଓଡ଼ିଆରେ ନିଜର ଭାବ ପ୍ରକାଶ କରିବାକୁ ସକ୍ଷମ ହୋଇଛନ୍ତି । ସବୁବେଳେ ହସ ହସ । ତାଙ୍କର କଥା ବି କୋମଳ ଓ ଧୀର ।

ସେ ପାଖକୁ ଆସିଲେ ।

ସୁନା ଦେଈ ତଳେ ମୁଣ୍ଡ ଲଗାଇ ଓଲଗି ହେଲା । ତା' ଦେଖାଦେଖି ଝିଅ । ଚେଲା ବାବା ହସ ହସ ହୋଇ ହାତ ଟେକିଲେ । କହିଲେ, ବହୁତ୍ ଡେରମେ ତୁମଲୋକ୍ ଆଯିଲ । ଭଗତ୍‌ମାନେ ବାବାଜୀକା ଆଉର କାଳିକାମାଈକା ଦର୍‌ଶନ୍ କରି ଫେରିଗଲା । ଆଜ୍ ମେଲାକା ଭଗତ୍ ଲୋକ ଭି ଆସିଲେ, ଆଉର୍ ଜଲ୍‌ଦିସେ ଚାଲିଗଲା । କ୍ୟା ମତ୍‌ଲବ୍ କୋନ୍ ଜାନେ !

ସୁନା କହିଲା, ମୋତେ ଚିହ୍ନିଛ ? ମୁଁ ଝରବାବୁଙ୍କ ଘରଣୀ । କାଳିକା-ମାଈଙ୍କୁ ଦୁଃଖ ଜଣାଇବାକୁ ଆସିଛି ।

ମୁଣ୍ଡ ହଲାଇ ଚେଲାବାବା କହିଲେ, ହାଁ, ହାଁ, ହାମ ତୋ ବିଲ୍‌କୁଲ ସବ୍ ଦୁଃଖ୍ ଜାଣିଛି । ଭଗତ୍ ଝରବାବୁ ଶିବ୍ ବାବାକୋ କହିଛି । ତୁମ୍ ଏହି ବାତ୍ ମେ ଲେ ଯାଓ । ଅଚ୍ଛା, ଥୋଡ଼ା ଠହରୋ, ଶିବ୍‌ବାବାକା ପ୍ରସାଦ ତୋ' ଆଗେ ଖା-ଲିଅ ।

ଚେଲାବାବା ତଳକୁ ଚାହିଁଲେ । ହାରଟି ଉପରେ ତାଙ୍କର ଦୃଷ୍ଟି ପଡ଼ିଲା । ତାକୁ ଉଠାଇ ସେ ତା'କୁ ମୁଣ୍ଡରେ ଲଗାଇଲେ । ପଚାରିଲେ, ଜୟ କୈଳାସବାସୀ

ଶିବଶଙ୍କର୍, ଜୟ ଭୋଳନାଥ୍ । ତା' ପରେ ସେ ପିଣ୍ଡିକାରୁ ଓହ୍ଲାଇ ନିଜର ରହଣୀ-ଘରକୁ ଗଲେ । ଆଲୁଅ ଜେଳିଲେ । କବାଟ ଆଉଜାଇଲେ । ଦୁଇ କଡ଼ର ଗ୍ରେଟ ଗ୍ରେଟ ଝରକା ଦିଓଟି ଆଗରୁ ବନ୍ଦ ଥିଲା ।

ସୁନା ଦେଇ କହିଲା, ଦେଖିଲୁ ବଉଳ, କେଲା ମହାରାଜ କେଡେ ଭଲ ବାବାଜୀ । ସେ ବି ଶିବକଳା ନେଇ ନିଶ୍ଚୟ ଜନମିଛନ୍ତି । ସାଧକ ବ୍ରହ୍ମଚାରୀ । ଯୋଗ କରୁଛନ୍ତି । ମନ୍ତ୍ର-ଯନ୍ତ୍ର ଶିଖୁଛନ୍ତି । ଗୁରୁଦେବ ଶିବବାବାଙ୍କ ସେବା କରୁଛନ୍ତି । ଯେବେ ତାଙ୍କର ସାଧନା ସରିବ, ସେ ବି ଶିବବାବା ପରି ସିଦ୍ଧ-ସନ୍ନ୍ୟାସୀ ହେବେ । ସେଇଠୁ ଭକ୍ତର ଉପକାର ପାଇଁ ସେ ଡ଼ାକିଲେ ସ୍ୱୟଂ ଶିବଶଙ୍କର ଆସି ତାଙ୍କ ଆଗରେ ଠିଆ ହେବେ । ଚାହିଁବେ ଯଦି ତାଙ୍କ ଦେହରେ ଅବତରିବେ ।

କାଳିକାମାଈଙ୍କୁ ସେ ଯେଉଁ ରୂପରେ ଡ଼ାକିବେ, ସେ ତ ନିଶ୍ଚୟ ସେହି ରୂପରେ ଆଗକୁ ଆସିବେ । ସେ ସିଦ୍ଧ ହେଲେ ଆଉ ଶିବବାବାଙ୍କ ପାଖରେ ରହି-ପାରିବେ ନାହିଁ । ଲୋକଙ୍କର ମଙ୍ଗଳ ପାଇଁ ଅନ୍ୟ କେଉଁ ଆଡ଼କୁ, ଅବା କୈଳାସ-ପୁରକୁ ଚାଲିଯିବେ । ଶିବଶଙ୍କର ମହାଦେବ ଯାହା ଆଜ୍ଞା କରିବେ, ସେ ସେଇଆ କରିବେ । ବୁଝିଲୁ ?

ଟିକି ସୁନା ଦେଈର ମୁହଁକୁ କାବା ହୋଇ ଚାହିଁ ରହିଥିଲା । ତା'ର କଥା ଶୁଣୁଥିଲା । ବିସ୍ମୟବିହ୍ୱଳ ହୋଇ ଭାବୁଥିଲା, ତା ବଉଳ ଅବଶ୍ୟ ପାଠ ପଢ଼ିଛି, କୁଆଡ଼େ ରାମାୟଣ, ମହାଭାରତ, ଭାଗବତ, ଆଉସବୁ କ'ଣ ପଢ଼ି ସାରିଲାଣି । ବିନେ କହୁଥିଲା ଯେ ସେ ଶିବପୁରାଣ ବି ପଢ଼ି ସାରିଲାଣି । କେତେବର୍ଷ ତଳେ ଡ଼ମ୍ବରୁ ମହାରଣା ଗୋଟାଏ ନିଆଣ୍ଟି ହାଡ଼ମାଳିଆ ଝିଅକୁ ତାଙ୍କ କାମ କରିବାକୁ ଓ ଘର ଜଗିବାକୁ ଏ ଗାଁକୁ ଆଣିଲେ । ଝିଅଟା ଖାଲିଖାଲିକେଲେ ଅଣ୍ଟୁରେ ଆଣ୍ଠୁ ବାଜୁ-ଥିଲା । ନିରକ୍ତିଆ ଦେହ ଶୋଥାଳିଆ ଦିଶୁଥିଲା । ଆଖି ଦିଓଟି ପେଜୁଆ । ମୁଣ୍ଡର କହରିଆ ଜଟାଳିଆ ବାଳରେ ଢିକୁଣି ଭୁର୍ ଭୁର୍ । ଦେଖ ଏବେ ସେଇଆକୁ, ସେଇ ସୁନା ଦେଈ, ତା'ର ବଉଳକୁ । କିଏ ଏବେ ନିଳଠାପଣରେ ବହିପ କରି ପାରୁଛି ପାରିବ, ଆଲୋ ଉ ସେଇଟି ?

ଶିବବାବାଜୀଙ୍କ ମାୟା । ଶିବଶଙ୍କର ମହାଦେବଙ୍କର ଦୟା ! ଶିବବାବା ଦୟାକଲେ ଟିକି ବି ସେମିତି ହୋଇ ପାରିବ । ଝରିଆ ନିଶାପାଣି, ଗଞ୍ଜେଇ, ଅଫିମ ଛାଡ଼ି ପୁଣି ଭଲ ମଣିଷ ହେବ । ଆଗକା ଦେହ ଫେରି ପାଇବ । ବାପୁରବନ୍ତ ହୋଇ ଘରସଂସାର କରିବ । ପୁଣି ସେ ତା'ର ବନ୍ଧକ ଜମି ଫେରାଇ ଆଣିବ । ଧନ-ସମ୍ପଦ ଅଧିକରୁ ଅଧିକ ହେବ । ତା'ର ଦୁଇ ଜଙ୍ଘରେ ବସାଇ ମନ-ଖୁସିରେ ଝରିଆ ଝୁଲଉଥିବ ତା'ର ପିଲା ଦିଓଟିଙ୍କୁ—ପୁଅ ଶିବକଳା, ଆଉ ଝିଅଟି, ତା' ନାଁ କ'ଣ ଦେବ ?

ବଉଳ ସୁନାଦେଈ କହୁଥିଲା ଗୁପ୍ତରେ, ତା' କାନରେ—ଆଲେ, ମୋର ଯେବେ ଝିଅଟିଏ ହେବ ତା' ନାଁ ଦେବ ଶଙ୍କରୀ, ମାନେ ପାର୍ବତୀ—ଶିବଙ୍କର ଘରଣୀ । ଛବି ଦେଖିଛୁ ବଉଳ, ସେ କେଡ଼େ ସୁନ୍ଦରୀ ? ଲକ୍ଷ୍ମୀ ସରସ୍ୱତୀଙ୍କଠାରେ ବାଛିବାର କିଛି ଅଛି, ହେଲେ ଶଙ୍କରୀଙ୍କ ଠେଇଁ ଖୁଣିବାର କିଛି ନାହିଁ । ଶଙ୍କରୀ ଯିଏ ଦୁର୍ଗା ସିଏ, କାଳିକାମାଈ ସିଏ । ସେଇ ପୁଣି ପାର୍ବତୀ, ଗୌରୀ !

ଝରୀ ଖୁସି ହୋଇ ପଚାରିଥିଲା, ସତେ ହେବ କି ବଉଳ, ତୋତେ ମୋ ରାଣ, ଲୁଚା ନା, କହ । ଆଖି ଛୁଇଁଛି ମୁଁ କାହାକୁ କହିବ ନାହିଁ । ସୁନାଦେଈ ଉତ୍ତର ଦେଇଥିଲା, ନାଇଁମ । ନାଆଁଟି ସୁନ୍ଦର ବୋଲି ମୁଁ ସେମିତି କହୁଥିଲି । ଦିନେ ଶିବବାବା ଗେଲରେ ମତେ କହୁଥିଲେ, ତୋ'ର ଝିଅଟିଏ ହେଲେ ତା ନାଁ ଶଙ୍କରୀ ଦେବୁ, ନୋହିଲେ ଦେବୁ ଶିବାନୀ । ମୁଁ ଡରଗଲି ବଉଳ ! ଭାବିଲି, ବାବା କାହିଁକି ଏମିତି କହିଲେ, ହେବ କି ଆଉ ?

ଝରୀ ଭାବୁଥିଲା, ଯଦି ଶିବବାବାଙ୍କ କରୁଣାରୁ ଆଗ ତା'ର ଝିଅଟିଏ ହୁଏ, ସେ ତା ନାଁ ଶଙ୍କରୀ ଦେବ । ସୁନାଦେଈର ଆଗ ହେଲେ, ଝରୀ ଶିବାନୀ ନାମଟି ବାଛିବ । ପୁଅର ନାଁ'କୁ ଝିଅର ନାଁ । ଖାସା ମାନିବ ।

ଝରୀକୁ ତା' ନିଜ ଭାବନାରେ ବୁଡ଼ି ରହିଥିବାର ଦେଖି ସୁନାଦେଈ ଟେଲା-ମହାରାଜଙ୍କ ଘର ଭିତରକୁ ଚାଲି ଯାଇଥିଲା । ସେ ହାତରେ ଗୋଟିଏ ମାଟିର ଗିଲାସ ଧରି ଝରୀ ପାଖକୁ ଫେରି ଆସିଲା । ତା' ହାତକୁ ବଢାଇ ଦେଇ କହିଲା, ଭୋକରେ ତୁ ହାଲିଆ ହୋଇ ପଡ଼ିଲୁଣି ! ନେ, ବାବାଙ୍କର ଏ ପ୍ରସାଦ ଖାଇଦେ । ଏଥିରେ ପାଞ୍ଚୋଟି ଜିନି ଯେ, ଛଅଟି ଅମୃତ ମିଶିଛି । ଭୋକ, ଶୋଷ ଛୁ କରିବ । ମନରୁ ଦୁର୍ଭାବନା ଦୂର ହେବ । ଦେହରେ ଶକ୍ତି ଖୂନ୍ଦ ହୋଇଯିବ । ଟେଲାବାବା ନିଜେ ତିଆରି କରିଛନ୍ତି । ଟିକିଏ ସେମିତି ନ ଗୁଡ଼ୁ । ପାଇ ଦେ । ମୁଁ ପାଣି ଆଣେଁ ।

ସୁନା ଦେଇ ହଲ ଦୋହଲ ପିଣ୍ଡିକା ଉପରୁ ତଳକୁ ଓହ୍ଲାଇ ଚାଲିଘରକୁ ଗଲା । ସେହି ଘରର ଗୋଟିଏ ଧାଖରେ, ନାଲିକଡ଼ରେ ଦୁଇ ମାଠିଆ ପାଣି ରଖାହୋଇଥିଲା । ତା' ନିକଟରେ ଗୋଟିଏ ବାଉଁଶ ଝୋକେଇରେ ଥିଲା ଗୁଡ଼ାଏ ମାଟିର ଗିଲାସ । ସ୍ଲେଟ ନାଲିଟିର ଅନ୍ୟ ପାଖରେ ଥୁଆ ହୋଇଥିବା ଜାଲି ଜାଲିଆ ଝୁଡ଼ିରେ ଅଇଁଠା ପତର ଓ ମାଟି ଖୁରିଗିଲାସ । ଭକ୍ତମାନେ ପ୍ରତିଦିନ ସକାଳେ ତାକୁ ପରିଷ୍କାର କରନ୍ତି । ସୁନାଦେଈ ସେଇଠି ମିଳିଲା । ଡାକିଲା, ଆଲେ ବଉଳ, ପ୍ରସାଦ ପାଇ, ଗିଲାସ ନେଇ ଏଇଠିକି ଆ । ପାଣି ଏଇଠି ଅଛି ।

ଝରୀ ସେଇଆ କଲା ।

ସୁନା ପଚାରିଲା, କେମିତି ଲାଗିଲା ?

ଝିଲି କହିଲା, ସତେ ଲୋ ବଉଳ ! ଏମିତିକା ଚଳ ମୁଁ ଆଗରୁ କେବେ ଚାଖି ନ ଥିଲି । ଯେମିତି ମହକ ସେମିତି ସୁଆଦ । ପେଟ ପୂରିଲା ନାହିଁ, କି ଟିକେ ଖାଇଁଲି ନାହିଁ । ଦେଇଥିଲେ ପେଟଭରି ପାଇଥାଆନ୍ତି ।

ସୁନା ଆକଟିଲା, ସେମିତି କହନା । ଚଳ ନ କହ କହ ପ୍ରସାଦ । ଜମିଲା ପରି ପବନ । କଣିକାଏ ପାଇଲେ ଯାହା, ପେଟେ ଖାଇଲେ ସେଇଆ । ହଉ, ତୁ ଏଥର ଗୋଡ ହାତ ଧୋଇପକା । ତତେ ସଙ୍ଗରେ ନେଇ କାଳିକାମାଈଙ୍କ ପାଖକୁ ଯିବି । କେମିତି ପୂଜା କରିବୁ ବତାଇ ଦେବି । ସେ ତ ସମସ୍ତଙ୍କର ମା ! ତାକୁ ହାତ ଯୋଡ଼ି ସୁମରଣା କରୁଥିବୁ । ଏକା ଏକା । ଡ଼ର କାହାକୁ ଆଉ ଭୟ କାହାକୁ ?

ଝିଲି ପଚାରିଲା, ତୁ ମୋ' ପାଖରେ ରହିବୁ ନାହିଁ ? ମୋ'ର ମୁଣ୍ଡ ତ କେମିତି ବୁଲେଇ ଦେଲା ପରି ଲାଗୁଛି ।

ସୁନା ଦେଈ ଝିଲିର ହାତ ଧରି କହିଲା, ହେଲା ଏବେ, ଆ ମୋ' ସଙ୍ଗରେ । ଫୁଲ, ଚନ୍ଦନ, ସିନ୍ଦୂର ଯେଉଁ ଗୁଙ୍ଗୁଡ଼ିରେ ଥିଲା କେଉଁଠି ରଖିଛୁ ? ଦେଖିଲି, ଦେଖିଲି; ପିଣ୍ଡିକା ଉପରେ ଅଛି । ଆ, ଧରଅସି । ମୋ ପିଲାଟି ତେଣେ ଉଠିବଣି । ମତେ ନ ଦେଖି ଅପାଙ୍କୁ ବ୍ୟସ୍ତ କରୁଥିବ । କାନ୍ଦୁଛି କି କ'ଣ । ତା ବିକଳ କାନ୍ଦଣା ଯେମିତି ମୋ' କାନରେ ବାଜୁଯାଉଛି ଲୋ ।

ସୁନାଦେଈର ହାତ ଧରି ଝିଲି ଆର ହାତରେ ଗୁଙ୍ଗୁଡ଼ି ଉଠାଇ ଟଳଟଳ ହୋଇ ଚାଲିଲା । ମୁଣ୍ଡ ଅଧିକ ଭ୍ରମିବାକୁ ଲାଗିଲା । ଆଖି ଆଗରେ ଜୁଳୁଜୁଳିଆ ପୋକ ପରି କ'ଣ ଆତଯାତ ହେବାକୁ ଲାଗିଲାଣି । ଜିଭ ଅଠାଅଠା ହୋଇ ଆସୁଛି ।

ଝିଲି କହିଲା, ଟାଉଟାଉ ଚାଲ ନା ବଉଳ ! ମୁଣ୍ଡ ଅଧିକ ଭ୍ରମୁଛି । ପ୍ରସାଦରେ ଆଉ କ'ଣ ମିଶିଥିଲା କି ?

ସୁନାଦେଈ ଝିଲିର ହାତଧରି ତା'କୁ ଶିବବାବାଙ୍କ ବିଶ୍ରାମଘର ଭିତରକୁ ଚଲାଇ ନେଲା । ଶିବବାବା ତ ନ ଥିଲେ, ଆଲୁଅଟିଏ ଅଧା-କର୍ମା ହୋଇ ଜଳୁଥିଲା । କୋଠରିର କଡ଼ କାନ୍ଥର ଯେଉଁ ଦ୍ୱାରବାଟେ କାଳିକାମାଈଙ୍କ ବଜେୟାଲୀ ଓ ପୂଜାକୋଠରିକୁ ବାଟ, ସେହି ଦ୍ୱାରର କବାଟ ଦି' ଫାଳ ଅଧା-ଆଉଜା ହୋଇଥିଲା । ସୁନାଦେଈ ତା'କୁ ମୁକୁଳା କଲା । ଝିଲିର ହାତ ଧରି ଦେବୀପ୍ରତିମାର ଆଗରେ ଛିଡ଼ାକଲା ।

କହିଲା, ମୁଣ୍ଡ ନୋଇଁ ପ୍ରଣାମ କର । ପାଦରେ ଚନ୍ଦନ, ପାଦତଳେ ସିନ୍ଦୂର ଫୁଲମାଳ ଦେ । ଘରେ ଦିଓଟି ଘିଅଦୀପ ଜଳୁଛି । ଅନ୍ଧାର ହେବ ନାହିଁ । ମୁଁ କବାଟ ଆଉଜାଇ ଦିଏଁ ।

ସୁନା ଦେଇ ମୁକୁଳା-କବାଟ ଆଉଜାଇ ପାଖକୁ ଆସିଲା । ଟୁଣ୍ଡି ପାଖରେ ସେ ଦେବୀଙ୍କୁ ସାଷ୍ଟାଙ୍ଗ ପ୍ରଣାମ କଲା । ମନକାମନା ଜଣାଇଁ ଉଠି ବସିଲା । ଚେକାପକାଇ ଦୁଇ ହାତ ଯୋଡ଼ି କପାଳରେ ଲଗାଇଲା । ଭୁଟୁଭୁଟୁ ହୋଇ ପୁଣି କ'ଣ ଜଣାଣ କଲା । ଟୁଣ୍ଡି ତାକୁ ଯନ୍ତ୍ରଚାଳିତ ଜାଅନ୍ତାକଣ୍ଢେଇ ପରି ଅନୁକରଣ କରୁଥାଏ । କହିଲା, ମୋ ଗୁଡ଼ତଳେ କଅଣ କେମିତି ହେଉଚି ଲୋ ବଉଳ ! ଜିଭ ତଣ୍ଟି କେମିତି ଶୁଖି ଶୁଖି ଯାଉଚି । ମୋ' ଭିତରର ଚାମୁଣ୍ଡାଟା କ'ଣ କଲବଲ ହେଉଚି କି ?

ସେଇଆ, ସେଇଆ ଲୋ ବଉଳ ! ଆଜି ସେ ତୋ' ଭିତରୁ ଯିବ, ଡରହିନ ପାଇଁ ଯିବ । ତୁ କରପଦ ଯୋଡ଼ି କାଳିକାମାଇଙ୍କୁ ଡାକୁଥା । ଚେଲା ମହାରାଜ ତୋ' ପାଇଁ ଦେବୀଙ୍କ ପ୍ରସାଦ ଅମୃତ ପଣାରୁ ଅଳ୍ପ, ଆସ୍ଥାନ କଡ଼ରେ କେଉଁଠି ରଖି-ଛନ୍ତି କହିଲେ । ମୁଁ ଆଗରୁ କେତେଥର ପାଇଚି ଲୋ । ତୁ ପାଇଦେବୁ । ତୋ'ର ରୋଗଶୋକ ଉଡ଼ିଯିବ ।

ଏତକ କହି ସୁନା ଆସ୍ଥାନ କଡ଼ର ଝାପ୍‌ସାଆଲୁଅ ସ୍ଥାନରୁ ମାଟିଗିଲାସଟିଏ ଆଣି ଟୁଣ୍ଡିର ହାତରେ ଧରାଇ ଦେଲା । ଦୁଇ ତିନି ଚୋକରେ ଟୁଣ୍ଡି ସେତକ ଉଦରସ୍ଥ କଲା । କହିଲା, ବେଶ୍ ମିଠା । ସପୁରି ବାସନା ହେଉଚି । ଖାଲି ତଣ୍ଟି, ଆଉ ଗୁଡ଼ତଳ ଟିକିଏ ଜଳିଉଠିଲା ବଉଳ ।

ସୁନା ଦେଇ କହିଲା, ତୁ ଏବେ ଏକ ଲୟରେ ଦେବୀଙ୍କୁ ଚାହିଁ କରଯୋଡ଼ି ଜଣାଣ କରୁଥା—'ମା, ମୋ' ଦେହରେ ତମେ ଅବତର ।'

—ବାବା ମତେ ସେଇଆ କରିବାକୁ କହିଥିଲେ । କାଳିକାମାଇ ମୋ ଦେହରେ ଅବତରିଲେ । ମୁଁ ହେଲି ଦୁର୍ଗା, ପାର୍ବତୀ, ଶଙ୍କରୀ । କେଉଁ ଚଣ୍ଡୀ, ଚାମୁଣ୍ଡା କି ଆଉ କେଉଁ ଦୁଷ୍ଟ ଠାକୁରାଣୀ, ଯିଏ ଶଙ୍କରୀଙ୍କ ଜଙ୍ଗରୀ ମୋ' ଦେହରେ ଆଶ୍ରା ନେଇ ପାରନ୍ତା କପରି ? ତୋ' ଦେହ ଛାଡ଼ି ଚାମୁଣ୍ଡା ଚାଲିଯିବ । ତୋ' ଦେହ ଆଉ ତୋ' ଦେହ ହୋଇ ରହି ନ ଥିବ । ସେଇଟା ଶିବଙ୍କ ଘରଣୀ ଶଙ୍କରୀଙ୍କର । ତୁ ହୋଇଥିବୁ ଶଙ୍କରୀ ।

ଟୁଣ୍ଡି କେବଳ ଶୁଣୁଥିଲା । ତା'ର ଭାବିବାର ଶକ୍ତି, ମନରେ ଧେନିବାର ଶକ୍ତି ଚହଲୁଥିଲା । ସେ କହିବାକୁ ଲାଗିଲା, ମୁଁ ହେବି ଶଙ୍କରୀ, ଶିବଙ୍କ ଘରଣୀ ଶଙ୍କରୀ !

ସୁନା ଦେଇ କହିଲା, ମୁଁ ବି ଦିନେ ହୋଇଥିଲି । ତୁ ବି ଆଜି ସେଇଆ ହବୁ । ତୁଣ୍ଡ ଖୋଲନା ବଉଳ । ଶୁଣ ଯାହା କହୁଚି । ଶିବବାବା ଆସିବେ । ସେ ଶିବଶଙ୍କରଙ୍କ ଅବତାର । ସେ ସାକ୍ଷାତ୍ ମହାଦେବ । ସେ ଶଙ୍କର, ତୁ ହେବୁ ଶଙ୍କରୀ, ତାଙ୍କ ଘରଣୀ ।

ଟୁଣ୍ଡି ଘୋଷା ଧରିବାକୁ ଲାଗିଲା, ସେ ଶଙ୍କର, ମୁଁ ତାଙ୍କ ଘରଣୀ ଶଙ୍କରୀ । ସେ ଶଙ୍କର, ମୁଁ ଶଙ୍କରୀ; ସେ ଶଙ୍କର—

ସୁନାଦେଈ ଈଶ୍ୱର ଦେହରେ ହାତ ଦେଇ ଧୀରେ ହଲାଇ ଦେଲା । ପୁଣି କହିଲା, ହଁ, ସେ ଶଙ୍କର, ତୁ ଶଙ୍କରୀ । ଆଉ ତୁ ତୁଣ୍ଡ ଖୋଲିବୁ ନାହିଁ । ତୁନି ହୋଇ ଏକ ଲୟରେ କାଳିକାମାଈଙ୍କୁ ଚାହିଁ ତାଙ୍କୁ ଧ୍ୟାନ କରୁଥା । ସେ ଆସିବେ । ସେ ଯାହା କହିବେ ତୁ ସେଇଆ କରିବୁ । ସେ ତୋ'ର କାୟା ଶୁଦ୍ଧ କରିବେ ।

ଆଖି ଆଗରେ, ଅସ୍ପଷ୍ଟ ଆଲୁଅରେ ଦେବୀ ପ୍ରତିମାଟି ହଲହଲ ହେଉଥିଲା । ଶୂନ୍ୟେ ଶୂନ୍ୟେ ଉପରକୁ ଉଠି ଅଦୃଶ୍ୟ ହୋଇ ଯାଉଥିଲା । ସେହି ମହାଶୂନ୍ୟରେ ବ୍ରହ୍ମାଣ୍ଡର ସବୁ ଉଜ୍ଜ୍ୱଳ ତାରା ଏପାଖ ସେପାଖ ହେଉଥିଲେ । ଛୁଟି ପଳାଉଥିଲେ । ଖସିଲା ଉଲ୍କାରାଶିର ନିଆଁ ଝଲକ ପରି ନିମେଷରେ ଲିଭିଯାଉଥିଲେ । ନିହମାକରେ ଝଲସି ଉଠି ପୁଣି ସେହି ଶୂନ୍ୟରେ ବିଲୀନ ହେଉଥିଲେ । ତୁହାକୁ ତୁହା ।

ଆପେ ଆପେ ଆଖିପତା ବୁଜି ହୋଇ ପଡୁଥିଲା । ମୁଦିଲା ଆଖିରେ ମଧ୍ୟ ସେହି ଦୃଶ୍ୟ ସେ ଦେଖୁଥିଲା । ସେ ଅନୁଭବ କରୁଥିଲା, ଯେପରି ସେ ଶୂନ୍ୟକୁ ଉଠି ଯାଉଛି । କ୍ଷଣକରେ ଓହ୍ଲାଇ ଆସୁଛି ମହୀକୁ । ଥରକୁ ଥର । ଆଖି ଖୋଲିଲେ ଆଗରେ ଦିଶୁଛି କାଳିକାମାଈଙ୍କ ଚତୁର୍ଭୁଜା ମୂର୍ତ୍ତି । ସେ ହଲ-ଦୋହଲ ପୁଣି ଶୂନ୍ୟକୁ ଉଠି ଯାଉଛନ୍ତି । ଯେ ନିଜେ ବି । ସେ ଶଙ୍କର ଘରଣୀ । ସେ ଶଙ୍କରୀ !

ସେ ଶଙ୍କରୀ, ଓହ୍ଲାଇ ଆସିଛି ମର୍ତ୍ତ୍ୟମଣ୍ଡଳକୁ । ସେ କେଉଁଠି ଅଛି, ବେଳ କେତେ, ଘଡ଼ି କ'ଣ, ସେ ବିଭୋର ଯାଇଛି । କେତେ ନ ଥିଲା ନାରୀଙ୍କର ଅମୋକ୍ଷ ଆତ୍ମାର ଦୁଃଖ-ଜରଜର କାନ୍ଦୁରା ରୂପ ଆଖିଆଗରେ ଧୂଆଁଳିଆ ଅସ୍ପଷ୍ଟ ହୋଇ ଭାସିଯାଉଛି ।

କିଏ ? ଶଙ୍କରୀ ଜାଣିପାରୁଛି । ଈଶ୍ୱର ଜନ୍ମକଲା ବୋଉ ! କିଏ ସେ ? ଶାନ୍ତ, ସ୍ନେହମୟୀ ! କିଏ ସେମାନେ ? ଅଜଣା ଅଶୁଣା ସବୁ ବୟସର, ଝିଅ, ବୋହୂ, ସଧବା, ବିଧବା ! ସମସ୍ତେ ବିରସବଦନୀ । ଲୁହ ଛଳ ଛଳ ଆଖି ! ଈଶ୍ୱ ଭିତରର ଘୃମଣ୍ଡା ଅକାଳରେ, ଈଶ୍ୱର ଅଜ୍ଞାତରେ ସେମାନଙ୍କର ରକ୍ତ ଶୋଷି, ମାଂସ ଖାଇ ଜୀବନ ନେଇଛି ।

ସେହି ଅତି ନିଷ୍ଠୁର ଘୃମଣ୍ଡା ବିରୁଦ୍ଧରେ ସେମାନେ ଗୁହାରି କରୁଛନ୍ତି ।

ଆସୁଛନ୍ତି ପୁଣି ଦଳେ ପୁରୁଷଙ୍କର ଅମୋକ୍ଷ ଆତ୍ମା ! ଆଗରେ ଈଶ୍ୱର ଶଶୁର, କ୍ରୋଧରେ ତାଙ୍କର ମୁହଁ ଫଣଫଣ । ତା'ପରେ ଗୁଡ଼ିଏ ଶିଶୁଙ୍କର ଆତ୍ମା । ଗଣି ହେଉ ନାହିଁ । ଆହା, ନିମୀସ୍ତା, ନିର୍ଦ୍ଦୋଷ, ନିରୀହ, ଶିଶୁ-କଳିକାଗୁଡ଼ିକ ! ନିଦାରୁଣ ଘୃମୁଣ୍ଡିଟା ସେମାନଙ୍କୁ ବି ଖାଇଦେଲା । କେଉଁଠି ଈଶ୍ୱର ସାବତ ମାଆର ପୁଅ ?

କେଉଁଟି ତା'ର ପେଟ ଭିତରେ ମନ ଖୁସିରେ ଓଲଟ ପାଲଟ ହେଉଣୁ ଜୀବନ ହାରିଲି ? କେଉଁ ଦିଓଟି ଦେହରେ ଜୀବନ ସଞ୍ଚର ଆସୁଣୁ ସେହି ଜୀବନକୁ କରାଳ ଖ୍ୟମୁଣ୍ଡା ଉଡ଼ାଇ ଦେଲା ?

ସେମାନେ ଉଭେଇ ଗଲେ ।

ଟେସି-ଶଙ୍କରୀ ଆଖି ବୁଜିଲା । ସେ ଅସ୍ଥିର ହେଲା । ସେ ଟଳ ଟଳ ହୋଇ ଉଠିଲା । ଦୀପ ଦୁଇଟିର ଆଲୁଅ ଆହୁରି କ୍ଷୀଣ ହେଲାଣି । କୋଠରୀ ଅଧିକ ଅନ୍ଧାରିଆ ଦିଶିଲାଣି । ସେ ଆଖି ଖୋଲିଲା । ସେ ହାତ ଟେକିଲା । ହାତ ଲମ୍ବାଇ, ଦେହ ଦୋଳାଇ ଚାରିଆଡ଼ର ଶୂନ୍ୟତାକୁ ଅଣ୍ଡାଳିଲା । ସେ କିଛି ପାଇଲା ନାହିଁ । ତା'ର ମୁଣ୍ଡଭିତରେ ଘୂର୍ଣ୍ଣିର ଚାପ । ଦେହରେ ଜଳନ୍ତା ନିଆଁର ଧାପ ।

ସେହି ଚାପର ଦହନରୁ, ସେହି ଧାପର ପୀଡ଼ନରୁ ନିସ୍ତାର ଲଭିବାର ଭାବନା-ବନ୍ଧନ ତାଡ଼ନାରେ ଶଙ୍କରୀ-ଟେସିର ହାତ ଦିଓଟି ଅଯତ୍ନରେ ବନ୍ଧା ମୁଣ୍ଡର ଗଣ୍ଠି ମୁକାଳିଲା । ଖୋଲା କବରୀ ପିଠିରେ ଝୁଲିଲା । ମୁଣ୍ଡ ହଲାଇ କେଶ ଝାଡ଼ିଲା । ସେ କେଶ ନିତମ୍ବ ତଳକୁ ଲମ୍ବି ଆସିଲା । ସେ ତା'ର ପୃଥୁଳ ଦେହରେ ହାତ ସଞ୍ଚାଳିଲା । ତା'ର ସ୍ୱାସ୍ଥ୍ୟ ଭରପୂର ଦେହ ପାର୍ଥିବ ଆବରଣରୁ ମୁକ୍ତ ହୋଇଛି । ସେ ମଣିଷ ଦେହ ଗ୍ରୁଡ଼ି କାଳିକାମାଈଙ୍କର ଫୁଙ୍ଗୁଳା ରୂପ ଧରିଛି, ଏହା ସେ ଗ୍ରହଣ କଲା । ସେ କାଳିକା, ସେ ଶଙ୍କରୀ, ସେ ଦେବୀ ଦୁର୍ଗା !

ଉମିଲା ଭାବନାରେ ଭରପୂର ମନ । ବିବେକହରା ଖୁଣ୍ଟିଆ ଘରର ଅଡ୍ୟାଗ୍ଧର-ସହା କୁହର ବୋହୂଟି । ନିଶା-ଚଗ୍ର ଟଳ ଟଳ ଦେହ ଘୋଷାରି ଘୋଷାରି, ହାତ ଟେକିଲା । ହାତ ଝୁଲାଇ, କାଳିକାମାଈଙ୍କର ଅତି କ୍ଷୀଣ ଆଲୁଅରେ, ଅନ୍ଧାରିଆ କୋଠରୀ ଭିତରେ, ବାହୁଟୀଲଗା ବାଇବଛ ପରି ଭୂଟୁଭୁଟୁ ହୋଇ ବିଚରିବାକୁ ଲାଗିଲା ।

କଟୀର ବସନ ଲେଉଟି ଯାଉଛି । କାହାକୁ କ'ଣ ସେ କହୁଛି । କାହାକୁ ଦୁଇ ହାତରେ ବେଢ଼ାଇ ଧରୁଣୁ ଶୂନ୍ୟକୁ ଆଲିଙ୍ଗିଲି ହାତ ନିଜର ଉନ୍ନତ ଫୁଙ୍ଗୁଳା ବକ୍ଷରେ ଗ୍ରଥି ହୋଇ ତଳକୁ ଖସୁଛି । ଟେସି ହସିଉଠୁଛି । ସେ ହସ ଦୁରନ୍ତ । ସେ ହସ ଅଟ୍ଟଣ୍ଡା । ଦୁର୍ଦ୍ଦମ । ଟେସିର ସାରା ଶରୀର ନାଚି ଉଠୁଛି । କୋଠରୀର ପରିବେଶ ସଙ୍ଗେ କାଳିକାମୂର୍ତ୍ତିକୁ ସେ ହସ ନଗ୍ନଉଛି ।

ଟେସି ହସୁଛି । ଟେସି ଦୋହଲି ଦୋହଲି ନାଚୁଛି । ସେ ଶଙ୍କରୀ ହୋଇଛି । ଖୋଜୁଛି ପରି ଶିବଶଙ୍କରଙ୍କୁ ! ତତ୍କ୍ଷଣ ଆଲୋକର ଉଜ୍ଜ୍ୱଳ-ଝଲକ ମୁହଁରେ ପଡ଼ିଲା । ଟେସି ଜଳକା ହେଲା । ହସ ଅମିଲା । ସେ ମୁହୂର୍ତ୍ତେ ନିଶ୍ଚଳ ପଥରମୂର୍ତ୍ତି ପରି ଠିଆ ହୋଇ ରହିଲା । ଜଳକା ଆଖି ଆଗର ସହସ୍ର ଚପଳା-ଚଞ୍ଚଳ ଫୁଲିଙ୍ଗର

ଆବର୍ତ୍ତି ମଝିରେ ସେ ଦେଖିଲା ସ୍ୱୟଂ ଶିବଶଙ୍କର । ପାଖ ଘରର କବାଟ ଖୋଲି ଧୀର ମନ୍ଥର ଗତିରେ ଏ ଘରକୁ ଆଗେଇ ଆସୁଛନ୍ତି ।

ଟଗି ଚମକି ଉଠିଲା । ତା'ର ଆଖିପତା ମୁଦି ହୋଇଗଲା ।

ସେ ଆଖି ଖୋଲିଲା । ଆଲୁଅର ଝଟକ ପଲକପାତରେ ଉଭେଇ ଯାଇଛି ।

ଘିଅ ଦୀପର ଅଚେତନା-ସଳିତାର କ୍ଷୀଣ ଶିଖାର ଅସ୍ପଷ୍ଟ ଆଲୋକରେ ଝଲକ ଝଲସା ଆଖିକୁ ଝାପ୍‌ସା ଦିଶୁଛି । ଆଗରେ ଠିଆ ସେ ପ୍ରକାଣ୍ଡ ମୂର୍ତ୍ତି ! ଶିବବାବା ନୁହନ୍ତି, ଶିବ ଶଙ୍କର ! କେଉଁ କୈଳାସପୁରରୁ ଉଭା ହୋଇଛନ୍ତି । ସେ ହାତ ଟେକୁଛନ୍ତି । ହାତଟି ତା'ର ମୁଣ୍ଡ ଉପରକୁ ଓହ୍ଲାଇ ଆସୁଛି । ସେ ହାତ ତା'ର ମୁଣ୍ଡ ଘୁଂପଡ଼ାଉଛି ଧୀରେ ଧୀରେ । ସେ ହାତ ତା'ର କେଶ ସାଉଁଳୁଛି ।

ସେହି ମଧୁର, ମୁଗ୍‌ଧ, କୋମଳ ସ୍ପର୍ଶରେ ତା'ର ଅଶଳା ଦେହରେ ନୂଆ ଜାଗରଣ, ନୂଆ ଶିହରଣ, ନୂଆ ଜୀବନ ସଞ୍ଚର ଯାଉଛି । ସେହି ଶିବଶଙ୍କର ମହାଦେବଙ୍କର କେଶରେ ଆବୃତ ମୁହଁରୁ ଗୁରୁଗମ୍ଭୀର ଶବ୍ଦ 'ତ୍ରୁମ୍ ହିଁ ଶଙ୍କରୀ' ତା'ର କାନରେ ବାଜୁଛି । ସେହି ଶବ୍ଦ ତା'ର ମନରେ ଲହଡ଼ି ଭାଙ୍ଗୁଛି । ତା'ର ଚେତନା ବୁଡ଼ାଇ ଅବଚେତନକୁ ସେହି ଶବ୍ଦ ଆଘାତ କରୁଛି । ମୁହଁରୁ ଧୀର, ଅସ୍ପଷ୍ଟ ପ୍ରତିଧ୍ୱନି ବାହାରୁଛି, 'ମୁଁ ହିଁ ଶଙ୍କରୀ' ।

'ତ୍ରୁ ହିଁ ଶଙ୍କରୀ' ଶବ୍ଦ କ୍ଷୀଣରୁ କ୍ଷୀଣତର ହେଉଛି । ଦୂରେଇ ଦୂରେଇ ଯାଉଛି, ଆଉ ତା'ର ପ୍ରତିଧ୍ୱନି 'ମୁହିଁ ଶଙ୍କରୀ' ଟଗିର ନଜଭୂଲା ବଗରର ତୁଣ୍ଡରେ ଧୀରେ ଧୀରେ ଓଠପତାର କମ୍ପନରେ ମିଳାଇ ଯାଉଛି ।

ଶିବବାବାଙ୍କର ବଳିଷ୍ଠ ହାତଟିଏ ଧରି ମତିହରା ଟଗି ଆଗେଇ ଯାଉଛି ଅସ୍ପଷ୍ଟ ଆଲୁଅରୁ ଝାପସା ଅନ୍ଧାରିଆ କେଉଁ ଅଜଣା ରାଇଜକୁ, ଯେଉଁଠି ସୂର୍ଯ୍ୟ ଓ ଚନ୍ଦ୍ରଙ୍କର ଉଦୟ ଅସ୍ତ ନାହିଁ, ଯେଉଁଠି ବାୟୁର ଆତଯାତ ନାହିଁ, ଯେଉଁଠି ଅନ୍ୟ ଜୀବନର ସ୍ଥିତି ନାହିଁ । ସେଠି ଆଖିକୁ ଦିଶେ ଆକାଶ-ଭରା ଅଗଣନ ତରା, ବିଜୁଳି-ପ୍ରଖର ଗତି, ଝଲକ ଝଲସି ପଲକରେ ଲିଭି ପଲକରେ ଜଳି ଉଠନ୍ତି, ବିରାମ ନାହିଁ !

ଦିଓଟି ବଳିଷ୍ଠ ମାଂସଳ ହାତ ଟଗି-ଶଙ୍କରୀକୁ ବେଢ଼ାଇ ଧରିଲା । ସାରା-ଶରୀରରେ ଉତ୍ତେଜନାର ତରଙ୍ଗ ଛୁଟାଇ ଗୋଟିଏ ବିରାଟ ବକ୍ଷରେ ସେହି ମୋହିତା ମୂର୍ତ୍ତିର ପୃଥୁଳ କୋମଳ ଦେହଟି ଗୁମ୍ଫି ହୋଇଗଲା । ଉପାସୀ ଅଙ୍ଗରେ ଉତ୍କଟ କାମନାର ଅନଳ ଜଳାଇ ସେହି ସବଳ ବାହୁ ଦିଓଟି ଅର୍ଦ୍ଧ-ମୂର୍ଚ୍ଛାଗତା ତନୁଟିକୁ ଦେବୀଙ୍କର ପଲଙ୍କ ଉପରେ ଶୁଆଇ ଦେଲା । ଅଭିଜ୍ଞତା-ଜରଜର ଆଗ୍ରହୀ-ତନୁଟି ଆସନ୍ନ-ମିଳନର ଚରମ-ପୁଲକର ବିହ୍ୱଳ-ପ୍ରତୀକ୍ଷାରେ ନିଶ୍ଚଳ ହେଲା । ଆଖି ଦିଓଟି ମୁଦ୍ରିତ ହେଲା । ଦ୍ରୁତ ଦୋହଲାଇ ଛୁଟିଲା ଖରଶ୍ୱାସ ।

ଆଖିପତା ତଳେ ଅନନ୍ତ ଆକାଶ । ଘନ ଅନ୍ଧାର ଭିତରେ ଜୁଳୁଜୁଳିଆ ପୋକ ପରି ଅଗଣିତ ଚଳନ୍ତ ନକ୍ଷତ୍ର । ସବୁ କାହିଁ ଉଭେଇ ଯାଉଛି । ଘୋଟିଆସୁଛି ସୂର୍ଯ୍ୟ ବୁଡ଼ିଲା ପରର ଲୋହିତ ଆଭା । ଚାଲି ଯାଉଛି । ମାଡ଼ି ଆସୁଛି ପରକୁ ପର, ଏପାଖୁ ସେପାଖୁ, କେତେ ରଙ୍ଗର ବଉଦ ନୁହେଁ, ଖାଲି ବିସ୍ତୃତ । କାୟା ବଦଳାଇ ଚାଲି ଯାଉଛି । ତା'ଆର ଫାଙ୍କରେ ହିଲ୍ଲୋଲମୟ ବିସ୍ତାର । କେତେ ପର୍ବତ, ଅରଣ୍ୟ, କାନ୍ତାର,ନଦୀ, ଅଦେଖା ଅଜଣା କେତେ ଜୀବଜନ୍ତୁ । ଉଭେଇ ଯାଉଛନ୍ତି ସେହି ହିଲ୍ଲୋଲମୟ ବ୍ୟାପ୍ତି ମଝିରେ ଉଭା ହେଉଛନ୍ତି ତ୍ରିଶୂଳଧାରୀ ଶଙ୍କର—ଶିବବାବା ! ପାଖରେ ଶଙ୍କରୀ—କାହାର ଅନୁରୂପ ?

ତାତଲା କପାଳ ଉପରେ ଶୀତଳ ହାତର ମୃଦୁ ପରଶରେ ଟଗିର ମୁଦିଲା ଆଖିତଳର ଉଜ୍ଜ୍ୱଳ ଆକାଶ ଅପସରି ଯାଉଛି । ଘୋଟି ଆସୁଛି ପୁଣି ଦୁଃସହ, ଦୁରନ୍ତ, ନୀରନ୍ଧ୍ର ଅନ୍ଧାର ।

ଟଗି ଆଖି ଖୋଲୁଛି । ପାତଳ ଅନ୍ଧାର ଭିତରେ ଯାହାଙ୍କର ଆହ୍ଲାଦନ ତା'ର ଉନ୍ମୁକ୍ତ ଅଙ୍ଗରେ ମୂର୍ଚ୍ଛାଳିଆ ଉନ୍ମାଦନାର ପ୍ରବଳ ଆବେଗ ସୃଷ୍ଟି କରୁଛି, ସେହି ଶିବଶଙ୍କର ତା'ଆର ପାଖରେ ବସିଛନ୍ତି । ସେ ତ ଶଙ୍କରଘରଣୀ ଶଙ୍କରୀ ! ଦୁଇ ହାତ ଟେକି ତାଙ୍କର ଦେହକୁ ବେଷ୍ଟନ କରିବାକୁ ସେ ଉଠି ବସୁଁ ତାଙ୍କର ବିଶାଳ ବକ୍ଷରେ ଲୋଟିପଡ଼ିଲା । ଦୁଇଟି ବାହୁର ନିବିଡ଼ ଆଶ୍ଳେଷରେ ସର୍ଜନା-କାମିନୀ ଶଙ୍କର-ଭାମିନୀ ଟଗି-ଶଙ୍କରୀ ଧୃତିହରା, ମତିହରା ହେଲା । ଆପେ ଆପେ ନୟନ ହେଲା ନିମୀଳିତ । କାନରେ ବାଜିଲା ଅଣାକାରପୁର ଶୂନ୍ୟଶବଦ, ଅନାହତଧ୍ୱନି—ଅବିରାମ···

ଟଗି-ଶଙ୍କରୀ ନିଜକୁ ଭୁଲିଲା । ପୁଲକର ଶୂନ୍ୟ ତରଙ୍ଗରେ ଦୋଳି ଖେଳି ଖେଳି ସେ ଆତ୍ମହରା ହୋଇ କାନେଇ ରହିଲା ସେହି ଧ୍ୱନିକୁ, ଯାହା ଭାସି ଆସୁଥିଲା ଆଖିତଳର ଗହନ-ତମସାର ଅନନ୍ତ-ବ୍ୟାପ୍ତି ଭିତରୁ, ଚାରିଆଡ଼ୁ, ଯେଉଁଠି ସେହି ଅଗଣିତ ତାରକା ଜନମି, ବିଜୁଳି ବେଗରେ ଛୁଟିଥିଲେ, ବିଲୟ ଭଜି ପୁଣି ଜନମ ଲଭି ଛୁଟୁଥିଲେ ଅନନ୍ତ ମୁଖରେ—

ବଉଳ, ବଉଳ, ଉଠ୍ ଉଠ୍ ।

ଟଗି ଆଖି ଖୋଲିଲା । ଉଜ୍ଜ୍ୱଳ ଆଲୁଅରେ ସେ ଚାହିଁ ମଧ ଚାହିଁବାକୁ କ୍ଷମ ହୋଇ ପାରିଲା ନାହିଁ । ତନ୍ଦ୍ରାଜୁଡ଼ୁବୁଡ଼୍ ଆଖିକୁ ପୁଣି ତା'ର କ୍ଳାନ୍ତ ଆଖିପତା

ଘୋଡାଇ ଦେଲା । ସେ ଆଖି ବୁଜିଲା । କଡ଼ ଲେଉଟାଇଲା । ହାତ ଲମ୍ବାଇ କାହାକୁ ଯେପରି ଖୋଜିବାକୁ ଲାଗିଲା ।

ସୁନା ବୁଝିଲା । ଗ୍ଲୁଆଁକୁ ହସି, ପୁଣି ସେ ଗମ୍ଭୀର ହେଲା ।

ରାତି ଅଧ ଡେଇଁଗଲାଣି । ବାବାଜୀ ବାହାରକୁ ଯାଇ ପୁଣି ଏବେ ନିଜ କୋଠରୀକୁ ଫେରି ଆସିଲେଣି । ଦାର କବାଟ ଖୋଲାର ଶବ୍ଦ ଶୁଣି ସେ ଚେଲା-ବାବାଙ୍କ କୋଠରୀରୁ ବାହାରି ଆସିଲା । ଚେଲାବାବା ମଧ୍ୟ ତା' ପଛେ ପଛେ ଆସିଲେ । ଗୋଟିଏ ଆଲୁଅ ଧରି ବାବାଜୀଙ୍କ ପଛେ ପଛେ ଗଲେ । ଏହି ଅବସରରେ ଆଲୁଅଟି ଧରି ବାବାଜୀଙ୍କ କୋଠରୀ ବାଟେ ଏ ଘରେ ସେ ପ୍ରବେଶ କରିଛି । ମଝି କବାଟ ବନ୍ଦକରି କାଳିକାମାଈଙ୍କ ଘରର ଆର-କବାଟ ମୁକୁଳା କରିଛି । ବାବାଜୀ ବଳେ ବୁଝିବେ ।

ଟଗିକୁ ଏକୁଟିଆ ଗ୍ଲୁଡ଼ି ସେ ଏକା ଘରକୁ ଫେରିବା ଇଚ୍ଛାକୁ ଚେଲା-ବାବା ଖଣ୍ଡନ କରିଥିଲେ । ତାଙ୍କର ଆଦେଶ ଲଙ୍ଘିବାକୁ ସେ ସାହସ କରି ନ ଥିଲା । ସେ ବି ଶିବକଳା ନେଇ ଜନ୍ମ । ସାଧକ । ଅଗତଭବିଷ୍ୟ କରି ଓ କପାଳ ଦେଖି କହି ଦିଅନ୍ତି । କିଏ ଜାଣେ କି ଅଜଣା ବିପଦ କେଉଁଠି ବାଟ ଓଗାଳନ୍ତା ? ସେ ବାଧ୍ୟ ହୋଇ ତାଙ୍କର ପାଖରେ ଅଟକିଗଲା ।

କେତେବେଳରୁ ଜହ୍ନ ଉଠିଲାଣି । ରାତି ତ ନିର୍ଜନ । ତଥାପି, ଚେଲା ବାବା ତା'ର ମିନତି ମାନି ଜବାବ୍ ଦେଇଛନ୍ତି ଯେ, ସେ ଦୁହିଙ୍କୁ ଗାଁମୁଣ୍ଡରେ ଗ୍ଲୁଡ଼ି ଦେଇ ଆସିବେ ।

ବଉଳଟା ବେଶୀ ପ୍ରସାଦ ଖାଇ ଅଚଳଆ ହୋଇଛି । ଦୋଷ ତା'ର ନୁହେଁ; ତା'ର ଅଭ୍ୟାସ ନ ଥିବା ଜାଣି ନ ପାରି ଚେଲାମହାରାଜ ତା'କୁ ଅଧିକ ଦେଇ-ଦେଲେ । ସେ ନିଜେ ବି କାଳିକାମାଈଙ୍କ କଦଳୀମିଶା ଅମୃତ-ପ୍ରସାଦ ଟିକିଏ ବେଶି ଦେଇଦେଲା । ତାକୁ ତା'ର ଘରେ ପହଞ୍ଚାଇବା କାଠିକର ପାଠ ହେବ ।

ତେଣିକି କଲେ ପ୍ରମାଦ । ସେମାନେ କ'ଣ ତାଙ୍କର କେଉଁ ରାତିଆ ଅଭିଯାନରୁ ଫେରିଥିବେ ? ଫେରିଥିଲେ, ସେମାନେ କ'ଣ ପ୍ରଚୁର ଗଞ୍ଜେଇ ଟାଣି ନ ଥିବେ ? ପେଟଭରି ମଦ ପିଇ ହତଜ୍ଞାନ ହୋଇ ପଡ଼ି ନ ଥିବେ ?

ଗ୍ରାମଲୋକଙ୍କର ହାବୁଡ଼ରେ ବି ସେ ପଡ଼ିହେଁ ପଡ଼ିପାରନ୍ତି । ସେମାନେ ତା'ର ଦୁର୍ନାମ ରଟାନ୍ତି । ତା'କୁ ଗୋଡ଼େ ଗୋଡ଼େ ଜଗିଛନ୍ତି । ବଉଳ ଟଗିଦେଈ ତା'ର ସଙ୍ଗରେ ଥିବ । କାହାର ଜିଭରେ ହାଡ଼ ଅଛି ଯେ, ସେ ତା'କୁ ନିନ୍ଦିପାରିବ ?

ଦୁନିଆଁ ସାରା ସେମାନେ ପ୍ରଚାର କରି ବୁଲିଲେ ବୁଲନ୍ତୁ । ତା'ର ସ୍ୱାମୀ ଜାଣନ୍ତି ଯେ ଶିବବାବାଙ୍କର ଭକ୍ତ । ଝରିବାବୁ ଯେ ଆହୁରି ବଡ ଭକ୍ତ । ଶିବ-ଶଙ୍କରଙ୍କର ନିନ୍ଦା ସେ ହେଁ କାନକୁ ନେବେ ନାହିଁ ।

ଯେଉଁ ଭାଗ୍ୟବତୀମାନେ ଦେବତାମାନଙ୍କର ଆଶୀର୍ବାଦ ଲଭି ପୁତ୍ରବତୀ ହୋଇଥିଲେ, ସେମାନଙ୍କୁ କେହି ଦୋଗୃରୁଣୀ କହୁନଥିଲେ । ସେମାନେ ସତୀ, ମହାସତୀ, ସମ୍ମାନର ଅଧିକାରିଣୀ ।

ଲୋକେ ଭୁଲିଲେ ଭୁଲନ୍ତୁ ।

ସୁନା ଝୁଣ୍ଟର ହାତ ଧରି ଓଟାରି ଉଠାଇଲା । ନିଦ ମଳମଳ ଆଖି ଓ ଉଣା ହୋଇଆସିଥିବା ନିଶା ଟଳଟଳ ପାଦରେ ସେ ପଲଙ୍କକୁ ଧରି ଠିଆହେଲା ।

ସୁନା କହିଲା, ତୋ'ର ତପସ୍ୟା ଫଳିଛି । ଶିବ-ଶଙ୍କର ତୋତେ ଦୟା କରିଛନ୍ତି । ଆଉ ତୋ' ଭିତରକୁ ଗୃମଣ୍ଡା ଆସିବ ନାହିଁ । ରାତି ଦଳେଇଲାଣି । ଗୃଲ ଘରକୁ ଫେରିଯିବା ।

କ୍ଲାନ୍ତ ଆଖିପତା ବୁଜି ହୋଇ ଆସୁଥାଏ । ଝୁଣ୍ଟ ଦେଖୁଥାଏ, ତା'ର ବଉଳ ମୁକୁଳା କେଶରେ ଅଙ୍ଗୁଳି ଚଳାଇ ସେ କେଶରେ ଗଣ୍ଠି ପକାଇ ମୁଣ୍ଡରେ ଜୁଡ଼ା ବାନ୍ଧୁଛି । ନିଜ ହାତରେ ତା'ର ଶାଢ଼ିଖଣ୍ଡିରେ ଫୁଙ୍ଗୁଳା ଦେହକୁ ବେଢ଼ାଇ ଟାଣିକରି ଖୋସଣି ଖୋସୁଛି ।

ଝୁଣ୍ଟ ଳୁଳୁଳୁ କରି ଗୃରିଆଡକୁ ଗୃହିଁଲା ।

ସୁନା ଶଙ୍କରଙ୍କର ପଲଙ୍କକୁ ସଜାଡ଼ି ଦେଲା । ବିଞ୍ଚା ହୋଇ ଦଳିଦାଳି ହୋଇଥିବା ଫୁଲଗୁଡ଼ିକୁ ଏକାଠି କରି ମୁଣ୍ଡ ପାଖରି ତକିଆ କଡ଼ରେ ଜମାଇ ଦେଲା । ତହିଁରୁ ଦୁଇଟି ନାଲି ମନ୍ଦାର ଆଣି ନିଜ ମୁଣ୍ଡରେ ଓ ଝୁଣ୍ଟର ମୁଣ୍ଡରେ ଲଗାଇଲା । ଗୋଟିଏ ନିଜର ଜୁଡ଼ାରେ ଓ ଆରଟି ଝୁଣ୍ଟର ଅଯତ୍ନରେ ବନ୍ଧା ଜୁଡ଼ାରେ ଖୋଷିଲା । କହିଲା, ବଉଳ, ଏବେ ମାଆଙ୍କର ଏଇ ପବିତ୍ର ଆସ୍ଥାନକୁ ଓଲଗି ହ ।

ସୁନା ତଳେ ମୁଣ୍ଡ ଲଗାଇଲା । ତା' ଦେଖାଦେଖି ଝୁଣ୍ଟ । ସୁନା ପୁଣି କହିଲା, ମା' ତୋ ମନ କାମନା ପୂରଣ କରିବେ । ଦେଖିବୁ ରହ । ଶିବକଳାରେ ଜନମ ପୁନେଇଁ ଜହ୍ନ ପରି ଦିବ୍ୟ ସୁନ୍ଦର ପୁଅଟିଏ ତୋ' କୋଳରେ ଝୁଲିବ ।

ଝୁଣ୍ଟ ବୁଝିଲା । ତା' ଆଖିରୁ ଅପ୍ ଅପ ହୋଇ କେଇ ବିନ୍ଦୁ ଲୁହ ଝରିପଡ଼ିଲା । ସେ କହିଲା, ସତେ କି ବଉଳ ! ସେଇ ଯେଉଁ ପିଲାଟା ମୋ' ପେଟରେ ଓଲଟି ଓଲଟି ମୁଣ୍ଡିଆ ମାରୁଥିଲା, ଆଉ ତା' ମଦୁଆ ବାପର ଧାପ ସହି ନ ପାରି ପେଟରେ ମରି ଜନମିଲା ? ଶିବକଳା ନେଇ ସେ ପୁଣି ମୋ' ପେଟରୁ ଜନମିବ ?

ଝୁଣ୍ଟର ମୁହଁକୁ କଟମଟ କରି କ୍ଷଣେ ଗୃହିଁ ସୁନା ଦେଇ ବଗ୍ଭରିଲା, ତା'ର ନିଶା ଛାଡ଼ି ଆସିଲାଣି । ଯାହା ସେ ଅଧା-ଚେତା ଅବସ୍ଥାରେ ଅଙ୍ଗେ ନିଭାଇଛି, ସବୁକୁ ସେ ସପନ ଅନୁଭବ ବୋଲି ଧେନାଛି ପରି ! ଆଲୋଚନାର ସମୟ ଓ ସ୍ଥାନ ଏ ନୁହେଁ । ସୁନା ମୁଡ଼ୁକେଇ ହସିଲା । କହିଲା, ଆ ମୋ ପଛରେ । ଝଅଟି ଫେରିବା ।

ସୁନା ଆଲୁଅ ଧରି କାଳିକାମାଈଙ୍କ ଆଗକୁ ଗଲା । ଦଉଟି ଘାପରେ ପାଖରେ ଥିବା ପାତ୍ରରୁ ଆଣି ଘିଅ ଢାଳି ଲିଭି ଆସୁଥିବା ବତୀ ତେଜିଲା । ଆସ୍ଥାନ-ତଳେ ବହଳ ହୋଇ ବୋଳା ହୋଇଥିବା ସିନ୍ଦୂରରେ ଡାହାଣ ହାତର ମଝିଆଙ୍ଗୁଠି ଲଗାଇ ଅଧିଅ-ସିନ୍ଦୂର 'ଟୋପା ଉପରେ, ନିଜ କପାଳର କେଶତଳେ ବଡ଼ ଟୋପାଟିଏ ଲଗାଇଲା । ତଥାପି, ଟଙ୍କି ପାଖକୁ ଆସି ନ ଥିଲା । ଅଳପ ଦୂରରେ ଧୀରେ ଧୀରେ ପାଦ ପକାଉଥିଲା ।

ଅପେକ୍ଷା କଲା ।

ଟଙ୍କି ପାଖରେ ପହଞ୍ଚି ସୁନାଦେଈର କାନ୍ଧକୁ ଧରିଲା । କହିଲା, ମତେ ଉଠାଇଲୁ କାହିଁକି ? ମୋ ମୁଣ୍ଡଟା ଝାଙ୍କି ଦେଉଛି । କାନ ଭାଁ-ଭାଁ ହେଉଛି । ଆଖିରେ ଜୁଳୁଜୁଳିଆ ପୋକଗୁଡ଼ାକ ଘାଲୁବାଲୁ ହେଉଛନ୍ତି । ଗୋଡ଼ ତ ଉଠାଇ ପାରୁ ନାହିଁ ।

ଟଙ୍କିର କପାଳରେ ସେମିତି ବଡ଼ ସିନ୍ଦୂର ଟୋପା ଲଗାଇ ସୁନା କହିଲା, ତୋ' ଦେହରେ ମା' ଶଙ୍କରୀ ଅବତରି ଥିଲେ । ଶଙ୍କର ତ ଆସିଥିଲେ । ସେ ଦହେଁ ମିଳାମେଳା ସାରି ଚାଲିଗଲେ । ମାଆଙ୍କ ବିଛଣାରେ ଆଉ ଶୋଇବାକୁ ଭୁ କଏ ? ପାପ ହେବ ନାହିଁ ? କାଳିକାମାଈଙ୍କ ପ୍ରତାପ କ'ଣ ଜାଣୁ ନାହିଁ ? ଓଳଗି ହ । ସହଳ ନ ଗଲେ ଲୋକହସା ହେବା । ବାରି ବାଟେ ଯିବା ବଉଳ, ବାଟ ଅଛି । ଆଲୁଅ ତ ଅଛି । ଚେଲାମହାରାଜ ଅପେକ୍ଷା କରିଛନ୍ତି । ଆମକୁ ସେ ବଳେଇ ଦେବେ । କୂଅ ମୂଳରେ ମୁହଁରେ ପାଣି ଛାଟିବୁ । ଗୋଡ଼, ହାତ, ଦେହ ପଖାଳି ନେବୁ । ତନ୍ଦ୍ରା ଛାଡ଼ିଯିବ ।

ସୁନା କାଳିକାମାଈଙ୍କୁ ଓଳଗି ହେଲା । ତା' ଦେଖାଦେଖି ଟଙ୍କି । ସେ ଝଟତି ଉଠିଲା ନାହିଁ । ସେ ଅନୁଭବ କରୁଥିଲା, ପୁଣି ଯେପରି ସେ ଚେକା-ଚେକା-ଭଉଁରି ଖେଳ, ଘୂର୍ଣ୍ଣିବାତ୍ୟାରେ କୁଟା, କାଠି, ପତ୍ର ପରିଉପରକୁ ଉପରକୁ ଉଡ଼ିଯାଉଛି

ସୁନା ତା'ର ହାତ ଧରି ଟେକୁ ଉଠାଇଲା । ତା'ର ଗୋଟିଏ ହାତରେ ଦେବୀଙ୍କର ଛଡ଼ା ଫୁଲ ଏବଂ ସିନ୍ଦୂର ଲଗା ବେଲପତ୍ର ଥିବା ଗୁଙ୍ଗୁଡ଼ିର ବେଣ୍ଟ ଧରାଇଲା । ଆଉ ହାତଟି ନିଜେ ମୁଠାଇ ଲଣ୍ଠନ ଧରି ସେ ଆଗେଇ ଗଲା । ଦେବୀଙ୍କ କୋଠରୀରୁ ପଦାକୁ ବାହାରିଲା । କବାଟ ଦୁଇଫାଳ ଆଉଜାଇଲା ।

ପିଣ୍ଡିକା ଉପରେ ଗୋଟିଏ ମାତ୍ର ଆଲୁଅ କମା ହୋଇ ଜଳୁଥିଲା । ଅଗଣା ଅଳ୍ପ ଆଲୋକିତ ହୋଇଥିଲା । ଶିବବାବା ଓ ଚେଲାମହାରାଜଙ୍କର କୋଠରୀ ଦଉଟି ବନ୍ଦ ହୋଇଥିଲା ।

ସୁନା କହିଲା, ଭରି ନିଗ୍ରୁଟିଆ ଲାଗୁଛି । ନା ? ଏମିତି କେବେ ହୁଏ ନାହିଁ । ଆମର ବ ଏତେ ଡେରି ହୁଏ ନାହିଁ । ତେବେ, ଡର କାହିଁକି ? ଡାକଲେ ଚେଲା-ମହାରାଜ ଉଠିବେ । ଚାଲ୍ ଆଗ କୂଅ ମୂଳକୁ । ଆ— ।

ସୁନା ଟୋକୀର ହାତ ଧରି ବାରଆଡ଼କୁ ବାଟ କଢ଼ାଇ ନେଲା । ଜ୍ୟେଷ୍ଠ ମାସ କୃଷ୍ଣ ପକ୍ଷ ଅଷ୍ଟମୀର ଖଣ୍ଡିଆ ଜହ୍ନ ଅନ୍ଧାରିଆ ଗଛଗହଳର ମଥାନ ଟପି ବାମ୍ଫିଆ ଆକାଶ ଉପରକୁ ମୁହଁ ଟେକିଲାଣି । ସେ ଜହ୍ନ ଧୂଆଁଳିଆ ମଉଳନ ଦିଶୁଛି । ଗୋଠଛଡ଼ା ଗୋରୁଙ୍କ ପରି କେତେଖଣ୍ଡ ପାତଳିଆ କଳା ବଉଦ ଆକାଶ ଛାତିରେ ଧୀରେ ଧୀରେ ଭାସି ଯାଉଛନ୍ତି । ଫିକାଳିଆ ମଉଳ ଜୋଛନାରେ ଗହନ ଅନ୍ଧାର ଅପସରିଲାଣି । ତାତିଲା ଦେହକୁ ମୁକୁଳା ଚଉଦିଗ ଓ ହାଲୁକା ମନ୍ଥର ପବନ ନୂଆ ପୁଲକରେ ଆଉଁସି ଦେଉଛି ।

ସୁନାର ମନେ ପଡ଼ିଗଲା । କୂଅରୁ ଉଠାଉଥିବା ପାଣି ବାଲ୍ଟି ଟୋକୀ ଆଗରେ ଥୋଇ ସେ କହିଲା, ଆଲୋ ବଉଳ, ଆଜି ଭାରି ଭଲ ଦିନଟିଏ । ଜାଣୁ ? ସକାଳେ, ନନ୍ଦକୂଳରେ ଯେମାନେ କୁହାକୁହି ହେଉଥିଲେ, ଆଜି ଜଗନ୍ନାଥ ମହାପ୍ରଭୁଙ୍କର ଉଇଁଶୀଯାତ ।

ଟୋକୀ ଉତ୍ତର ଦେଲା ନାହିଁ । ସେ ଟଳ ଟଳ କରି ପାଣି ମୁହଁକୁ ଚାହିଁଥିଲା ।

ସୁନା କହିଲା, ତୁ ଅଣ୍ଡା ହେଉଥା, ମୁଁ ଡେଲିମହାରାଜଙ୍କୁ ଉଠାଏଁ ।

ଟୋକୀ ଉତ୍ତର ଦେଲା, ଲୋଡ଼ା ନାହିଁ ବଉଳ ! ଅନ୍ଧାର ଆଉ ନାହିଁ । ଆମରି ଜଣାବାଟ । ବରହେଁ ଗାଁ ଭିତରେ ପଶି ଚାଲି ଯିବା । ମୁଣ୍ଡ ଟିକିଏ ଭ୍ରମୁଛି । ଗାଧୋଇ ପଡ଼ିଲେ ଭଲ ହୋଇଯିବ ।

ସୁନାଦେଈ ରାଜି ହେଲା ।



ଖୁଣ୍ଟିଆଙ୍କ ଘର ଆଗରେ ପହଞ୍ଚିଲା ବେଳକୁ ଅଷ୍ଟମୀ ଚନ୍ଦ୍ର ଆକାଶର ଛାତି ଉପରକୁ ଉଠି ଆସିଥିଲା । ମଥାନ ପାଖରୁ ଦୁଇ ପୁରୁଷ ତଳେ, କେବେ ସେ ପୂର୍ଣ୍ଣ ଆଭା ପ୍ରକାଶି ସବୁ ଉଜ୍ଜ୍ୱଳ କରୁଛି, କେବେ ପାତଳ ଧୂଆଁଳିଆ ଓଢ଼ଣି ଉହାଡ଼ରେ ମୁହଁ ଲୁଚାଇ ସବୁ କରୁଛି ଫିକାଳିଆ । ରାତିର ଶେଷ ପହର ଶୀତଳ ହେଲାଣି । ପିନ୍ଧିଥିବା ଚପୁଡ଼ା ଓଦାଶାଢ଼ୀ ଦେହର ତାତି ଓ ଶିରଶିରିଆ ଥରବାଆରେ ଅମ୍ଳଳିଆ ହେଲାଣି । ଲୋମ ଟାଙ୍କୁରି ଉଠିଲାଣି ।

ମନବୃଦ୍ଧା ବହପ ବୁଡ଼ାଇ ରାତିର ହକାଖନ ଛନକାରେ ଦିଓଟି ତରୁଣୀଙ୍କର ବିଚଳିତ ପାଦ ଅବାଟରେ ପଡୁଥିଲା । ଟୋକୀର ସ୍ୱାଭାବିକ ଅବସ୍ଥା ଫେରି ଆସି ନ ଥିଲେ ବି ସୁନାଦେଈର ହାତର ପରଶ ତା'ର ଅବସନ୍ନ ଦେହକୁ ବଳ ଯୋଗାଇ ଥିଲା । ମନ ତଥାପି ଘଟିଲା ଘଟଣାର କାଗିଲା ସପନର କୁହୁଡ଼ିରେ ବୁଡ଼ିରହିଥିଲା ।

ଟେଭିର ସାନ୍ନିଧ୍ୟ, ତା' ହାତର ପରଶ, ବୟସରେ ଶ୍ରେଷ୍ଠ ହୋଇ ମଧ୍ୟ ବିଜୟର ବଡ଼ମା ସୁନାକୁ ମୁଣ୍ଡରେ କରିଥିଲା । ନିଜ କଣ୍ଠସ୍ୱରରେ ତରଛି ବୁଡ଼ାଇ ସେ ବାଟ କଢ଼ାଇଥିଲା । ଖୁଣ୍ଟିଆଙ୍କ ଘର ଆଗରେ ତା'ର ମୁହଁ ହଠାତ୍ ଫେରିଆସିଲା ।

କହିଲା, ହେଇଟି, କବାଟ ଫାଙ୍କ ବାଟେ ଆଲୁଅ ଆସୁଛି । ମା' ପୁଅଙ୍କର କଥାଭାଷା ଶୁଭୁଛି । ଝରିବାରୁ ଫେରି ନାହାନ୍ତି । ଭଲ ହେଲା । ସେ ବି ଫେରି ନ ଥିବେ ଯେ ! ଆମ ଘରକୁ ମୁଁ ଏକୁଟିଆ ଚାଲିଯିବି । ମତେ ଡରଭୟ ନ ଥାଏ । ତୁ ଯା, ଲୁଗା ପାଲଟି ନିଶ୍ଚିନ୍ତରେ ଶୋଇ ପଡ଼ିବୁ ।

ଟେଭି କହିଲା, ତୁ ଶ୍ରେୟସୀ ହ'ନା ବଉଳ ! ଭଅଁରୀ ତତେ ଛାଡ଼ି ଦେଇ ଆସିବ । ରହ । ଠୁଣ୍ଟିଆପା ମୁହଁରେ କିଛି ନ କହିଲେ ନାହିଁ, ମନେ ମନେ ମତେ ଗାଳି ଦେବେ ।

ଦାଣ୍ଡ କବାଟକୁ ଅଳପ ଠେଲି ଭଅଁରୀକୁ ଡ଼ାକୁଣୁ କବାଟ ମୁକୁଳା ହେଲା । ମାଆ ପୁଅ ଦୁହେଁ ମୁହାଁମୁହିଁ ବସି କ'ଣ ଆଲୋଚନା କରୁଥିଲେ । ଜଳଟେଣିଟି କମା ହୋଇ ଜଳୁଥିଲା । ଗୋଟାଏ ପେଡଗମ ଦେଖିଲା ପରି ଟେଭିକୁ ଦେଖି ଗୁନିଆଁ ହୋଇ ଭଅଁରୀ ଧଡ଼ପଡ଼ ହୋଇ ଉଠି ଠିଆହେଲା ।

ଟେଭିର ଓଦାଳିଆ କେଶ ମୁକୁଳା ହୋଇ କେରି କେରିକା ଝୁଲୁଛି । କେତେ କେରି ଦୁଇ କାନ୍ଧ ବାଟେ ଛାତି ଉପରେ ଓହଳିଛି । ଶୁଖିବ ବୋଲି ଓଦାକେଶକୁ ହାତରେ ଚପୁଡ଼ି ଆଙ୍ଗୁଠି ଗଳାଇ ଖେଳାଇ ଦେଇଥିଲା । ଶୁଖି ନାହିଁ । ଆଖି ଓ ମୁହଁ କମରି ଆଉ ପ୍ରକାରେ ଦିଶୁଛି । କପାଳ ଉପରର ବଡ଼ ସିନ୍ଦୂର ଠୋପାଟି ଚାରିଆଡେ ଲେସି ହୋଇ ଯାଇଛି । ସେମିତି ଆଖିର ବହଳ କଜଳ ।

ଟେଭି କହିଲା, ଆରେ ଭଅଁରୀ ! ବଉଳକୁ ତାଙ୍କ ଘରେ ଛାଡ଼ି ଦେଇ ଆ ।

ଭଅଁରୀ ଜାଣିପାରିଥିଲା ଯେ, ସେ ତା'ର ନୂଆ ଖୋଉିଦାଣୀ ନୂଆମା ! କିନ୍ତୁ ସ୍ୱରଟା ଆଉ କାହାର ପରି, ଯତେ କି ଦୂରରୁ ଶୁଭୁଛି । କେତେ ତ୍ରଳି ପ୍ରଶ୍ନ ତାର ମନରେ ଖେଳୁଛି । କାହାକୁ, କେଉଁ ବହଦରେ ସେ ପଗ୍ଚରି ପାରନ୍ତା ? ସାଆନ୍ତଙ୍କର ଭଲମନ୍ଦ ଖବରଅନ୍ତର ଯେବେ ସେ ନିଜେ ପଗ୍ଚରୁ ନାହାନ୍ତି, ସେ କାହିଁକି ଉପରେ ପଡ଼ି କହିବ ଯେ, ଆହା, ସେ କେଡ଼େ ଗ୍ଲାନାବସ୍ଥା ହୋଇ ଫେରିଛନ୍ତି ?

ଟେଭି ପୁଣି କହିଲା, ଠିଆ ହୋଇ ରହିଲୁ କାହିଁକି ? ଜଲଦି ଯା !

ଭଅଁରୀ ଘରକୋଣରୁ ତା'ର ଶନ୍ଦୁଣଙ୍କା, ପାଞ୍ଚ ହାତିଆ, ତେଲପଗ୍ଚ ନଦା-ବାଉଁଶର ଠେଙ୍ଗାଟି ଉଠାଇ ପଦାକୁ ବାହାରିଗଲା ।

ଭଅଁରୀମା ବୁଢ଼ୀ ବି ଆବାକାବା ହୋଇ ଟେଭିକୁ ଚାହୁଁଥିଲା । ତା'ର ରୂପ, ବେଶ, ଠାଣି ଦେଖି, କଥା କୁହାର ଢଙ୍ଗ ହେଜ ଓ ଟଳାଟଳିଆ ପାଦ ପକାଇବା

ଭଙ୍ଗୀ ମନ ଭିତରେ ପଶିଛି, ଭଉଁରୀ ମା ବୃଢ଼ି ପାଖେ ଥିଲା, ଝୁଣ୍ଟିଆ ଘରର ମହତ୍ତ ସରିଛି । ଅଶୋକବନରେ ଏତେ ଦୁଃଖ କଷ୍ଟ ସହିସହିକା ସୀତା ଠାକୁରାଣୀ ଶେଷକୁ ଗୋଡ ଖସାଇଲେ । ଏ ଘର ନଅଁଣୀ ହେବ । ତା'ହରେ ବଲୁଆ ଡେଙ୍ଗିବେ । ଆମ୍ବ, ନଡ଼ିଆ, ପଣସ, ଓଉ, କରମଙ୍ଗା, ଟଗ, ନାରଙ୍ଗୀ, ବାଗରେ ଜାଠଜାଠକା ଯେତେ କସମର ବଡ଼ ବଡ଼ ଗଛସବୁ ଅଛି, ସେଥିରେ ଭୂତ, ପ୍ରେତ, ପେଉଣୀ, ଚରୁଗୁଣୀ କଷ୍ଟେ ଆଶ୍ରା ନେବେ !

ଟଗ ଏକା ନହିଁରେ ଅଗଣାକୁ ଓହ୍ଲାଇଲା । ଜହ୍ନ ଆଲୁଅରେ ସବୁ ଝାପ୍‌ସା ଦିଶୁଥାଏ । ସେ ମୁହଁ ବୁଲାଇ ଭଉଁରୀ ମା'କୁ ଡ଼ାକି କହିଲା, ଆଲୋ, ଆଲୁଅ ଆଣିଲୁ, ମୋ ଆଲୁଅକୁ ଭଉଁରୀ ନେଲା କି କ'ଣ ।

ଆଲୁଅ ତେଜି, ହାତରେ ଧରି ବୁଢ଼ୀ ପାଖକୁ ଆସିଲା । ଟଗ ପଚାରିଲା, ତମ ସାଆନ୍ତ ଏତେବେଳ ଯାଏ କେଉଁଠି ରହିଲେ ଲୋ । ଶିବବାବାଙ୍କ ମଠରେ ତ ନାହାନ୍ତି । ଗଲେ କୁଆଡ଼େ ?

ବୁଢ଼ୀ ଉତ୍ତର ଦେଲା, ଆଗୋ ନୂଆସାନ୍ତାଣୀ ! ରାତି ଅଧରେ ସେହି ମଠରେ ହୋଇଥିବ ତ, ବାଗଆଡ଼ର କୂଅମୂଳରେ, ନୋହିଲେ ଆଉ କେଉଁଠି ଯେ, ନଈଧାର ତ ଗଡ଼ାଏ ବାଟ, ସେଇଠି ମୁଣ୍ଡରେ ପାଣି ଢ଼ାଳି ଢ଼ାଳି ଗାଧୋଇ କରି ଆସିଛ ଯେ ? ଓଦା ଲୁଗା, ଓଦା ବାଳ ଶୁଖି ନାହିଁ । ଆଣୁ ଯାଏ ଧୂଳି ଲେପି ହୋଇଛି । ଯାଇ ଆଗ ନଳା ପାଖରେ ଗୋଡ଼, ହାତ, ମୁହଁ ପଖାଳି ନିଅ । ଲୁଗା ପାଲଟ । ମୁଣ୍ଡର କେଶ ପାନିଆଁରେ କୁଣ୍ଡାଇ ଗଣ୍ଠି ପକାଅ । ରାତି ପାହିବାକୁ ବେଶୀ ଡେ଼ରି ନ ଥିବ ।

ବୁଢ଼ୀର କଥାରେ ଅନୁନୟ ସଙ୍ଗେ ଆଦେଶ ମିଶିଥିଲା । ସେଥିରେ ଉପହାସର ଗନ୍ଧ ଥିଲା । ସବୁ ଦେଖିଲା ପରି, ଜାଣିଲା ପରି ସେ କହିବାକୁ ତା' କଥାରେ ଗୋଟିଏ ଅଜଣା ଶାଶୁଆଁ ସ୍ବର ଲୁଚି ରହିଥିଲା । କିନ୍ତୁ ଓଲଟି ପଚାରିବାକୁ ଭରସା ନ କରି ଟଗ ଆଗେଇ ଗଲା । ଭଉଁରୀମା ମୁଣ୍ଡରେ ହାତ ଦେଇ ଅଗଣା ମଝିରେ ବସି ରହିଲା । ବିଭାଯାଇଥିବା ବେଳରେ ଏ ଘରର ଶିରୀ ସମ୍ପଦ କଥା ମନେ ପକାଇ ଅନର୍ଥକ ଭୁଲେଇ ଚହିଙ୍କି, ଭୁଲେଇ ଚହିଙ୍କି ଥକା ଭାଙ୍ଗୁଥିଲା ।

ଟଗର ଡାକରେ ସେ ମୁଣ୍ଡଟେକି ଚାହିଁଲା । ଉଠି ଠିଆହେଲା । ଟଗ ଏବେ ଘରର ଘରଣୀ ପରି ଦିଶୁଛି । କହିଲା, ତମେ ଗଲାର କେତେ ବେଳକେ ସାନ ସାଆନ୍ତେ ଆସିଲେ । ଯେଉଁପରେ ଜାଣ ବେ-ଚେତା ହୋଇ ଶୋଇଛନ୍ତି ।

ବେ-ଚେତା । କାହିଁକି ?

ଟଗ ତା'ର ଶୋଇବା ଘରଆଡ଼େ ମୋହିଗଲୁ ଭଉଁରୀମା କହିଲା, ରହ । ଆଗ ମୋ କଥା ଶୁଣିସାର । ସେ କ'ଣ କଜେ ଆସିଥିଲେ କି ? ଗାଆଁ ଲୋକେ

ତାଙ୍କର ଲହୁଲୁହାଣ ଦେହକୁ ଗୋକୁଳି ମଲିକ ଚଉକିଦାରର ଘରପାଖ ତୋଟାରୁ ଟେକି ଆଣିଥିଲେ । ସେ ଏଣୁ ତେଣୁ କ'ଣ ସବୁ କହି ବଡ଼ବଡ଼ ହେଉଥିଲେ । ରୁହାକୁ ରୁହା ଭକ୍ ଭକ୍ ବାନ୍ତ କରୁଥିଲେ । ପେଟେ ମଦ ସେ ପିଇ ଦେଇଥିଲେ ଗୋ ବୋହୂ ସାଆନ୍ତାଣୀ । ଘଡ଼ିକ ଘଡ଼ି ସେ ମୂର୍ଚ୍ଛା ଯାଉଥିଲେ ।

ଇଲୋ, ମୁଁ କ'ଣ କରିବିଟି—କହି ଟୁଲି ଘୁଁ-ଘୁଁ ହୋଇ କାନ୍ଦିବାକୁ ଲାଗିଲା ।

ବୁଢ଼ୀ କହିଲା, ବ୍ୟସ୍ତ ହୁଅ ନା । ସେ ଭଲ ଅଛନ୍ତି । ସେମାନେ ତାଙ୍କୁ ଆଣି ପିଣ୍ଡା ଉପରେ ଶୁଆଇ ଦେଲେ । ମଲିକପୁଅ ଗୋକୁଳା କହିଲା, ସାଆନ୍ତେ କ'ଣ ଜାଣନ୍ତି ନାହିଁକି ସେ ମିଆଁ ଘର ତୋଟାରେ ପଠାଣଭୂତ ଅଛି ? ସେଠିକି କୋଉ ଗୁମୁଣ୍ଡାଟା ବି ଯା ଆସ କରେ ?

ଟୁଲି ଚମକି ଉଠି କହିଲା, ଗୁମୁଣ୍ଡା ।

ଭଉଁରିମା କହିଲା, ମିଛ କଥା ଗୋ, ଗୁମଣ୍ଡା ଯଦି ଥିବ ତ ସେ ଆଉ କେଉଁଠି ଥିବ । ମିଆଁଙ୍କ ତୋଟାରେ ସେ କେବେ ନାହିଁ । ହଲପ ଦେଇ ମୁଁ କହିବି । କେତେ ରାତିରୁ ଉଠି ଆମ୍ବ ଗୋଟାଇବାକୁ ମୁଁ ସେଠିକି ବୋହୂକାଳରୁ ବରାବର ଯାଇଛି । କେବେ ଦେଖି ନାହିଁ । ପଠାଣଭୂତ ବି ଦେଖି ନାହିଁ । ମାଙ୍କଡ଼ ପଲ, ବାଲୁଆ, କେତେଥର ଗଧିଆ ଦେଖିଛି । ଗୋକୁଳାଟା ବାହାପିଆ । ତାହାମିଛ କଥା ନିଜେ ଦେଖିଥିଲା ପରି ସତ ଫଳେଇ ଗପେ । ପିଲାଦିନରୁ ସେ ସେଇଆ । ନିଜେ ଫ୍ରେର କରି ଆମ ବାଉରି ସାହିଆଙ୍କ ମୁଣ୍ଡରେ ଅଠା ବୋଳେ ।

ଟୁଲି ତା'ର ଏସବୁ କଥା ଶୁଣି ମଧ୍ୟ ଶୁଣିପାରୁ ନ ଥିଲା । ସେ ଭାବୁଥିଲା, ସେହି ଗୁମଣ୍ଡା କଥା, ଯିଏ ତା' ଭିତରୁ ବାହାରି ଚଲାବୁଲା କରିବାକୁ ଚାଲିଯାଏ । ଥୋଇଥିବ ସେ ସେଠିକି । କେଜାଣି ପଠାଣଭୂତ ସଙ୍ଗେ ତା'ର ଭାବନାବ ଥିବ । ଫ୍ରିଗି ଜନମ ତ । ଆଜିଠୁଁ ସେ ଗୁମଣ୍ଡା ତା' ପାଖ ପଶିବ ନାହିଁ । ସେଇଠି ରହିବ ସେ ଡାଙ୍କିଣୀ ।

ଭଉଁରିମା ଅନର୍ଗଳ ଗପିବାକୁ ଲାଗିଲା । ଗୋକୁଳା କହୁଥିଲା, ସେହି ତୋଟାରେ ସାଆନ୍ତମାନେ ଆଜି ମେଳା କଲେ । ଗଞ୍ଜେଇ ଧୂଆଁର ଧୂମ ଉଡ଼ିଲା । ସେଇଠୁ ମନଇଚ୍ଛା ମଦ ପିଇଲେ । ମେଳା ସାରି ଯିଏ ଯୁଆଡ଼େ ଗଲେ । ଗଦେଇ-ନନା, ନାରଣ ପରିଡ଼ା, ଡମ୍ବରୁ ମହାରଣା, ଆଉ ଝରସାନ୍ତେ ପଛରେ ଆସୁଥିଲେ । ଗଛ ଉପରୁ ଡେଇଁଲେ ସେମାନେ, ସେହି ପଠାଣ-ଭୂତ, ଗୁମୁଣ୍ଡା, କିଏ ସବୁ ପେରତମାନେ । ସମସ୍ତଙ୍କର ବିକଟାଳ ଚେହେରା ।

ମନ୍ତ୍ରର ପଦ ପଢ଼ି ଗଦେଇନନା ଛୁ କଲେ । ତାଙ୍କ ପଛେ ପଛେ ନାରଣ ନବପିନା । ପ୍ରାଣବିକଳିଆ ଦଉଡ଼ । ଡ଼ମ୍ବରୁ ଓ ଝରସାନ୍ତେ ତଣ୍ଟିଯାକେ ତେଣ୍ଡି

ଦେଇଥିଲେ । ଅନ୍ଧାରରେ ଟଳ ଟଳ ହୋଇ ଧାଉଁଣୀ ତଳେ ପଡ଼ିଲେ । ସେମାନଙ୍କର ଛେଚା ଖାଇଲେ । ତମ୍ପରୁ ଖଣ୍ଡିଆ ଖାବରା ହେଲେ ପିନା, ତାଙ୍କ ମୁଣ୍ଡ ଫାଟି ନାହିଁ । ତାଙ୍କର ଜ୍ଞାନ ଥିଲା । ଝିଅସାଆନ୍ତେ ଜ୍ଞାନ ହାରିଥିଲେ । ମଲିକ ସାହିଆଙ୍କ-ଠାରୁ ଖବର ପାଇ, କେତେ ପାଖଲୋକେ ଆଲୁଅ ଧରି ଯାଇ ସେମାନଙ୍କୁ ବୋହି ଆଣିଲେ ।

ଭଅଁରିମା ପୁଣି କହିଲା, ଏ ସବୁ କଥା ମନକୁ ପାଉ ନାହିଁ ଗୋ ନୂଆ-ସାଆନ୍ତାଣି ! ସ୍ବା ଭିତରେ ଆଉ କି ଘଟଣା ଲୁଚି ରହିଛି । ବଳେ ଦିନେ ପଦାକୁ ଫୁଟି ବାହାରିବ । ସିବ କୁଆଡ଼େ ? କେଉଁ ଘଟଣା ଛପି ରହିଛି, ନା ଛପି ରହିବ ?

ଗପୁଡ଼ି ବୁଢ଼ୀର ଗପ ଟଙ୍କାର କାନରେ ପଶୁଥାଏ, ମନରେ ଭେଦୁ ନ ଥାଏ; ତା' ମୁଣ୍ଡ ଝାଙ୍କି ଦେଉଥାଏ । ସେ ବୋହିଲୁ ଥାଏ । ମନେ ହେଉଥାଏ, ଯେମିତି ସେ ଟଳିପଡ଼ିବ । ସେ ନଲଟଣ ଧରି ଦ' ଗୃହ ଟଳିଲା ଖେପାରେ ତା'ର ଶୋଇଲା ଘରେ ପଶି କବାଟ କଲିଲା । ଡବଡବ କରି ଚାହିଁଲା ।

ପଲଙ୍କ ଉପରେ ଝିଅଆ ଚିତ୍ ହୋଇ ଶୋଇଛି । କପାଳ ଉପରେ ମେଞ୍ଚାଏ ପୋଡ଼ା କନାର କାଳିଆ ପାଉଁଶ ଲାଗିଛି । ରକ୍ତରେ ଭିଜି ଓଦାଳିଆ ଦିଶୁଛି । ଭ୍ରୂଲତା ଉପରେ, ଆଖି ନାକ ସଲଖ ଗାଲ ଉପରେ ଆଁଚୁଡ଼ା ଦାଗ । ସେଥିରେ କିଏ ଚକଟିଆଁ କ'ଣ, ତେଲ କି ଘିଅ ବୋଳି ଦେଇଛି । ହାତ ଦୁଇଟି ନର୍ଜୀବ ପରି କହୁଣି ପାଖରୁ ଭଙ୍ଗି ହୋଇ ବିଛଣା ଉପରେ ପଡ଼ିଛି । ଗୋଡ଼ ଦୁଇଟି ଲମ୍ବିଛି । ଖଙ୍କା ପେଟ କଙ୍କାଳକୁ ଲାଗିଛି । ହାଡ଼ାବଲଦର ପଞ୍ଜରା ପରି ଗ୍ରୀବର ହାଡ଼ ଗଣିହେଉଛି । ଖର ନଶ୍ୱାସରେ ସେ ଗ୍ରୀବ ଉଠୁଛି ପଡ଼ୁଛି ।

ଟଙ୍କାର ମନ ବାହୁନି ଉଠିଲା । ଯେଉଁ ଶିବଶଙ୍କର ତା'ର ଅଲୋଡ଼ା ଦେହରୁ ଗୃମଣ୍ଡା ଉଡ଼ାଲେ, ତା'ଠାରେ ମା'ଶଙ୍କରୀଙ୍କୁ ଅବତରାଇ, ପିଣ୍ଡକୁ ଆହ୍ଲାଦ ଦେଇ ତାର କାଯ୍ୟାକୁ ପବିତ୍ର କଲେ, ତାଙ୍କର ଭଗତ ଏଇ ଧଡ଼ିଆ ଧେଡ଼ଙ୍କ ଲୋକଟିକୁ ସେ ଭଲ ବୁଦ୍ଧି ଦେଉ ନାହାନ୍ତି କାହିଁକି ?

ଟଙ୍କାର ଆଖିରୁ ଲୁହ ଦ'ଧାର ଝରିଆସିଲା । ସେ ତଳେ ବସି ଝିଅଆର ନଦ୍ରିତ ପାଦଟିକୁ ହାତରେ ଧରିଲା । କପାଳକୁ ପଲଙ୍କ ଉପରେ ମାଡ଼ି ଦେଲା । ସୁଁ-ସୁଁ ହୋଇ ଶକେଇ କାନ୍ଦିଲା । ସେହି ଅବସ୍ଥାରେ କେତେବେଳେ ତା'ର ଶୋକ ଥମିଲା, କେତେବେଳେ ତା'ର ଥକିଲା ଆଖିକୁ ନିଦ ଘୋଟିଲା ସେ ଜାଣି ପାରିଲା ନାହିଁ ।

ପନ୍ଦର ଦିନ କାଳ ଝିଅଆ ବିଛଣାଲାଗି ହେଲା । ଟେଭି ହେଲା ତା'ର ଏକମାତ୍ର ସାହା ଭରସା । ଝିଅଆକୁ ଉଠାଏ ବସାଏ । ପଢ଼ିଆକୁ ନିଏ । ଗାଧୋଇ ଦିଏ । ହାତରେ ଭୁଞ୍ଜାଏ । ବିଛଣାରେ ଶୁଆଇ ଦେହରେ ଗୋଡ଼ରେ କବିରାଜି ତେଲ ମାଲିସ୍ କରେ । ଶୁଖି ଆସୁଥିବା ଘା'ଗୁଡ଼ିକରେ ମଲମ ବୋଲେ । ଝିଅଆର ଆଖିକୁ ନିଦ ଘୋଟିଲେ ସେ ଘର କାମରେ ଲାଗିଯାଏ ।

ଝିଅଆ ଚାଲବୁଲ କରିବାକୁ ସକ୍ଷମ ହେଲା । ତା'ର ପୂର୍ବ ଅଭ୍ୟାସ ତାକୁ ଛଟପଟ କରିବାକୁ ଲାଗିଲା । ଅକ୍ଷମ ଅପାରଗ ଥିଲାବେଳେ କେତେଥର ଟେଭି ପାଖରେ ସେ ନେହୁରା କରିଥିଲା, ଆଲୋ, ମୋ ଘଣ୍ଟିକା ଶୁଖିଯାଉଛି, ଜିଭ ଅଠା ଅଠା ହେଉଛି, ମୋ' ଚଲମଟା ଦେ । ମନା କର ନା, ମୋ' ପ୍ରାଣ ଛୁଟିଯିବ । ଥରଟିଏ ଶୋଷି ଦେବି । ଗୋଟାଏ ଦମ୍ । ତୋ' ଦେହ ଛୁଇଁ କହୁଛି । ହେଇ ଦେଖ୍ କେମିତି ମୋ' ଗୋଡ଼ ହାତ ଥରୁଛି ।

ଟେଭି ଗୋଡ଼ ଆଉଁସି କହେ; ଘର ଯାକ ତ ଖୋଜିଲି, ଚଲମ ପାଇଲି ନାହିଁ । ଗଞ୍ଜେଇ ବି ପାଇଲି ନାହିଁ । ନିଅ, ଏ ଗରମ କ୍ଷୀର ଗିଲାସକ ପିଇଦିଅ ।

ଝିଅଆ ରୁଷେ । ଗୋଡ଼ ଯାକେ । ଟେଭି ତା'ର ଗୁନ୍ଦରେ, ତଣ୍ଟିରେ ହାତ ବୁଲାଏ । କଅଁଳେଇ କହେ, ସତେ କି ସେ ଉଠଆଣି ପିଲା, ଏତକ ପିଇଦିଅ । ମୋ ସୁନାଟା; ସେ ବିଷ ଧୂଆଁ ତୋକ ନାହିଁ । ରକତ ମାଉଁସ ଦେହରୁ ଶୁଖାଇ ଦେଲଣି । ନିଶ୍ୱାସ ସଁ ସଁ ହେଉଛି । ବେଳେ ବେଳେ ଖୁଁ ଖୁଁ କାଶୁଛ । ସେ ବିଷ-ବାମ୍ପ ମୁଣ୍ଡକୁ ହଣୁଛି । ହିତ ଅହିତ ବୁଝି ପାରୁ ନାହିଁ । ପିଇଦିଅ ।

ନିର୍ଜୋର ଥିବା ବେଳେ ସେ ବାଧ୍ୟ ହୋଇ କ୍ଷୀର ପିଉଥିଲା । ତଥାପି, ଛଟ ପଟ ହେଉଥିଲା । ଅଭିଶାପ ଦେଉଥିଲା, ମତେ. ଭୋଲାନାଥଙ୍କ ପ୍ରସାଦ-ଧୂଆଁ ମନା କରିଦେଲୁ । ତୁ ତାଙ୍କର କୋପରୁ ରକ୍ଷା ହେବୁ । ଦେଖିବୁ ରହ ।

ଟେଭି ତା'ର ଶୁଖିଲା ମୁହଁରେ ଗେଲବସରିଆ ଢଙ୍ଗରେ ଆପଣାର କଅଁଳ ମାଂସଳ ଗାଲର ପରଶ ଲଗାଏ । ଆଉଁସି ଦିଏ । ମୁହଁ ଟେକି କହେ, ଶଙ୍କରଙ୍କୁ ମୁଁ ଆଖିରେ ଦେଖିଲି । ଦୟାଳୁ ଠାକୁର ମତେ ଦୟା କଲେ । ତାଙ୍କର କଲ୍ୟାଣରୁ ମୁଁ ଦିନେ ଅହିଅ ହୋଇ, ଅହିଅତେଙ୍ଗୁରା ପିଟାଇ ତାଙ୍କ ପାଖକୁ ଚାଲିଯିବି । ତମେ ଥାଇ ଝାଇକଉଡ଼ି ବିଣ୍ଟିବିଣ୍ଟିକା ମତେ ମଶାଣିକୁ ନେବ । ଦେଖିବ ରହ । ମୋ' ପେଟରୁ ତମର ଯେଉଁ ପୁଅ ଏ ଖୁଣ୍ଟିଆକୁଳ ଉଜ୍ଜ୍ୱଳ କରି ଜନମିବ, ସେ ମତେ ମୁଖାଗ୍ନି ଦେବ । ଜାଣିଛ ?

ଝିଅଆ ପଚାରେ, ଖୁଣ୍ଟିଆକୁଳ ଉଜ୍ଜ୍ୱଳ କରି ଜନମିବ ମୋ'ର ପୁଅ ! କେମିତିକା ଟିଏ ?

ଟଖି କହିଲା, ଶିବଶଙ୍କରଙ୍କର କଳା ନେଇ ସେ ଜନମିବ । ଶିବବାବା ଆଶୀର୍ବାଦ କରିଛନ୍ତି । ଅବିକଳ ମୋ' ବଉଳର ପୁଅ ଶିବଚରଣ ପରି । ତମେ ଗଞ୍ଜେଇ ଟଣା ନ ଛାଡ଼ିଲେ, ତମର ଆଗର ବଳ ଫେରି ନ ଆସିଲେ, ଶିବକଳାର ମୁହଁ ଏ ଘରେ ଦେଖିବ କେମିତି କହ ? ପିଇଦିଅ ଏ ଖୀରତକ । ମୋ' ସୁନାଟା !

ଝଁରିଆ ଖୀର ପିଏ ।

ତାକୁ ଦେଖିବାକୁ ତା'ର ସାଙ୍ଗମାନେ ବେଳ ଅବେଳ ନ ବିଚାରି ଆସନ୍ତି । ଗ୍ରାମର ଅନ୍ୟମାନେ ବି ଆସନ୍ତି । ସହାନୁଭୂତି ଦେଖାଇ କିଏ କ'ଣ କହନ୍ତି । କେତେ କ'ଣ ପଚାରନ୍ତି । ଝଁରିଆ କ'ଣ ସବୁ କହେ ।

ମଣି ଚଉଧୁରୀ, ବକଲ ନନ୍ଦ, ଅର୍ଜୁନ ଦଉ ଓ ବଟ ଦଣ୍ଡପାଟ ବି ଆସିଥିଲେ । ଏକା ସଙ୍ଗେ ନୁହଁ, ଆଉମାନଙ୍କ ସଙ୍ଗରେ କିଏ କେବେ । ବଟ ଦଣ୍ଡପାଟେ ଅନେକ ଥର ଆସିଥିଲେ । ଫୁସ୍ ଫୁସ୍ କଥା । ହାତେ ଓଢ଼ଣା ପକାଇ ଟଖି ଏକଡ଼ ସେକଡ଼ ହୁଏ କାମର ବାହାନାରେ । କାନଥାଏ ସେମାନଙ୍କ ଆଲୋଚନାରେ ।

କିଛି ଶୁଣି ପାରେ ନାହିଁ । କିଛି ବୁଝି ପାରେ ନାହିଁ । ମନକୁ ମନ ରବେଇ ଖବେଇ ହୁଏ । ମନ ଭିତରେ ସେମାନଙ୍କୁ କାଟିସର୍ପି ନିରନ୍ତ ହୁଏ । ଝଁରିଆକୁ ପଚାରିଲେ ସେ କହେ, ଗହନ କଥା । ସେଥିରୁ ତୁ କ'ଣ ପାଇବୁ ? ସେମାନେ ପତରେ ପତରେ ଗଲେ, ଆମେ ଶିଖିଏ ଶିଖିଏ ଡିବୁ ଲୋ !

ଟଖି ସନ୍ଦେହରେ ପଡ଼େ । ସେ ଜାଣେ, ମଣିବନ୍ଦ ଲୋକଙ୍କ ଭିତରେ ବହୁତ ଫାଙ୍କ । ବହୁତ ଦଳ । କେଉଁ ଆପଣାସ୍ୱାର୍ଥିକା ପଣ ପାଇଁ କିଏ କେତେବେଳେ କେଉଁ ଦଳ ଗଢ଼େ । କେତେ ଲୋକ ସେ ଆଡ଼କୁ ଚାଲନ୍ତି । ନିଜର ଫାଇଦା ନିକେ ଉଠାଇ, ଅବା ନଫାର ଭାଗ ନ ପାଇ କିଏ ପୁଣି ଆଉ କେଉଁ ଦଳ ଆଡ଼କୁ ବୋଲଫାଙ୍କି ପରି ଆଉଜି ଯାଏ । ପେଖନା କାଢ଼ିବାକୁ ଗାଁ ମାଟିରୁ ଆସ୍ତିଏ, ମନକୁ ଯୋଗିଲା ପରି ଘଟଣା ସାଉଣ୍ଟି ନେବା କଷ୍ଟ କାମ ନୁହେଁ । ସହସ୍ର ଆସ୍ଥା ଗଢ଼ୁଛି । ନୂଆ ନୂଆ ଅନେକ ଜନମି କାସ୍ଥା ବିସ୍ତାରୁଛି ।

ଝଁରିଆ କେଉଁ ଦଳରେ ମିଶିଛି, ଟଖି ଜାଣେ ନାହିଁ । ଭଉଁରି ମା କହୁଥିଲା, ମଣି ଚଉଧୁରୀ ଡାକ ବଜାଇ ଅର୍ଜୁନ ଦଉକୁ କହୁଥିଲେ ଯେ, ସେ କେଉଁ ଲଫଙ୍ଗା ଦଳରେ ମିଶିଛି । ତାଙ୍କମାନଙ୍କର କାମ ହେଲା ଧରମ ନାମରେ ମଦ ପିଇବା, ଅଫିମ ଖାଇବା, ଗଞ୍ଜେଇ ଟାଣି ମେଳା କରିବା । ବକଲ ନନ୍ଦେ କହୁଥିଲେ, ଖାଲି ସେତିକି ନୁହେଁ ଚଉଧୁରୀଏ, ଠାକୁରାଣୀମାନଙ୍କ ଦାଉରୁ ରକ୍ଷା ପାଇବାକୁ, ସେମାନଙ୍କ ନାଁରେ ଜନ୍ତାଲ କରିବା ବି ସେମାନଙ୍କ କାମ । ଭଲ, କରନ୍ତୁ । ନିଜ ଘର ଉଜାଡ଼,

ବାପ ଅଜାଙ୍କ ସମ୍ପତ୍ତି ଶାଗ ମାଛ ମୂଲରେ ବନ୍ଧା ପକାଇ, ନୋହିଲେ ବିକ ଗରିବ ଗୁରୁବାଙ୍କ ପେଟକୁ ଦାମିକା ଖାଦ୍ୟରେ ଭରଣା କରନ୍ତୁ । ତାଙ୍କର ନୁଖୁରା ଭୁଣ୍ଡକୁ ତେଲିଆ କରିବା ଉତ୍ତମ କାମ ।

ଟଗ୍ର ଉଆର କହିଲା, ଭୁଲ୍ଲ ଭୁମ୍ମ କହି ଲେ ଭଅଁ ଗ୍ର ମା ! ସେ ଟିକିଏ ଉଠିବସି ପାରିଲେଣି । ମୋ କାନ୍ଧରେ ହାତ ଥାପି, ଦେହର ଆଶ୍ରା ନେଇ ଧୀରେ ଧୀରେ ପାଦ ପକାଇଲେଣି । ନଦ ଭାଙ୍ଗି ଥିବ ତ ଶୁଣିବେ । ଉଠି ପଡ଼ିବେ । ସେ ଏକବାଗିଆ ଉଗ୍ର ମଣିଷଟି, କ'ଣ ନା କ'ଣ କରିବେ ।

ଭଅଁ ଗ୍ରମା କହିଲା, ଶୁଣ ସେ ଅର୍ଜୁନାର ବହିପ କଥା । କହୁଛି, ଜମ୍ଦାର ଯେତେ ମନ ସେତେ କରନ୍ତୁ, ସେଥିକି ଆମେ ଖୁସି । ତମ ନିଜର ଜମିବାଡ଼ି, ଘର ସମ୍ପତ୍ତି ବିକ, ସେଇଥିରେ ଧୂମ୍ ଉଡ଼ାଅ । ପର ପୋଖରୀରେ, ଗ୍ରଡ ଅନ୍ଧାରରେ ଜାଲ ଟାଣିବ ? ନଡ଼ିଆଗଛରୁ ନଡ଼ିଆ କାଟିବ ? ଛେଳିମେଣ୍ଢା ଓ'ଟାର ଶିକାର କରିବ ? ଏଗୁଡ଼ାକ କି କାମ ? ପାନେ ପାନେ ପାଇଛନ୍ତି । ପଠାଣ ଭୂତମାନେ, ଆଉ ସେ ଗ୍ରମଣ୍ଡା ଓ ତା'ର ଚଣ୍ଡିକାମାନେ ଗୋରୁ ହାଡ଼ରେ ଟାଙ୍କେ ଟାଙ୍କେ ପିବ ପିବ କରି ହେଉଛନ୍ତି ।

ଟଗ୍ର ଅକ୍‌କା ହୋଇ ବସିଥାଏ । କାବା ହୋଇ ଶୁଣୁଥାଏ । ଭଅଁ ଗ୍ରମା ନଲଟଣର ଆଲୁଅ ଅଳପ ତେଜିଲା । ପିଣ୍ଡାକଡ଼ର ଖୁଣ୍ଟ ଆଡ଼କୁ ଠେଲିଦେଲା । ପୁଣି ସେ କହିବାକୁ ଲାଗିଲା, ବୋହୂ ସାଆନ୍ତାଣି ଗୋ, ସେମାନେ ଡାକବକାଇ କହୁଥାନ୍ତି । କେତେ ଲୋକ ଭୁଣ୍ଡ ହୋଇଥାନ୍ତି । ଆମ ଭଲିଆ ବାଅସର ମାଇପେ ବି । ଶୁଣିବି ବୋଲି ମୁଁ ସେମାନଙ୍କ ପଛରେ ଅଣଆଡ଼ିଆ ହୋଇ ଧୂଳି ଦାଣ୍ଡରେ ବସିଥାଏଁ ।

ବିକଳ ନହେ, କେଡ଼େ ଭଲ ଲୋକ ! ଜାଣିତ ବଡ଼ ଲୋକ । ଆମ ସାହିଆଙ୍କର ଖାଉଁନ୍ଦ । ତାଙ୍କର ବି ପାଟି ଖଲଖଲ ହେଉଥିଲା । କହିଲେ, ଛି, ମଦ ଖାଇ, ଗଞ୍ଜେଇ ଶୋଷି ଶିବବାବାଙ୍କ ନାଁରେ ଅବେଇଜଗୁଡ଼ା ଅନୀତି କରୁଛନ୍ତି ହୋ ! ଶୁଣାଶୁଣିରେ, କୁଲଭୁଆସୁଣୀଙ୍କ ବେକରୁ ପଘା ହୁଗାଳୁଛନ୍ତି । 'କାହାର ଆଜ୍ଞା, ନା ଶିବଶଙ୍କରଙ୍କ ଆଜ୍ଞା' ! ଲୁଙ୍ଗୁ ଗ୍ର ଲମ୍ପଟିଆ ଦଳ । ଘରର ସନ୍ତାଙ୍କୁ ମଦଗୋଳା ପ୍ରସାଦ ଖୁଆଇ ଖେଳ କରାଇ ପରପଢ କରାଇବେ । ନିଜେ ମଦନଶାରେ ଅନ୍ଧାରି ବନେ କରି ଅଗମ୍ୟା ଗମିବେ ।

ଟଗ୍ରର ମନ ଚହିଙ୍କାଇ, ଗ୍ଣ୍ଡତ ଛନକାଇ ବୁଢ଼ୀ ଭୁଲ୍ଲ ହେଲା । ଛୁଆଉ ଘଟଣାଟି ସତ ହୋଇ ତାକୁ ସପନ ପରି ଲାଗୁଥିଲା, କେଜାଣି ସପନ ହୋଇ ସତ ରୂପେ ପରତେ ହେଉଥିଲା, ଅଙ୍ଗ ଥରାଉଥିଲା, ସେଇଆକୁ ବୁଢ଼ୀ ଦୋହଲାଇ ଦେଲା ।

କାଲେ ସେ ତା'ର ଶୁଣିଲା କଥା ଆଉ କ'ଣ ସେ କହିବ, ଶୁଣିବାକୁ ଟେଖି କାନ ଡେରିଲା ।

ବୁଢ଼ୀ ତା'ର ଆଗ୍ରହ ଅନୁମାନ କରି ପୁଣି ଗପିଲା, ବକିଲ ସାଆନ୍ତେ ପୁଣି କହିଲେ, ଅଣମଣିଷଗୁଡ଼ା ! ନିଜର ପାରିଲାପଣ ଦେଖାଇବାକୁ ସେମିତି ଖାସୀ-ପରିକ୍ରମ ଦେଖାନ୍ତି । ପରର ପିଲାକୁ ଥେଇ ଥେଇ ନଚାଇ କୁହାଟ ଛାଡ଼ନ୍ତି ! ଦେଖ ଆମର ଦେବଅଂଶୀ ପିଲା । ଦେଖ ଆମର ବୋଦାପଣିଆ । ସେହି ଛତରି, ବାଲୁଙ୍ଗା, କର୍ମ-କୋଡ଼ିଆଙ୍କୁ ଆଗ ବାଢ଼େଇ ସାଧ କରିବାକୁ ହେବ । ସେଇଠୁ ତଡ଼ ସେହି ଧପ୍‌ପାବାଳ୍‌ଗୁଡ଼ାଙ୍କୁ । ଏ ଗାଆଁକୁ ଆସି ଭଣ୍ଡାମି କଲେ, ଧନ, ମାନ ନେଇ ଭଲ ମଣିଷଙ୍କୁ ଖରାପ କଲେ ।

ଡର ଥରଥର ବକିଲ ସ୍ୱରରେ ଘରଭିତରେ ଝରିଆ ବାଳିବାଳେଇ ଉଠିଲା । ସେ ସ୍ୱର ଉଚ୍ଚାଟିଆ । ଝରିଆ ବାଉଳା ହେଉଛି । ଟେଖିର ଛାତିରେ ଛନକା ପଶିଲା । କଲିଜା ଦୋହଲି ଉଠିଲା । ସହସା କିଏ ତାକୁ ଆଘାତ କଲା ପରି ଚମକି ଉଠି ଘରର ଆଉଜା କବାଟ ଠେଲି ମୁକୁଳା କଲା । ନଳଟେଣି ମିଞ୍ଜି ମିଞ୍ଜି ହୋଇ ଜଳୁଥାଏ ।

ଘର ଭିତରକୁ ଯାଇ ଆଲୁଅ ତେଜିଲା, ଦେଖିଲା ଝରିଆ ଚିତ୍ ହୋଇ ଶୋଇଛି । ଛାତି ଉପରେ ହାତ ଦୁଇଟି ଥୋଇଛି, ମୁହଁଟା ବିକୃତିଆ କରି ଓଠ ଥରାଇ ଆହୁରି ସବୁ କ'ଣ ଯେ କହୁଛି । ବୁଝି ହେଉ ନାହିଁ । ପାଟି ଖନି ବାଜି ଯାଉଛି ।

ଟେଖି ତା'ର ଛାତି ଉପରୁ ହାତ ଖସାଇ ଦେଲା । ତାକୁ ହଲାଇ ଉଠାଇଲା ।

ଝରିଆ ଆଖି ଖୋଲିଲା । ମୁଣ୍ଡ ଏ କଡ଼ ସେ କଡ଼ କରି ଭୟଭରା ଆଖିରେ ଏପାଖ ସେପାଖ ଚାହିଁଲା । ଦୃଷ୍ଟି ଲମ୍ବାଇଲା ଖୋଲାକବାଟ ଆଡ଼େ ।

ଟେଖି ପଲଙ୍କ ଉପରେ ତାକୁ ଲାଗି ବସି, ତା'ର କପାଳ ଆଉଁସି ପଚାରିଲା, କି ସପନ ଦେଖୁଥିଲୁ କି, ଏମିତି ବାଳିବାଳଉଥିଲୁ ?

ହାତ ଲମ୍ବାଇ ଟେଖିର କାନ୍ଧ ଧରି ସେ ଉଠି ବସିଲା । କହିଲା, ସେହି ବିକଟାଳିଆ ଚଣ୍ଡୀଟି । ମୋତେ ଗୋରୁହାଡ଼ରେ ପିଟିଥିଲା । ମୋ' ଛାତି ଉପରେ ମାଡ଼ି ବସିଥିଲା । ମୋ ତଣ୍ଟି ଚିପୁଥିଲା । କେଜାଣି, ମୋ' ରକ୍ତ ପିଇଥାନ୍ତା କି କ'ଣ ! ଖୋଲା କବାଟ ବାଟେ ପଳାଇଲା ପରା ! ଆଗ, ତୁ କବାଟ କିଳିଲୁ । ଭାରି ଡର ମାଡୁଛି ।

ଟେଖି କବାଟ ବନ୍ଦ କରି ପୁଣି ଆସି ଝରିଆର ପାଖରେ ବସିଲା । କହିଲା, ତମ ଛାତି ଉପରେ ହାତ ପଡ଼ି ଯାଇଥିଲା । ସେଇଥିପାଇଁ କିଏ ମାଡ଼ି ବସିଲା ପରି ଲାଗୁଥିଲା । ମନରେ ଡ଼ର ପଶିଛି । ତମେ ସପନ ଦେଖି ଛନିଆଁ ହୋଇ ପାଟି କରୁଥିଲ । ଶିବବାବାଙ୍କ ଦୟାରୁ ଚଣ୍ଡୀ ଚାମୁଣ୍ଡା ଏ ଘରେ ପଶି ପାରିବେ ନାହିଁ ।

ଆମର ଦେହ ସେମାନେ ଛୁଇଁ ପାରବେ ନାହିଁ । ସେଦନ ତମକୁ ଚଣ୍ଡୀ ମାର ନ ଥିଲ ମ, ଆଉ କଏ ହୋଇଥିବ ।

—ଆଉ କଏ ?

—ମତେ କ ଜଣା ? ତମ ହାତରେ ଶିବବାବାଙ୍କ ଶିବକଲା ଡ଼େଉଁରଆ ବନ୍ଧା ହୋଇଛ । ଭୁଲଗଲ କ ? ସେଗୁଡ଼ା କେମିତ ତମ ପାଖ ପଶନ୍ତେ ? ହେଲେ ହୋଇଥିବ ପଠାଣଭୂତ !

—ପଠାଣଭୂତ !

—ସେ ବ ତା' ରହବା ଥାନର ଆଖପାଖ ଗୁଡ଼ାକ ଆମର ଏଠାକୁ ଆସିବାକୁ ଭରସିବ ନାହିଁ । ନଷ୍ଟେ ସପନ ଦେଖିଲ । ଏବେ ନର୍ଣ୍ଣିନ୍ତରେ ଶୁଅ । ମୁଁ ତମ ପାଦ ଆଉଁସି ଦେଉଛ । ନଲଟଣ କମାଇଁ ଦଏଁ । ତମ ପାଖେ ପାଖେ ଅଛ ତ, ତମର ଆଉ କ ଡର ?

ପାଦ ମଞ୍ଜାଳୁଣୁ ଟଙ୍କୁ ନଦ ଘୋଟିଆସିଲ । ସେ ତା'ର ଦୁବଳିଆ ରୋଗଣା ଗେରସ୍ତର ପାଖରେ ଶୋଇ ତା'ର ଦେହକୁ ଗୁଡ଼ାଇ ଧରଲ । ଆଖିପତା ମୁଦ ହୋଇଗଲ । ଚେତାହଜା ସ୍ଫୁର୍ତ୍ତି କୋଳରେ ସେ ବ ଦେଖିଲ ସପନ । ଜୀବନର ପ୍ରଥମ ଅଭସାନର ସ୍ନାୟୁଥରା ଅନୁଭୂତର ମୂର୍ଚ୍ଛାଳିଆ ଆନନ୍ଦର ଅଭନୟ ।

ତା'ର ରକ୍ତମାଂସର ମଣିଷ ଦେହରେ ଶଙ୍କର ଅବତରଛନ୍ତ । ସେ ହୋଇଛ ଶଙ୍କର ! ଶିବବାବା ନଜେ ଶିବଙ୍କର ମୂର୍ତ୍ତି ଧରଛନ୍ତ । ଦୁଇଟି ଦେହର ପୁଲକ ଓ ଆନନ୍ଦର ଦଆନଆ । ଯେପର ତା'ର ଅନ୍ତ ନାହିଁ । ଶିବକଲା ସେହ ନଜଭୂଲ ଶଙ୍କର ଭତରେ ଅଙ୍କୁର ଉଠିଛ । ଅତନୁର ଅମୋଘ ଡୋରରେ ବନ୍ଧା ଦୁଇଟି ଦେହ ଏକାକାର ହୋଇଛ । ନବଡ଼ ଆଶ୍ଳେଷ ଆହୁର ନବଡ଼ ହେଉଛ ।

ଝଣଆ ପାଟି କର ଉଠିଲ, ଓ ହୋ ହୋ— !

ଟଙ୍କର ସ୍ଫୁର୍ତ୍ତି ଭାଙ୍ଗିଲ । ସେ ତା'ର ହାତ ହୁଗାଳଲ । ଶଙ୍କର ତା' ଦେହ ଓ ମନରୁ ଉଭୁଇ ଯାଇଛନ୍ତ । ସେ ଉଭେଇ ଗଲେଣି । ଉଭେଇ ଗଲେଣି ଶିବଶଙ୍କର । ସେ ତ ସନ୍ତାନଲାଳସୀ, ଆଶାବତୀ, ଉତ୍ତେଜନାରେ ଜରଜର ଯୁବତୀଟିଏ । ଦୁବଳିଆ, ରୋଗଣା, ଡରକୁଳା ଗେରସ୍ତକୁ ଭୟମୁକ୍ତ କର ଶାନ୍ତରେ ଶୋଇବାକୁ ଦେଢ଼ାଇ ଗୁଡ଼ାଇ ଧରଥିଲ । ପୁଣି ତାଙ୍କର କ'ଣ ହେଲ ?

ପଚ୍ଚରଲ, ଡରଲ କ ? ସପନ ଦେଖିଲ ?

—ସେ ଚଣ୍ଡୀ ପୁଣି ଆସିଥିଲ ।

—ଏଁ — ।

—ସେ ମତେ ଜାବୁଡ଼ି ଧର ଅଣନଶ୍ୱାସୀ କରଥିଲ ।

—ନାଇଁ ମ ।

—ହଁ, ହଁ । ମେ ମୋ'ର ପ୍ରାଣ ନେଇଥାନ୍ତା ।

—ସପନ ଦେଖିଲ । ତମେ ଜାଣ ସେ ଆମର ପାଖ ପଶିବ ନାହିଁ । ମୁଁ ତମ କଡରେ ଅଛି । ଶିବବାବାଙ୍କୁ ସୁମରଣା କର ନିର୍ଭିନ୍ତରେ ଶୋଇପଡ଼ ।

ଟୋକିର ସର୍ବାଙ୍ଗ ଥରୁଥିଲା । ବ୍ୟର୍ଥ ବାସନାର ନିର୍ମମ ତାଡ଼ନାର ଗୁଡ଼ିଏ ଦୀର୍ଘ-ଶ୍ୱାସ ନାସାରୁ ଛୁଟିଲା । ଆଖିରେ ଢଳଢଳ ଲୁହ । ସେ ଘୁଞ୍ଚିଆସିଲା । କଡ଼ ବୁଲାଇଲା ।

ବନା ସାହାଯ୍ୟରେ ଝିଅଆ ବୁଲିଚାଲି କଲାଣି, କିନ୍ତୁ ଅଣ୍ଟା ଓ ଆଣ୍ଠୁରୁ ଦରଜ ଛାଡ଼ି ନାହିଁ । ଟୋକି ତେଲ ମାଲିସ୍ କରୁଛି । ବାହାରକୁ ଯିବାକୁ ଝିଅଆର ଗୋଡ଼ ଖଲବଲ ହେଉଛି । ଟୋକି ବୁଝାଇ ଶୁଝାଇ ତାକୁ ବାରଣ କରୁଛି । ହାତ ଧରି ଅଟକାଇ ରଖୁଛି ।

ଅବସରରେ ସେ ସନ୍ଧୁଳ ହେଲାଣି । ଧାନ, ମୁଗ ବିକି ଔଷଧ ଓ ପଥ୍ୟ ପାଇଁ ମନ ବଳାଇ ନାହିଁ । ବର୍ଷକ ଚଳିବ କିପରି ? ବନ୍ଧନ ଓଳିଆଗୁଡ଼ିକରେ ହାତ ଦେଲେ ପୁଣି ମିଳିବ ବା କେଉଁଠୁ ? ସବୁ ବିକା ସରିଛି । କେଇଖଣ୍ଡି ପୁରୁଣା ରୂପାଗହଣା, ସୁନାର କାନ ଫୁଲ ହଳକ ବି ନାକୁ ଧନରେ ବାବାଙ୍କ ବିଶ୍ୱାସୀ ଭକତ ନାରଣ ପରିଡ଼ାଙ୍କ ଭାରିଯା ପୁନେଇଁ ପାଖରେ ତା' ବଉଳ ସୁନା ହାତରେ ବନ୍ଧା ପକାଇଛି ।

ଏ ମଝିରେ ତା' ବଉଳ ଢେରଥର ଆସିଲାଣି । ଢେନେ କହିଲା, ପୁନେଇଁ ଜଭ କାମୁଡ଼ି ପକାଇଲା ଲୋ, ସେ ତ ଭଲ ମଣିଷ । ଢେନୋଟି ପିଲାର ମାଆ । ପରର ଦୁଃଖରେ କାନ୍ଦପକାଏ । ପିଲାଙ୍କ ଜଞ୍ଜାଳ । ଘରଟାଯାକର ପାଇଟି । ପୁଣି, ନିତି ବାବାଙ୍କର ଦର୍ଶନ ନ କଲେ ନ ଚଳେ । ଝିଅବାବୁଙ୍କୁ ଦେଖି ଯିବାକୁ ତା' ମନ ଛଟପଟ କଲବଲ ହେଉଛି । ଆସିବାକୁ ଗୋଡ଼ ଟେକୁଛି । କୁଆଡୁ କୁଆଡୁ ଆସି ବିପ୍ନ ପହଞ୍ଚୁଛି ଯେ ଅନ୍ୟ କାମଆଡ଼କୁ ତା'କୁ ଅଡାଇ ନେଉଛି । ସେ କହିଲା—

ସୁନା ତୁମ ରହିଲା ।

ଟୋକି ପଚାରିଲା, କ'ଣ ?

କହିଲା, ବନ୍ଧାଛନ୍ଦା କ' କଥା ? ଟୋକି ମୋ ସାନ ଭଉଣୀ ପରି । ବାବାଙ୍କ ଭଗତ । ତାଙ୍କର କଲ୍ୟାଣ ପାଉଛି । ତା' ଦରବ ବନ୍ଧା ରଖିବି ? ନାହିଁ, ନାହିଁ । ଜାଣ, ତା' ଦରବ ତା' ପାଖରେ ଥା'ନ୍ତା, ମୋ' ପାଖରେ ରହିବ । ମୋ' ହାତ ଯେ ଶୂନ । ଯାହାଠୁ ହେଲେ ଆଣି ଦେବ । ଟୋକି ଟଙ୍କା ଫେରାଇ ଦେଲେ ସେ ଗରବଟା ନେବ । ଟୋକିର ତଜ ତା' ପାଖରେ ଥୋଇଦେଇ ଆସିବ । ପେଟରେ ଓଦାକନା

ଦେଇ ବଚଗ୍ରି ସମ୍ଭଛୁ । ଟଙ୍କାରେ ମାସକୁ ଦଅଣା ପଇସା ନ ଦେଲେ ନାହିଁ । ଧାନ, ମୁଗ, ବିର, କୋଳଥ, ମାଣ୍ଡିଆ ଯାହା ମୋ' ଘରକୁ ପଠାଇବ ସେ ଆସି ନେଇ ଯିବ । ଟଙ୍କା ଦେଢ-କୋଡ଼ିର ଶୁଝାଣି । ଝରବାବୁଙ୍କ ଘରଣୀଙ୍କ ସମୁଦ୍ରକୁ ଶଙ୍ଖେ ପଶକା । ଧାନଟ୍ରେଁସରୁ କାଢ଼ ଖୁମ୍ପାରେ ଖୁମ୍ପାଏ ।

ଟଭି ଶୁଣିଲା । ତା'ର ଧନ ଲୋଡ଼ା । ଝରଆ ଟାଣ ହୋଇ ଉଠୁ । ସେଇ ହେବ ତା'ର ଗହଣା ।

କର୍ପୂର ଉଡ଼ି ଯାଇଛି । ବାପ ଅଜାଙ୍କ ଅର୍ଜିଲା ସମ୍ପତ୍ତିରୁ ଯେଉଁ କନାଖଣ୍ଡି ପଡ଼ିଛି, ଭଲବୁଦ୍ଧି କଲେ, ନିଶାପାଣି ନ ଖାଇଲେ, ଗଞ୍ଜେଇ ନ ଟାଣିଲେ, ସେଇ କନାକୁ ଧୂଆ ଶୁଖାକର ଯତନ କଲେ, ତାହେଲେ ସେ ଓ୍ୱେ କରିବ । ସବୁ ଦୁଃଖ ହରିବ ।

ଆଖିରେ ଲୁହ ଭରି ଟଭି ବିଶ୍ୱାସରେ ତା'ର ମନକଥା ସୁନାଦେଈକୁ ବୁଝାଇ ଦେଲା ।

ସୂର୍ଯ୍ୟ ବୁଡ଼ି ଯାଉଥାନ୍ତି । ସଞ୍ଜ ହୋଇ ନ ଥାଏ । ଝରଆର ବିଶ୍ରାମ ଘରେ ତମ୍ବୁରୁ ବସି ହସ ଖୁସିରେ ଗପ କରୁଥାନ୍ତି । ପାଚି ଶୁଭୁଥାଏ । ଟଭିର ମନ ଛକପକ ହେଉଥାଏ । ଗଞ୍ଜେଇ ଧୂଆଁ ଦମେ ଶୋଷି ନେବାକୁ, ମଦ ଚଲେ ଢ଼ୋକ ଦେବାକୁ ଝରଆ ଆତୁର ହେଉଛି । କେଜାଣି ମାହାରଣା ତାଙ୍କ ଚଲମରେ ଅଫିମରସରେ ଜଗି ଗଞ୍ଜେଇ ଭରି ଆଣିଥିବେ । ଝରଆ ଜୀବନମୂର୍ଚ୍ଛା ଶୋଷିବ । ଧାଇଁ ଯାଇ ବାଧା ଦେବାକୁ ଟଭିର ମନ ଉଚ୍ଛନ୍ନ ହେଉଥାଏ । ସୁନାର ରହଣି ତା ପାଦ ଅଟକାଉ ଥାଏ ।

ଟଭି ପଚାରିଲା, ମାହାରଣାଏଁ ଏତେ ଜଲଦ ଝାଡ଼ଝୁଡ଼ ହୋଇ ବସିଲେ କେମିତ ବଡ଼ିଲ ? କି ଓଷଦ ଦେଲୁ ? କି ସେବା ତୁ କଲୁ ?

ସୁନା କହିଲା, ସେ କେବଠାରୁ ଝାଡ଼ଝୁଡ଼ ହୋଇ ବସିଲେଣି । ଦୂର ଗାଆଁରେ କେଉଁଠି ଠିକାରେ କାମ ନେଇଛନ୍ତି । ସକାଳେ ବେଲ ପହରକ ପରେ ଗାଧୋଇ ଖାଇ ଯାଉଛନ୍ତି । ଆସୁଛନ୍ତି ରାତି ଅଧରେ । ତାଙ୍କର ଦ' ଜଣ ସାଙ୍ଗ ଲୋକ ବି ଅଛନ୍ତି । ବାବୁଘର ସିଦାରେ ସେଇଠି ଗାଧୁଆବେଳର ରୋଷେଇ । ଭଲ ରୋଜଗାର, ନିତ ମଜୁରିଠାରୁ ଅଧିକ ନଫା । ଯେତେ ଖଟିବ ସେତେ ପାଇବ । ସେଇଥିପାଇଁ ଡେରିରେ ଫେରନ୍ତି ।

ପଚାରୁଥିଲୁ ପରା—

—ହଁ, କହୁଛି । ସେତକ ଶିବବାବାଙ୍କର ମହିମା । ମୁଁ ନିତ ଯାଏଁ । ମୋ ଦୁଃଖ ଜଣାଏଁ । ଯେତେ ଡ଼େରି ହେଉ, ତାଙ୍କର ପାଦସେବା କରେଁ । ସେ

ମହାଦେବଙ୍କ ପ୍ରସାଦ, କାଳିକାମାଈଙ୍କ ଭୋଗ ମହାରଣାଙ୍କ ପାଇଁ ପଠାଇଦିଅନ୍ତି । ଶଙ୍କରୀଠାକୁରାଣୀଙ୍କ ପଲଙ୍କ ଉପରୁ ଦଳାଫୁଲ ବି ଦିଅନ୍ତି । ମହାରଣା ପ୍ରସାଦ ପାଆନ୍ତି । ଦଳାଫୁଲକୁ ତାଙ୍କ କପାଳରେ ଲଗାଇ ଦେଲେ ସେ ଛୁଟ୍ କରି ଶୋଇ ପଡ଼ନ୍ତି । ସେଇଟିକ ତାଙ୍କର ଓଷଦ ।

—ମା ଶଙ୍କରୀ କ'ଣ ଜଣ ଆସି ଶଙ୍କରଙ୍କ ସଙ୍ଗେ ଖେଳନ୍ତି କି ବଉଳ ?

—ନାଇ ଲୋ ଦଉଳ ! ଶିବଶଙ୍କର ଶୂନ୍ୟଦେହୀ । ମା-ଶଙ୍କରୀ ବି ଶୂନ୍ୟ-ଦେହୀ । ସେମାନେ କୈଳାସପୁରରେ ରହନ୍ତି । ପୁରୋହିତମାନେ ମନ୍ତ୍ରପଢ଼ି ପୂଜା-ଆରାଧନା କଲେ ଦେବଦେବୀମାନେ ମାଟି ପଥରର ପ୍ରତିମା ଦେହରେ ଅବତରନ୍ତି । ଭକ୍ତର ମନକାମନା ପୂରଣ କରନ୍ତି । ସେମିତି ଲୋ, ତାଙ୍କରି କଳାରେ ଜନମ ତାଙ୍କରି ଭକତ ଶିବବାବା ତାଙ୍କୁ ଡ଼ାକିଲେ ସେ ଆସି ସେହି ଭକତ ଦେହରେ ଅବତରନ୍ତି ।

ସେ ମୋ'ର ସେବା ସେଇନଲେ । ମନ ତଟିଲା । ଶଙ୍କର ତାଙ୍କ ଦେହରେ ଅବତରିଲେ । ସେ ହେଲେ ଚଳନ୍ତି ଶିବଶଙ୍କର । ତାଙ୍କରି କରୁଣା, ଆଉ ଆଦେଶରେ ମହାସତୀ ଶଙ୍କରୀ ଅବତରିଲେ ମୋ' ଦେହରେ । ମୁଁ ହେଲି ଶଙ୍କରୀ !

—ତୁ ନକେ ହେରୁ କର ବଉଳ !

—ମତେ ସପନ ପରି ଲାଗୁଛି ।

—ସପନ ନୁହେଁ ଲୋ ନିରାଟ ସତ । ନୂଆନୂଆ କାଳିକାମାଈଙ୍କ ପ୍ରସାଦ ପାଇଲେ ସବୁ ସପନ ପରି ଲାଗେ । ଅଭ୍ୟାସ ହେଲେ ଆରେଇଯାଏ । ସପନର ନିଶା କଟିଯାଏ ।

—ଆମେ ତେବେ କୁଳ ବୁଡାଇ ଦୋଷିରୁଣୀ ହୋଇଛୁ ! ଆମର ଏ କାୟା ନଷ୍ଟ ହୋଇଛି ଲୋ ବଉଳ ! ସେଉଁ ପାପ ଆପେ କରିଛୁ ତା'ର କ୍ଷମା ନାହିଁ । କାହା ଆଗରେ କହିହେବ ନାହିଁ । ଯାହାଙ୍କର୍ ହାତ ଧରି କୁଳର ବୋହୂ ହୋଇ ଆମେ ଆସିଛୁଁ, ତାଙ୍କ ମୁହଁକୁ ଚାହିଁ ହେବ ନାହିଁ । ମନର ପାପ ସାପ ହୋଇ ଆତ୍ମାକୁ ଦଂଶୁଥିବ । ଅଇଁଠା ଦେହଟା ସେଇ ବିଷରେ ଜଳୁଥିବ । କେମିତି ତା'କୁ ସ୍ୱାମୀଦେବତା ଅଗରେ ବାଢ଼ିବ ? ମରଣ ଭଲ ଲୋ, ମରଣ ଲୋଡ଼ା । ସେ ତ ଆପେ ଲୋଡ଼ିଲା ମାତେ ଆସିବ ନାହିଁ ? ତା'କୁ ମୁଁ ଖୋଜି ଆଣିବି । ହଁ ବଉଳ, ମୁଁ ସେଇଆ କରିବି ।

ସୁନା ଦେଇକୁ କାକୁସ୍ଥ କରି, ବିଚଳିତ କରି ଟଣ୍ଣ କଇଁ କଇଁ ହୋଇ କାନ୍ଦି ଉଠିଲା ।

ଝରିଆର ରହଣୀ ଘରର ଝରକା ଠିଆ ମେଲ ହୋଇଛି । ସେହି ବାଟେ ବାରିଆଡ଼ର ଗୋଟିଏ ଅଂଶ ଓ କୂଅ ପାଖର ଗ୍ରେଟ ବଉଳଗଛର ମୂଳ

ଦେଖାଯାଏ । ଝଣ୍ଟିର ଆଖି ସେହି ଦେବୀ ଉପରେ ପଡ଼ିଲା । କେଉଁ ଅହେତୁକ ଭୟରେ ସେ ଟେକି ଉଠିଲା । ଦେହ ଦୋହଲିଲା । ଛୁଟି ଧାଇଁ ଯାଉ । ସେ ଥରଥର ପାଦରେ ଝରକା ନ-ଦିଶିଲା ଥାନକୁ ଦୂରୁ ଆସି ପଣତରେ ମୁହଁ ପୋଛିଲା ।

ସୁନା ତା' ପଛେ ପଛେ ଯାଇ ଗଜା ଆମ୍ବଗଛ ତଳେ ଝଣ୍ଟିର ହାତଟିଏ ଧରି କହିଲା, ଅଲୋ ବଉଳ, ତୁ ଅବୁଝା ହୁଅ ନା । କାନ୍ଦୁଛୁ କାହିଁକି ? ବସିଲ୍ ଏଇଠି ଆସ । ମୋ' କଥା ଶୁଣ । ମେଙ୍ଗାଠୁ ବୁଝିଲୁ, ଆଉ କହିବୁ ।

ହଇଲୋ, ଯେଉଁ ଦେହକୁ କଳେ ଛୁଇଁଲେ ପାପ ହୁଏ, ସେହି ଅନ୍ନ ବଡ଼-ଠାକୁରଙ୍କ ଭୋଗ ହେଲେ ଅଭଡ଼ା ହୁଏଟି ! ତା' ଠାରୁ ଆଉ ଅଧିକ ପବିତ୍ର ଜିନିଷ ଏ ଦୁନିଆଁରେ ନାହିଁ । ସେ ଅଇଁଠା ହୁଏ ନାହିଁ । ବ୍ରାହ୍ମଣ ହାତରୁ ଚଣ୍ଡାଳ, ଚଣ୍ଡାଳ ହାତରୁ ବ୍ରାହ୍ମଣ ସେ ମହାପ୍ରସାଦ ଖାଇଲେ ଦୋଷ ଲାଗେ ନାହିଁ । ଦେବା ଦେବୀଙ୍କ ପାଖରେ ଭୋଗଲଗା ପ୍ରସାଦ ସବୁବେଳେ ପବିତ୍ର ନୁହେଁ କି, ତୁ କହିଲୁ ?

ଝଣ୍ଟି ଦୀର୍ଘଶ୍ୱାସ ଛାଡ଼ି ମୁଣ୍ଡ ଟେକିଲା । ଡବ ଡବ କରି ସୁନାଦେଈର ମୁହଁକୁ ଚାହିଁଲା । ସେ ହସ ହସ ହେଉଛି । ଆଖିରେ ତା'ର ସ୍ନେହ, ସହାନୁଭୂତି ଓ ଉତ୍ସାହର ଆଲୁଅ । ସତେକି ସେହି କଅଁଳ ଉଜ୍ଜ୍ୱଳ ଆଲୁଅ ଗୋଧୂଳି ବେଳର ମଳିନ ଧୂମଳ ପରିବେଶକୁ ଉଜ୍ଜ୍ୱଳ କରୁଛି ।

ସେ ଆଖି ମିଟିମିଟି କଲା । ତା' ବଉଳ ଆଉ କ'ଣ କହିବ ଶୁଣିବାକୁ ଆଗ୍ରହରେ କାନ ଡେରିଲା ।

ସୁନା ପଚାରିଲା, ବୁଝିଲୁଟି ?

ଝଣ୍ଟିର ତୁଣ୍ଡରୁ ବାହାରିଲା, ହୁଁ, ତୁ କହ ।

ସୁନା କହିଲା, ତୁ ମୋର ସୁନା ବଉଳଟି । ଯେଉଁ ପିଣ୍ଡକୁ ଦେବଦେବ ମହାଦେବ ପାଖରେ ଆତୁରିଆ ହୋଇ ଆମେ ଭୋଗ ବାଢ଼ିଲୁ, ତାକୁ ସେ ଆଦରରେ ଗ୍ରହଣ କଲେ । କେତେ ଯୁଗ ତପସ୍ୟା କରି, ବହୁତ କଷ୍ଟ ସହି ପାର୍ବତୀ ଯେ ଦୁର୍ଗା, ସେହି ତ ଶଙ୍କରୀ, ସେ ଯାହା ପାଇଥିଲେ, ଅନାୟାସରେ ଆମେ ସେତକ ପାଇଲୁ ।

ଆଲୋ ପାଗଳି ! ଶିବ ଭଗବାନ କ'ଣ ପରନାରୀ, ଯେ ପୁଣି ମଣିଷ ଜନମ ପାଇଛୁ, ତା'ର ଦେହ ଛୁଅନ୍ତେ ? ସେ ଶୂନ୍ୟ-ଦେହୀ । ସେ ଦେବତା । ସେମିତି ମା ପାର୍ବତୀ ! ସେମାନେ ଭକ୍ତର ଅଧୀନ । ସେଇଥିପାଇଁ ନିଜେ ଶଙ୍କର ଶିବବାବାଙ୍କ ଦେହରେ ଅବତରିଲେ । ନିଜେ ମା ପାର୍ବତୀ ଶଙ୍କରୀ ଅବତରିଲେ ଆମରି ଦେହରେ । ତାଙ୍କରି ଆଦେଶରେ । କେଳିକୌତୁକ ଖେଳ ପରେ ସେମାନେ ଉଭେଇ ଗଲେ । ଭୋଗକଲା ପିଣ୍ଡ ଅପବିତ୍ର ହୁଏ ନାହିଁ । ପବିତ୍ର ହୁଏ । ସତୀ କେବେ ଅସତୀ ହୁଏ ନାହିଁ ।

ଝଣ୍ଟି ବଲବଲ କରି ସୁନାର ମୁହଁକୁ ଚାହିଁଥିଲା । ଧୀରି ପବନରେ ବଉଳ ଫୁଲର ବାସ ଚହଟୁଥିଲା । ସୁନାର କଥାରେ ବାଟୁଳି ବାଜୁ ନ ଥିଲା । ଉଜ୍ଜ୍ୱଳ ମୁହଁ, ଝଲସିଲା ଆଖି । ଭ୍ରୂଲତା ଉଠୁଥିଲା, ପଡୁଥିଲା ।

ଟଗ୍ର ଖାଲି ଏତିକି ବୁଝିଲା । ସେହି ରାତିର ଘଟଣା ସପନ ନୁହେଁ । ସତ ହେଲେ ବି ସେ ଅସତୀ ଦୋଷୀରୁଣୀ ନୁହେଁ । ତା କାୟା ଅପବିତ୍ର ହୋଇ ନାହିଁ । ଦେବତାଙ୍କ ଭୋଗରେ ଲାଗି ପବିତ୍ର ହୋଇଛି । ଖାଲି ଗୋଟିଏ କଥା ତା' ମନରେ ଘାଣ୍ଟି ଚକଟି ହେଲା, ଯଦି ସେହି ଦେବତାଙ୍କର ଅଂଶଟି ପେଟ ଭିତରେ ମଣିଷର ଅବତାର ନିଏ ?

ମନ କଥା ଜାଣିଲା ପରି ସୁନା ଦେଈ କହିଲା, ଶାସ୍ତ୍ର ପୁରାଣ ପଢ଼ିଥିଲେ ତୋ' ମନରେ ସଂଶୟ ରହନ୍ତା ନାହିଁ । ବଂଶରକ୍ଷା କରିବା ପାଇଁ ନିଜେ ପାଣ୍ଡୁ ରାଜା ତାଙ୍କର ବଡ଼ରାଣୀ କୁନ୍ତୀ ଓ ସାନ ରାଣୀ ମାଦ୍ରୀଙ୍କ ପାଖରେ ମିନତି କରିଥିଲେ । କୁନ୍ତୀ ତିନୋଟି ଦେବତା—ଧର୍ମ, ପବନ, ଆଉ ଇନ୍ଦ୍ରଙ୍କ ଅଂଶରେ ଓ ମାଦ୍ରୀ ଅଶ୍ୱିନୀକୁମାର ଦୁହିଙ୍କ ଅଂଶରେ ପାଞ୍ଚ ପୁଅ ସେହି ବଂଶକୁ ଆଣିଲେ । ମାଦ୍ରୀ ପାଣ୍ଡୁଙ୍କ ଚିତାରେ ଝାସ ଦେଲେ, କୁନ୍ତୀ ମହାସତୀ ହୋଇ ରହିଗଲେ ।

ନିଜେ ପାଣ୍ଡୁ ତାଙ୍କଭାଇ ଅନ୍ଧ ଧୃତରାଷ୍ଟ୍ର, ଆଉ ଦେହେରାଣିଯା ପୁଅ ବିଦୁର କ'ଣ ଅଣବାରୁଆ ନୁହନ୍ତି ? ତାଙ୍କର ମାଆମାନେ ଶାଶୁଙ୍କ ବୋଲରେ ବଂଶରକ୍ଷା ପାଇଁ ଦୋଷୀରୁଣୀ ହୋଇଥିଲେ । ବାପ ଯେ ଶିବବାବାଙ୍କ ପରି ଜଣେ ମହାଯତି, ବ୍ୟାସଦେବ ।

ଟଗ୍ର କହିଲା, ତୁ ମତେ କେତେଥର ଏ ଗପସବୁ କହିଛୁ । ମୋ'ର ମନେ ଅଛି । ଏବକା ସଂସାର ଅଲଗା ।

ସୁନା କହିଲା, ସତ ଲୋ ବାଇଲା । ଗପ ନୁହେଁ ମ, ପୁରାଣ କଥା । ସମସ୍ତେ ଜାଣିଥିଲେ । ସେହି ପୁଅମାନେ ଜାଣିଥିଲେ ସେମାନେ କାହାର ପୁଅ । ବାପପୁଅ ପରସ୍ପରକୁ ଖୋଜାଲୋଡ଼ା କରୁଥିଲେ । ବେଳ ଅବେଳରେ ସାହାଯ୍ୟ କରୁଥିଲେ । କିଏ କାହାର ପୁଅ ହେଲେ ବି ଗୋଟିଏ ବାପର କୁଳରେ ଜନମ । ସମସ୍ତେ କହନ୍ତି, ସେମାନେ ପାଣ୍ଡୁଙ୍କ ପୁଅ, ପଞ୍ଚୁପାଣ୍ଡବ ।

ତାଙ୍କ କୁଳ ଋଷିଙ୍କ ସାପରେ ବୁଡ଼ିଥାନ୍ତା । କୁଳ ରହିଲା । କୁଳ ରହିଲେ ବଂଶ ନିଅଂଶୀ ହେବ ନାହିଁ । ବଡ଼ବଡ଼ୁଆଙ୍କୁ ପାଣି ଟେକିବ ସେହି କୁଳର ପୁଅ । ପୂର୍ବପୁରୁଷେ ସ୍ୱର୍ଗରେ ଥାଇ କଲ୍ୟାଣ କରିବେ । ବୁଝିଲୁ ?

ଟଗ୍ର ମୁହଁ ଖୋଲିଲା ନାହିଁ । ମୁଡ଼ୁକି ହସି ମୁଣ୍ଡ ହଲାଇ ସମ୍ମତି ଜଣାଇଲା । ଉଠି ଠିଆ ହେଲା ।

ସୁନାଦେଈ ବି ଉଠିଲା । ଆଖିରେ ଉଦ୍ଦେଶ୍ୟ ଭରି ସେ ବି ହସିଲା । କହିଲା ବାଇଲା ଲୋ, ବୟସରେ ମୁଁ ତୋ'ଠାରୁ ସାନ ହେଲେ ବି ତୋ'ଠୁଁ ବୟସର ହୋଇଗଲି । ମୋ ଶିବଚରଣ ପରି ପୁଅଟିଏ ଯେବେ କୋଳରେ ଧରିବୁ, ତୁ ମୋ ସମସର ହେବୁ ।

ଟଗ୍ରି କହିଲା, ସେ ତ କପାଳ କଥା ! ସଞ୍ଜବତୀ ସଜ କରିବି । ଆଳୁଅ ସଜାଡ଼ିବି । ଆ ବଉଳ, ଖଞ୍ଜା ଭିତରକୁ ଯିବା । ତୋ' ପରି ସାଙ୍ଗ ଜୀବନରେ ମତେ ମିଳିବ ନାହିଁ ।

ଟଗ୍ରି ପଛେ ପଛେ ଝଞ୍ଜା ଭିତରକୁ ପଶୁଣୁ ସୁନା କହିଲା, କି ଉପକାର ମୁଁ ତୋର କରି ପକାଇଲି କି ? ହଁ, କହିବାକୁ ମୁଁ ଭୁଲି ଯାଇଛି । ଶିବବାବା ସର୍ବଜ୍ଞ । ତାଙ୍କ ଆଖିକି ସବୁ ଦେଖାଯାଏ । ଝିବାବୁ, ଆଉ ଏମାନଙ୍କ ଚଣ୍ଡୀ, ପଠାଣଭୂତ ଗୋରୁ ହାଡ଼ରେ ପିଟିଛି ଏକଥା ଜାଣି ସେ ହସି ଦେଲେ । କାହିଁକି ସେ ହସିଲେ କହିଲେ ନାହିଁ । ବହୁ ସେବା କରି ପାଖୁଳିବି ପଚାରିବି ଭାବି ଭରସୁ ନ ଥିଲି । ଦିନେ ତାଙ୍କର ପଦସେବା କରୁଣୁ ନିଦ୍ରୋଳା ହେଲେ, ତାଙ୍କ ପାଦରେ ମୁଣ୍ଡ ଥୋଉଣୁ ସେ ସ୍ନେହରେ ମୋ ବାହୁ ଧରି ଉଠାଇଲେ । ପାଖରେ ବସାଇଲେ । ମୋର ସାହସ ବଢ଼ିଲା । ପଚାରିଦେଲି ତ ।

ସେ କ'ଣ କହିଲେ ?

ସନ୍ତ୍ରକନା ଆଣ । ମୁଁ ଶଳିତା ବଳିବି । ତୁ ଆଳୁଅ ଆଣି ସଫା କରୁଥା । ସେମାନେ ଗପୁଛନ୍ତି ତ ଗପନ୍ତୁ । ଦୁନିଆଯାକର ଅଲଣା ଗପ । କିଏ ବାଧା ଦେବ ? କେଜାଣି ଚିଲମ ଧରିଥିବେ । ସଙ୍ଗରେ ଆଣିଥିଲେ ।

ଏତେମାନ ହେଲାଠାରୁ ବି ସେ ପୁଣି ଗଞ୍ଜେଇ ଧୂଆଁ ଟାଣିଲେ ? କେତେ ନେହୁରା ହୋଇ ତାଙ୍କୁ ମୁଁ ସେତିକି ଛଡ଼ାଇଥିଲି । ମଦ ପାଣି ଛୁଆଁଇ ଦେଇ ନ ଥିଲି । ହଁ, ସେ ତହଲବିକଳ ହେଉଥିଲେ । ଗାଳି ନସ୍ୟମ ଦେଉଥିଲେ । ମୋ ଗୋଡ଼ ଧରି କାନ୍ଦୁଥିଲେ । ପିଲାଙ୍କ ପରି ମୋ ଗ୍ରତରେ ମୁହଁ ଗୁଞ୍ଜି ଅଳି କରୁଥିଲେ ଲୋ ! ତଥାପି, ମୁଁ ରାଜି ହୋଇ ନ ଥିଲି । ଯେମିତି ତାଙ୍କର ହାତ ଗୋଡ଼ ଟିକିଏ ଚଳିଲା, ମୁଁ ମନା କଲାରୁ ସେ ମୋତେ ବିଧା, ଚାପୁଡ଼ା, ଗୋଇଠା ପ୍ରହାରିଲେ ।

ସୁନା ହସିଲା । ପାଟିରେ କାନିରୁ ପୁଳାଏ ମାଡ଼ି ଦୋହଲି ଦୋହଲି ନିଶବଦ ହସ ହସିଲା । କାହାର ସିନା ଦୁଃଖରେ କାନ୍ଦିଲା ଲୁହ ଆଖିରୁ ଝରେ । କେଉଁ ଅବୁଝା ଆନନ୍ଦର ପାଣି ତା' ଦୁଇ ଆଖିରେ ଛଳଛଳ ହେଲା ।

ସେ ପ୍ରକୃତିସ୍ଥ ହେଲା । ଆଖି ପୋଛିଲା । ପଚାରିଲା, ସେଇଠୁ ?

ତା'ର ଚାପିଲା ହସର କାରଣ ଅନୁମାନ କରି ନ ପାରି ଟଗ୍ରି ତୁନି ହୋଇ-ଥିଲା । ବଲ ବଲ କରି ସୁନାର ମୁହଁକୁ ଚାହିଁ ରହିଥିଲା । ବିଚାରୁଥିଲା, ଧାଇଁ ଯାଇ ଝିଅ ହାତରୁ ଚିଲମଟା ଓଟାରି ଆଣିବ । ତଳେ କଚାଡ଼ି ଭାଙ୍ଗି ଦେବ । ତା' ଭିତରୁ ଚାମୁଣ୍ଡାଟା ଚାଲିଯାଇଛି ସତ, ସେ ଆଜି ନିଜେ ଚଣ୍ଡୀମୂର୍ତ୍ତି ଧରିବ ।

ଟଗର ରୁକ୍ଷ ମୁହଁକୁ ଚାହିଁ ସୁନା ଶଙ୍କିତ ହେଲା । ସେନେହି କହିଲା, ତୁ ଅବଗୁଣ ପାଇଲୁ କି ବଉଳ ? ତୁ ଟଗରବାବୁଙ୍କଠଉଁ ଏତେ ମାଡ଼ ଖାଇ ସହିଲୁ, ସେଥିପାଇଁ ମତେ ହସ ମାଡ଼ିଲା ନାହିଁ । ତୋ'ର ଓଲୁପଣିଆଁ ଶୁଣି ହସି ହୋଇ-ଗଲି । ନିଶାର ଓଷଦ ତତେ ଜଣା ନାହିଁ । ବଳେ ତତେ ବତାଇ ଦେବ । ସେଇଠୁ କ'ଣ ହେଲା କହ ।

କ'ଣ ଆଉ କହିବ ? ଯେତେବେଳେ ସେ ଖ୍ରୀମପର ନକୁଆ ଥିଲେ, ରାଜାପୁଅ ପରି ତାଙ୍କର ରୂପ ଥିଲା । ନୂଆ ନୂଆ ନିଶାପାଣି ଅମଳ ଧରୁଥିଲେ, ମୁଁ କର୍ଣ୍ଣି ପଗଳା ହୋଇଥିବି । ତାଙ୍କର ଅବେଳବେଳର ନିଲଜା ଅଳକୁ ଉହୁଁ କରି-ଦେଲେ ସେ ମନ ଇଚ୍ଛା ଆଗ କୋରନ୍ତି । ସେଇଠୁ ନିଜେ କାନ୍ଧ ଗ୍ଭତରେ ଧରନ୍ତି । ଆହ୍ଲାଦର ସୀମା ରହେ ନାହିଁ । ସବୁ ଦୁଃଖକଷଣ ଏ ଦେହରେ ଭେଦେ । କାହିଁ ମିଳେଇ ଯାଏ । ତାଙ୍କ ନିଲଜ ପଣିଆ ମୋ' ଧଡ଼ିଆ ଦେହକୁ ଢ଼ାଙ୍କେ ଲୋ !

ଏବେ ଦେଖ୍ ତାଙ୍କ ରୂପକୁ, ଆଉ ମୋ ଗଣ୍ଡିକୁ । ତାଙ୍କ ମାଡ ମୋ' ଦେହରେ ଫୁଲ ପରି ଝଡ଼ୁଛି । ଆଗରୁହେ ସେହି ହାଡ଼ୁଆ-ଧଡ଼ିଆ ମଣିଷକୁ ଗ୍ଭତରେ ଜାକଲେ ସେ ନିଶାଖେଳରେ ପିଲଙ୍କ ପରି ଦେହ ଅଣ୍ଡାଳ, ରକତରେ ନିଆଁ ଜଳାଇ ଚୁପ୍ କରି ଶୋଇ ପଡ଼ୁଛି ।

—ସେଇଆ ଲୋଡ଼ା ।

—ସେଇଆ ଲୋଡା ? ଘର-ସଂସାର ଏଇ ପୁରୁଷରେ ସରିବ ? କୁଳରେ ଦୀପ ଜାଳିବାକୁ କେହି ରହିବେ ନାହିଁ ? ସେ କେବେ୍ ପାଣ୍ଡୁ ରାଜା ପରି ମତେ କହିବ ନାହିଁ, ଯା ଭଲ ପୁରୁଷଠୁ ପୁଅ ମାଗି ପେଟରେ ରଖ, ସେଇ ମୋ'ର ପୁଅ ହେବ । ମୁଁ ବି ସ୍ୱାର ଘରଣୀ ଥିବା ଯାଏ, ଦୋସୁରୁଣୀ ହୋଇ ପାରିବ ନାହିଁ ।

ଦୀପ ସଳଡ଼ା ସରିଲା । ନିଲଟଣ ଦିଓଟିର କାଚ ଟଗ ନିର୍ମଳ କରିଦେଲା । ଦିଓଟି ସର୍ଚ୍ଚିନୀ ଯୋଡି ଆଗ୍ଭୁଥିବା ସଞ୍ଜୁଆ ତମସାର ଫିକାଳିଆ ବେଶକୁ ଗ୍ଭହିଁ ରହିଥିଲେ ।

ସୁନାଦେଈ ଟଗର କାନ୍ଧରେ ହାତ ପକାଇ ଟିକିଏ ହଲାଇ ଦେଲା । କହିଲା, ବଉଳ ଲୋ, ଏ ଗାଆଁରେ ଏତେ ମାଇପେ ଥାଉଣୁ କାହିଁକି ତୁ ମତେ ଏତେ ଭଲ ପାଉ ? କାହିଁକି ମୁଁ ତତେ ଏତେ ସୁଖ ପାଏ ? ସେହି କଥା ବିଗ୍ଭରୁଥିଲି । ଆମେ ଏକା ଜାତର ନୁହଁ । ବନ୍ଧୁ ବାନ୍ଧବ ତ ନୁହଁ । ଏକା କଂସାରେ ହାତ ବୁଡ଼ାଇ ପଖାଳ ବି ଖାଇ ପାରିବା ନାହିଁ । ତଥାପି, ମନ ତଳର ଛପିଲା କଥା, ଯାହା ଗେରସ୍ତ ତ ଗେରସ୍ତ, କେଉଁ ଦେବଦେବୀଙ୍କ ଆଗରେ ନିକାଞ୍ଚନରେ ମୁହଁ ଖୋଲି କହି ହୁଅନ୍ତା ନାହିଁ, ଆମେ ଦହେଁ ଦୁହିଙ୍କୁ କହି ପାରୁଛୁ ।

ଟେଷ୍ଟ କହିଲା, "ସେ କଥା ମୁଁ ଭାବି ନ ଥିଲି । ତୁ ପଚାରିଲୁ, ମୋ ମନକୁ ଯାହା ଆସୁଛି ତୁଣ୍ଡ ଖୋଲିଲେ ତୁ ମନଦୁଃଖ କରିବୁ । ମୁଁ ଏବେ ବୁଝି ପାରିଲିଣି, ଯାହାକୁ ଦୁନିଆ ନିର୍ମଳ ଅଖଳ ମଣିଷ ବୋଲି ଜାଣନ୍ତି, ତା' ପେଟରେ ବି ବହୁତ କୂଟକପଟ ଲୁଚି ରହିଥାଏ । ସେଥିରେ ଆପଣାସ୍ୱାର୍ଥିକାପଣ ଥାଇପାରେ, ନୋହିଲେ ପରର ହରବର ଦେଖିବାର ମଉଜ ! କିଏ ଜାଣେ, ତୁ କ'ଣ ଆଉ ମୁଁ କ'ଣ ?

ସୁନା ଦେଇ କହିଲା, ତୋ ପାଖରୁ କ'ଣ ମୁଁ ଲୁଚାଇ ରଖିଛି ଜାଣି ପାରୁ ନାହିଁ । ଗରୁଆ ଘରେ ତୋ'ର ଜନମ୍ । ମୋ'ର ବି । ପିଲାଟି ଦିନରୁ ତୋ'ର ମା' ମଲେ । ତୋ ଧୂରନ୍ଧର ବାପ ଆଉଣୁ ସାବତ ମା'ଠାରୁ ସବୁ ତାଡ଼ନା ସହି ଶାଶୁଘରକୁ ଆସିଲୁ, ନାଁ-ଡାକ ଝୁଣ୍ଡିଆ ଘର । ଏକୋଇରି ବାଳା, ରାଜା ପୁଅ ପରି ସୁନ୍ଦର, ଛନଛନିଆ ଯୁଆନ !

ଆଉ ମୁଁ ? ବାପ ଓ ମାଆଙ୍କର ଆଖିର ପିତୁଳା ! ଗେହ୍ଲାରେ ବଢ଼ିଲି । ପାଠ ପଢ଼ିଲି ସେ ମୋ ବୁଦ୍ଧି, ମୋ ସ୍ମରଣଶକ୍ତି ପାଇଁ ଗାଁ ଲୋକଙ୍କର ସ୍ନେହ, ଆଦର, ପ୍ରଶଂସା ପାଇଲି । ବାପ-ମା ସ୍ୱର୍ଗପୁରକୁ ଗଲାରୁ ତେର ବରଷର ଆଖି ବୁରୁଣିଆ ଝିଅକୁ ଅତି ସ୍ନେହରେ ମାମୁଁ ତାଙ୍କ ଘରକୁ ଆଣିଲେ । ଯେତେ ଦୁଃଖ ମୁଁ ସହିଛି, ଏକା ପ୍ରଭୁ ଶିବଶଙ୍କର ଜାଣିବେ, ସେ ଦୁଃଖ ତୋ' ଦୁଃଖରୁ ବେଶୀ, କି କମ୍ ।

ମଡ଼ିଆ ଝିଅଟାର ଦାୟିତ୍ୱରୁ ଉଦ୍ଧାର ପାଇବାକୁ ମାମୁଁ ମହାରଣାଙ୍କ ହାତକୁ ମତେ ଟେକିଦେଲେ । ଜାଣୁ କି, କାହାକୁ କହିବୁ ନାହିଁ, ତତେ ମୋ' ରାଣ । ମହାରଣା, ଯିଏ ମୋ'ର ବାପବୟସର, ସେ ମୋ ମାମୁଁଙ୍କୁ ଶହେ ଟଙ୍କା ଦେଇଥିଲେ ।

—ତତେ ସେ କିଣି ଆଣିଥିଲେ ?

—ସେଇଆ ନୁହେଁ ତ ଆଉ କ'ଣ ? ମୁଁ ତାଙ୍କର ଗୃହକତ୍ରୀ ପରି ରହିଲି । ମୋ'ର ଗୋଟାଏ ଟାଣପଣ କାହୁଁ ଆସିବ ? କିଣାଖରିଦା ଦାସୀ-ପୋଇଲୀଟା । ସମସ୍ତେ ଜାଣିଛ, ତାଙ୍କର ସବୁ ପାଇଟି ମୁଁ କରେ । ଉହିକୁଣ୍ଡ ପରି ଘର ଜଗି ପଡ଼ିଥାଏ । ମହାରଣାଙ୍କର ଶିଶୁ କାଠର ଗୋଟାଏ ବଡ଼ ସିନ୍ଦୁକରେ ତାଙ୍କ ବାପ-ଅଜା ଅମଳର କେତେ ଜାତର ତାଳପତ୍ର ପୋଥି ଅଛି । ତାକୁ ଝାଡ଼ିଝୁଡ଼ି ରଖେ । ପଢ଼ିବାକୁ ମନ ହେଲା । ଚେଷ୍ଟା କରି ଖଣ୍ଡି ଖଣ୍ଡି କରି ପଢ଼ିଲି । ଏବେ ବି ପଢୁଛି ।

—ପୋଥି !

—ହଁ, ରାମାୟଣ, ମହାଭାରତ, ଭାଗବତ । ଏବେ ତ ବହି କିଣି ରଖିଲିଣି । ପଢ଼ିଲେ ଜ୍ଞାନ ବଢ଼େ । ମଣିଷ ଶାସ୍ତ୍ରପୁରାଣର ଘଟଣା ଜାଣେ । କେଉଁଟା ନୀତି କେଉଁଟା ଅନୀତି, ଭଲ ମନ୍ଦ ଏମିତି କେତେ କଥା ଶିଖେ । ସେଥିରୁ କି ଲାଭ

ମତେ ମିଳିବ ? ମଦ, ଗଞ୍ଜେଇ ଖାଇ ଜ୍ଞାନହରା ହୋଇ ମହାରଣାଏଁ ମୋତେ ପାଖକୁ ଟାଣିଲେ ମୁଁ କଣ ଦାସୀଟା, ମନା କରି ପାରନ୍ତି କପରି ?

ସେ ଅଣପୁରୁଷା ବୋଲି କାହିଁକି ତାଙ୍କର ଦୁର୍ନାମ ରଟିଥିଲା କିଏ ଜାଣେ ? ମୋତେ ସେ ବାହାହେଲେ । ଶିବବାବାଙ୍କର ଭକ୍ତ ମୁଁ ହେଲି । ସେ କରାଇଲେ । ଦୁନିଆଁର ମଣିଷ ଯାହା କହିବାର କହୁଥାନ୍ତୁ, ବାବାଙ୍କ କଲ୍ୟାଣରୁ ଶିବଚରଣ ମୋ ପେଟରୁ ଜନମିଛି । ମହାରଣାଙ୍କର ସ୍ନେହର ଶଙ୍ଖାଳି । ତାଙ୍କ କୂଳର ପ୍ରଦୀପ । ତୁ ଏବେ କହ ମୋର ସ୍ତ୍ରୀ-ଜନ୍ମ ସାର୍ଥକ ହୋଇଛି କି ନାହିଁ ।

—ହୋଇଛି ବଉଳ ।

—ତୁ କହ, ମୋ ମାଆ ପଣର ଟେକ ରହିଛି କି ନାହିଁ ?

— ରହିଛି ।

—ତାଙ୍କ ନାମରେ ରଟିଲା ଦୁର୍ନାମ ମିଳେଇ ଯାଇଛି । ଶିବବାବାଙ୍କ ଦୟା । ହଉ ଗଲେ ବଉଳ ! ଖୋଲିଖୋଲି ତତେ କହୁଛି । ସେ ମୋ' ବାପ ବୟସର କେଜାଣି ବଡ଼ ବି ହୋଇଥିବେ । ଦୈବୀ-ଦୁର୍ଘଟଣାରେ କେବେ ମୋ'ର ଜୀବନ ଯାଏ ତ ମୁଁ ଅହ୍ୟାଣୀ ହେବାର ସୌଭାଗ୍ୟ ପାଇବି । ନୋହିଲେ କେମିତି ଆଶା କରିବି ?

—ଠାକୁରେ ତାଙ୍କୁ ଶଣଶହେ ବର୍ଷ ପରମାୟୁ ଦିଅନ୍ତୁ !

—ତାଙ୍କର ଗଞ୍ଜେଇ, ଅଫିମ, ମଦ ଖିଆରେ ମୁଁ ବାଧା ଦିଏ ନାହିଁ । ଜାଣେ, ବାଧା ଦେଲେ ସେ ମାନିବେ ନାହିଁ । ଓଲଟି ମୁଁ ତାଙ୍କୁ ଚିଲମ ବଢ଼ାଇ ଦିଏ । ସେ ବେହୁସିଆର । ସକଳ ଧନ ମୋ' ହାତରେ । କେବେ ସେ ମାଗନ୍ତି ନାହିଁ । ଜମିଦାରୀ ପ୍ରତି ଲୋଭ ଅଛି । ତେଣୁ, ତାଙ୍କ ନିଜକା ରୋଜଗାରରୁ ଯାହା କିଛି ନେଇ କାମ ଚଳାନ୍ତି । କେବେ କେମିତି କଟାଳ କରନ୍ତି । ମୁଁ ବଢ଼େ ନାହିଁ । ମାହା ମାଗନ୍ତି ବଢ଼ାଇ ଦିଏ ।

ଝଙ୍କା ଖର-ଶ୍ୱାସ ଗ୍ରସ୍ତ କହିଲା, ସେତ ବିକାଭଙ୍ଗା କରିବାରେ ଲାଗିଛନ୍ତି । ଦିନାକେତେ ପରେ ସବୁ ଶେଷ କରିଦେବେ ।

ସୁନା ଦେଈ କହିଲା, ତୁ ଈଶବାବୁଙ୍କୁ ବାଧା ଦେଏ ନା । ତୋ' କୋଳରେ ପୁଅ ଟିକଟେ ଦେଖିଲେ ତାଙ୍କ ମତି ବଦଳିବ । ମନ ଘର ଧରିବ । ସେତିକି ଲୋଡ଼ା । ଶିବଅଂଶୀ ପୁଅ । ଶିବବାବା ଦୟା କଲେ ସେତକ ହେବ । ଈଶବାବୁଙ୍କୁ ପାଖଛଡ଼ା କରନ୍ତୁ ନାହିଁ ଲୋ ! ଯେମିତି ତୋ ଦେହର ଉଷୁମ ଦେଉଥିବୁ ।

ସୁନା ଦେଈ ତୁନି ହେଲା । ସଞ୍ଜ ଅନ୍ଧାର ମାଡ଼ି ଆସୁଥାଏ । ଝଙ୍କା ଚଉରା ମୂଳରେ ସଞ୍ଜଦୀପ ଦେଇ ଓଳଗି ହେଲା । ସୁନା ଦେଈ ଆଲୁଅ ଜଳାଇଲା । ଝଙ୍କା ଫେରି ଆସିଲା ।

ଆର ଘରୁ ଝରିଆ ଡ଼ାକ ଶୁଭିଲା, ମଶାଗୁଡାକ ଭଁଉ ଭଁଉ ହୋଇ ଫୋଡ଼ି ପକାଉଛନ୍ତି, ଆଲୋ ହେ, ଆଲୁଅ ଆଣ୍ ।

ଟେଙ୍ଗି ନଲଟେଣ ଧରି ଘରେ ପଶିଲା । ଚଲମ-ଧୂଆଁର ବାସନା ଘରୁ ଉଭେଇ ନ ଥାଏ । ମହାରଣା ଝରିଆ ପାଖରେ ଖଟ ଉପରେ ବସିଥିଲେ । ଗୋଡ଼ ଦୁଇଟି ତଳକୁ ଲମ୍ବିଥିଲା । ଗୋଟିଏ ହାତରେ କଳା ମିଚମିଚ ଚଲମଟି ସେ ଧରିଥିଲେ । ନିଆଁ ଲିଭିଥିଲା ।

ଟେଙ୍ଗିକୁ ଦେଖି ସେ ପଲଙ୍କରୁ ଉଠି ତଳେ ଠିଆ ହେଲେ । ଲମ୍ବିଲା ହାତ ଉଠାଇ ଜାମାର ପକେଟରେ ଚଲମ ଭରିଲେ । ଖଟ ପାଖରୁ କିଛି ଦୂର ଘୁଞ୍ଚିଗଲେ । ଆଗରେ ଖୁଣ୍ଟିଆ ଘରର ବୋହୂ । ଯେତେ ଅଭେନା ବେଶରେ ଠିଆ ହେଲେ କ ହେବ, ଲକ୍ଷ୍ମୀଠାକୁରାଣୀ ରୂପ ! ଘରଣୀ ହୂନାଦେଈ ତାଙ୍କୁ କହୁଥିଲା, ବ ସେ ସାଆନ୍ତ ଘରର ବୋହୂ । ସେ ନିଜେ, ତାଙ୍କ ବାପ ଅଜାଏ, ଦିନେ ଏହି ସାଆନ୍ତାଣୀ-ମାନଙ୍କ ଆଗରେ ଗୋଡ଼ ଭିଡ଼ି ଠିଆ ହେଉଥିଲେ । ଆଜ୍ଞାକୁ ଅବଧାନ । ଭୂଇଁରେ ମାଆ ପଦ ।

ଖସି ପଡ଼ିଥିବା ଓଢ଼ଣାକୁ ଟେଙ୍ଗି ମୁଣ୍ଡ ଉପରକୁ ଟେକିଲା । ନଲଟେଣଟି ସିନ୍ଦୂକ ଉପରେ ଥୋଇଲା । ଝରିଆ ପାଖକୁ ଯାଇ ତା' ମୁଣ୍ଡରେ ହାତ ସାଉଁଳିଲା । ପଚାରିଲା ଜଖମ ଗୋଡ଼ ଦିଓଟି ଲମ୍ବାଇ କେତେବେଳରୁ ବସିବଣି । ଦରଜ ଗୁଡ଼ି ନାହିଁ । ଅଣ୍ଟା, ହାତ, ଆଉ ଦୁଇ କାନ୍ଧର ଦରଜ ଭିତରେ ରହିଛି । କାଲେ ବଢ଼ିବ; ତମେ ଶୋଇ ରହ । କଥାଭାଷା ହୁଅ ।

ଟେଙ୍ଗି ଝରିଆକୁ ଧରି ଧୀରେ ଧୀରେ ଶୁଆଇଲା । ମହାରଣାଙ୍କ ଆଡ଼କୁ ମୁହଁ ବୁଲାଇ ହସ ହସ ହୋଇ ସେ କହିଲା, ମୋ' ବଉଳ ତ ଗପର ପେଡ଼ି । ସେଇ ପେଡ଼ିରେ ସବୁ ଶାସ୍ତ୍ର ପୁରାଣ ଭରିଦେଇ ରଖିଛି । ଯେତେ କାଢ଼ିଲେ ସେ ଉଣା ନ ହୁଏ । ଶିବଚରଣଙ୍କୁ ବ ସେ ଭୁଲିଯାଏ । ମୋ'ର ସବୁ ପାଇଁ ପଡ଼ିଛି । ତମେ ତାଙ୍କ ପାଖରେ ଆଉ ଟିକିଏ ବସ ମହାରଣା ! ଗପ କରୁଥା । ତା' ଗପ ମେଡ଼ି ମୁଁ ବନ୍ଦ କରିବ । ହେଇଟି, ସେ ଚୁଲି ଫୁଙ୍କିଲିଣି—

ଝରିଆ କହିଲା, ମହାରଣା କ'ଣ କହୁଛନ୍ତି ଶୁଣ୍ ।

ମହାରଣା କହିଲେ, ଝରିବାବୁଙ୍କୁ ନ ଦେଖି ବାବା ଯୋଗ ବଳରେ ସବୁ ଘଟଣା ଜାଣିଲେ । ମତେ କହୁଥିଲେ, ସେ ମୋ' ମନ୍ତ୍ର କେବଠାରୁ ଝାଡ଼ଝୁଡ଼ି ହୋଇ ଆଗପରି ହୁଅନ୍ତେଣି । ଔଷଧ ଯାହା ଦିଆ ହେଉଛି ହେଉ । କିନ୍ତୁ, ଶିବଶଙ୍କରଙ୍କର ଭୋଗ, କାଳିକାମାଈଙ୍କ ପ୍ରସାଦ ତମେ ନିଜେ ଶୁଦ୍ଧଶୁଚି ହୋଇ ଆଣିବ । ନିଜ ହାତରେ ଖୁଆଇ ଦେବ । ନିଜେ ପୁଣି ଶଙ୍କରଙ୍କ ଛଡ଼ାଫୁଲ ତାଙ୍କ ପଲଙ୍କରୁ ଆଣି ସେଥିରେ ଝରିବାବୁଙ୍କ ଦେହ ସାରା ଝାଡ଼ି ଦେବ । ଦୁଇ ଗ୍ରର ଥର ଏପରି କଲେ ସେ

ଅଚ୍ଛ ଶୀଘ୍ର ଭଲ ହୋଇଯିବେ । ସୁନା ତାଙ୍କର ଆଜ୍ଞା ମାନିଥିଲ । ମୁଁ ଶୀଘ୍ର ଭଲ ହୋଇଗଲି ।

ଟେଣ୍ଟି ପଚାରିଲା, ଅନ୍ୟ କେହି ଆଣିଲେ ?

ମହାରଣା ଉତ୍ତର ଦେଲେ, ଶିବଦାବାଙ୍କୁ ମୁଁ ପଚାରିଥିଲି । ସୁନା ସେବା କରିବାକୁ ଆସୁଛୁ, ବହୁତ ବାଧାରେ ଫେରୁଛୁ । କାହିଁକି ନା, ମା ଶଙ୍କରୀ ଫେରି ନ ଗଲେ ତାଙ୍କ ଛଡ଼ାଫୁଲ ମିଳିବ ନାହିଁ । ପଚାରିଲି, ସେ ଝିଅବାବୁଙ୍କ ପାଇଁ ନେଇ ଗଲେ ଚଳିବ ନାହିଁ ? ପୁଣି କହିଲି, ବିଛଣାଲାଗି ରୋଗଣା ସ୍ୱାମୀକୁ ଏକୁଟିଆ ଛାଡ଼ି ଟେଣ୍ଟି ଦେଇ ଆସି ପାରିବେ କପରି ? ବାବା ମୁଣ୍ଡ ହଲାଇ ଦେଲେ । ଆଖିବୁଜି ଧ୍ୟାନ କଲେ ।

ଏତିକି କହି ମହାରଣା ଆଖି ବୁଜିଲେ । ସେ ଝୁଙ୍କୁଥିଲେ । ମୁଣ୍ଡ ନଇଁ ଆସୁଥିଲା । ଟେଣ୍ଟି ଅନୁମାନ କଲା, ତାଙ୍କୁ ନିଶା ଆକ୍ରାନ୍ତ କଲାଣି ।

ସେ ବିଚଳିତ ହେଲା । ଝିଅଆକୁ ଚାହିଁଲା । ସେ ଉଠିବାକୁ ଚେଷ୍ଟା କରୁଛି । ମୁଣ୍ଡ ଓହଳି ପଡୁଛି । ପୁଣି ସେ ମୁଣ୍ଡମାଡ଼ି ଶୋଉଛି । ବଡ଼ ବଡ଼ ଆଖିକରି ଚାହୁଁଛି ।

ଟେଲି ପଚାରିଲା, ଶିବବାବା କଣ କହିଲେ, ମହାରଣାଏଁ ? ମୋ' ପାଇଁ ମୋ' ବଉଳ ଆଣିଲେ ଚଳିବ ନାହିଁ ?

ମହାରଣା ଚମକି ଉଠିଲେ । ମୁଣ୍ଡ ଟେକିଲେ । ନିଜେ ଖଟ ଉପରେ ବସି ମୁଣ୍ଡ ହଲାଇ କହିଲେ, ନା, ନା । ଯାହାର ସତୀ ନାରୀ, ତା' ରୋଗୀର ପାଇଁ ଏକା ସେଇ ଶଙ୍କରୀଙ୍କୁ ପୂଜିବ । ସେହି ଏକା ଆଣିବ ।

ଟେଣ୍ଟି କହି ଉଠିଲା, ସତୀ ନାରୀ !

ଝିଅଆ ଗର୍ଜି ଉଠିଲା, ହଁ ବେ ହଁ ! ତୁଇ ଏକା ମୋ'ର ସତୀ-ନାରୀ । ତୁଇ ସତୀ-ସାବିତ୍ରୀ ଏକା ଯିବୁ, ତୁଇ ଆଣିବୁ । ମୁଁ ଏକା ରହିବି ନାହିଁ । ଭଅଁରା ଭ ଥିବ । ଫେରେ କେତେବେଳେ ଫେରୁଛୁ । ଭଅଁରାମାକୁ ସଙ୍ଗରେ ନେଇଯିବୁ, ନଁ-ଲୁଆଣୀ । ବଲୁଆ କୁକୁରଙ୍କ ଡର ।

ଟେଣ୍ଟି କହିଲା, ଯିବ, ନିଶ୍ଚେ ଯିବ । ତମେ ଚହଳିଁ ଉଠ ନାହିଁ । କ୍ଷୀର ଗିଲାସେ ଆଣି ଦେଉଛି ପିଅ । ତମେ ବି ଗିଲାସେ ପିଅ, ମହାରଣାଏଁ ।

ଟେଣ୍ଟି ବୁଲିପଡ଼ି ଦେଖିଲା, କେତେବେଳୁଁ ଆସି ତା ବଉଳ ବାହାରେ ଚଉକାଠ ପାଖେ ଠିଆ ହୋଇ ସବୁ ଶୁଣୁଛି । ସବୁ ଦେଖୁଛି । ଓଠ ଲେଫଡ଼ୁଛି । ତା' ଆଖିରେ ବି ହସ ।

ସେ ଟେଲୁର ହାତ ଧରି ରୋଷଘର ବାରଣ୍ଡାକୁ ଗଲା । କହିଲା, ଚୁଲି ଜଳାଇ ଅଧ ଡେକ୍‌ଚି ପାଣି ବସାଇ ଦେଇଛି । ଦେଖିଲୁ ତ ତାଙ୍କ ଚିଙ୍ଗ ? ସହଲି ନ ବାହୁଡ଼ିଲେ ଜଗନ୍ନାଥ ପହଣ୍ଡି ବିଜେ କଲା ପରି ବାଟଯାକ ସେ ବସିବସି ଯିବେ

ଗଲାବେଳେ ପବନ ପହଁରି ହାଲ୍ ଦୋହଲି ଯାଉଥିବେ । ତଳ ମକେଟରେ ଅସଲ ମଦ ବୋତଲ ଆଣିଥିଲେ କି କଅଣ । ଦୁଇ ଜଣଯାକ ଅଧା ଅଧା ଟୋକିଛନ୍ତି ।

—ତୁ ଦେଖିଛୁ ?

—ନା । ଦେଖିଥିଲେ ବି ମୁଁ ବାଧା ଦିଅନ୍ତି ନାହିଁ ।

—କାହିଁକି ?

—ଭୁଲିଗଲୁ କି, ମୁଁ ତାଙ୍କର କିଣାଦାସୀ ? ତାଙ୍କର ରକ୍ଷିତା ପୋଇଲି ହୋଇ ରହିଥାନ୍ତି । ମୋ' ପେଟରୁ କାଲେ ପୁଅ କି ଝିଅ ଜନମନ୍ତା, ସେ ନିଜକୁ କ'ଣ ବୋଲି ସଂସାରରେ ପରିଚେ ଦିଅନ୍ତା ? ଲୋକେ ତା' ଆଡ଼କୁ ଆଙ୍ଗୁଠି ଦେଖାଇ କଅଣ କହନ୍ତେ ? ଆଗରୁ ସାବଧାନ ହୋଇ ମତେ ବାହା ହେବାକୁ ମୁଁ ତାଙ୍କୁ ବାଧ୍ୟ କଲି । କାହିଁକି । କୁଆଡ଼େ ପଳାଇବି, ଅବା ଜୀବନ ହାରିବି ବୋଲି ଡ଼ରାଇଲି । ସେଇଥିପାଇଁ ବାହାଘର ।

ମୋ ଶିବଚରଣ ଜାରଜ ବିଦୁର ବୋଲି କେହି କହି ପାରିବେ ନାହିଁ । ସେ ମହାରଣା ଘର ପୁଅ ।

ସୁନା ହସୁଥାଏ । ଶାଢ଼ିକାନିରେ ଆଖି ପୋଛୁଥାଏ । ଟିଭି ଥକ୍କା ହୋଇ ଶୁଣୁଥାଏ । ସୁନା ଧୀର ସ୍ୱରରେ ତା'ର କାନ ପାଖରେ କହିଲା, ଗେରସ୍ତ ସୁଖ ଯେତିକି ମିଳିଲା ସେତିକି । ଆଉ ନ ମିଳିଲେ ଲୋ ସଖି ! ଖୁସିରେ ଯେଉଁ ନିଶାକୁ ଆଗ ସେମାନେ ଧରିଥିଲେ, କଅଁଳିଆ, ଛନଛନିଆ, ସୁନ୍ଦରିଆ, ହୃନ୍ଦରିଆ ପିଲାଟିଏ ମଣି କାଖେଇ କୁଣ୍ଢାଇ ଗେଲ କରିଥିଲେ, ବଡ଼ ହେଲାରୁ ସେ ପିଲା ଘୋର ଭୟଙ୍କର ଅସୁର ହେଲାଣି । ତା' ବଳୁଆ ହାତରେ ଗୁଡ଼ାଇ ଧରିଲାଣି । ଜୋକ ପରି ଲାଗି ରକ୍ତମାଂସ ସଙ୍ଗେ ଜୀବନ ଶୋଷି ନେଉଛି । ମୁକୁଳିବାକୁ ହାତଗୋଡ଼ ଯେତେ ବାଡ଼େଇଲେ କି ହେବ ? ପରିତ୍ରାଣ ନାହିଁ ।

—ମୁଁ କ'ଣ ତେବେ କରିବି ?

—ଶିବବାବା ମତେ କହୁଥିଲେ, ତୋ' ଦେହରୁ ବସା ଭାଙ୍ଗି ଯେଉଁ ଗ୍ରୁମଣ୍ଡା ତରଛରେ ଛୁଟି ପଳାଇଲା, ସେ ତୋ' ପାଖ ପିନା ପଶିବ ନାହିଁ, ଏ ଡ଼ିହର ସୀମା ପିନା ମାଡ଼ିବ ନାହିଁ, କାମୁଡ଼ା କୁକୁର ପରି ଝିଅାର ପଛେ ପଛେ ଲାଗିଥିବ । ହାତକୁ ତା'ର ଶିବଡ଼େଉଁରିଆ ଅଛି । ତାକୁ ସେ ନ ଛୁଇଁଲେ ନାହିଁ, ବିଧର୍ମୀ ପଠାଣଭୂତ ଲଗାଇ ତା' ହାତରେ ଟାଙ୍କେ ଛେଷ୍ଟଇବ । ଯେମିତି ସେ କଲା ମ ରଉଳ ' ଝିରବାବୁଙ୍କ ଉପରେ ଦାଉ ସାଧିବ ବୋଲି ଯେଉଁ ଅଲକ୍ଷଣୀ ଗ୍ରୁମଣ୍ଡାଟା ପଠାଣଭୂତକୁ କବର ତଳୁ ଉଠାଇ ଆଣିଲା, ତା' ମାଡ଼ରେ ମହାରଣା ବି ଖଣ୍ଡିଆ-ଖାବରା ହେଲେ ।

—କ'ଣ ମୁଁ କରିବି ?

—ବାବା କ'ଣ ତା'ର ପ୍ରତିକାର ମତେ ବତାଇ ଦିଅନ୍ତେ ? ତୁ ନିଜେ ଯାଇ ତାଙ୍କର ସେବା କର । ତାଙ୍କର ମନ ନେଏ । ତାଙ୍କୁ ତୋ'ର ଭକ୍ତିରେ କିଣି ପକା । ଉପାୟ ସେ ବଳେ ବତାଇ ଦେବେ । ତାଙ୍କର ଦୟା ହେଲେ ଖୁଣ୍ଟିଆଙ୍କ ବଂଶରେ ତୋ' ପେଟରୁ ଶିବଅଂଶରେ ପୁଅ ଜନ୍ମିବ ।

ତା' ମୁହଁ ଦେଖିଲେ, କେଜାଣି ଈଶବାବୁଙ୍କର ମତି ବଦଳିବ ଲୋ ବଉଳ ! ଏ କୁଳରେ ତୋ'ର ଚେର ଲାଗିବ । ମୋ ପାନକୁହା ମାନ । ସ୍ୱାମୀଙ୍କୁ ଏବେ ଘରେ ଛାଡ଼ି, ସ୍ନାନ କରି ମୁଁ ପବିତ୍ର ହେବି । ପୂଜାର ଉପକରଣ ନେଇ ବାବାଙ୍କ ପାଖକୁ ଯିବି । ତୋ' ଦୁଃଖ ଜଣାଇଁ ଦେବି ଲୋ । ଆଜି ନ ଗଲେ ନାହିଁ । କାଲି ଯିବୁ । ଡେରି କରି ଯିବୁ । ମୁଁ ସେଇଠି ଥିବି ।

ଟଭ ମୁଣ୍ଡ ନୁଙ୍ଗାଇ ସ୍ୱୀକୃତି ଜଣାଇଲା ।

ଚୁଲି ଉପରେ ପାଣି ଗରଜୁଥାଏ । ବାମ୍ଫ ଉଠୁଥାଏ, ଜଳି ଜଳିକା ନିଆଁ ଚୁଲି ବାହାରକୁ ମାଡ଼ି ଆସିଥାଏ । ଆଗ କ'ଣ ରାନ୍ଧିବ ବିଚାର କରୁଣୁ ସେ ରୋଷଘର ଭିତରକୁ ପଶିଲା । କେଉଁ ଅଜଣା ଆଶଂକାରେ ଛାତି ଭିତର କମ୍ପି ଉଠୁଥିଲା । ପାଦ ଥରିଲା ପରି ଲାଗୁଥିଲା ।

ଆଖିରେ ଲୁହ ଟଳ ଟଳ । ସେଧୂଆ ଆଖିକୁ ଦିଶିଲା ପରି ମନେହେଲା ଯେପରି ତା'ର ଶାଶୂଠାକୁରାଣୀ ଚୁଲି ମୁଣ୍ଡରେ ଆଗପରି ବସିଛନ୍ତି । ତା' ଆଡ଼କୁ ପଛ କରିଛନ୍ତି । କଅଁଳେଇ ଗେହ୍ଲେଇ କହୁଛନ୍ତି, ଆଲୋ ମା, ଅଜାଣତରେ ହେଉ ପଛକେ, ଦୋଷୀରୁଣୀ ହେଲୁ । ଖୁଣ୍ଟିଆ କୁଳରେ କାଳିମା ଲେପିଲୁ । ସାତ ପୁରୁଷର ସମସ୍ତଙ୍କୁ ଅନ୍ଧନରକକୁ ଠେଲିଲୁ ।

ଈଶଆର ଡାକ କାନରେ ବାଜିଲା, ଏ, ଟ-ଅ-ଭ ।

ଟଭ ସେଇଠି ଥାଇ ଜବାବ ଦେଲା, ଯାଉଛି— ।

ସେ ଆଖି ପୋଛିଲା । ଚୁଲି ପାଖରେ ରଖାହୋଇଥିବା କ୍ଷୀର ଡେକ୍‌ଚିରୁ ଦୁଇଟି ଗିଲାସରେ ଅଧେ ଅଧେ ଢାଳି ତରତର ହୋଇ ଈଶଆ ପାଖକୁ ଗଲା । ଦେଖିଲା, ମହାରଣା ଶୋଇଗଲେଣି । ହାତ ଖଟ ଉପରେ ଭରା ଦେଇ ଅଧାଶୁଆ ଠାଣିରେ ଈଶଆ ଗୋଡ଼ ଲମ୍ବାଇ ବସିଛି । ଆଖି ବୁଜିଛି । ମୁଣ୍ଡଟି ପଛ ଆଡ଼କୁ ଢୁଳାଇଛି । ପାଟି ଅଲପ ଖୋଲିଛି ।

କେମିତି ଦିଶୁଛି ସେ ମୁହଁ ।

ଟେଭିର ଛାତି ଥରି ଉଠିଲା । କ୍ଷୀର ଗ୍ଲାସ ଦୁଇଟି ସିନ୍ଦୁକ ଉପରେ ରଖି ସେ ଖଟ ପାଖକୁ ଆସିଲା । ଝିଅଆର ମୁଣ୍ଡକୁ ସିଧା କରୁଣୁ ସେ ଆଖି ଖୋଲିଲା । ମନକୁ ମନ କହିହେଲା, ଶଳା ଗୋକୁଳ ମଳିକ ! ରହ ଭଦ୍ରେ ସାଧ କରୁଛୁ । ଆଉ ସେ ଅର୍ଜୁନା । ତାକୁ ହାଣିବ । ହଁ, ହଁ—

ସେ କାହିଁକି ସେମାନଙ୍କର ନାଁ ଉଚ୍ଚାରଣ କଲା, ଦାନ୍ତ ରଗଡ଼ି ମୁଣ୍ଡ ହଲାଇଲା, ପରୁଶିବାକୁ ଟେଭିର ଆଗ୍ରହ ନ ଥିଲା ।

ପୂନା ଦେଈ ସଙ୍ଗେ ବହୁ ସମସ୍ତ ଆଳାପ କରି, ବାରି କଥା ଶୁଣି, ଜାଣି, ଉତ୍ତେଜନାରେ ଛଟପଟ ହୋଇ ତା'ର ମୁଣ୍ଡ ଗୋଳମାଳିଆ ହୋଇଯାଇଥିଲା । ସେ ବାହ୍ୟବୁଦ୍ଧି ହରାଇ ବସିଥିଲା । ସବୁ ଭୁଲି, ତାର ନିତଦିନିଆଁ ସ୍ୱାଭାବିକ ଚଳଣି-ଭିତରେ ନିଜକୁ ବୁଡ଼ାଇ ରଖିବାକୁ ସେ ଛଟପିଟି ହେଉଥିଲା ।

ଚୁଲି ଉପରେ ପାଣି ଗର୍ଜୁଛି । ଘରର କେତେ କାମ ବାକି ପଡ଼ିଛି । ଝିଅଆ ଦେହରେ ତେଲ ମାଲିସ କରିବାକୁ ହେବ । ସେ ତ ଏକାକୁ ଏକା । ଏ ଘରର ସ୍ୱକରଣୀ । ଏ ଘରର ମାଲିକାଣୀ । ଏଇ କୁଟୁମ୍ବର ସର୍ବେସର୍ବା । ପୁଣି ଏଇ କୁଟୁମ୍ବର କେହି ନୁହେଁ । ସେ ଗୋଟାଏ ଚଳନ୍ତି ପ୍ରତିମା । ଏଇ ଝିଅଆ ତା'କୁ ନାଚ କରାଉଛି !

ହେଉ, ସେଇଆ ହେଉ ।

ଟେଭି ସିନ୍ଦୁକ ଉପରୁ ଦୁଧ ଗିଲାସ ଉଠାଇ ଝିଅଆ ମୁହଁରେ ଲଗାଇଲା । କହିଲା, ନିଅ, ପିଇଦିଅ ।

ଝିଅଆ ଢକ ଢକ କରି ଢୋକିଲା । ଗିଲାସକ ଦୁଧ ଶେଷ କରିଦେଲା । ସଳଖି ବସି ସେ କହିଲା, ମଠକୁ ତୁ ଯିବୁ ନାହିଁକି ? ପ୍ରସାଦ ଆଣିବୁ । ମୁଁ ଖାଇବି । ଚେଙ୍ଗା ହୋଇ ଉଠିବି । ଦେବୀଙ୍କ ଫୁଲ ବି ଆଣିବୁ ହେ । ଶଳା ଗୋକୁଳାର ଅଣ୍ଟା ଆଗ ଭାଙ୍ଗିବି । ସେଇଠୁ ସେ ଅର୍ଜୁନାର ।

—ତମେ ଶୋଇପଡ଼ । ତମ କାମ ସାରି, ଭଅଁରୀ ମା ଆସିଲେ, ତାକୁ ସଙ୍ଗରେ ନେଇଯିବି ।

ଟେଭି ଗଲା ନାହିଁ ।

—୬—

ଦିନ ପରେ ଦିନ ବିତିଲା । ତଥାପି ଟେଭି ଅଟଳ ।

ଝିଅଆର ସେ ପ୍ରାଣପଣ ସେବା କରେ । ଲେଟଣୀ ପାରି ପରି ଘରକାମରେ ଲେଟିଯାଏ । ଭଅଁରୀକୁ କାମର ବରାଦ ଦିଏ । ଭଅଁରୀ ମାଆଠାରୁ ଗାଆଁର ସବୁ ହାଲ୍‌ଚାଲ୍ ବୁଝେ । ନିଜେ ତୁନି ହୋଇ ରହେ ।

ଝରିଆକୁ ସେ ଦିନେ ମୁହେଁ ମୁହେଁ ଶୁଣାଇ ଦେଲା, ସେଥିପାଇଁ ମୁଁ ମଠକୁ ଯାଉଥିଲି, ବାବାଙ୍କ ଦୟାରୁ ସେତିକି ହୋଇସାରିଛି । ମୋ ଭିତରୁ ଚାମଣ୍ଡା ଚାଲିଯାଇଛି । କିଏ ଜାଣେ, ମୁଁ ପୁଣି କପି ଧରିଲିଣି କି ନାହିଁ ?

ଏଁ — ?

ସତେ, କିଏ ଜାଣେ ? ବାବାଙ୍କର ମହିମାରୁ ସବୁ ସମ୍ଭବ ହୋଇପାରେ । ଘରେ ଥାଇ ମୁଁ ତାଙ୍କୁ ଏଇଠି, ବୃନ୍ଦାବତୀଙ୍କ ଆଗରେ ଜୁହାର ହେଉଛି । ତମକୁ ମୁହୂର୍ତ୍ତେ ଏକୁଟିଆ ଛାଡ଼ି ବାହାରେ ମୁଁ ଯାଇପାରିବି ନାହିଁ । ସେଉଁମାନେ ତମକୁ ମାଡ଼ ଦିଆଇଥିଲେ, ଚାମଣ୍ଡା ଆଉ ପଠାଣ ଭୂତ ପିଟିଲା ବୋଲି ପ୍ରଚାର କରାଇଲେ, ସେମାନେ ଯଦି ଘରେ ପଶି ତମକୁ ଛେଚନ୍ତି, ତମ ଘରେ କଳାକନା ବୁଲାଇ ସବୁ ଚୋରି କରି ନିଅନ୍ତି, ତମେ କଅଣ କରିପାରିବ ?

ଏତେ କଥା ତୁ କାହୁଁ ଜାଣିଲୁ ଟଖି ?

ମତେ କାଉ କହିଲା । ସେଥିରୁ ତମେ କ'ଣ ପାଇବ ? ତମେ ତ ବାଡ଼ିଧରି ବେଶ୍ ଯା ଆସ କରି ପାରିଲଣି । ଟିକିଏ ଟାଣ ହୋଇଯାଅ; ତଳେ ଗାଁରୁ ବୁଝିବ । ସବଙ୍କ ପୁରୁଷ ପରି ଶିବବାବା ! ସେ କାହିଁକି ଚାମଣ୍ଡାର ଦୋଷ ଦିଅନ୍ତେ ? ତାଙ୍କ ନାମରେ ଅନ୍ୟମାନେ ମିଛରେ ପ୍ରଚାର କରିଛନ୍ତି ।

ଝରିଆ କହିଲା, ସେଇଆ ହୋଇଥିବ ।

ମହାରଣା କେତେଥର ଆସିଥିଲେ । ଆଉ କେଉଁ ସାଙ୍ଗମାନେ ବି ଆସିଥିଲେ । ସେମାନଙ୍କ ପାଇଁ ଟଖି ଦାଣ୍ଡପିଣ୍ଡାରେ ସପ ପାରିଦିଏ । ଝରିଆକୁ କହେ, ଯାଅ ସେଠିକି । ସେହି ଦାଣ୍ଡପିଣ୍ଡାରେ କଅଣ କରୁଛ କରୁଥା । ଗଞ୍ଜେଇ ଅଫିମ ଖାଇ, ଭଅଁରୀ ହାତରେ ମଦପାଣି, ଖଜୁର-ତାଡ଼ି ମଗେଇ ପିଇ, ତମେ କି ସର ହେଲଣି ?

—ତୋ' ବୋପାର କି ଗଲା ?

—କିଛି ନାହିଁ ? ମୋ' ବାପା ତମ ବାପାଙ୍କ ହାତକୁ ମତେ ଟେକି ଦେଇଥିଲେ । ତାଙ୍କର ଝିଅଟି ସୁଖରେ ଭୋଗଭାଗ୍ୟରେ ରହିବ, ସେଇଥିପାଇଁ ।

ଦାଣ୍ଡପିଣ୍ଡାରୁ କେଉଁମାନେ ଡାକ ଛାଡ଼ନ୍ତି ।

ନୁଙ୍ଗୁରା ବଟ ଦଣ୍ଡପାଟ ତା'ର ଗୋଲୁଳିଆ ଲମ୍ବନଖରେ ତାଡ଼ିଦେଇ ଘର-ଭିତରକୁ ଧସେଇ ପଶେ । ତା'ର ସୁରମାପିନ୍ଧା ଆଖି ଦୁଇଟା ଚଉପଟ ଭ୍ରମେ । କ'ଣ ଉଣ୍ଡୁଥାଏ । ତା' ତୁଣ୍ଡରୁ ଯେତେ କଥା ବାହାରେ, ତା' ଆଖିରୁ ବାହାରେ ତା'ର ଦି'ଗୁଣ ଭାଷା । କହେ, କ'ଣ ଭାଉଜ ! ଝରିଆଭାଇକୁ କୀଳରେ ବାନ୍ଧି ରଖିଥିବ ? ତେଣେ ଗୁଡ଼ଘର ପିମ୍ପୁଡ଼ି ଖାଇଗଲେଣି ।

ଟଖି ଭାବିଲା, ସେ ଠିକଣା ଜବାବ ଦେବ ସେହି ସିଆଣା ଛତରକୁ ।

ଶାଶୁ ଥିଲାବେଳେ ବୟସ ହିସାବ କରି କହିଥିଲେ, ଝିଅର ସାଙ୍ଗ ବଡ଼ ପିଲାଟି ଦିନରୁ ମା'ଆକୁ ଖାଇଛି । ଏ ଘରେ ସେ ପୁଅପରି କାରବାର । ପିଲାଦିନୁ ତା' ବାପା ବେ.ହି ଆଣିଲା ଯେ ଝିଅଟି ବଡ଼ ସାଙ୍ଗର । ମାସେ ଦି'ମାସ ଛୋଟ ହୋଇପାରେ । ବର୍ଷେ ନ ପୂରୁଣୁ ପୁଅ ହେଲା । ପ୍ରତି ବର୍ଷ ତା'ର ପିଲା ହେଉଛି । ତେବେ ବି ସେ ବୋହୂ, ମୁଖଦାନୁଗ, ଚେପ୍‌ଟିନାକୀର ଗର୍ଭି ଝିଲ୍ଲୁ ନାହିଁ । ବଡ଼ ଝିଅଆଠାରୁ ବଡ଼ । ଗା-ପିଲା ତ, ତୋ'ର ଦେଢ଼ଶୁର ଲେଖା ହେବ ।

ଶାଶୁ ମରିବାରୁ, ଗେରସ୍ତଙ୍କ ସାଙ୍ଗ ହିସାବରେ, ସମ୍ପର୍କୀ ଲେଖାରେ ଝିଅକୁ ସେ ପଦେ ଅଧେ ନଦିକିଆ ଭାଷାରେ ଅକ୍ଷା କରୁଥିଲା । ଝିଅ କେବେ ଓଲଟି ଜବାବ ଦେଇ ନାହିଁ । ଆଜ ସେ ଭାଉଜ ସମ୍ପର୍କ ପାଇଲାଣି ।

କି' ଜବାବ୍ ସେ ଦେବ ? ତା' ଖୁଣ୍ଟ ତ ଟାଣ ନୁହେ, ନଡ଼ବଡ଼ିଆ । ନିଜ କ୍ରୋଧକୁ ନିଜେ ତୋଳି, ଅଭେକା ରୂପକୁ ଟିକିଏ ଅସାବଧାନ ପଣରେ ବେମହିତ ଆ କରି, ଝିଅ ମୁହଁ ଫଣ ଫଣ କଲା । ମନର ସବୁତକ ଘୃଣାଭାବ, ତେଜିଲା ଆଖି, ଫୁଲିଲା ନାକ ଓ ଚପିଲା ଓଠରେ ପ୍ରକାଶି ସେ ମୁହଁ ବୁଲାଇ ଘର ଭିତରେ ପଶିଲା ।

ବଡ଼ିଆ ଝିଅର ହାତ ଧରି ଅଗଣାରୁ ଦାଣ୍ଡ-ଘରବାଟେ ପିଣ୍ଡାକୁ ଗୁଲିଗଲା ।

ଝିଅ ସେମାନଙ୍କର ଆଲୋଚନା ଶୁଣିବାକୁ ଆଗ୍ରହ ପ୍ରକାଶ କରେ ନାହିଁ । ଝିଅର କୌଣସି କାମରେ ବାଧା ଦିଏନାହିଁ । ବାଧା ଦେବାକୁ ସାହସ କରେ ନାହିଁ । ସେ ଦିନେ ଦିନେ ପଦାକୁ ବାହାରି ଯାଏ । ପୁଣି ନିଶାପାଣିରେ ଆକ୍ରାନ୍ତ ହୋଇ କେତେ ରାତିରେ ଫେରେ । ଟଳ ଟଳ ।

କେବେ ବାନ୍ତି ଉଗ୍ରାଳି କରି ବାଟରେ ପଡ଼େ । ତାଙ୍କର କେଉଁ ସାଙ୍ଗ, ଅବା ଗାଁ ଲୋକ, ହାତ ଧରି ଆଣି ଘରେ ଛାଡ଼ିଦେଇ ଯାଆନ୍ତି । ଆରମ୍ଭ ହୁଏ ଝିଅର ସେବା । ତା'ର କାନ୍ଦ । ଦେଖିବାକୁ, ଶୁଣିବାକୁ, ଟିକିଏ ସାହାଯ୍ୟ କରିବାକୁ ଏକା ସେହି ଛୋଟୀ ଭଉଁରିମା । ଆଦେଶ ମାନିବାକୁ ଭଉଁରି ।

ସେହି ଦିଓଟି ବ୍ୟକ୍ତି ଘରର ଅବସ୍ଥା ଦେଖି ଗ୍ଲାନିଆଁ ହୁଅନ୍ତି । ଆହା ଆହା କରନ୍ତି । ଝିଅର ଦୁରବସ୍ଥା ଦେଖି ଆଖିରୁ ଲୁହ ଗଡ଼ାନ୍ତି । ଆକଟ କରି ପଦେ କହିବାକୁ ସେମାନଙ୍କର ସାହସ କୁଳାଏ ନାହିଁ । ମଦୁଆ, ଭୁକ୍ତିତ ଲୋକ ତ ଖାଉଁଦି, ଯିଏ ହାତଧରି ଆଣିଲା ମାଇପକୁ ପାସଙ୍ଗରେ ପକାଏ ନାହିଁ, କୋଠିଆ ମୂଲିଆ

ଲୋକ ତା' କୋଧର ତୋଡ଼ ଆଗରେ କୁଟାଖିଅ ସଙ୍ଗେ ସମାନ । ଯା' କହିଲେ ତାଙ୍କର ନାବ ବୁଡ଼ିଯିବ ।

ବୁଢ଼ୀ ଗୁପତରେ କହେ, ଆଗୋ ବୋହୂସାଆନ୍ତାଣି ! ସେହି ଶିବବାବାଜୀ ନଜେ, ଆଉ ତାଙ୍କର ମରଦ-ମାଇପି ଚେଲାମାନେ ଏଣ୍ଡ୍ରେଣ୍ଡୁ ମନରୁ ଫାନ୍ଦ କରି ଆମ ସାନବାବୁଙ୍କ କାଠିରେ ନଗୁଉଛନ୍ତି । ସେମିତି କେତେ ଗାଆଁର କେତେ ମ ! ସେମାନଙ୍କଠଉଁ ସୁନା ଗହଣା ନେଇ, ଟଙ୍କା ନେଇ ବାବା ଡଉଁଣଆ ଦେଇ ଧୂଅ ବକଉଛି । ବାଅଙ୍କୁ କାଳିକାମାଈଙ୍କ ପାଖରେ ଅଧିଆ ପକାଉଛନ୍ତି । କ'ଣ କ, ତାଙ୍କ ବାଆଦୋଷ କଟିବ । ଗସ୍ତ କଟିବ । ତାଙ୍କର ପିଲାପିଲି ହେବ ।

ଟଭିର ଗ୍ରନ୍ଥ ଥରଉଠିଲା । ମନରେ ସାହସ ବାନ୍ଧି ସେ କହିଲା, ଯୋଗୀ ମହାତ୍ମା, ସିଦ୍ଧପୁରୁଷ । ମେ ଦୟା କର ଶଙ୍କରଙ୍କୁ ଡ଼ାକଲେ ଦେବୀ ଆଗକୁ ଆସନ୍ତି । ବର ଦେଇ ଯାଆନ୍ତି । ମୁଁ ତ ନଜେ ଦେଖିଛି ।

—ହଁ ଯେ, ଲୋକେ ନନ୍ଦା କରୁଛନ୍ତି । ସେ ବାବାଜୀ କୁଆଡ଼େ ଲମ୍ପଟିଆ-ଟାଏ । ସେ ପୁଣି କୁଆଡ଼ର ଝୁଣ୍ଡୀ ଡକେଇତ ଯେ, ତା' ପଛରେ ପୁଲିସି ଲଗିଛି । ଏଠିକି ଆସି ମହନ୍ତମା ହୋଇଛି । ଫନ୍ଦୀ କର ଟଙ୍କା ସୁନା ଗୋଟାଏ ଚେଲା ହାତରେ ପଠାଇ ଦେଉଛି ତ ଆଉ ଗୋଟାଏ ଚେଲା ଆସୁଛି ।

ଟଭି କହିଲା, ଅଧର୍ମୀ ଲୋକେ ଏମିତି ମିଛରେ ପ୍ରଚ୍ଚର କରନ୍ତି । ଏ ଗାଆଁରେ ଦୁଇ ଦଳ ହୋଇଚନ୍ତି । ଆରଦଳିଆ ଏମିତି ପ୍ରଚ୍ଚର ଚଳେଇଥିବେ ।

ବୁଢ଼ୀ କହିଲା, ହୋଇଥିବ ଗୋ ବୋହୂ-ସାନ୍ତାଣୀ । ସେହିମାନେ ଆଉ ତାଙ୍କ ମାଇପିଟିମାନେ, ନଜନଜ ଭିତରେ ଏଇକଥା ହେଉଛନ୍ତି । ସତକୁ ସତ, ସେ ଚୈଲବାବା କୁଆଡ଼େ ଗୃଲଗଲେଣି । ଆଉ ଜଣେ ପିଲାବଅସର ଟୋକା ଆସିଲେଣି ।

ସତେ ?

ମୁଁ ନଜେ ତ ଦେଖି ଆସିଲି । ମଠ ବାହାରେ ସେ ଆମଙ୍କୁ ସବୁ ଭୋଗ ବାଣ୍ଟୁଥିଲେ ।

ଟଭି କହିଲା, ଅନେକ ଦନ ହେଲି ବଉଳ ସଙ୍ଗେ ଦେଖା ହୋଇ ନାହିଁ । ଦେଖା ହୋଇଥିଲେ ସେ ନୂଆଚେଲାଙ୍କ କଥା କହିଥାନ୍ତା । ଭବଚ୍ଛି, ମୁଁ ଦନେ ତତେ ସଙ୍ଗରେ ନେଇ ଯିବ ।

ଟଭିକୁ ତା' କଥା ଶେଷ କରବାକୁ ନ ଦେଇ ବୁଢ଼ୀ ପାଟି କର ଉଠିଲା, ନା, ନା । ଯେତେ ହେଲେ ତ ତମେ ମୋ ସାନ୍ତାଣୀ । ମୁଁ ତମକୁ ଓଲଗି ହୋଇ ନେହୁରା କରୁଛି । ଏ ବୁଢ଼ୀ ମଣିଷଟାର ସାନ-କୁହା ମାନ । ସେ ଗ୍ଲେପଣ୍ଡି ସୁନାଦେଇ ବଢ଼ାଉଣୀ ସାଙ୍ଗେ ମିଶ ନାହିଁ । ତା' ପାଲରେ ପଡ଼ ନାହିଁ । କୁଆଡ଼ର କଏ,

ଭିଖାରୁଣୀ ଛତରୁଣୀଟା । ତା ବେକଗୁଣକଥ ବୃଦ୍ଧି । ବାପ ବଅସର ଗଞ୍ଜେଡ଼, ମଦୁଆ, ଅଣପୁରୁଷାକୁ ବାହା ହେଲ । ଲୋକେ କୁହାକୁହ ହେଉଛନ୍ତି, ସେ ଦୋଷ୍ଟରୁଣୀ; ବାବାଜୀ-ମହାନ୍ତମାଙ୍କ ପିଲାକୁ ପେଟରେ ଧରଲ । ଡମ୍ବରୁଆର ପୁରୁଷ-ପଣିଆର ଟେକ ରଖିଲ । ଫୁଲେଇପଣକୁ ସରଛ । ସେ କୁଆଡ଼େ ପୁଣି ମା ହେବାକୁ ବସିଲଣି ।

ଟଙ୍ଗ କାଠପିଡ଼ୁଲା ପର ନବାକ ନସ୍ପନ୍ଦ ହୋଇ ଶୁଣୁଥିଲ । ତା' ପେଟ ଭିତରୁ କୋହ ଉଠୁଥିଲ । ତରତର ବୁଢ଼ୀର କାନ ପାଖକୁ ମୁହଁ ନେଇ ଧୀର ସ୍ୱରରେ ପଗ୍ଟରଲ, କିଏ କହିଲ ?

ବୁଢ଼ୀ କହିଲ, ଡମ୍ବରୁର ଅଧା ଠୁଣ୍ଟା କହୁଥିଲ ! ସେ କେଡ଼େ ଖୁସି ହୋଇ ଗଲୁଛ ।

ଟଙ୍ଗ କହିଲ, କାହିଁକ ସେ ଖୁସି ନ ହେବ ? ଶିବବାବାଙ୍କ କଲ୍ୟାଣରୁ ତା' ପୁତୁରର ଦୁଇଟି ସନ୍ତାନ ହେବେ । ଯେଉଁ ଝରସରଆମାନେ ଡମ୍ବରୁ ମହାରଣାଙ୍କର ଅପଯଶ ଗାଉଛନ୍ତି, ସେମାନଙ୍କ ଗାଲରେ ଜାଣ ଚୂନକଲା ବୋଲାହେବ ।

—ହଁ ଯେ, ବାଘ ଘରେ ବକଗ୍ର ପିଲା ନାଚବେ ।

—ଓଲଟା କହିଲୁ ଭଅଁଗ୍ର ମା ! ବକଗ୍ର ଘରେ ବାଘ ବାଘୁଣୀଙ୍କ ପିଲା ନାଟ କରବେ ।

—ହଁ, ସେଇଆ । ସୁନା ବାଘୁଣୀ ସଙ୍ଗେ ସମାନ. । ମିଁଉଁମିଁଉଁକା ହାଡ଼-ଦୋହଲ ଛେଳି ଛୁଆଟିଏ ହୋଇ ଆସିଥିଲ । ଏବେ ବାଘୁଣୀ ହେଲଣି । ଡମ୍ବରୁ ତା' ଆଗରେ ବକଗ୍ର ! ସୁନା ଯାହା କହୁଚ୍ଛ ତା'ର ସେଇଆ । ନବସିଂହା ନାରଣ ପରଡ଼ା ମାଇମ ପୂଜ କହ ବୁଲୁଛ । ଡମ୍ବରୁ ତା' ନାମରେ ଓଡନମାଣ ଜମି ରେଜିଷ୍ଟ୍ରି କର ଦେଲଣି । ଅଉଲ ଜମି । ଯେଉଁ ଦ ମାଣ ବଆଲ ଜମି ଅଛ, ଆଉ ତା' ଘରବାର, ସେତକ ବ କୁଆଡ଼େ ଲେଖେଇ ନବାକୁ ମସୁଧା କଲଣି । ତାକୁ ଫୁସୁଲଉଛ ।

—ସତ କ ?

—ମୁଁ କ ଜାଣେ ? ମୋ ବଡ଼ବୋହୂ ତାଙ୍କ ଘର ଲିପୁଥିଲ । ପରଡ଼ାଏ ତାଙ୍କ ଭାଇଯାକୁ କହୁଥିଲେ, ସେ ଶୁଣିଛ । ସେ କୁଆଡ଼େ ପୁଣି କହୁଥିଲେ, ମୋ ବୋହୂ ଶୁଣିଛ, ଝରବାବୁ ସୁନାଦେଇ ନାମରେ ଦ'ମାଣେ ଅଉଲ ଜମି କବଲ କରବାକୁ କେତେ ଟଙ୍କା ଡମ୍ବରୁଠାରୁ ନେଇ ସାରଲେଣି । ଭଅଁରୀ ସବୁ ଜାଣିଛ । ତା'କୁ ପଗ୍ଟରଲେ ସେ କହିବ ।

ଟଙ୍ଗର ମୁଣ୍ଡ ଭିତରେ ନିଆଁ କୁହୁଳୁଥିଲ । ସେ ନିଆଁ ଜୁଳୁ-ଜୁଳେଇ ଉଠିଲ । ଭଅଁରୀକୁ ସେ ନଜର ସାନ ଭାଇ ପର ଭଲପାଏ । ଯେତେବେଳେ ସେ

ଯାହା ମାଗେ, ପାଖରେ ଥିଲେ ସଙ୍ଗେ ସଙ୍ଗେ କାଢ଼ିଦିଏ । ନିଜେ ନ ଖାଇ ଭଉଁ ଣୀ ପଡରରେ ଅକାଡ଼େ ।

ଭଉଁ ଣୀ ସ୍ନେହ କରେ ଏହା ଅନ୍ୟ କେହି ଜାଣନ୍ତୁ ବା ନାହିଁ ସେ ଜାଣେ । ଧରା ପଡ଼େ । ପଶୁରଲେ ନିର୍ଲଜ୍ଜଟା ମୁଣ୍ଡ ନୋଏଁ । ଟଙ୍କି କଥା ଲେଇ ଢଆଣ କହେ, ହଇରେ ଚଗଲା, ତୁ ମାଗିଥିଲେ ମୁଁ କ'ଣ ଦେବାକୁ ମନା କରିଥାନ୍ତି ? ଏମିତିଆ ବୁଦ୍ଧି ଆଉ ଦିନେ କେବେ କରିବୁ ନାହିଁ ।

ସେଇ ଭଉଣୀ କପଟ କରିଛି । ସବୁ ଜାଣି ଲୁଚାଇ ରଖିଛି । କାହା ଉପରେ ବିଶ୍ୱାସ କରିବ ? ଝିଅଆର ସବୁ ଅତ୍ୟାଚାର ସହି କେଉଁ ଆଶାରେ ମାଟି କାମୁଡ଼ି ସେ ଏ ଡିହରେ ପଡ଼ି ରହିବ ? ଘରର ଭଉଁ ଣୀଟା, ଯିଏ ବର୍ଣ୍ଣିନ ନେଉଛି, ଦି'ଓଳି ମନ ଖୁସିରେ ପେଟେ ପେଟେ ଠୁଙ୍କୁଛି, ଗୁଣ୍ଡୁଚିମୂଷା ପରି କେଉଁ ଛଟକରେ କ'ଣ ସବୁ ବୋହି ନେଉଛି, ଝିଅଆର ସେ ବିଶ୍ୱାସ ଅରଜିଛି । ଆଉ ସେ ନା'କୁ ମାତ୍ର ଯେ ମାଲିକାଣୀ, ସେ ମୂଲିଆଣୀଠାରୁ ଖିଲମାନୀ । ପାହାନ୍ତା ପହରୁ ଉଠି ରାତି ଅଧଯାଏ ଖଟୁଥିବ । ସବୁ କହିବ ମୋ'ର, କିନ୍ତୁ କାହିଁରେ ହାତ ଦେବାକୁ ଅଧିକାର ନ ଥିବ । ମାଡ଼ଗାଳି ସହି, ମୁହଁ ମାଡ଼ି ପଡ଼ିଥିବ, ସମ୍ପତ୍ତିଆ କୁ ଜଗି ରହିଥିବ । ଆଉ ବାରବୁଲା କେଉଁଠି ଅଇଁଠା-ପତର-ଚଟା କୁକୁରର ପାଦରେ ମୁଣ୍ଡ ମାଡ଼ି ସକଉଥିବ ।

ଟଙ୍କି ପୁଣି ଭାବିବାକୁ ଲାଗିଲା, ତା' ବଉଳ ଠିକ୍ କରିଛି । ଲୁହା ଜାଣି ପାଣି ଦେଉଛି । ମନ ଓରମାନ ମେଣ୍ଟାଇ ନେଉଛି । ମହାରଣା ବଂଶରେ ସେ ନିଜର ଚେର ଲଗାଇ ସାରିଛି । ଜମିର ମାଲିକାଣୀ ସେ ହୋଇ ସାରିଲାଣି ।

ଝିଅଆର ନିବୁଦ୍ଧିପଣିଆ ପାଇଁ, ଖୁଣ୍ଟିଆଘରର ସମ୍ପତ୍ତି ତା' ଅଜାଣତରେ କ୍ଷୀର ହେଉଛି । ସୁନା ତେଣିକି ହାତ ବଢ଼ାଇଲାଣି । ତା'ର କି ଦୋଷ ? ଶୁଖିଲା ପୋଖରୀର ଆଣ୍ଠୁଆଣି ପାଣି ଗୋଳେଇ ମାଛ ଧରିଲେ ଯିଏ ମନ ଯିଏ ପଙ୍କୁଆ-ପାଣିରେ ମାଛ ଅଣ୍ଡାଳନ୍ତୁ, ଯାହା କପାଳକୁ ଯାହା ହାବୁଡ଼େ । ସେମିତି ହୋଇଛି । ସୁନା କାହିଁକି ପଛେଇବ ?

ଟଙ୍କି ନିଜ ଭିତରେ ଆମ୍ବୁଡ଼ି କାମୁଡ଼ି ହେଉଛି । ସୁନା ଦେଇକୁ ଈର୍ଷା କରୁଛି । ଘରର ବଢ଼େଇ ଘରର ନିଅଣ୍ଟିଆ ଝିଅଟା । ଆଇଲାବେଳେ ମୁକୁଟିଆ ଦେହରୁ ଲେଙ୍ଗଡ଼ା ଝୁଲୁଥିଲା । ମାଇପେ ନାମ ଟେକୁଥିଲେ । ଦେହରେ କଡ଼ାକର ପିତଳ ଗହଣା କେଉଁଠି ନ ଥିଲା । ଏବେ ଦେଖ ! ନ ଚିହ୍ନିଲା ଲୋକେ ତା' ଆଡ଼କୁ ଅନାଉଁଛନ୍ତି । ଦେହ, ମୁହଁ ପୂରି ଉଠିଛି । ରଙ୍ଗ ତୋରା ହେଲାଣି । ଭଲଭଲିକା ଶାଢ଼ୀ ପିନ୍ଧୁଛି । କାନରେ ସୁନାର କାପ । ବେକରେ ଠିକଣ ହାର । ତହିଁରେ ପଦକ ଝୁଲୁଛି । ହାତରେ ରୁପାକାଚ ଝୁରଝୁରି ପଟ ! କାହୁଁ ସେ ପାଇଲା ?

ସେ ଟଗ୍ର । ତା'ର ଦୁଇଖଣ୍ଡିରୁ ତନି ଖଣ୍ଡି ନାହିଁ । ଖଣ୍ଡିଏ ବାଦାମିରଙ୍ଗର, ଆଉ ଖଣ୍ଡିକ ପାଣିଚିଆ ନାଲି, ଫିକା ନେଳିଆ ରଙ୍ଗର କପ୍ତା ଖଣ୍ଡିଏ ବି ଅଛି । ଅଳପ ଓସାର । ଓଦାଲୁଗା ପାଲଟିବାକୁ ସେଇଟି ଲୋଡ଼ା । ପେଡ଼ିଲୁଗା ଖଣ୍ଡି ଦିନେ ହୁଲିଦିଆ ଥିଲା । ବେଶୀ ପୁରୁଣା ହେଲାରୁ ରଙ୍ଗ ପାତଳ ହେଲାଣି । ଏତିକି ତା'ର ସମ୍ବଳ । କାନରେ ଷ୍ଟେଟ ଫୁଲ ଦିଓଟି ସେମିତି ଅଛି । ହାତରେ ଗୁରି ଗୁରି ପଟି ନେଳୀ-କାଚ । ତା'ର ତ ମୂଲିଆଣି ବେଶ, ସେ ପୁଣି ଖୁଣ୍ଟିଆ ଘରର ବୋହୂ ।

ଝିଁରିଆର ଆଖିକୁ କ'ଣ ଦିଶୁ ନାହିଁ ? ନିଶା ପାଣି ଗୁଡ଼ୁଛି ? ମୁଣ୍ଡକୁ ବଗୁର-ବୁଦ୍ଧି ଫେରି ଆସୁଛି ? ଗହଣା ପାଇଁ ସେ ତା' ପାଖରେ କେବେ ଅଳି କରି ନାହିଁ । ଆଉ ଖଣ୍ଡିଏ ନୂଆ ଶାଢ଼ି ପାଇଁ ସେ ଯେତେଥର କହିଛି, ଉତ୍ତର ଶୁଣିଛି, ହଉ ଆଣିବା । କେବେ ଆଣିବ ପଚାରିଲେ, ଚିଡ଼ି ଉଠିଛି । ଟଗ୍ରର ମୋଟାଳିଆ ଦେହର ଅଭେକା ପଣ ତା' ଆଖିରେ କଣ୍ଟା ଫୋଡ଼ୁନାହିଁ ?

ଟଗ୍ର ଭାବିଲା; ସେ ଏତେ ଅଣହେଲା, ଏତେ କଷଣ ସହିବ ନାହିଁ । ତା' ବଉଳ ସୁନା ଦେଇ ଯାହା କରୁଛି, ସେ ସେଇଆ କରିବ । ଲୋକେ ଯାହା କହିବାର କହନ୍ତୁ, ସେ ଶିବବାବାଙ୍କ ଆଶ୍ରା ନେବ । ତାହା ମିଛ କହି, ପଥଆଗ୍ର ଦେଖାଇ, ଝିଁରିଆକୁ ଆହୁରି ନିଶା ଖୋଇ ସେ ବି—

କ'ଣ ହେବ ? କ'ଣ କରିବ ?

ଭାବି ପାରିଲା ନାହିଁ । ସେ ଯଦି ଏକାଥରେ ବାଇଆବାଉଳି ହୁଏ ? ସେ ଯଦି ଜୀବନ ହାରେ ? ନା; ସେ ଯଦି ଝିଁରିଆକୁ ଗୁଡ଼ପତ୍ର ଦେବାକୁ ଧମକାଏ ? ଝିଁରିଆ କ'ଣ ବାଟକୁ ଫେରିବ ?

ଯଦି ସେ ରାଜି ହୋଇଯାଏ, ସେ କେଉଁଠି ପୁଣି ଆଶ୍ରା ଲୋଡ଼ିବ ? ବାପ ଘରେ ?

କେହି କାହାର ଖବର ଅନ୍ତର ବୁଝି ନାହାନ୍ତି । କେତେ କାଳ ପାଣି ପରି ବୋହି ଗଲାଣି—ସାବତ ମାଆ ନାଟୁଆର ଅତ୍ୟାଚାର ସହି ଆହା, ବୁଢ଼ୀଟି କ'ଣ ଏବଯାଏ ବଞ୍ଚିଥିବ ? ତାର ବାପା ଭୁଲିଗଲେଣି ଯେ ଝିଅଟିଏ କେବେ ତାଙ୍କର ଜନ୍ମ ଲଭି ପରଘରକୁ ଯାଇଛି । ମନେ ଥିଲେ ସେ ଭାବିଥିବେ, ସେ ଝିଅଟା ସଂସାରରେ ନାହିଁ ।

ଟଗ୍ରର ଆଖିରେ ଲୁହ । ମନେ ମନେ ସେ ତା'ର ବାପାଙ୍କୁ କହିଲା, ତମେ ମୋ ଦୁଃଖ କାହିଁ ବୁଝିବ ହେ ବାପା ! ତମ ନାମ ସୁମରଣା କରିବାକୁ ମୁଁ ଡରୁଥିଲି । କାଲେ କେବେ ମୋ' ଭିତରର ଯନ୍ତ୍ରଣା ତମକୁ ହରକତ କରିବ ।

ଶିବବାବାଙ୍କ ଦୟାରୁ ସେହି ସ୍ୱମୁଣ୍ଡାଟା ମୋତେ ଛାଡ଼ି ଚାଲି ଯାଇଛି ବାପା ! ସେ ମୋ' ଭିତରେ ଶିବଶଙ୍କରଙ୍କ କଳାରୁ ଧାପେ ସହି ଦେଇଛନ୍ତି । କେମିତି ଝିଅଆକୁ ଛାଡ଼ି ଚାଲିଯାଇ ପାରିବ ? ଦୁନିଆଁର ଲୋକେ ମୋ ଆଡ଼କୁ ଆଙ୍ଗୁଠି ଦେଖାଇ କ'ଣ କହିବେ ?

ଟିଆ ନିଜ ଭିତରେ ତା' ମନକୁ ଘାଣ୍ଟି ଚକଟି ପ୍ରାଣକୁ ଛଟପଟ କରି ବେଳ କାଟିଲା । ଘରର କାମରେ ତା'ର ମନ ଲାଗିଲା ନାହିଁ । ବସି ବସି, ଅବା ତା' ବୋହୂ ଅମଳର ଶୋଇଲାଘରେ ଖଣ୍ଡେ ପୁରୁଣା ସପ ପକାଇ ଶୋଇ ଶୋଇ ବେଳ କାଟିଲା । ସ୍ନାନକୁ ନେଲାପରେ ଟାଣି ହୋଇ ଷ୍ଟେଷ-ଘରକୁ ଯାଏ । ସକାଳ ବେଳା ଭାତ ଗଣ୍ଡିଏ ଫୁଟାଇ ଦିଏ । ମୁଗ ଡାଲିରେ ପରବା-ପଞ୍ଚ ପକାଇ ସିଝାଏ ଓ ବଘାରେ । ସେତିକି । ପଡ଼ିଆ ଗାଈର କ୍ଷୀର, ଅଧସେର ହେବ ଚୁଲିରେ ବସାଏ । ଦୁଇଟି ଉତୁରା ପରେ ଓହ୍ଲାଏ । କ୍ଷୀରହାଣ୍ଡି ଶିକାରେ ଥୁଏ । ସକାଳ ଓଳିର କାମ ସାରେ ।

ଝିଅଆ ଯେତେବେଳେ ଆସିବାର ଆସୁ । କି କାମ ତା'ର ବାହାରେ ବଳେଇ ପଡ଼ିଛି ତା'କୁ ହିଁ ଜଣା ! ଗୃହ ଭାଙ୍ଗିଲା । ଜମି କୁଆଡ଼େ ଭାଗରେ ଲାଗିଲା । ଅକାରଣ ବଳଦ ଦୁଇଟା କାହିଁକି ପୋଷା ହେବେ ? ସେମାନେ ହୁଡ଼ା ପାଲଟି-ଲେଣି । କଂସେଇ ଛଡ଼ା କେହି ତାଙ୍କୁ ଛୁଇଁବେ ନାହିଁ । ଗାଈ, ମାଈବାଛୁରୀ ଆଉ ଗୋଟାଏ ଛଡ଼ା ଯେ ସେଇଟା କୁଆଡ଼େ ବିଏ ଗଲଣି । ସେଗୁଡ଼ିକ ଭଲ ଅଛନ୍ତି । ଛଡ଼ାଟି ଗ୍ରେଟ । ଭଅଁରି କହୁଥିଲା, ମହାଦେବଙ୍କ ବୁଢ଼ା-ଷଣ୍ଢ, ହାତୀ ପରକା, ଯାହାର ଚୂଳରୁ ଗ୍ରେଟ ଗୋଡ଼ଟିଏ ବାହାରିଛି, ତାଆରି ଅଂଶରେ ବଉଳାଛଡ଼ାର ବାଛୁରୀ ହେବ । ଛଡ଼ାଟି ଏକା ବଖିଲେ ହେଲା ।

ଟିଆ ଗୋରୁଗୁଡ଼ିକର ସେବା କରେ । ବଉଳାକୁ ଆଉଁସି ଦିଏ । କଅଁଳ ଦୁବ ଘାସ କେଉଁଏ ପାଟିକୁ ବଢ଼ାଇଦିଏ । ବେକତଳର ଗଲ-କମଳରେ ହାତ ସଞ୍ଚାଲେ । ସ୍ନେହବୋଳା ଭାଷାରେ କହେ, ତୋ'ର ମୋର ସାଙ୍ଗ-ସଉସା ଲୋ ବଉଳା ! ତୋ ପାଇଁ ବି ମହାଦେବଙ୍କର ମନ ଟଳିଲା । ତାଙ୍କର ଯେଉଁ ବାହନଟି ପାହାଡ଼ପରି ବାଟ ଛେକି ପଡ଼ିଥାଏ, ବୋଲ ଶୁଣେ ନାହିଁ, କାନ ପାଖରେ ବାଇଦ ବଜାଇଲେ ବି ଚଳେ ନାହିଁ, କାହା ଆଜ୍ଞାରେ ତା'ର ମତି ଟଳିଲା ଯେ, ତୋ ପରକା କୁଜ-ବଳେଇକୁ ସେ ଆଦର କଲା ।

ବଉଳା ମୁଣ୍ଡ ଟେକି ହସ ହସ ହୁଏ ।

ସେମିତି ଦିନେ ହସ ହସ ହୋଇ ବଉଳ ସୁନା ଦେଈ ସଞ୍ଜବେଳେ ଖଞ୍ଜା-ଭିତରକୁ ପଶିଆସିଲା । ଆଷାଢ଼ ଶୁକ୍ଳ ଚତୁର୍ଦ୍ଦଶୀର ପୂର୍ଣ୍ଣଜହ୍ନ ଆକାଶ କୋଣରେ ଉଠି ସାରିଥାଏ । ଖଣ୍ଡ ଖଣ୍ଡ ଭାସିଲା ବଉଦ ସଙ୍ଗେ ଯେ ଲୁଚକାଳି ଖେଳୁଥାଏ । ଟଭିର ଅଗଣାରେ ଆଲୁଅ ଛାଇର ଖେଳ । ଦାଣ୍ଡଘର ବାରଣ୍ଡା ଉପରେ ଖଣ୍ଡେ ପୁରୁଣା ମସିଣା ଉପରେ ବସି ଟଭି ଥକା ମାରୁଥାଏ । ଦାଣ୍ଡଘରେ ନଳଟିଣ ଜଳୁଥାଏ ।

ସୁନାକୁ ଦେଖି ମଧ୍ୟ ସେ ଉଠିଲା ନାହିଁ । ଖାଲି ମୁହଁ ବୁଲାଇ ଚାହିଁଲା । ସୁନାଦେଈ ଶୁଆକଣ୍ଠିଆ ଶାଢ଼ି ପିନ୍ଧି ଗୋରୀ ଦିଶୁଥାଏ । ମୁହଁରେ ହସ ଲାଖି ରହିଥାଏ ।

ଟଭିର ମୁହଁକୁ ଚାହୁଁଣୁ ତା ହସ ମିଳେଇଗଲା । ଅନାବଶ୍ୟକ ପ୍ରଶ୍ନ ପଚାରିଲା, କ'ଣ କରୁଛୁ କି ବଉଳ ?

ଟଭିର ଉତ୍ତରକୁ ଅପେକ୍ଷା ନ କରି ସେ ତା' ଆଗରେ ବସିଲା । ଚାରି-ଆଡ଼କୁ ଚାହିଁ ପୁଣି କହିଲା, ଘର ନିଚ୍ଛାଟିଆ ଲାଗୁଥିବ । କେମିତି ଏକା ବସି, ପାଟି ବୁଜି ତୁ ରହୁଛୁ ? ଦଣ୍ଡକରେ ମୁଁ ବାଇଆଣୀ ହୋଇ ଯାଆନ୍ତି । ଡର ମାଡୁ ନାହିଁ ?

ଟଭି ମୁହଁ ଖୋଲିଲା, ହାଲିଆ ହୋଇ ବସିଥିଲି । ଘରଯାକର କାମ କରିବାକୁ ହେବ । ରାତି ଅଧଯାଏ ଏମିତି ବସିବ । କିଏ ଆସିଲେ ଆସିବେ, ନ ଆସିଲେ ନାହିଁ । ସେଇଠୁ ସବୁ କବାଟ କିଳି ଶୋଇବାକୁ ଯିବ । ଚୁପ ଭାଙ୍ଗିଲା, ଅଧେ ଜମି ବନ୍ଦି ହେଲିଣି, କି ବନ୍ଧା ପଡ଼ିଲାଣି । ବାକି ଅଧିକ ଭାଗରେ ଲାଗିଛି । ଆଉ କି କାମ ?

—ଭଅଁରୀ, ଅଉ ତା ବୋଉ ?

—କେତେବେଳେ ଆସିବେ କିଏ ଜାଣେ ? ଚୁପ ଭାଙ୍ଗିଲା । ଭଅଁରୀ ବି ପୁଳାଏ ଭାଗ ଧରିଛି । ହେଲେ, ସେ ଆଉ ଆମର କୋଠିଆ ନୁହଁ । ତେବେ, ତା' ନିଜ କାମ ସାରି ତା' ବୋଉ ସଙ୍ଗରେ ଡେରିରେ ଆସୁଛି । ସ୍ବା'ଙ୍କ କଥା ଛାଡ଼ । କେତେବେଳେ ସେ ଆସିବେ ତାଙ୍କୁ ଜଣା । ମତେ ଜଗିବସିବାକୁ ହେବ ତ !

ସୁନା କହିଲା, କାହିଁକି ତୁ ମଠକୁ ଯାଇ ପାରିନୁ ଏବେ ମୁଁ ବୁଝିଲି । କାହାକୁ ଘର ଜଗାଇ ଯିବୁ ?

—ଯିବାକୁ ମୋ'ର କି ଗରଜ ପଡ଼ିଛି ? ଯେଉଁଥିପାଇଁ ଯାଇଥାନ୍ତି, ସେତକ ହୋଇ ସାରିଛି ।

—ଶିବବାବା ସର୍ବଜ୍ଞ ! ସେ ଜାଣିସାରିଲେଣି । ଯୋଗରେ ବସିଲେ ତାଙ୍କୁ ସବୁ ଦେଖାଯାଏ । ତତେ ସେ କେତେଥର ଖୋଜିଲେଣି । ତୁ ଗଲେ ସେ ଟେ।

ଭିତରେ ଯେଉଁ ଶିବଅଂଶୀ ଧୀରେ ଧୀରେ ମଣିଷ ଦେହ ଧରୁଛ, ତା'କୁ ଆଶୀର୍ବାଦ କରିବେ । ସେଇଠୁ ସେ ହେବ ଅଜର-ଅମର । ମୁଁ ତତେ ସଙ୍ଗରେ ନେଇ ଯିବାକୁ ଆଇଛୁ ।

ଝିଅ ବୁଝିଲା । ମିଛ କି ସତ ଜଣା ନାହିଁ । ସ୍ତ୍ରୀଈ ସ୍ୱଭାବ । ଅଳପ ଡେରି ହୋଇନ୍ଥ ବୋଲି, ଝିଅରଆ ଆଗରେ ସେ କଥା ଭୁଲେଇ କହି ଦେଇଥିଲା । ନିଜ ପାଗଳ ପଣର ବଡ଼େଇ ଦେଖାଇବାକୁ ସେ ଉମ୍ବରୁ ମହାରଣାଙ୍କ ପରି, କେଉଁଠି କ'ଣ ଗପିଛି । ନିର୍ଲଜ୍ଜା ଦେହଅାଁଟା । ତା' କୁହାଟ ଶିବବାବାଙ୍କ କାନକୁ ଏଇ ବଉଲ ନେଇଥିବ । ଅବା, ତାଙ୍କ ନାମରେ ସେ ମିଛରେ କହୁଥିବ । ଯେମିତି ସେ ଗପୁଥିଲା ଯେ ଝିଅରଆ ଆଉ ତା' ସାଙ୍ଗମାନଙ୍କୁ ମୋ ଭିତରର ସ୍ୱମଣ୍ଡା ଓ ସାଙ୍ଗ ମଠାଣଭୂତ ପିଟିଥିଲେ । ଅସଲ କଥା ଜଣା ପଡ଼ିଲାଣି । ସେମାନେ ଯନ୍ତ୍ରାଳ କରିବେ ବୋଲି କାହାଘରୁ ଛେଳି ଚୋରି କରିବାକୁ ଯାଇଥିଲେ । ଭଅଁରି ମା ପୁଣି କହୁଥିଲା, ଜନାଜାଣି । ଭେଦୁଆଙ୍କଠଉଁ ଖବର ପାଇ ଗାଁ ଲୋକେ ଗୋଗୋଛ-ବାଡ଼ିଆ କରିଥିଲେ ।

ଝିଅର ତୁନିତାନି ଭାବ ଓ କର୍କଶ ମୁହଁକୁ ଚାହିଁ ସୁନାଦେଈ ତରଳିଗଲା । ଭଲେଇ ହୋଇ କହିଲା, ବୁଝିଲି ବଉଲ, ଘର ଛାଡ଼ି ତୁ କେମିତି ଯିବୁ ? ଏଇଠି ବାବାଙ୍କୁ ନିହାର କରୁଥା । ମୁଁ ତାଙ୍କୁ ତୋ' ପାଇଁ ଜଣାଣ କରିବ । ସେ ଦୟାଳୁ ସବୁ ବୁଝିବେ । ତୁ ଦୁଃଖ କର ନା' । ହଉ ମୁଁ ଯାଉଛି ।

ସୁନାଦେଈ ଉଠିବାକୁ ଉଦ୍ୟତ ହେଉଣୁ ଝିଅ ଚମକି ଉଠି ତା'ର ହାତ-ଧରି ଅଟକାଇ ରଖିଲା । କହିଲା, ତୁ ରାଗିଲୁ କି ? ଆଉ ଟିକିଏ ବସ୍ । ଶୁଣ୍ ମୁଁ କହୁଛି ।

—କ'ଣ କହ ।

—ମନ ଦୁଃଖ କରିବୁ ନାହିଁ ।

— କହନୁ ?

—ମୁଁ ଖୁଣ୍ଟିଆ ଘର ବୋହୂଟି ? ଏ ଘରର ପିଲାଙ୍କୁ ଗର୍ଭିଣୀ ଗାଈ ବାଟ ଗୁଡୁଥିଲା । ଏ ଘରର ଝିଅବୋହୂଙ୍କ ଦେହରେ ସୂର୍ଯ୍ୟ କିରଣ ବାଜୁନ ଥିଲା । ଆଉ, ତୁ ଭାବିଲୁ ବଉଳ, ତୁ କାହା ଘରର ଝିଅ; କାହା ଘରର ବୋହୂ ? ଦେଖିଲୁ ଅରେ ତୋ' ନିଜ ଭେକକୁ ? ତୁ କହ, ଏମିତି ଭିଖାରୁଣୀ ବେଶରେ ଖୁଣ୍ଟିଆ ଘରର ବୋହୂଟି ମୁଁ, କେମିତି ପଦାକୁ ବାହାରିବ ? ପାଞ୍ଚ ଲୋକଙ୍କ ଆଗରେ କେମିତି ମୋ' ଗୋଡ଼ ଚଳିବ ? ତୁ କହ ଲୋ ବଉଳ, କେମିତି ଖାଲି ଏଇ ଗାଁ ନୁହେ, ଆଉ ପାଞ୍ଚଖଣ୍ଡ ଗାଆଁରୁ ଆସିଥିବା ମାଇପିଦଳ ଭିତରେ ମୁଁ ଠିଆ ହେବ ?

ଟଗର ଆଖି ଲୁହ ଛଳଛଳ ହେଲା ।

ସୁନା ମନ ଭିତରେ କୁରୁଳି ଉଠିଲା । ପୁଣି ପ୍ରମାଦ ଗଣିଲା । କି ସାନ୍ତ୍ୱନା ସେ ଦେବ ସ୍ଥିର କରି ପାରିଲା ନାହିଁ । କାହିଁକି ଶିବବାବା ଟଗରକୁ ବାରମ୍ବାର ମନେ ପକାଉଛନ୍ତି ତା'କୁ ଅଜଣା ନାହିଁ । କାହିଁକି ଟଗର ତାଙ୍କୁ କରଛଡ଼ା ଦେଇ ରହୁଛି ଟଗର ଅନୁମାନ କରିବଣି । ଯାହା ଘଟି ଯାଇଛି, ଭାଙ୍ଗ ଓ ମଦମିଶା ପ୍ରସାଦରେ ସେ ମତୱାଲି ହୋଇ ଯାହାକୁ ଅଲୌକିକ ମଣିଥିଲା, ସ୍ୱାଭାବିକ ଅବସ୍ଥା ଫେରିଲା ପରେ, ସେହି ଘଟଣାଟି ସତ ଓ ସପନ, ମଣିଷର କାମ ଓ ଦେବତାଙ୍କ କଲ୍ୟାଣ ମଝିରେ ଦୋହଲୁଥିଲା । ସେ ଏବେ ବୁଝି ସାରିଲାଣି ଯେ ସେ ସପନରେ ବହିରୁ ନ ଥିଲା । ଦେବତା ରୂପରେ ସେ ମଣିଷ ଦେହର ସୁଖ ପାଇଥିଲା, ଯେଉଁ ସୁଖ, ଯେଉଁ ଆନନ୍ଦ ଏ ସମାଜର କୁଳବୋହୂଙ୍କର ନରକର ଦୁଃଖ ଓ ଯାତନାଠାରୁ ଅଧିକ ଭୟଙ୍କର । ଅଧିକ କଷ୍ଟଦାୟକ ।

ତାଆର ଅଙ୍କୁର ସେ ପେଟରେ ଧରିଛି ? ସ୍ୱାମୀକୁ ପ୍ରତାରିତ କରି ଅନୁତାପର ନିଆଁରେ ସେ ଜଳୁଛି ? ଦେହର ଭୋକ-ମେଣ୍ଟାଣ ଅପେକ୍ଷା ଗେରସ୍ତର ସେବା-ଆଚରଣ ତା' ପକ୍ଷରେ ଅତି ବଡ଼ କର୍ତ୍ତବ୍ୟ । ସେଥିପାଇଁ ତା ପାଖରେ ସବୁ ପଦ୍ମତୋଳା ବ୍ୟର୍ଥ ହୋଇଛି, ଗାରଡ଼ି ଶକ୍ତି ହରିଯାଇଛି ।

ଟଗର କହିଲା, ମୁଁ ଜାଣେ, ତୁ ମୋ' ମନର ବେଦନା ଅଙ୍ଗେ ଭେଦାଉଛୁ । ତୁ ସ୍ୱାର ଜବାବ ଦେଇପାରୁ ନାହିଁ । ମୋ'ର ପେଟରେ କେତେ କଥା ଟକମକ୍ ହୋଇ ଫୁଟୁଛି । ସବୁ ଶୁଣିଲା କଥା । ବିଶ୍ୱାସ ହେଉ ନାହିଁ । କିନ୍ତୁ ଘରଆଡ଼କୁ ଅନାଇଁଲେ, ତାଙ୍କର ରୂପ ଆଉ ଢଙ୍ଗ ଦେଖିଲେ ପରତେ ଯିବାକୁ ମନ ମନା କରୁ ନାହିଁ । ପଗ୍ଭରିବ ? ଅବଗୁଣ ପାଇବୁ ନାହିଁ ?

ସୁନା ଦେଇ ତଟସ୍ଥ ହେଲା । କୁଣ୍ଠିତ କଣ୍ଠରେ କହିଲା, ପଗ୍ଭରୁନୁ, କାହିଁକି ଅବଗୁଣ ପାଇବ ? ଯାହା ପଗ୍ଭରିବାର ଜଲଦି ପଗ୍ଭର । ଗଦାଏ ବାଟ, ମଠକୁ ଯିବ । ବାବାଙ୍କୁ କହିବ ଯେ ତୁ ତୋ ଘରେ ଏକା ଅଛୁ । ଆଜିକାଲିକା କାଳବେଳ ଯେମିତି କେହି ଠାଉରିଆ ଲୋକ ତାଲି ଭାଙ୍ଗି ଘରେ ପଶିବେ । ସବୁ ବୋହି ନେବେ । କଳାକନା ବୁଲାଇ ଦେବେ । ସେଥିପାଇଁ ତୁ ଯାଇ ପାରୁନାହୁଁ ।

ଖୁସି ହୋଇ ଟଗର କହିଲା, କହିବୁ, ସବୁ ବୁଝାଇ କହିବୁ । ହେଇ ଦେଖ୍, ବାବାଙ୍କୁ ମୁଁ ଏଇଠି ମୁଣ୍ଡିଆ ମାରୁଛି । ଥରେ ନୁହେଁ, ସାତ ଥର ।

ଟଗର ତା'ର ଦରମଇଳା କସ୍ତାଶାଢ଼ିର ପଣତ ଟାଣି ବେକରେ ପକାଇଲା, ସୁନା ଆଗରେ ତା'ର ମୁଣ୍ଡକୁ ମସିଣା ଉପରେ ସାତ ଥର ଲଗାଇଲା । ମୁଣ୍ଡ ଟେକି ପୁଣି ପଲଥି ବସି କହିଲା, ମୋର ତୁ ସୁନା ବଉଳ ଟି । କହିବୁ, ମୁଁ ସାତ ଥର

ମୁଣ୍ଡିଆ ମାରି ନେହୁରା କରୁଛି, ଗୁହାରି କରି ଜଣାଣ କରୁଛି, ସେ ତାଙ୍କର ଭଗତ ଝିଅକୁ ଭଲ ବୁଦ୍ଧି ଦିଅନ୍ତୁ । ସେ ନଣ୍ଡାପାଣି ଗୁଡ଼ୁ । ସେ ବଞ୍ଚି ଥାଉ ଲୋ ବହିଲ, ସେ ବଞ୍ଚି ରହୁ । ଶିବବାବାଙ୍କର ମହିମାରୁ ମୋ' ପେଟରୁ ତା'ର ଯେଉଁ ଛୁଆଟିଏ ଜନମିବ, ମିଛ କି ସତ ସେହି ସବୁଙ୍କ ଠାକୁରେ ଜାଣନ୍ତି । ମିଛ ହୋଇଥିଲେ ବି ମୋ'ର ମନରେ ଦୁଃଖ ନାହିଁ । ମୋ'ର ପିଲା ଲୋଡ଼ା ନାହିଁ । ଝିଅର ଜୀବନ ବଞ୍ଚି ରହୁ, ସେତିକି ମୋ'ର ଲୋଡ଼ା । ଯଦି ସତ ହୋଇଥାଏ, ସେହି ଶିବଅଂଶୀ ପିଲାଟି, ପୁଅ ହେଲେ ତା' ନାଁ ଦେବା ଶିବଜଲା, ଝିଅ ହେଲେ ଦେବା ଶଙ୍କରୀ—

—ଆରେ, ସେଇ ଦୁଇଟି ନାମ ମନେ ମନେ ମୁଁ ବାଛିଛି ।

—ହଉ ହେଲା । ମୁଁ ତା ମାଉସୀ । ଏକୋଇଶା ଦିନ ମୁଁ ନିଜେ ଯାଇ ତା' ନାଁ ଦେବି ।

ସୁନାଦେଈ କହିଲା—ସେଇଆ ହେଲା । ମୋ'ର ଯାହା ହେବ, ତୋ'ର ଯଦି ସେଇଆ ହୁଏ ? ଦୁଇଟି ନାମ ମୋ ମନକୁ ଆସିଲାଣି । ଶଙ୍କର, ଶିବାଣୀ । କ'ଣ କହୁଥିଲୁ ପରା ? କହ ।

ଟଗ୍ରି କହିଲା, ହଁ, ମୋ ଗୁହାରି ବାବାଙ୍କୁ ଜଣାଉଁଛି—ସେ ପିଲା ପଛେ ମା-ଛେଉଣ୍ଡ ହେଉ, ବାପ-ଛେଉଣ୍ଡ ନ ହେଉ । ଝିଅ ଭଲ ବୁଦ୍ଧି କରୁ । ମୋ' ପାଖକୁ ଫେରିଆସୁ । ତା'ରି ଭଲ ଦେଖିବି । ତା'ରି ସେବା କରିବି । ମୁହଁକୁ ଚାହିଁ, ମନରେ ବାବାଙ୍କୁ ସୁମରିବି । ମହା ଆନନ୍ଦରେ ମୁଁ ବେଳ କଟାଇବି । ମୋର ଧନସମ୍ପତ୍ତି ଲୋଡ଼ା ନାହିଁ ।

ସୁନା କହିଲା, କହିବି, ସବୁ କହିବି । ଭଲ ବେଳ ଦେଖି ନିଶ୍ଚେ କହିବି । ଶିବ, ଆଉ କାଳିକାମାଈଙ୍କ ପାଖକୁ ଯିବାକୁ ଠାକୁରଅପା ମତେ ମନା କରୁଚନ୍ତି । ମୁଁ ମାନୁନାହିଁ । ତେବେ ଶିବବାବାଙ୍କର ପାଦ ଛୁଉଁ ନାହିଁ । ଖାଲି ଦର୍ଶନ କରି ଆସୁଛି । ତୋ'ର ସେହି ଅବସ୍ଥା ତ ! କିଏ ଜାଣେ ? କାୟା ଅଶୁଚି । ବାବା ଦିନେ ସେଇଆ ବୁଝାଇଲେ । ମତେ ଦୂରେଇ ରହିବାକୁ କହିଲେ । ଯାଉଛୁ ?

—ଆଉ ଟିକିଏ ରହି ବଉଲ ! କେତେ କଥା ମୁଁ ପଚାରିବି ପରା ! ମନକୁ ଘାଣ୍ଟୁଛି । କପଟ ନ କରି ମନଖୋଲି ସତ କହିବୁ । ତତେ ରାଣ ଅଛି । ସେ' ତତେ କେତେ ଜମି ବିକିଛନ୍ତି ? କବଲା ରେଜିଷ୍ଟରୀ ହେଲାଣି କି ନାହିଁ ? କେତେ ଟଙ୍କାକୁ ବିକିଛନ୍ତି ?

ସୁନା ଦେଈ ଥଙ୍ଗ ଅଙ୍ଗ ହେଲା । ଦାଣ୍ଡଘରକୁ ଚାହିଁଲା । କହିଲା, ଝିଅବାରୁ ଜମି ବିକିବେ ବୋଲି ନାରଣ ନବସିଂହାଙ୍କ ଖରଦା ପୁନଦେଈଙ୍କଠାରୁ ଶୁଣିଲି । ଗଦେଇ ଷଡ଼ଙ୍ଗୀ କିଣିବେ ବୋଲି କଥା ପଡ଼ିଥିଲା । ମାହାରଣାଙ୍କୁ ମୁଁ କହିଲି, ମୋ ନାମରେ କିଣ । ନାରଣ ପରିଡ଼ାଙ୍କୁ ସେ କହିଲେ । ହକ ଦାଣ୍ଡମୂଲ ଦେଇ ଜମି

ରେଜେଷ୍ଟ୍ରୀ ହେଲା । କେତେ ଟଙ୍କା ଦିଆନିଆ ହେଲା ମତେ ଜଣା ନାହିଁ । ସେ ତ ଘରମାସର ତଳର କଥା । କେତେ ଜମି ବିକଲେ, କେତେ ଟଙ୍କା ନେଲେ ତୁ ଝଣବାବୁଙ୍କୁ ପଚାରୁନୁ ?

ଟଗ୍ର କହିଲା, ପଚାରିବ ଲୋ, ନିଶ୍ଚେ ପଚାରିବ । ପାଞ୍ଚମାଣ ଜମି ସେ ବିକଲେଣି, କ ବନ୍ଧା ଦେଇ ଟଙ୍କା ଆଣିଲେଣି । ତାଙ୍କର ସାଙ୍ଗମାନଙ୍କ ଘରଣୀ-ମାନେ ସେ ସବୁ ଜମି ନେଇଛନ୍ତି ବୋଲି ମୁଁ ଖବର ପାଇଛି । ତୁ ତ ଜାଣିଥିବୁ ? ତତେ ଠାକୁରଙ୍କ ରାଣ, ତତେ ଶିବବାବାଙ୍କ ଦୁହାଇ, ମନରେ କପଟ ନ ରଖି ମୋ' ଆଗରେ କହ ।

ସୂନାଦେଇ ରାଗ ତମତମ ହେଲା । ତା'ର ଦି'ଆଖିରେ ନିଆଁ ଝଟକିଲା । ସେ ଫଁ ଫଁ ହୋଇ ନିଶ୍ୱାସ ଛାଡ଼ିଲା । ଉଠି ଠିଆ ହେଲା । କହିଲା, ଗୁରୁ ସେ ସାକ୍ଷାତ ଭଗବାନ । ଭକ୍ତର ସେ ଗତମୁକ୍ତି । ତାଙ୍କର ଦୁହାଇ ଦେଇ ତୁ ଗୁରୁଦ୍ରୋହ କରୁଛୁ । ଏହାଠାରୁ ବଳି ବଡ଼ ଅପରାଧ ନାହିଁ । ତୋ' ପାଖରେ ଆଉ ମୁହୂର୍ତ୍ତେ ରହିଲେ ପାପର ଭାଗୀ ମୁଁ ହେବି । ମୁଁ ଯାଉଛି ।

ସୁନା ଦେଇ ଯିବାକୁ ଉଦ୍ୟତ ହେଲା ।

ଟଗ୍ର ଗୋଟିଏ ଶାନ୍ତଶିଷ୍ଟ ନିର୍ବୋଧ ଝିଅ ବୋଲି ବାପଘର ଗାଆଁରେ ସମସ୍ତେ ଜାଣିଥିଲେ । ସାବତ ମାଆର ଅତ୍ୟାଚାର, ତା' ପାଟରେ ବାପର କରପତ୍ର-ଯୋଡ଼ା ଢଙ୍ଗ ତା'କୁ ମେଣ୍ଢାଛୁଆଠାରୁ ବଳି ଅଧିକ ଡରୁଆ, ଅଧିକ ନରମା କରିଥିଲା । ସେ ଆଶ୍ୱାସ ପାଉଥିଲା କେବଳ ତା'ର ଯୋଗଣୀ ଜେଜେମା'ଙ୍କ କୋଳରେ । କେତେ ମନଭୁଲା ଗପ ସେ କହୁଥିଲେ । କେଉଁ କାଳର କେତେ ଘଟଣା । ମଣିଷର ଭାଗ୍ୟ କେଉଁ ଶୁଭ ମୁହୂର୍ତ୍ତରେ ଓଲଟି ଯାଏ, ଏହା ସେ ବୁଝାଉଥିଲେ । ଅଶୁଭ କ୍ଷଣରେ ସେ ଭାଗ୍ୟ ପୁଣି ଲେଉଟି ଯାଏ ।

ଜେଜେମା ପିଠି ଆଉଁସୁଥିଲେ । ବୋକ ଦେଉଥିଲେ । ମନରେ ବିଶ୍ୱାସ ଜନ୍ମାଉଥିଲେ । ସୁଖ-ଦୁଃଖ କୁମ୍ଭାରଚକର ଦାଗ ପରି ବୁଲୁଥାଏ ଲୋ ଟଗ୍ର, କରି କରାଇବାକୁ ସେହି ଏକା ଜଣେ । ସେହି ବଡ଼ଠାକୁର କାଳିଆ । ତା'ର ବଡ଼ ବଡ଼ ଗୋଲଆ ଆଖିଦିଟା ସବୁବେଳେ ସମସ୍ତଙ୍କୁ ଅନେଇଁଛି । ସେ ସବୁ ଦେଖେ, ସବୁ ଜାଣେ । କିଛି କହେ ନାହିଁ । ହେଲେ, ସେ ସବୁ କରାଏ । ନିଜେ କିଛି କରେ ନାହିଁ । ସେଇ ଏକା ସତ ଆଉ ସବୁ ମିଛ । ସେଇ ତୋ' ଠାକୁର । ସେଇ ତୋ' ଗୁରୁ, ହର୍ତ୍ତା, କର୍ତ୍ତା, ବିଧାତା । ଆଉ ସବୁ ମିଛ । ମନକୁ ଭଣ୍ଡାଇବାକୁ ସେମାନେ ।

ଆଲୋ ଟଗ୍ର, କର୍ମକଷଟ ଦେହ ସହେ । କେମିତି ଜାଣୁ ? ଅରଣ୍ୟେ ଅଜଗର ପ୍ରାଏ । ସହିବାକୁ ହେବ ଲୋ ମା ! ତା'ଠେଇଁ ଲୟ ରଖ । ଆମ ଦେହ ତ ଆମର ନୁହେଁ, ଆମ ମନ ବି ଆମର ନୁହେଁ । ଆମ ସୁଖ, ଆମ କଷ୍ଟ

ଆମର ନୁହଁ । ସବୁ ତା'ର । ସବୁ ସେ ଭାବୁଛି, କରୁଛି । ସେ ଭୋଗୁଛି । ଆମର କ ଥାଏ ? ତା' କଥା ସିଏ ବୁଝୁ । ତା'ଠି ବିଶ୍ୱାସ ରଖ । ସେ ସବୁଠି ଅଛି । ଯେଉଁଠି ତାକୁ ଲୁହାଇବୁ, ସେ ଦେଖିବ । ଜାଣିବ । କ'ଣ କହିବୁ, କ'ଣ କରିବୁ ସେ ବତେଇ ଦେବ । ଭଲ ମନ୍ଦ ସବୁ । —

ଟଙ୍କ ତଳେ ମୁଣ୍ଡ ଲଗାଇ ଓଲଗି ହେଲା । ମୁଣ୍ଡ ଟେକି ଚାହିଁଲା । ସୁନା ଦେଇ ଦାଣ୍ଡ ଘରେ ହେଉଣ୍ଟ ଚୁଲି ଚାହିଁଲା । ସେ ଅଟକିଲା । ଟଙ୍କ ଉଠି ତା' ପାଖକୁ ଗଲାରୁ ସେ କହିଲା, ଆଲୋ ହେ, ତୁ ମନରେ ଗରବ ଆଣି ଶିବବାବା ଯେ ସ୍ୱୟଂ ଶଙ୍କର-ମହାଦେବ ତାଙ୍କଠାରେ ଅପ୍ରାଧ କଲୁ । ଏଇଠି ଓଲଗି ହେଲେ ସେ ତତେ କ୍ଷମା କରିବେ ନାହିଁ । ଯା'ଲୋ, ତାଙ୍କର ଶରଣ ପଶିବୁ, ଦୋଷ ମାଗିନେବୁ ।

ଆଗେଇ ଯିବାକୁ ବସିଲାରୁ, ଟଙ୍କ ତା'ର ହାତକଚଟି ଧରିଲା । କହିଲା, ଶୁଣି ବଉଳ !

ସୁନା ଦେଈ ହାତ ଛୁଆଡ଼ିଲା । ହାତ ଖସାଇ ନେଲା । ମନରେ ଘୃଣା ପ୍ରକାଶ କରିବାକୁ ନାକ ଫଣଫଣ କଲା । ଆଖିରେ ତାଚ୍ଛଲ୍ୟ ଭରି ମୁହଁ ଛୁଆଡ଼ି କହିଲା, ଆଜି ସେ ବଉଳ ପଦ କାହିଁକି ? ପେଟରେ ଗୁଡ଼ାଏ ବିଷ ଭରି, ଠାକୁରଙ୍କ ଅବତାର ଗୁରୁଙ୍କୁ ଅବଜ୍ଞା କଲୁ । ମୁଁ ତ ଖୋଲା ମଣିଷଟା, ମତେ ସନ୍ଦେହ କଲୁ । ସେ ବଉଳ ଡାକର ମୂଲ୍ୟ ନାହିଁ । ଆଜିଠାରୁ ସେ ପଦ ଯାଉ ।

ଟଙ୍କର ଧୈର୍ଯ୍ୟ ତୁଟିଲା । ତାର ସହିଣିପଣ ଟଳିଲା । କ୍ରୋଧର ନିଆଁର ଧାସ ମୁଣ୍ଡକୁ ଉଠିଲା । ସେ ତା'ର ଦୁଇଟି ବଳିଷ୍ଠ ମୁଠାରେ ସୁନା ଦେଈର ଦୁଇହାତର କଚଟି ଧରି ହଲାଇ ଦେଲା । କହିଲା, ଯେଉଁ ମତଲବରେ ତୁ ଘରର ବଢ଼ଉଣୀଟା, ଗୋଟାଏ ଦରବୁଢ଼ା, ମଢ଼ିଆ, ଅଣପୁରୁଷାର ପୋଇଲି, ନାଁକୁ ବୃହସ୍ପତି ପକ୍ଷର ଭାରିଯା । ମତେ ବଉଳ ଡାକଥିଲୁ, ମୁଁ ଜାଣିପାରୁଛି । ଯାଉ ସେ ପଦଟା । ମୁଁ ଖୁଣ୍ଟିଆ ଘରର ଘରଣୀ । ଆଲୋ ସୁନା, ତୋ' ମା'ଆଲ୍ଲାଣୀ ! ପଚାରିବୁ ତୋ' ଗେରସ୍ତକୁ । ତାଙ୍କର ସାତ ପୁରୁଷ, ଏ ଘରର ମୂଲିଆ ଥିଲେ । ହାତ ଯୋଡ଼ି ଏ ଘରର ପିଣ୍ଡା ତଳେ, ଦଶ ହାତ ଦୂରରେ ଠିଆ ହେଉଥିଲେ । —

ସୁନାର ମୁହଁରୁ ଝାଳ ନିଗିଡ଼ି ପଡ଼ିଲା । ତା' ତୁଣ୍ଡରୁ କଥା ବାହାରିଲା ନାହିଁ । ସେ ଛେପ ଢୋକିବାକୁ ଲାଗିଲା । ସେ ବୁଝି ପାରିଥିଲା, ଯାହାର ବଳୁଆ ହାତ ଦୁଇଟା ତା'କୁ ବାନ୍ଧି ରଖିଛି, ତା' ବିରୁଦ୍ଧରେ ବଳ ଦେଖାଇବା କରିବାକୁ ଚେଷ୍ଟା ବୃଥା ଆୟାସ । ସେ ନୀରବ ରହିଲା । ଟଙ୍କର ଛୁଟୁଳା ବାକ୍ୟବାଣ ସେ ନୀରବରେ ସହିଲା । ତଳକୁ ଚାହିଁଲା ।

ଟଙ୍କ କହିଲା, କିବା କଥାକୁ ତୁ ମତେ ଏଡ଼େ ଅପମାନ ଦେଲୁ । ହଇଲୋ ଛତରୀ ! ତୁ ଜାଣୁ, ତୋ ଦେହଟାରେ ପାପ ନେସି ହୋଇଛି । ତୋ' ମନରେ

କୂଟକପଟ ଟେକମକ ହୋଇ ଫୁଟୁଛୁ । ମୋ ମନରେ ପାପ ନାହିଁ ଲୋ, ଗଣଗଣିଆ ମାଛି ପରି ସେଇଟା ଉଡ଼ିଯାଇ ତୋ' ମନରେ ପଶିବ । ମୋ ଦେହରେ ଯଦି ପାପର କାଦୁଅ ଲାଗିଥାଏ, ସେତକ ତୁ ଲଗାଇଛୁ । ମତେ ଗଞ୍ଜେଇବଟା-ମିଶା ପ୍ରସାଦ ତୁ ଖୁଆଇଲୁ । ମତେ ମଦଗୋଳା ପଣା ତୁ ପିଆଇଲୁ । ମତୱାଲି ହୋଇଥିଲି । ବାବାଜୀ ବେଶରେ ସେହି ସଇତାନ୍ ଶିବବାବାଙ୍କୁ ମୋତେ ଭୋଗ କରାଇଲୁ । ମୋର ଦୋଷ ନାହିଁ । ମନରେ ପାପ ନାହିଁ । ସବୁ ପାପର ଭାଗୀ ତୁ, ଆଉ ସେଇ ବାବାଜୀଟା ! ମତେ ଦେଖିଲା ଦିନୁ ସେ ମୋ ଦେହକୁ ଲୋଭ କରିଥିଲା । ଦୂତକା କରି ତତେ ମୋ ପାଖକୁ ପେଶିଲା । —

ସୁନା ଥରଥର କଣ୍ଠରେ କହିଲା, ନାହିଁ ଲୋ ବଉଳ ।

ଟଗର ସୁନାଦେଈର ଝାଳୁଆ ଓଦାଳିଆ ମୁହଁକୁ କଟମଟ କରି ଚାହିଁ ଗର୍ଜିଉଠିଲା । ପୁଣି ତୋ ଗ୍ଲେଟ ମୁହଁରେ ଫଗୁ ଖୁଣ୍ଟିଆଙ୍କ ବୋହୂକୁ ଡାକୁଛୁ 'ବଉଳ' ! ବଣି ଯାଉଛି ସେହି ବାଘର ମୁହଁ, ସେ ମୁହଁର ନାଁ ଶୁଣିଲେ ହାଲକ । ବହୁଥିଲେ ତତେ ଠିଆ ଚିରି ଦେଇଥାନ୍ତେ । ଡାକ ସାଁତାଣୀ !

—ସା—ଆଁ—ତା—ଣୀ ।

— ସେଇଆ । ତାଙ୍କର ଏକୋଇର ବଳାକୁ ତୁ ନଆଁ ଲଗା ଭେଳକି ଲଗାଇ ପାଲରେ ପକାଇଲୁ । ମୋ ଶାଶୁ ଶଶୁର ସେପୁରକୁ ଗଲାରୁ ମୋ ଭିତରେ ଗ୍ରମୁଣ୍ଡା ଘର କରି ରହିଛି ବୋଲି ପ୍ରଚାର କରାଇଲୁ । ମୋ ଗେରସ୍ତକୁ ଡରାଇଲୁ । ଶିବବାବାଙ୍କ ତୁଣ୍ଡରେ ସେ ଅପବାଦ ଦିଆଇଲୁ । ମୋ ଗେରସ୍ତ ମଦୁଆ, ଗଞ୍ଜେଇଆକୁ ମତେଇଲୁ ।

—ନାହିଁ, ନାହିଁ । ମୋର ଦୋଷ ନଥିଲା ।

—ଆଉ କାହାର ଦୋଷ ଦେବ ? ମୋ ବାପ ଘରେ କେହି କେବେ ଏପରି ଦୋଷ ଦେଇ ନ ଥିଲେ । ମୋ ଶାଶୁ ଶଶୁର ବଞ୍ଚିଥିଲାଯାଏ ସେମାନେ କେବେ ଏପରି ଭାବି ନ ଥିଲେ । କାହିଁକି ମୋର ଗର୍ଭର ସନ୍ତାନ ପେଟରେ ନଷ୍ଟ ହେଲେ, ସେମାନେ ଭଲ କରି ଜାଣିଥିଲେ । ତାଙ୍କର ନିଶାଖୋର ପୁଅଟା ସେଥିପାଇଁ ଦାୟୀ । ଏହା ସେମାନେ ବୁଝିଥିଲେ । ମୁଁ ତ ଜାଣିଥିଲି । ଏକା ଏହି ଗାଆଁରେ ନୁହେଁ, କେତେ ଗାଆଁରେ କେତେ ଲୋକ ବସନ୍ତରେ, ହଇଜାରେ ମଲେ । ସମସ୍ତଙ୍କୁ କ'ଣ ମୋ ଭିତରର ଗ୍ରମଣ୍ଡା ଖାଇଦେଲା, କହି ଲୋ ? ନା, ସେମାନଙ୍କ ଘରର ବୋହୂ ଭୂଆସୁଣୀଙ୍କ ପେଟ ଭିତରେ ଗ୍ରମଣ୍ଡାଗୁଡ଼ାଏ ଥିଲେ ? ଦେ ସ୍ପାର ଜବାବ ।

ପାଟି ଖନ ବାଜି ଯାଉଥାଏ । ସୁନା ଦେଇ ଜବାବ ଦେଲା, ତମେ ନିଜେ ତ ତମ ଭିତରର ଗ୍ରମଣ୍ଡାକୁ କେତେ ଥର ଦେଖିଛ ! ମୋ ଆଗରେ କହିଛ ।

ଟଗ୍ରୀ ହସିଲା । କହିଲା, ଦେଖିଛୁ । ମୁଁ ତମମାନଙ୍କ ଅପବାଦଆ ପ୍ରଶ୍ନରକୁ ସତ ମଣିଥିଲି । ବିଶ୍ୱାସ କରିଥିଲି । ମୋ ବିଶ୍ୱାସ ମୋ ମନରେ ସେହି ଧାରଣା ଜନ୍ମାଇ ଥିଲା । ସେହି ଧାରଣା ମୋ ଠାରେ ନାହିଁ-ନ-ଥିଲା ଭୟ ଜନ୍ମାଇଥିଲା । ମୋ ଗେରସ୍ତଙ୍କ ମନରେ ମୋ'ଠାରୁ ଅଧିକ ଭୟ ! ମୋର ଭୟ ମତେ ଘୁମଣ୍ଡାଙ୍କର କେତେ ଭୟଙ୍କର ରୂପ ନ ଦେଖାଇଛି ! ସବୁ ମିଛ । ସବୁ ମୋ ଶୁଣିଥିବା କେତେ କେତେ ଭୟଙ୍କାରିଆ ଘଟଣାର ଗ୍ଲାଇ । ମୋ ମନ ମୋତେ ଏବେ ବୁଝାଇଦେଲାଣି । ସେଗୁଡ଼ାକ ଖାଲି ମନର ଭ୍ରମ ! ହଇ ଲେ, ପଚାରିବି, ଠିକଣା ଜବାବ ଦେଇ ପାରିବୁ ?

—କ'ଣ ?

—ତରୁଛୁ କାହିଁକି ? ମୋର ଆଉ ଏ କୁଟୁମ୍ବର ତୁ ସର୍ବନାଶ କରିସାରିଛୁ । ଆଉ ଅଧିକା କ'ଣ କରିପାରିବୁ ? ଯେଉଁ ରାତିରେ ତୁ ମତେ କୁଲଟା କରାଇଲୁ, ମୋ ଭିତରୁ ତ ଘୁମଣ୍ଡା ଗଲା, ସେ ମୋ ଗେରସ୍ତଙ୍କୁ ଆଉ ମହାରଣାଙ୍କୁ ପଠାଣଭୂତ ଲଗାଇ ପିଟାଇଲା କେମିତି ? ମା ଘୁମଣ୍ଡାର ସେ ଭୂତ ସଙ୍ଗେ କ'ଣ ଆଗରୁ ଭାବନାବ ଥିଲା ?

—ମତେ ଜଣା ନାହିଁ !

—ବାବାଜୀ କେମିତି ଜାଣିଲେ ?

—ଯୋଗ ବଳରେ ସେ ସବୁ ଜାଣନ୍ତି ।

—ଯୋଗ ବଳରେ ସେ କେମିତି ଜାଣି ନ ପାରିଲେ ଯେ ଘୁମଣ୍ଡା ରୂପ ଧରି, ପଠାଣ ଭୂତ ରୂପ ଧରି ଏଇ ଗାଆଁର ଦୁଇ ଜଣ ଲୋକ ସେମାନଙ୍କୁ ଅନ୍ଧାରରେ ବାଡ଼େଇଥିଲେ । ତାଙ୍କ ପଛରେ ଆହୁରି ଦଳେ ଲୋକ ଠେଙ୍ଗା ବାଡ଼ି ଧରି ଲୁଚି ରହିଥିଲେ । ବାବାଜୀଙ୍କର ଉଗନ୍ତଦଳଆଙ୍କୁ ପିଟି ଦଣ୍ଡା ବନାଇଥାନ୍ତେ । ସୁବିଧା ପାଇ ଛେକା ଭ୍ରେର କରିପାରିଲେ ନାହିଁ । ପୋଖରୀରୁ ମାଛ ଧରି ପାରିଲେ ନାହିଁ । ଯିଏ ଯୁଆଡ଼େ ପ୍ରାଣ ବିକଳରେ ପଳାଇଲେ । ନଈରେ ଟଳ ଟଳ ଏଇ ଦୁଇ ଜଣ ହାବୁଡ଼େ ପଡ଼ି ଛେଚା ଖାଇଲେ । ନିସ୍ତାର କରିବା ନ ହେଲା ।

ସୁନାଦେଇ କେମିତି ଟଗ୍ରୀର ହାବୁଡ଼ରୁ ନିସ୍ତାର ପାଇ ପଳାଇବ, ସେଥିପାଇଁ ଛଟପଟ ହେଉଥିଲା । ସେ ସପନରେ ବି କେବେ ଭାବି ନ ଥିଲା ଯେ, ଯାହାକୁ ସେ ଗଜ ମୂର୍ଖ, ସହଜ-ସରଳ ବିଶ୍ୱାସୀ, ନରମ ମାଟିମେଣ୍ଢା, ହୁଣ୍ଡି-ହାଉଡ଼ୀ ବୋଲି ଜାଣିଥିଲା, ତା' ଭିତରେ ଏତେ ତେଜ ଭରିରହିଛି । ନ ରାଗିଲା ଲୋକେ ରାଗିଲେ ପ୍ରଳୟ କରନ୍ତି । କି ଉତ୍ତର ସେ ଦେବ ଭାବି ସ୍ଥିର କରିପାରିଲା ନାହିଁ ।

ଟଗ୍ରୀ ପୁଣି ପଚାରିଲା, ତୁମ ରହିଲୁ ଯେ ?

ସୁନା ଦେଈ କହିଲା, ଏସବୁ ଡ଼ାହା ମିଛ ଗପ । କେଉଁ ଅଧର୍ମୀ, ହିଂସୁକ, ଅଲେଇସାମାନେ ବାବାଙ୍କର ବଦ୍‌ନାମ କରିବାକୁ ତମ ଆଗରେ ଗପିଛନ୍ତି ।

ଟେଶି ହସିଲା । କହିଲା, ତୁ ଭଲ କରି ଜାଣୁ, ମତେ ବି ଜଣାଇ ଦେଇଛୁ ଶିବବାବା କ'ଣ । ଖାଲି ତାଙ୍କର କୃପା, ତାଙ୍କ ଚେଲାମାନଙ୍କର ବଳୁଆ ସୁନ୍ଦର ଦେହକୁ ତୁ ଭଲ ପାଇଛୁ ନା ବୁଢ଼ା ମହାରଣାର ଟୋକା ଖରସା । ମତେ ବି ଥରେ ଓଟାରି ନେଇଛୁ । କାହିଁକି ? ଏ ପ୍ରଶ୍ନର ଜବାବ ଆଜଯାଏ ମୋ ମନ ମତେ ଦେଇ ନ ଥିଲା । ମୁଁ ଅନ୍ଧାରରେ ଅଣ୍ଡାଳି ହେଉଥିଲି । ଯେଉଁମାନେ ମାଡ଼ ଖାଇଲେ, ସେମାନଙ୍କ ମହୁଆ ଆଳାପରୁ ମୁଁ ସବୁ ବୁଝିଲି ।

—ପିଲାଟା ମତେ ତେଣେ ଖୋଜି କାନ୍ଦୁଥିବ ।

—ତୋ' ଠୁଣ୍ଟିଅପା ଅଛନ୍ତି । ଯିବୁ ତ ଶୁଣି ଯା । ଚନ୍ଦ୍ରରେ କଳଙ୍କ ଲେପିବାକୁ, କି ତୋ'ର ସଉତୁଣୀ ହେବାକୁ ତୁ ମତେ ଭୁଲାଇ ନେଇ ନ ଥିଲୁ । ଯେଉଁ ଶିବବାବାଙ୍କ ଦୟାରୁ ତୁ ପୁଅ ପାଇଛୁ, ଗେରସ୍ତର ଦୁର୍ନାମକୁ ତଡ଼ି ତା'କୁ ତୋ' ପାଦର କଙ୍କର କରିଛୁ, ଝୁଣ୍ଟିଆ ଘରର ପୁଅ ଝରିବାବୁକୁ ଆପଣାର କରିଛୁ, ତାକୁ ମଦ ଗଞ୍ଜେଇ ଖୋଇ ଜମିବାଡ଼ି ଲେଖାଇ ନେଇଛୁ, ସେଇ ବାବାଜୀ ଠକର ଇଚ୍ଛା ପୂର୍ଣ୍ଣ କରିବାକୁ……

ଟେଶି ଆଉ କହିପାରିଲା ନାହିଁ । ସେ ଦୁଇ ହାତ ମୁହଁରେ ଘୋଡ଼ାଇ କଇଁ କଇଁ ହୋଇ କାନ୍ଦିଉଠିଲା । ଶକେଇ, ଶକେଇ କାନ୍ଦିଲା ।

କାକୁଷ୍ଠ ହୋଇ ସୁନାଦେଈ ଶୁଣି ରହିଥିଲା । ତୁଣ୍ଡରୁ କଥା ବାହାରୁ ନ ଥିଲା । ଉଠି ପଳାଇଯିବାକୁ ମନ ଡ଼ାକୁଥିଲା, କିନ୍ତୁ କେଉଁ ଅଜଣା ଭୟରେ ତା'ର ଦେହ ଥରୁଥିଲା । ପାଦ ଚଳୁ ନ ଥିଲା ।

ଟେଶି ପ୍ରକୃତିସ୍ଥ ହେଲା । ଆଖିରୁ ଲୁହ ପୋଛି ପୁଣି କହିବାକୁ ଲାଗିଲା, ତୁ ଶାଗ ମାଛ ମୂଲରେ ଝୁଣ୍ଟିଆଘର ଜମି ନେଇଛୁ । ବାସନ କୁସନ, ଗହଣାଗାଣ୍ଠି ବି ନେଇଛୁ । ତା' ବଦଳରେ ତୁ କ'ଣ ଦେଇଛୁ, ଅବା ନ ଦେଇଛୁ ତତେ ଜଣା……

ସୁନା ଦେଈ କହିଲା, ତମ ଘରେ ମୁଁ ବସିଛି । କେଜାଣି କାହାଠାରୁ କ'ଣ ଶୁଣି ତମେ ଏତେ ନିର୍ଦ୍ଦୟ ହୋଇ ମତେ ଗଞ୍ଜଣା ଦେଉଛ । ମୋର କପାଳର କଥା । କାହା ଆଗରେ ଗୁହାରି କରିବି ? ଆକାଶରୁ ତୋଳି, ମନରୁ ଗଢ଼ି ଏସବୁ ଆଉ କହନା । ଝରିବାବୁଙ୍କ ଉପରେ ତମ ମନର କ୍ରୋଧ ମେଣ୍ଟାଇବାକୁ, ନିର୍ଦ୍ଦୋଷ ମାଇପିଟି ମୁଁ, ମାରିବାକୁ ଯଦି ମନ ହେଉଛି, ତମେ ମନଇଚ୍ଛା ମତେ ମାର । ମୁଁ ପିଠି ଦେଖାଇ ଦେବି । ଏମିତି ନିଆଁ ଜଳା କଥାରେ ମୋ ଆତ୍ମାକୁ ଛଟପଟ କର ନାହିଁ । ମତେ ବିଦାୟ ଦିଅ । ଏତିକି ମୋର ଶେଷ ଅନୁରୋଧ ।

ଟଗ୍ରି କହିଲା, ହେଲା । ଯାହା ତୁ ତାଙ୍କଠାରୁ ନେଇ ଯାଇଛୁ, ଜମିବାଡ଼ି, ବାସନ, ଗହଣା, ଧନ, ସବୁ ତାଙ୍କର । ମୁଁ ସେଥିରୁ କାଣିଚାଏ ଫେରସ୍ତ ମାଗୁ ନାହିଁ । ମୋର ଆଉ ଗୋଟିଏ ମାଗୁଣି ତୋ' ପାଖରେ ଅଛି । ସେ ଦରବଟି ମୋର । ସେଥିରେ ସଂସାରରେ ଆଉ କାହାର ଅଧିକାର ନାହିଁ । ମୋତେ ଫେରାଇ ଦେବୁ ?

ସୁନା ଦେଈ ପଚାରିଲା, କି ଦରବ ସେଇଟି ?

ଟଗ୍ରି କହିଲା, ସେଇଟି ମୋର ଗେରସ୍ତ ! ମତେ ବଇଲା ଡାକି ତାଙ୍କୁ ତୁ ତୋର ଅଣ୍ଟା ମଣିଷ କଲୁ । ତମ ଭିତରେ ଯେଉଁ ଲୁଚାଛପା ଖେଳ ଚାଲିଥିଲା, ତାକୁ ଅଣ୍ଟା ଭାମସାର ରୂପ ଦେଲୁ ।

ଥରିଲା ସ୍ୱରରେ ସୁନା ପ୍ରତିବାଦ କଲା, ମିଛ କଥା—

ଟଗ୍ରି କହିଲା, ମିଛ କି ସତ ଠାକୁରେ ଜାଣନ୍ତି । ତୋ ମନ ଜାଣେ । ମତେ ଜଣା ନାହିଁ । ଯେଉଁମାନେ ତମର ଢଙ୍ଗଢାଙ୍ଗ ଦେଖିଛନ୍ତି ଲୋ ସିଆଣୀଆ, ତମ ଅଣ୍ଟା ତମସା କଥାବାର୍ତ୍ତା ଶୁଣିଛନ୍ତି, ସେମାନେ କହୁଛନ୍ତି । ମାହାରଣା ନ ଥିଲାବେଳେ, ଥିଲାବେଳେ ବି, ସ୍ୱାଙ୍କୁ ମଦ ଖୋଇଛୁ । ଅଫିମ ରସରେ ଜଗି ହୋଇଥିବା ଗଞ୍ଜେଇ ଚିଲମ ଧରାଇ ଦେଇଛୁ । ସ୍ୱା'ଙ୍କୁ କୋଳରେ ପୂରାଇ ରାତି କଟାଇଛୁ । ମାନିବୁ ନାହିଁ ?

ସୁନା ଆଖିରୁ ଲୁହ ପୋଛିଲା । ମନକୁ ମନ କହି ହେଲା, ଭଲ କରିବାକୁ ଯାଇ ମନ୍ଦ ହେଲା, ହେ ଶିବବାବା ! ମଦ ଖାଇ ବାନ୍ତିଉଛୁଳ ହୁଅନ୍ତି । ମହାରଣାଙ୍କୁ ଖୋଜିବାକୁ ଯାଇ ତାଙ୍କ ଘର ଆଗରେ କଚ୍ଚୁଡ଼ିହୋଇ ପଡ଼ନ୍ତି । ମୋ ବଇଲାର ବର ବୋଲି ମୋ ପ୍ରାଣ କଲବଲ ହୁଏ । ମୁଁ ତାଙ୍କୁ ଘରକୁ ନେଇ ସଫାସୁତୁରା କରେଁ । କ୍ଷୀର ଖୋଇ ଶୁଆଇ ପକାଇବାକୁ ଚେଷ୍ଟା କରେଁ । ପାଖେ ପାଖେ ଜଗି ବସିଥାଏ । ସେ ଉହୁଙ୍କି ଉଠିଲେ ତାଙ୍କୁ ଧରି ପୁଣି ଶୁଆଏ । ବାଧା, ଗୋଇଠା ବି ସହେ ।

ଟଗ୍ରି ବଡ ପାଟିକରି ହସିଉଠିଲା । ଅଧା ବାଇଆଣିପରି ମୁଣ୍ଡର କେଶ ଓଟାରିଲା । ଦୋହଲାର କୋହ ଥମିବାରୁ ସେ କଟମଟ କରି କାଳୁଛ ସୁନାର ମୁହଁକୁ ଚାହିଁଲା ।

ସୁନାର ମୁହଁ କଳାକାଠ ପଡ଼ିଲାଣି । ସେ ଥରିଲା ପାଦରେ ଉଠି ଠିଆ ହେଲାଣି । ଚାଲିଯିବାକୁ ପାଦ ଟେକିଲାଣି । ହେଇଟି, ସେ ଆଗକୁ ପାଦ ପକାଇଲା ।

ଟଗ୍ରି ଚହିଙ୍କି, ଉହୁଙ୍କି ତାର ଓଢ଼ଣା କାନି ଧରି ଝିଙ୍କିଲା । ସୁନା ଡରିଛି ଚେରଛି ଚାହିଁ ଅଟକିଲା । କାକୁଛ ମିନତି କଲା,ତମେ ଆଜ ବାଇଆଣୀପରି ହେଉଛ । ମତେ ଛାଡ଼ିଦିଅ । ମୁଁ ପୁଣି କାଲି ଆସିବି । ଯାହା ପଚାରିଥିବ, କହିବି । ଛାଡ଼—

ଟଗ୍ରି କହିଲା, ମୁଁ ଜାଣେ, ତୁ ଆସିବୁ ନାହିଁ । ଯେବେ ଆସିବୁ, କେଜାଣି ମତେ ଦେଖିବୁ କି ନାହିଁ । ଯାହା ମୁଁ ଶୁଣିଥିଲି, ସବୁ ତୁ ମାନିଛୁ । ଆଲୋ ବଡ଼ଉଣି,

ଆଲେ ମୋ ଅଜଣାଜଣା ସଉତୁଣି, ଆଲେ ଜ୍ଞାନଦେଇ ମାଲୁଣି, ସିଂହ ଛୁଆକୁ ମଦ ଗଞ୍ଜେଇ ଖୋଇଲୁ । ଭଅଁର ବାଉଶ ସବୁ ଜାଣିଛୁ । ତୋ ଠୁଣ୍ଟଅପା ଡମରୁ ତାମସା ସବୁ ଦେଖିଛୁ । ହମୀସ୍ଥା ଅଖଳା ବୁଢ଼ୀଟି ! ଗୁପତରେ ତା ସାଙ୍ଗସଉସାଙ୍କ ଆଗରେ ସବୁ ଗପିଛୁ । ସମସ୍ତେ ଜାଣିଲେଣି । କ'ଣ ଲୁଚେଇ ପାରବୁ ? ଠାକୁରଙ୍କର ସବୁଠି ଆଖି । ପାପ ସାତତାଳ ପଙ୍କ ଫୁଟି ଯେବେହେଲେ ପଦାକୁ ବାହାରବ । ଗୋଟିଏ ଫଣାରୁ ଆଉ ଛଅ ଫଣା ବାହାରିଥିବ । ଜିଭ ଲହ ଲହ କରୁଥିବ । ଦଂଶିବ, ଦଂଶିବ ଲେ, ହସ୍ତେ ଦଂଶିବ ।

ଟେଭି ସୁନାର କାନ ଗୁଡ଼ନ୍ତା । ଉଠିଲା । ବାଇଆଣୀ ପରି ଟଳିଟଳିକା ଅଗଣାକୁ ଓହ୍ଲାଇଲା । ମେଘଭସା ଆକାଶ ଉପରକୁ ଚତୁର୍ଦ୍ଦଶୀ ଜହ୍ନ ଧିରେ ଧିରେ ଉଠିଆସିଲାଣି । ଅଗଣାରେ ଆଲୁଅ ଛାଇର ଖେଳ । ଟେଭି ବୃନ୍ଦାବତୀଙ୍କ ଚଉରା ଆଗରେ ମୁଣ୍ଡରେ ହାତ ଦେଇ ବସିଲା । ଭୂମିଲା ମୁଣ୍ଡକୁ ଦୁଇ ଆଣ୍ଠୁରେ ଆପିଲା । ଜ୍ଞାନ ଖାଁ-ଖାଁ ହେଉଥାଏ ।

ନଈ ଓ ନାଳ ଘାଟର କେତେ ମାଇପିଙ୍କର ଖିଲଖିଲ ହସ, ଉପଲକ୍ଷ ଦିଆ ଛୁଗୁଲି କଥା କାନରେ ବାଜ ଯାଉଥାଏ । ସେଥିରେ ଶିବବାବାଙ୍କ ଭଗତମାନଙ୍କ କରାମତିର କାହାଣୀ ଅଧିକ ଥାଏ ।

ଡମ୍ବରୁ ମାହାରଣା ଚନ୍ଦ୍ରସେଣା ହେଲେ ଝରଖୁଣ୍ଟିଆ ତା ଗୋଡ଼ାଣିଆ ପେଷା ବଳଦ ହୁଏ । ସୁନା ରାଧିକା ହେଲେ, ବଳଦଟା ତା ପଛରେ ଗୋଡ଼ାଏ । ଟେଭି ତା ଗୁହାଳ ଜଗି ପଡ଼ିଥାଏ । ଷଣ୍ଢ ତ ଜଣେ । ସେ ମହାଦେବଙ୍କ ବାହାନ ! କଳିଯୁଗରେ ଷଣ୍ଢ ଓ ବଳଦ ମଣିଷ ରୂପରେ ଆତଯାତ ।

ପୁଣି କେବେ ଉପଦେଶଦିଆ ଆଳାପ ଚାଲେ, ଭରି ଜଣେ ସେ କୁଆଡ଼ର ଛତରଖାଇଟା ! କଅଁଳ ଲୁହା ଦେଖି ହାଉଲେ ହାଉଲେ କାମୁଡ଼ି ଖାଉଛି । ମଲାମର, ବଉଳ ବଉଳ ହେଉଛି । ଏଣେ ତା ବରକୁ ମଦ ଗଞ୍ଜେଇ ଖୋଇ କାବୁ କରଛି । ପୀରତି ବଜ ସବୁ କିଣିନେଲାଣି । ଟଙ୍କା ପଇସା କ ଲୋଡ଼ା ? କେଡ଼େ ଦୁଶ୍ଚରିତ୍ରାଟା ମ ! ତା ପାଲରେ ଝରଆ ପଡ଼ିଲାଣି ! ଠୁଣ୍ଟବୁଢ଼ୀ ଯାହା କହେ ଶୁଣିଛ ? ତା ଡହଣ ବୋହୂର ଭଲପଣ, ତା ବୁଝିବାକୁ ପରଶଂସା ! ଶୁଣ ଗୋ···

ଟେଭି ମଣୁଥିଲା, ନଗରନାଉଳୀ ଝରସଣଙ୍କର ପରଘରଭଙ୍ଗା ଅନର୍ଥକ କୁତ୍ସା-ରଟନା । ସେ ପରଚେ ଯାଉ ନ ଥିଲା । ମଣିଥିଲା, ସେହିମାନଙ୍କର ପରଘରଭଙ୍ଗା ଟେହିଲି କାହାଣୀ ।

କାହାର ବଡ଼ପାଟିଆ ଫୁସ୍‌ଫୁସ୍ କଥା, ପାଖ ମାଇପିର ହସିଲା ମୁହଁ ଓ ଦୋହଲା ମୁଣ୍ଡର କାନ ପାଖରେ ଝଗଡ଼ା ନଇଁଲା ମୁହଁର ତେଣଲା କାନରେ ବାଜେ— ସେ ଶିବଙ୍କର ଖୋଲକଲା ନେଇ ଅବତାର ଗୋ ! ସବୁ ସ୍ତ୍ରୀ ତାଙ୍କର ଝିଅ ସମାନ । ସେ ବ୍ରହ୍ମଚାରୀ ମହାତମା । ତାଙ୍କ ନାମରେ ନନ୍ଦାପଦ ଯିଏ ଜଭରୁ କାଢ଼ିବ, ଆର ଜନମରେ ସେ ବୋବା ହେବ । ଅଣପୁରୁପାଟା ଗୋରୁ ମୁଣ୍ଡଆପା । ବାହା ଆଗରୁ ଯାହା ସଙ୍ଗେ କାହିଁ ଅଇଲା ଛତରାର ଖବନାବ ଥିଲା, ଯିଏ ଏକୋଇର ବଲା ବଣିକେମନ ଯେ ଲଛମୀପରକା ମାଇପକୁ ପର କଣ ସେ ନଣା ଖେଲଆଟା, ଅଁଠା ପତର ଗୃହଥିଲା । ତାଆଣ ବାଳୁତକୁ ପେଟରୁ କାଢ଼ିଲା, ଅଣପୁରୁପାଟା କୁହାଟ ଛାଡ଼ିଲା, ଦେଖ ଦେଖ ମୋର କାଢ଼ୁଆପଣ !

ଆରଜଣର ବଡ଼ ପାଟି କଥା—ଆଗୋ, ମୁଁ ହେଇଥିଲେ ଗ୍ରୁଖୁଣିମୁଠାରେ ନଣାଫିହା ଛଡେଇଦଅନ୍ତି । ପେରମ ଫେରମ ଉଡେଇ ଦଅନ୍ତି । ବସ୍ କହିଲେ ବସନ୍ତା, ଉଠ୍ କହିଲେ ଉଠନ୍ତା । ଠିକଣା କଟାଲ ବେଳେ ଅର୍ଘାଢଆ ଗୋଇଠା ଦେଲେ, ଗ୍ରୁଖୁଣି ପାହାର ପିଠିରେ ବସାଇଲେ ସେ ବୁଝନ୍ତା ଯେ ଘରର ଘରଣୀ ଲଛମୀ ଠାକୁରାଣୀ ପୀରତ ରଙ୍କୁଣୀ ନୁହେଁ ।

ଆଉ ଜଣଙ୍କର ବିସ୍ମିତ ବାଣୀ, ଏଁ-ଏଁ-ଏଁ ! ଇଲେ ମୋ ବୋଉଲେ, ଗ୍ରୁଖୁଣୀରାଣୀର ଏତେ କରାମତ କି ନାମ ?

ଆରଜଣର ହିଁ ହିଁ ହସ । ଏଥର ବଡ ପାଟି କରି କହିଲା, ଛଅଟା ଛୁଆ ଠୁ ବେଇଲୁ । ଗ୍ରୁଖୁଣୀକୁ ଜାଣିଲୁ ନାହିଁ ? ତୋ କପାଳ ଭଲ ଲୋ ଗଉଡାଣୀ ! ହାଣ୍ଡି-ପଣକା ତୋ ବରଟାର ରୂପକୁ ଦେଖିଲେ ଶଙ୍ଖୁ ସିନା ଶଙ୍କି ଯାଏ, ହେଲେ ସେ ମାଇପିବୋଲାଟା ! ମିଁ ମିଁ କା ଖାଲୁଆ ବଲେଇପର ଗୋଡ଼ରେ ଘଷି ହେଉଥିବ । ସେଇଥିପାଇଁ ଗ୍ରୁଖୁଣୀର ନିଜ ରୂପ ଦେଖିନୁ । ଦରକାର ପଡ଼ନାହିଁ । ମୁଁ ଜାଣିଛୁ, ପରଖିଛୁ । ଏକା ତମ ନନାଙ୍କ ପିଠିରେ ନୁହେଁ; ଆଉ କେତେକଙ୍କ ପିଠିରେ, ହଁ ।

—କ'ଣ ତାଙ୍କ ଗୁଣ ନାମ ?

—ଓହୋ, ମତେ ଗପେଇବୁ ? କେତେ ଡ଼େର ହେଲଣି ? ପଗ୍ରୁଣୁ ଯେବେ କହିବ । ଖୁଣ୍ଟିଆଙ୍କ ଘରର ନରମାଖୀ ବୋହୂଟି ହେଲେ ଶୁଣିଥାଉ ! ତମ ନନାଏଁ ମନ୍ତ୍ର ପଢ଼ି ପ୍ରେତ ତଡନ୍ତି ସିନା ଗୋ, ଗ୍ରୁଖୁଣି ଯେ ଚାମୁଣ୍ଡାରୂପିଣୀ । ଡ଼ାକଲେ ସେ ସଙ୍ଗେ ସଙ୍ଗେ 'ଓ' କହେ । ଅଲ କଲେ ସେ ନିଜ ରୂପ ଧରେ । ଭୂତ ପ୍ରେତ, ଡ଼ାଆଣୀ, ଚରଗୁଣୀ ସବୁ ସେ ନିହମାକେ ପିଟିପିଟିକା ତଡ଼େ । ମଉନମୁହାଁ ସେ ଖାର ଜଣେ ମ ? ଗ୍ରୁର ଝଣବାବୁଟା ତାକୁ ବଲେଇଯିବ, ନା ସେ ଛଟଙ୍କୀ କୁଆଡ଼ର କିଏ ଟା ? 'ତୋ ପିଲା ପାଇଁ ରୁ ଦେ' କହି ନଣାରେ ଖେଲ କରାଇ ସବୁତ

ବୁହାଇ ନେଲଣି । ଆହା, କ ଶୋଖ ଫିଲର ରକ୍ତ ମାଂସ ଝୁଣି ଖାଇଲଣି । ଖାଲି ତାର ଶୁକଶୁକିଆ ଜୀବନଟି ବାକି ଅଛି । ଡମ ନନା ପଗ୍ କହୁଥିଲେ—

—ହଁ, ହଁ, ଆମର ସେ୍ଵ ବ କହୁଥିଲେ ଯେ—

ଅଧିକ ଶୁଣିବାକୁ ଝୋର ସାହସ ନ ଥାଏ । ସେ ଅଶଳା ଗୁଡରେ ପାଣିରୁ ଉଠେ । କୋହଉଠା ନିଶ୍ଵାସକୁ ଚେପି ଚେପି ଛାଡ଼େ । ଅଧାଚପୁଡ଼ା ଲୁଗାଖଣ୍ଡି ଦେହରେ ବେଢ଼ାଏ । କମ୍ପାଟି ଚପୁଡ଼ି ଚପୁଡ଼ି ଘରମୁହାଁ ହୁଏ । ଦେହରୁ ନିଗିଡ଼ାପାଣି ପାଦ ଉପରେ ତଳକୁ ବୋହି ଯାଉଥାଏ । ଓଦା କେଶ ଗୁଡ଼ ଉପରେ ବହିଯାଇ ହୋଇ ନାହି ତଳକୁ ଲମ୍ବି ଯାଇଥାଏ । ତାର ଅପ ଅପ ପାଣିରେ ଝୋର ନିସାହା ନିରଣ ଲୁହ ମିଶି ଏକାକାର ହୋଇଥାଏ ।

ଭାବୁଥାଏ, ଝରଆ ଛଡ଼ା ଆଗକୁ ପଛକୁ ତାର କେହି ନାହିଁ । କେମିତି ତା ଦେହରେ ଟିପ ଛୁଇଁ ସେ ପାତକୀ ହେବ ? ସକ୍ତ୍ର ଥିର ଯିଏ ମାଲିକ, ସେ ଫୁଙ୍କି-ଦେଲେ ତ ଝୋ ଉଡ଼ିଯିବ ! ଏ ଗାଆଁରେ କିଏ ତା ପିଠିରେ ପଡ଼ିବ ? କିଏ ତାକୁ ଆଶ୍ରା ଦେବ ? କାହିଁକି ? ଦେହ ବ୍ୟତୀତ ନିଜର ହୋଇ ତାର କଅଣ ବା ଅଛି ? ଝରପଣି ପରଘର ଭଙ୍ଗେଇ ଦରବୁଢ଼ୀ ପଲ ! ତାକୁ ଟେହି, ମତାଇ ତାର ସବୁ ସାର ବାଟରେ ଛାଡ଼ିବାକୁ ବ୍ୟଗ୍ର କରିଛନ୍ତି । ପବନରେ ଗଣ୍ଡି ପକାଇ ଖାଲି ଅଜବ ମିଛଗୁଡ଼ାଏ ତାକୁ ଶୁଣାଇ ଗପି ଯାଉଛନ୍ତି ।

ଦିନେ କାଲେ ତାଙ୍କ ପାଦଧୂଳି ତା ଘରେ ପଡ଼େ ନାହିଁ । ଗାଧୁଆ ତୁଠରେ ଖାଲି ଲୁଖୁରା ସେନେହ ଶରଧା ଗଳିପଡୁଥାଏ । ନିଜ କପାଳ ସେ ନିଜେ ଭୁଞ୍ଜିବ । କେହି ଭାଗ ନେବେ ନାହିଁ । ତାଙ୍କମାନଙ୍କ ସୌଭାଗ୍ୟରୁ ଟିପେ କେହି ତା ଆଡ଼କୁ ବଢ଼ାଇ ଦେବେ ନାହିଁ ।···

ବୃନ୍ଦାବତୀଙ୍କ ଚଉରା ଆଗରେ ତା ଭାଁ ଭାଁ କାନରେ ଗାଁ ଘରଣୀମାନଙ୍କର କେତେ କେତେ କଥା ଆସି ବାଜି ଯାଉଥାଏ । ଭୂମିଲି ମନରେ ପଣି ଘାଣ୍ଟି ହେଉ-ଥାଏ । ସୁନା ବଉଉଣୀ ଭଲେଇ ହୋଇ ଯେଉଁ ସଫେଇ ଦେଲି, ସେ ନ ମାନି, ସବୁ ମାନିଗଲା । ଗୋଟାଗୁଏ ନିଜର ହୋଇ ଆଉ ଦିନେ ସଞ୍ଜରେ ସେ ଯେଉଁ ଅମିତ କଥା ଶିଖାଉଥିଲି, ଆଜି ମନେ ପକାଇଲେ କେଡ଼େ ଭୟଙ୍କରିଆ ଲାଗୁଛି । ସ୍ଵାମୀ ବିରୁଦ୍ଧରେ ଚକ୍ରାନ୍ତ !!

ମୁଣ୍ଡ ଟେକିଲି । ଚେକା ପକାଇ ସଳଖି ବସିଲି । ଆକାଶର ସୋରିଷ-ଫୁଲିଆ କଣିଆ ଜହ୍ନକୁ ଅନାଇଁଲି । ଖଣ୍ଡେ ମେଘ ଭିତରୁ ସେ ବାହାର ପଡ଼ୁଛି । ତବତବ କରି ଗୁହିଁଛି । ତା' ଦେହରେ କେଡ଼େ ବଡ଼ ଦାଗଟାଏ । କ'ଣ ସେ କହୁଛି ? ମୋ ପରିକା ସମସ୍ତେ ଲେ ଟେ । ଅଳପ ବହୁତ କଳଙ୍କ ଧରି ସମସ୍ତେ ଆତଯାତ । ଆଉ ଖଣ୍ଡେ ମେଘ ଆଁଧିଲି । ହସିଲି ଜହ୍ନକୁ ତା' ପଣତ ଉହାଡ଼କୁ

ନେଲା । ତଥାପି ତ ତା'ର କାହ୍ନୁର ସଫାଳିଆ ଥିତି ବାରି ହେଉଥାଏ । ସେ ଥିତିରେ ସାଇତା ସେଇ କଳାକଲଙ୍କ ।

ବୃନ୍ଦାବତୀ ଗୋ, ମୋ ଏକୁଟିଆ ଜୀବନର ସଖୀ ! ମୋ ସୁଖ ଦୁଃଖ ସବୁ ତୁମକୁ ଜଣାଇଛି । ମୋ' ଭିତରେ ତମେ ହିଁ କେବଳ ଆଶ୍ୱାସନା ଦେଇଛ । ତମେ ମତେ କହିଦିଅ, ତମେ ମୋତେ ବତାଇ ଦିଅ, ମୁଁ କି ବୁଦ୍ଧି କରିବି ? ସେଇ କୁଚମୀ ସୁନାର ପାଲରୁ କେମିତି ମୁଁ ତାକୁ ମୁକୁଳାଇ ଆଣିବି ?

ଟୁଲି ଦୁଇ ହାତ ଯୋଡ଼ି ମୁଣ୍ଡରେ ଥାପିଲା । ପୁଣି ପୁଣି ସେ ପ୍ରଣାମ କଲା । ତଳେ ମୁଣ୍ଡ ଲଗାଇଲା । ଆଖିରୁ ଲୋତକ ଝରି ପଡ଼ୁଥାଏ । ଟୁଲି ବୃନ୍ଦାବତୀଙ୍କ ଆଗରେ ଓଲଗିହେଲା । ଆଖି ଲୁହରେ ମୁହଁ ପଖାଳି ସେ ଜଣାଣ କଲା, ତାକୁ ଭଲ ବୁଦ୍ଧି ଦିଅ ଗୋ ଠାକୁରାଣୀ ! ମୁଁ ତମର ଶରଣ ପଶୁଛି । ସୁନାଦେଈର ପାଲରୁ ତାକୁ ଉଦ୍ଧାର ଆଣ ।

— ୭ —

ମନର ଦୁଃଖ ଆଖିର ଲୁହରେ ଧୋଇ, ଚିରନ୍ତନୀ ମା ବୃନ୍ଦାବତୀଙ୍କଠାରେ ପ୍ରତ୍ୟୟ ଥାପି ଟୁଲି ଉଠିଲା ।

ନିତିଦିନିଆଁ କର୍ତ୍ତବ୍ୟ ଡାକ ଶୁଭିଲାଣି । ବଞ୍ଚିଥିଲେ ଆଶା ଥାଏ । ତା'କୁ ହିଁ କରିବାକୁ ହେବ । ଏକୁଟିଆ ଦହଗଞ୍ଜିଆ ଜୀବନର ପ୍ରିୟସାଥୀ ସେଇ ନିତିଦିନିଆ କାମଗୁଡ଼ିକ ! ତୁଣ୍ଡ ନ ଥାଇ ସେମାନେ କଥା କହନ୍ତି । ଆଖି ନ ଥାଇ ସେମାନେ ଜଳଜଳ କରି ଅନାଇଥାନ୍ତି । ସେ ଚାହାଣୀ କେଡ଼େ କରୁଣ । ମିନତିଭରା । ହାତ ନ ଥାଇ ସମସ୍ତେ ସେମାନେ ମତେ ଠାରି ଡ଼ାକନ୍ତି, ଚେତାଇ ଦିଅନ୍ତି, ହେଲା । କଲେ ଭେଲା ବୁଡ଼ିବ । ଆଗ ମତେ ସମ୍ପାଦ । ନା, ଆଗ ମତେ···

ବାଦବୁଦିଆ ନୀରବ ଡାକ ।

ରାତି ପାହିଲା ପହର ଡେଇଁଗଲାଣି । ଟୁଲି ସବୁ ଦୁଶ୍ଚିନ୍ତା ଆଡ଼େଇ କାମରେ ନିଜକୁ ବୁଡ଼ାଇଦେଲା ।

ସେ ଜାଣେ, କମିସବୁ ଛାଗ ଲାଗିଲାଦିନରୁ 'ଭଅଁରା ତା' ମାଆକୁ ସଙ୍ଗରେ ନେଇ ଘରେ ଆସିବାକୁ ଡେରି କରୁଛି । ସେ ଅନ୍ୟ କାହା ପାଖରେ କାମ ଖୋଜୁଛି । ବର୍ଷକର ବର୍ତ୍ତନ ତୁଟି ନ ଥିବାରୁ ଆସିବାକୁ ବାଧ ହେଉଛି । ପୁଣି ବହୁ ବର୍ଷର ସମ୍ପର୍କ ଯେଉଁ ଆନୁଗତ୍ୟର ଡୋରରେ ତାକୁ ଝୁଣ୍ଟିଆ ଘରେ ବାନ୍ଧିଛି, ସେଇ ଡ଼ୋର ତାକୁ ଓଟାରି ଆଣୁଛି । କିନ୍ତୁ ସେ ଡୋର ତ ହୁଗୁଳା ହେଲାଣି । କେବେ ସେ ସମ୍ପର୍କର ପଘାରୁ ମୁଣ୍ଡ ଗଳାଇ ଅନ୍ୟ କେଉଁ ଚରାଭୂଇଁକୁ ଚାଲିଯିବ ।

ବିଶ୍ୱାସ ତୁଟିବ । ଏ ଘରର ସବୁ କାରବାର ତାକୁ ଜଣା । କେଉଁଠି କଅଣ ଅଛି, ତାକୁ ଅଛପା ନାହିଁ । ଯେଉଁ ଶିଙ୍ଗରେ ସେ ମାଟି ଖୋଳୁଥିଲା, ମିହିମିହିକା ମାଣିକଜଳା ହୋଇଥିଲା, ସେହି ଗୋଜାଗୋଜା ଶିଙ୍ଗ ଦୁଇଟାରେ ସେ ମନ କଲେ ଭୁଷିବ । ଘର ମଣିଷ ପରଘରେ ପୋଷା କୁକୁର । କିଏ ପିଠିରେ ପଡ଼ିବ ? ରକ୍ଷାରକ୍ଷଣ କରିବ ? ଭଅଁରୀ ଓ ଭଅଁରୀମା'ଙ୍କୁ ଆଉ ବିଶ୍ୱାସ କରିହେବ ନାହିଁ । ପେଟଆତୁରରେ ପେଟ ଜଳିଲେ ସେ କ'ଣ ଧର୍ମ ଅଧର୍ମ ବିଚାର କରିବ ? ମୁହଁ ମୂଲଇଜା ରଖିବ ?

କାମ କରୁକରୁ ଟଗି ଏହିପରି କେତେ ବିଚାର କରୁଥିଲା—ସେ ଝରିଆ ଯଦି ଏ ସବୁ ମନକୁ ନ ନିଏ, ଯାହା କରିବାର କରି ତ ସବୁ ସାରିଲାଣି, ଯଦି ସେ ବୋଲି ମାନି ଅନ୍ତତଃ ଘରେ ନ ରହେ, କେଉଁ ଭରସାରେ ସେ ଏ ଘରେ ଆଉସବୁ ଆପଦ ବିପଦ ମୁଣ୍ଡେଇ, ମାଟିକାମୁଣ୍ଡି ପଡ଼ି ରହିବ ? ସେ ଅସଜ ମଣିଷଟିଏ । ନିଜକୁ ବଞ୍ଚାଇ ରଖିଲେ ସିନା ତା' ଭିତରେ ଥିବା ଅଙ୍କୁରଟିକୁ ସେ ମଣିଷ କରି ଗଢ଼ିବ ? ସଂସାରକୁ ଆଣିବ ?

ଟଗି ବିଚାରିଲା, ଝରିଆର ନିଶା ଛାଡ଼ିଲେ, ସେ ଭଲରେ ଭଲରେ ତାକୁ ସବୁ ବୁଝାଇଦେବ । ଶେଷ କଥା କହିଯିବ, ତମର ଘର ଏବେ ସମ୍ଭାଳ । ଯାହା କରୁଛ କର, ତମର ଇଚ୍ଛା । ଯେମିତି ମୁଁ ଆସିଥିଲି, ସେମିତି ଚାଲିଯିବି । ଯେଉଁଠୁ ଆସିଥିଲି ସେଇଠିକି । ଶବାସ୍ତି ଚଢ଼ି ଆସିଥିଲି ମୁଁ ଖୁଣ୍ଟିଆ ଘରର ନୂଆବୋହୂ, ସାତକୋଶ ବାଟ ଚାଲିଚାଲି ଯିବି ମୂଲିଆଣୀ ବେଶରେ । ଯେଉଁ ସାବତମାଆର ମାଡ଼ଗାଳି ସହି ଛଅଟି ବର୍ଷ ଛଅ ଯୁଗ ପରି କଟାଇଥିଲି, ପୁଣି ସାତ ବର୍ଷ ପରେ ତାଆରି ଗୋଡ ଧରି ଶରଣ ପଶିବି । ···

କାମ ସରିଲା । ଏକୁଟିଆ ଘରେ ଏଣୁ ତେଣୁ କେତେ ଭାବନା ଟଗିର ତତଲା ମନରେ ଘାଣ୍ଟି ହେଉଥିଲା । ସେ ତାର ହାଲିଆ ଦେହକୁ ଝରିଆର କୋଠରୀ ବିଛଣା ଉପରେ ଲମ୍ବାଇ ଦେଇଥିଲା । କେତେବେଳେ ତାର ଅବାଧ ଆଖିପତା ମୁଦି ହୋଇଗଲା ।

ଗୁଇନିଦ ଘୋଟିଆସୁଥୁ , ସତପରି ଲାଗୁଥାଏ, ସେ ସପନ ଦେଖିଲା, ତା'ର ଶାଶୂ ଆସି ପାଖରେ ବସିଛନ୍ତି । ସେ କେବେ ବାଧକା ପଡ଼ିଲେ ଯେମିତି ସେ ପିଠି ଆଉଁସି ଦିଅନ୍ତି, ସେମିତି କରି ତା' ମନ କଥା ଜାଣି ବୁଝାଇ କହୁଛନ୍ତି, 'ତୁ କ'ଣ ବାଇଆଣୀ ହେଲୁ କି ମା ? ଏ ଘର ତ ତୋ'ର, ତୁ ଛାଡ଼ି ପଳାଇବୁ କୁଆଡ଼େ ?'

—ସହି ପାରୁନାହିଁ, ବୋଉ !

—ମାଇପି ଜନମ ସହିବାପାଇଁ ଲୋ ! ମୋ ସୁନା କଣ୍ଢେଇ ! ମୁଁ ତୋ' ପାଖେପାଖେ ଅଛି । ତୁ ଜାଣି ନାହୁଁ । ଏ ପୁରରେ ମତେ ଏକୁଟିଆ ଛାଡ଼ି ତୋ'

ଶଶୁର ଯାଇଁ ତୋ' ଭିତରେ ରହିଲେଣି । ତୋ'ର ସବୁ ଦୁଃଖ ମୋ' ଉପରକୁ ଫୋପାଡ଼ି ଦେ । ତୋ' ଶଶୁରଙ୍କ ପଛେ ପଛେ ମୁଁ ବି ତୋ' କୋଳକୁ ଯିବି ।

—ସତେ, ବୋଉ ?

—ହଁ ଲେ ମା ! ଏଠି ଠାକୁରେ ଆମର ଗୁହାର ଘେନା କଲେ, ତୋ'ର କୋଳରେ ଆମର ଭାଇ-ଭଉଣୀ ଖେଳ !

ଦାଣ୍ଡ କବାଟରେ ଜଞ୍ଜିର ବାଡ଼ିଆ ଶବଦ ।

ଟୋକିର ଗ୍ରଇ ନିଦ ସଙ୍ଗେ ସପନ ଭାଙ୍ଗିଲା । ସେ ଆଖିଖୋଲି ଅନେଇଲା । କବାଟ ଧଡ଼ ଧଡ଼ । ଟୋକି ଉଠିଲା । ଦେହ ଥରୁଥାଏ । କେତେ ରାତି ହେଲଣି କେଜାଣି ! ଜଣା ଗର୍ଜୁଛି । କବାଟ ଧଡ଼ଧଡ଼ରୁ ସେ ଅନୁମାନ କଲା, ଝଣଆ ଆସିଥିବ । ଆଲୁଅ ତେଜି, ନଲଟେଣ ଧରି ସେ ଦାଣ୍ଡ ଘରକୁ ଆସିଲା । କିଏ ଦୁଇ-ଜଣ କଥା-ଭାଷା ହେଉଛନ୍ତି ।

ଟୋକି କବାଟ-ଜଳାରେ ଗୋଟିଏ ଆଖିରେ ଚାହିଁଲା । ବାଣ ନ ପାଇ ପଚାରିଲା, କିଏ ସେ ?

ମୁଁ ଭଅଁରୀ । ଏ ମଉସା ତମ ଗାଆଁରୁ ଆସିଛନ୍ତି । ଆମ ଘର ତ ଆଗରୁ ଦେଖି ନ ଥିଲେ, ଗାଁ ସାରା ବୁଲି ପଚାରୁଥିଲେ । ମୋ' ସଙ୍ଗେ ଦେଖା ହେଲା ଯେ—

ଥଙ୍ଗ ଥଙ୍ଗ ହୋଇ ଟୋକି କବାଟ ଖୋଲି ଠିଆହେଲା କଣ । ଘର ମଝିକୁ କଣେଇଁ ଆସି ପଚାରିଲା, ଏତେ ଡେରି କଲୁ ଭଅଁରୀ ? ତୋ' ବୋଉ କାହିଁ ? ତୋ ବାବୁ କାହାନ୍ତି ? ହଇରେ, ତୁ' ଟା ଏମିତିକା ଲୋକ !

ଭଅଁରୀ କହିଲା, ବୋଉକୁ ଜର ଯେ ଉଠିପାରୁ ନାହିଁ । ଆଖି ଖୋଲୁ ନାହିଁ । ତାକୁ ଜଗି ବସିଥିଲି । ଭାଉଜ ଆସି ପାଖରେ ବସିଲାରୁ ବଇଦ ଘରକୁ ଯାଇଥିଲି । ଓଷଦ ଆଣିଲି । ହେଇଟି କାନରେ ବାନ୍ଧିଛି । ଏ ବାବୁଙ୍କୁ ବଇଦଙ୍କ ଘର ଆଗରେ ଭେଟିଲି । ସେ ଆମ ଘର ଖୋଜୁଥିଲେ । ସାଆନ୍ତଙ୍କ ସଙ୍ଗେ ସଞ୍ଜ ଆଗରୁ ମଠର ବଗିଚା ଭିତରେ ମୋର ଦେଖା ହେଲା । ନାରଣ ପଣ୍ଡାଙ୍କ ସଙ୍ଗେ କ'ଣ କଥାଭାଷା ହେଉଥିଲେ । ତାଙ୍କ ବଗିଚା ଚଳ ତାଙ୍କୁ ଦେଇ ମୁଁ ଚଲପର ଛୁଟି ପଳାଇ ଆସିଲି । ଆଉ ଦେଖା ହୋଇ ନାହିଁ । ତମ ନାଁ କହିଲାରୁ ଏଙ୍କୁ ସାଙ୍ଗରେ ଆଣିଲି ।

ଆଗନ୍ତୁକଙ୍କ ଆଡ଼କୁ ଟୋକି ଏକାଲୟରେ ଚାହିଁ ରହିଲା । ଅଳ୍ପ ଆଲୁଅରେ ତାଙ୍କ ମୁହଁଟି ଦୋଦୋ ଚନ୍ଦ୍ରା ଲାଗୁଥାଏ । ଦେଖାଯାଉଛନ୍ତି ତାଙ୍କ ଗାଁ ରତନ-ପୁରର ଅଚ୍ୟୁତ ବେହେରାଙ୍କ ପରି । ସେମିତି ହିଁ ପଣ୍ଡ କଳା । ବଳିଷ୍ଠ ବାଙ୍ଗର ଦେହ ।

ଗୋଲ ମୁହଁରେ ବଡ଼ ବଡ଼ ଆଖି । ଧୋବଲା ରୁଚିଆ ନିଶ ଦାଢ଼ି । ବୟସ ବଢ଼ିବାରୁ ସେପରି ଧୋବ ହୋଇଥିବ । ମୁଣ୍ଡର କେଶ ପାଚିଗଲାଣି । କିନ୍ତୁ ସେମିତି ଚ୍ଛେଟ ଚ୍ଛେଟ ହୋଇ କଟାହୋଇଛି । ଦାରସଫା ଚ୍ଛେଟ ଲୁଗା ଉପରେ ହାତକଟା ଜାମା ପିନ୍ଧିଛନ୍ତି । କାନ୍ଧରେ ଚାଉଆ ଗାମୁଛା । ହାତରେ ତେଲପଗ୍ ଠେଙ୍ଗା । କାନ୍ଧରୁ ଚ୍ଛେଟ ମୁଣାଟିଏ ଓହଳି ଅଣ୍ଟା ପାଖରେ ଝୁଲୁଛି ।

ସେ ଆବାକାବା ହୋଇ ଟଙ୍କିର ମୁଣ୍ଡରୁ ଗୋଡ଼ଯାଏ ବାରମ୍ବାର ଚାହୁଁଛନ୍ତି । ବହୁ ବର୍ଷ ପରେ ଦେଖା ! ହୁଏତ ତାଙ୍କର ବିଶ୍ୱାସ ହେଉ ନ ଥିବ ଯେ ଯାବତ ମାଆର ମାଡ଼ ଗାଳି ସହି, ଅଧେ ଦିନ ଉପାସ ରହି ଯେଉଁ ଧଡ଼ିଆ ମଇଳା ଝିଅଟି, କେବେ ଡ଼ରି ଡ଼ରି ଆସି ତାଙ୍କ ଘରେ ବେହେରାଣୀଙ୍କ ପାଖରେ କାନ୍ଦି କାନ୍ଦି ଲୁହ ଢାଳେ, ହାତର ଆଉଁସା ଖାଇ, ଆହ୍ଲାଦ ପାଇ ଟିକିଏ ସାନ୍ତ୍ୱନା ପାଏ, ଗ୍ଡନିଆଁ ରେ ଛନ ଛନ ହୋଇ ନୂଆଭୁଜା, ଦହି, ଛେନା ଟିକିଏ ତରତର କରି ପେଟକୁ ନେଇ ଭୋକ ମାରେ, ଇଏ ସେହି ଟଙ୍କି !

ବଡ଼ ଘରର ବୋହୂ । ଭୋଗଭାଗ୍ୟରେ ଥାଇ, ସୁଖଆନନ୍ଦରେ ବଢ଼ି, ଘରର ସର୍ବେସର୍ବା ଘରଣୀ ସେ । ଟଙ୍କି ଭଜାଚୁଡ଼ା ପରି ଫୁଲି ଉଠିଛି । ରଙ୍ଗ ବଦଳିଛି । ଦେହରେ ମାଂସ ଥଲ ଥଲ ହେଉଛି ।

ମଉସା !

ତୁ ଟଙ୍କି ମା ?

ଟଙ୍କି କ୍ଷଣକ ପାଇଁ ବିଦୋରଗଲା ଯେ ସେ ଖଣ୍ଡାୟତ ଘର ବୋହୂ । ସେଟ ଭିତରୁ ଉଠୁଥିବା କୋହକୁ ଚାପିରଖି ସେ ତଳେ ମୁଣ୍ଡ ଲଗାଇ ଓଳିଗି ହେଲା । ଦାଣ୍ଡଘର ବାହାରେ ତାର ବାପାବୟସର ଯେଉଁ ବ୍ୟକ୍ତି ଠିଆ ହୋଇଥିଲା, ତାରି ଭିତରେ ସେ ତା'ର ବ.ପା, ମା, ଜେଜେମା ଓ ରତନପୁରର ସବୁ ଗୁରୁଜନଙ୍କୁ ଅନୁଭବ କଲା । ହେଲେ ପଛେ ସେ ଜାତରେ ଗୋପାଳ !

ଟଙ୍କି ଉଠି ଠିଆ ହେଲା । ଆଖିରେ ଲୁହ ଛଳ ଛଳ ହେଲା । ଭାବିଲା, ଏଇ ଅଚ୍ୟୁତ ମଉସା ତା' ବାପାଙ୍କର ଅତି ବିଶ୍ୱାସୀ ବନ୍ଧୁ । ନା ଧରି ଡାକନ୍ତି । ସ୍ନେହ ଡ଼ାକନ୍ତି କାର୍ତ୍ତିକ ଭାଇ । ଦହେଁ ଏକାଠି ଭାଗରେ ଅନ୍ୟମାନଙ୍କର ଜମି ଚାଷ କରୁଥିଲେ । ଚାଷୀ ଭାଗକ ଦହେଁ ସମାନ ଅଂଶରେ ବାଣ୍ଟି ନିଅନ୍ତି । ନିଜ ନିଜର ଜମି ଚାଷ କରି ଫସଲକୁ ଆଗ ଦୁଇ ଭାଗରେ ବାଣ୍ଟନ୍ତି । ଜମିର ମାଲିକର ଅଧେ, ବାକି ଅଧକୁ ଦୁହିଁଙ୍କର ସମାନ ଅଂଶ । ଦହେଁ ପ୍ରାଣପଣ ଖଟନ୍ତି । ଖଲଲୋକେ ଦୁହିଁଙ୍କର ମନ ଫଟାଇବାକୁ ଯେତେ ଯାହା କାନରେ ଫୋଡ଼ ଚେଷ୍ଟା କଲେ ବି ସଫଳ ହୋଇ ନ ଥିଲେ ।

ଆଖିର ଲୁହ ମଇଳା କନାର ପଣତରେ ପୋଛି ଟେଙ୍ଗି କହିଲା, ଭିତରକୁ ଆସ ମଉସା ! ଗୋଟାଏ ଯୁଗ ପରେ ଝିଆରୀ ବଞ୍ଚିଛି କି ମରିଛି ବୁଝିବାକୁ ତ ଆଇଛ ! ପର ଘରକୁ ପଠାଇ ବାପା ମରିଲେ ଝିଅଟା ତାଙ୍କର ମରିଛି । ହଁ ମଉସା, ଟେଙ୍ଗି ସତରେ କେବେଠାରୁ ମରି ସାରିଲାଣି ।

ଅଚ୍ୟୁତ ବେହେରା ପଦେ ହେଲେ ସାନ୍ତ୍ୱନା-ବାଣୀ ଶୁଣାଇଲେ ନାହିଁ । ସେ ମୁଣ୍ଡ ନୁଆଁଇ ଦାଣ୍ଡଘର ଭିତରକୁ ଆସିଲେ । ଝଙ୍କା ଆଡକୁ କେଇପାଦ ଆଗେଇ ଚନ୍ଦ୍ର-ଜୋଛନାରେ ଆଲୋକିତ ଅଗଣା ଆଡ଼କୁ ଚାହିଁଲେ । ଦେଖିଲେ, କେବଳ ଗୋଟିଏ ଘର ଭିତରୁ ଆଲୁଅର ଆଭାସ ଆସୁଛି । ଆଉ ସବୁ ଘର ଅନ୍ଧାରୁଆ । ପଚାରିଲେ, କେହି ନାହାନ୍ତି କି ମା ! କାହାର ସୋର୍ ଶବଦ ନାହିଁ ତ । ନିଛାଟିଆ ଲାଗୁଛି ।

ତାଙ୍କ କଥାର ଉତ୍ତର ନ ଦେଇ ଟେଙ୍ଗି ପଦାକୁ ଆସିଲା । ଭଅଁରା ଅପେକ୍ଷା କରିଥିଲା । ତାକୁ ସେ ତୁନିତୁନି କହିଲା, ତୁ ତୋ ବୋଉକୁ ଓଷଦ ଖୁଆଇ ଝିଅଟି ଟିକି ଭଅଁରା । ଅକାଳେ ସକାଳେ ଘରକୁ କୁଣିଆଁ ଆଇଛନ୍ତି ! ମୋ ମଉସା ହେବେ । ତମ ସାଆଁନ୍ତ ତାଙ୍କର ଜୋଇଁ । ଯେମିତି ହେଲେ ତାଙ୍କୁ ସଙ୍ଗରେ ନେଇ ଆସିବୁ । ମୋ ଭଲଟି ପରା ! ହଇରେ, ତାଙ୍କ ଅଯୋଗ୍ୟ ପଣରୁ ସମ୍ପତ୍ତି ସଙ୍ଗେ ତୋ' ଚାକରୀ ସିନା ଗଲା, ମୋ ସ୍ନେହ ଆଉ ତୋ' ମୋହବତ କ'ଣ ତୁଟିଲା କିରେ ? ନମକହାରାମୀ କଲେ ଜନପୁରରେ ତତେ ଠାବ ମିଳିବ ? ଆସିବାକୁ ତୁ ଏତେ ଡେରି କଲୁ ? ନିଛାଟିଆ କଣିଜିଆ ଘର । ମୁଁ ଏକୁଟିଆ ମଣିଷ । ଏ ଗାଆଁ ଲୋକଙ୍କର ଢ଼ଙ୍ଗ ତତେ କେଉଁ ଅଜଣା ? ତୁ ସବୁ ଜାଣୁ । କପଟିଆଟା, ମତେ ସବୁ କଥା ଲୁଚଉ । ତଥାପି ତୋ'ରି ହେମତରେ, ଜାଣେନା କାହିଁକି, ମୁଁ ଏଠି ମାଟି କାମୁଡ଼ି ପଡ଼ିଛି ।

ଭଅଁରା ମୁଣ୍ଡ ପୋତି ଟେଙ୍ଗିର ଆବୁରିଆ ଅନୁରୋଧ ଶୁଣିଲା । କହିଲା, ସେ ବୁଢ଼ୀଟା ମରୁ ନାହିଁ, କି ବାଟ ଛାଡ଼ୁନାହିଁ ବୋହୂମା । ମୋ'ର କି ଦୋଷ ? ସାଆନ୍ତଙ୍କୁ ଏବେ କେଉଁଠି ପାଇବି ?

—ତୋତେ ଜଣା ନାହିଁ ?

—ଆଗ ମଠରେ ଖୋଜିବି ।

—ସେଇଠୁ ଖୋଜିବୁ—

—ନବସିନ୍ଧା ନାରଣ ପରିଡ଼ାଙ୍କ ଘରେ ।

—ଆଗ ତମ୍ବୁରୁ ମାହାରଣା ଘରେ ।

—ଯାଉଛି ବୋହୂମା !

ଭଅଁରା ତା' ଆଲୁଅ ଧରି ତରତର ହୋଇ ଚାଲିଗଲା ।

ସେମାନଙ୍କର କଥାଭାଷା ଅଚ୍ୟୁତ ବେହେରାଙ୍କ କାନରେ ପଡ଼ିଥିଲା । ସଞ୍ଜ ବତୀ ବେଳେ ସେ ମଣିକୁନ୍ଦ ଗାଆଁରେ ପହଞ୍ଚିଲେ । ଏହି ଅଣ-ଆଡ଼ୁଆ ଏକୁଟିଆ ଘରର ଆଗ ବାଟରେ ସେ ଗାଆଁ ଭିତରେ ପଶିଥିଲେ । ବଡ଼ ଗାଁ । କେତେ ସାହି । ପୁରୁଣା ଝଙ୍କାଳିଆ ଗଛଗୁଡ଼ିକର ଛାଇରେ, ମେଘ ଉହାଡ଼ିଆ ଜହ୍ନରାତରେ ଗାଁ-ଗୋହିରୀ ସବୁ ଅନ୍ଧାରିଆ ।

ଝିରବାବୁଙ୍କ ନାମ ଶୁଣି କିଏ କେତେ କ'ଣ ବୁଝିବାକୁ ଚାହିଁଲେ । କିଏ କହିଲା, ଯାଅ ଝଟିରେ ଖୋଜିବ ତମ୍ବୁରୁ ମହାରଣା ଘରେ । ଏଇବାଟେ ଯାଇ ଆଗ ସାହିରେ ପଚାରିବ । ଆଉ କିଏ ସିଧା ବାଟ ବତାଇ କହିଲା, ଯାଅ ନାଳ କୂଳ ଅନାବାଦୀ ବଣ ଭିତରେ, ଶିବବାବାଙ୍କ ମଠକୁ । ସେଇଠି ସେ ଜଗନ୍ନାଥ ମେଳାରେ ଚଲମ ଧରିଥିବେ । ତାଙ୍କ ଘରଣୀ ବି ସେଇ ମଠରେ ଥିବେ ଯେ !

ଏମିତି କେତେ ନବକିଆ କଥା !

ଉଡ଼ାଖବର ରତନପୁରରେ କେତେ ବର୍ଷ ହେଲା ବରାବର ପହଞ୍ଚୁଛି । ନିଜ ଦୁଃଖଧନ୍ଦାକୁ ହିଁ ଶରୁହାର ନାହିଁ । କାହାର ଗରଜ ବଳେଇ ପଡ଼ୁଛି ଯେ ସତମିଛ ପରଖିବାକୁ ରତନପୁରରୁ ଧାଇଁଆସିବ ? ବୁଢ଼ୀଟି ଆତୁରିଆ ହୋଇ କନ୍ଦାକଟା କରି ନେହୁରା ହେଲା, ସବୁ କାମ ପକାଇ, ଜରୁଆ ଭାଣଯାକୁ ଗ୍ରୁଡ଼ି ରାତିକ ପାଇଁ ସେ ଆସିବାକୁ ରାଜି ହୋଇଥିଲେ ।

ଚୈତନ ପାଣିଙ୍କ ଉପରେ ବିପଦ କାଳରେ କିଏ କାର୍ତ୍ତିକ ମହାନ୍ତିଙ୍କର ସାହା ହେବାକୁ ସାହସ କରନ୍ତା ! ତାଙ୍କ ଝିଅ ଜୋଇଁଙ୍କ ଖବର ଦିଅନ୍ତା ? ରତନ-ପୁରିଆଙ୍କ ଅଜାଣତରେ ଆସି ସହଳ ସହଳ ଫେରିଯିବା କଥା । ପାଣେ ଏକାଙ୍ଗ-ଚକ୍ରବର୍ତ୍ତୀ । ଗାଆଁର ଧର୍ମଲୋକ । ଅତି ପ୍ରତାପୀ । ସେ ଜାଣିଲେ ଅଦଉତି ସାଧିବେ । ସରପଞ୍ଚରେ ବାପା ! ଷଣକେ ଧଳାକୁ କଳା, ପୁଣି କଳାକୁ ଧଳା କରିବାକୁ ଯେ ପାରଙ୍ଗମ । ଉପକାର ସେ ମନେ ପକାନ୍ତି ନାହିଁ । ମନେ କରାଇ-ଦେଲେ ଫୁଟକମାର ମୁଣ୍ଡ ଝୁଂଗାର ହସି ଉଡ଼ାଇ ଦିଅନ୍ତି । ତାଙ୍କର ମତ ହେଲା— 'ଆରେ ସ୍ୱେ, ଯେତେବେଳେ ଯେ ।'

କାର୍ତ୍ତିକ ମହାନ୍ତି ନିର୍ଦ୍ଦୋଷ ମଣିଷ । ନିଜ କଲା କାମ ତାଙ୍କ ମୁଣ୍ଡରେ ଲଦି ଦେଇ, କେଡ଼େ ବିପଦରେ ତାଙ୍କୁ ସେଇ ପାଣି ପକାଇଦେଲେ ! ବେହେରା ଆଖିରେ ଦେଖିଛନ୍ତି । ମିଛ କହିବାକୁ ମନ ହେଉନାହିଁ । ସତ କହିଲେ ପାଣେ ତଳତଳାନ୍ତ କରିବେ । ତେଣୁ ତୁଣ୍ଡ ନ ଖୋଲିବା ଭଲ ।

କାର୍ତ୍ତିକଙ୍କର ମା ବୁଢ଼ୀ ଜରରେ ଥରି ଥରିକା ଠେଙ୍ଗାଟି ଧରି ଆସିଲା । ହାତ ଓଠ ଧରି କାକୁସ୍ତ ହୋଇ କହିଲା ! 'ଯା' ପୁଅ, ଖବର ଦେ; କିନ୍ତୁ କି ଖବର ଯେ ଦେବେ ? ଘରର ରୂପ, ଟଙ୍କର ଭେକ, ଲୁକର ଚୋକାକୁ ତା'ର କାକୁତି-ମିନତି

ସବୁ ଜଣାଇଁ ଦେଉଛୁ ଯେ ଏହି ଉଡ଼ା ଖବର ମିଛ ନୁହେଁ । ଝୋଷ ଦୁଃଖରେ ଅଛୁ । ସେ ନକଉଁବ୍ୟ । ତ୍ୱାଁନ୍ଁ ଅବାଟ ମାଡ଼ି ଗ୍ଭଲିଛନ୍ତି । ତାଙ୍କଠାରୁ ସାହାଯ୍ୟ ଆଶା କରିବା ବୃଥା ।

କ'ଣ କହିବେ, କ'ଣ ନ କହିବେ, ମୁହୂର୍ତ୍ତିକରେ ଅଚ୍ୟୁତ ବେହେରା ସ୍ଥିର କରିନେଲେ ।

ଦାଣ୍ଡ କବାଟ କଲ, ଆଖିରୁ ଲୁହ ପୋଛୁ, ଝୋଷ ତାଙ୍କ ଆଡ଼କୁ ମୁହଁ ବୁଲାଇଲା । ହସହସ ହୋଇ କହିଲା, ଧାଇଁ ଧାଇଁ ଆସିଛ ମଉସା; ଆସ କୂଅମୂଳକୁ । ଗୋଡ଼ହାତ ଧୁଅ । କିଛୁ ଖାଇନିଅ । ତା'ପରେ ଶୁଣିବ, ଜାଣିବ, ତମର ଏ ଝିଅ କେଡ଼େ ସୁଖରେ ଅଛୁ ।

ଅଚ୍ୟୁତ କିଛୁ ଉତ୍ତର ନ ଦେଇ ଝୋଷର ପଛେ ପଛେ କୂଅମୂଳକୁ ଗଲେ ।

କିଣଘରେ ଝୋଷ ତାଙ୍କ ପାଇଁ ସପ ପାରିଦେଲା । ତାଙ୍କ ଶୋଇବାର ବ୍ୟବସ୍ଥା କଲା । ଝରିଆ ନ ଆସିବାଯାଏ ସେ ବିଶ୍ରାମ ନ ନେଇ ଅପେକ୍ଷା କରିବେ ବୋଲି ଜଣାଇଲେ । ଆସିବାର ଉଦ୍ଦେଶ୍ୟ କହିଲେ । ସତ ଫଳାଇ ତାହା ମିଛ— ଝୋଷର ଜେଜେମା ଜାଣ ସୁକୁସୁକୁ ହେଉଛନ୍ତି । ଜର ଯେ ଆଖି ଫିଟୁ ନାହିଁ । ଚେତା ଅଛି । ଡାକଲେ ଓଁ କରୁଛନ୍ତି । କଥା ବୁଝୁଛନ୍ତି । ଥାକଲାପରି ଲାଗୁ ନାହିଁ । ସେ ଖାଲି ଝୋଷର ନାଁ ଧରି ଡ଼ାକୁଛନ୍ତି । କେବେ କେବେ ଆଖି ଖୋଲି ଗ୍ଭହୁଁଛନ୍ତି । ବେଳେବେଳେ କେବେ କମିତ ଝରିବାବୁଙ୍କ ନା ଧରି ଡ଼ାକୁଛନ୍ତି । ହାତ ଅଣ୍ଡାଳି ସେ ଖୋଜୁଛନ୍ତି ।

ଅଚ୍ୟୁତ ବେହେରା ପୁଣି କହିଲେ, ତମ ଦୁହିଁଙ୍କୁ ଥରେ ଗ୍ଭହିଁଦେଲେ ତାଙ୍କର ଆତୁର-ଆତ୍ମା ଶାନ୍ତି ପାଇବ । ତାଙ୍କ ଛଟପଟ କଲବଲ ଜୀବନ ଛାଡ଼ିବ । ଆଲୋ ମା, ବୁଢ଼ୀ ବହୁତ ଯାଣ୍ଡି ହେଲେଣି । ତୋ' ବାପା ତ ତାଙ୍କର ସେବାରେ ଦିନସ୍ତ କଟାଉଛନ୍ତି । ତୋ' ବାପୁଣୀ ବୋଉ ତାଙ୍କ ପାଖ ପଶୁନାହିଁ ।

—କହ ମଉସା ! ମୋ ଜେଜେମା କ'ଣ ଥାକବ ନାହିଁ ? ମତେ ସେ ଭାରି ଭଲପାଏ ।

ଝୋଷ ଆଖିରେ ଲୁହ ଦେଖି ଦୁଇହାତ ଯୋଡ଼ି ବେହେରାଏ ମୁଣ୍ଡରେ ଲଗାଇଲେ । ଆଖି ବୁଜି ମନେ ମନେ ଜଣାଣ କଲେ, ନାରାୟଣ, ନାରାୟଣ ! ଦୋଷ ଖଣ୍ଡନ କର । ଯେଉଁ ଅବସ୍ଥା ଦେଖୁଛି ମିଛ କହିବା ଛଡ଼ା ମୋ'ର ଅନ୍ୟ କି ଉପାୟ ଅଛି ?

ବେହେରାଏ ହାତ ହୁଗାଳି କପାଳରୁ ଓହ୍ଲାଇଲେ । ଝୋଷର ବିରସ ମୁହଁକୁ ଗ୍ଭହିଁ କହିଲେ, ତୋ' ମୁହଁକୁ ଥରେ ଅନାଇଁଦେଲେ, ତୋ ତୁଣ୍ଡରୁ ପଦେ କଥା ଶୁଣିଲେ, ତୋ ହାତ ଥରେ ତାଙ୍କୁ ଛୁଇଁଦେଲେ ତାଙ୍କର ଶେଷ ଆଶା ମେଣ୍ଟିବ ।

ସେ ଶାନ୍ତିରେ ଚିରଦିନ ଲାଗି ଆଖି ବୁଜିବେ ମା', ସେ ଗତିମୁକ୍ତି ପାଇବେ। ସେଇଥିପାଇଁ ତମ ବୁଢ଼ିଙ୍କୁ ଖବର ଦେବାକୁ ତୋ ବାପା ମତେ ପଠାଇଲେ। ଏ ଗାଁକୁ ଆଗରୁ କେବେ ଆସି ନ ଥିଲି। ତେବେ, ମୋ ଶ୍ୱଶୁର ଘର ଗାଁ ଏଇ ପାଖରେ। ତଥାପି ଗସ୍ତିର ବିଲ ବାଟରେ ଆସୁଣୁ ଭୁଆଁ ବୁଲିଲି। ସେଥିପାଇଁ ଡେରି ହେଲା। ଗୋଡ଼େ ଗୋଡ଼େ ଓଲଟି ଫେରି ଆଆନ୍ତୁ। ବେଶୀ ରାତି ହେଲାଣି। ପାହାନ୍ତାରୁ ଉଠି ଯିବ।

ପିଲାଦିନେ ଟଗ୍ରି ଦେଖିଛୁ।

ଗାଆଁର ରାମନବମୀ ଯାତରେ ସେ ବଶିଷ୍ଠ ହେଉଥିଲେ। ବୈଷ୍ଣବପାଣିଙ୍କ ସୁଆଙ୍ଗରେ ନାରଦ। କେବେ ଦୁଆରୀ।

ସେ ଆକାଶରୁ ଚୋଳ, ସତ ଫଳାଇ ଅଜବ ମିଛ କଥା ସେହି ରାତରେ ଗପି ଆସିଥିଲେ। ତା'ର ପରିଣାମ ଯେ ଭୟଙ୍କର ହେବ, ତାହା ସେ ସେତେବେଳେ ବିଚାର କରିପାରି ନ ଥିଲେ। ଟଗ୍ରିର ଅବସ୍ଥା ଦେଖି, ତା'ର ଦୁଃଖଦୁର୍ଦ୍ଦଶା ଅନୁମାନ କରି, ତାଙ୍କ ବିଚାରରେ ସତକୁ ଲୁଚାଇବାକୁ ସେ ବାଧ୍ୟ ହୋଇଥିଲେ।

ସେଥିପାଇଁ ଟଗ୍ରି କେବେ ତାଙ୍କର ଦୋଷ ଦିଏ ନାହିଁ। ସେହି ରାତିର ପରବର୍ତ୍ତୀ ଘଟଣା ତାଙ୍କର ଆଖିରେ ପଡ଼ିଥିଲା। ତାଙ୍କୁ ତଟସ୍ଥ କରିଥିଲା। ସେତିକି ନିଶ୍ଚୟ ତାଙ୍କ ମନରେ ସେତେବେଳେ ଧାରଣା ଆଣିଥିବ ଯେ, ମିଛର ଆଶ୍ରା ନେଇ ଟଗ୍ରିକୁ ସାନ୍ତ୍ୱନା ଦେଇ, ରାତି ଥାଉଣୁ ମଣିକୁଦ ଗାଁ ଛାଡ଼ି ଫେରିଯିବା ଛଡ଼ା ତାଙ୍କର ଅନ୍ୟ ଉପାୟ ନ ଥିଲା।

ଭଅଁଘର ଓ ଝିଅର ଫେରିଲାବେଳକୁ ଅପେକ୍ଷା କରୁଣୁ, ଟଗ୍ରି ତା'ର ସଂସାରର ସବୁ ଦୁଃଖ ଅଚ୍ୟୁତ ବେହେରାଙ୍କ ଆଗରେ ବର୍ଣ୍ଣନା କରିଥିଲା।

ଯାହା ସେ ଲୁଚାଇ ରଖିଥିଲା, ସେତିକି ତା'ର ଅତି ଆପଣାର। ଚନ୍ଦ୍ର-ସୂର୍ଯ୍ୟ ଜାଣନ୍ତି ନାହିଁ। ଜାଣିବେ ନାହିଁ। ତା'ର ଶୁଦ୍ଧଆତ୍ମା ତ ଜାଣେ ନାହିଁ।—

ନା, ଜାଣେ ନାହିଁ। ଲେଖିଲା ଆତୁରିଆ ଦେହ, ଉପାସିଆ ଟକଲିଆ ଜଳିଲା ପୋଡ଼ିଲା ଦେହ। ନିଶାପାଣିର ଝିପରେ ଘାରି ହେଉଥିବା ମନ। ସେହି ମନ ପୁଣି କେଉଁ ବ୍ରହ୍ମାଣ୍ଡର ଧାରଣାରେ ତରଙ୍ଗ। ସେ କି ବିଚାରନ୍ତା ଭଲ କଣ, ମନ୍ଦ କଣ ? ପାପ ଓ ପୁଣ୍ୟର ଆସ୍ୱାଦ ସେହି ମନ ଏ ଦେହକୁ ନଚାଇଥିଲା। ନରକକୁ ସରଗ ମଣାଇଲା।

ଭେଗଣା ପିଲାଙ୍କୁ ନକୁଆ ଆଖିରେ ଚାହିଁ, ଟଗ୍ରି ତା' ଦେହ ଆଉଁସିଲା। ମନେ ମନେ ସେହି ପିଲାଟିକୁ ଯେ କହିଲା, ମୁଁ ପାପ କରି ନାହିଁରେ ଧନ ! ସେତେ-ବେଳେ ମୋର ଚାରା ନ ଥିଲା। ମୋ' ଦେହର ଦାହ ବିବେକକୁ ମୂର୍ଚ୍ଛା କରିଥିଲା।

ମୁଁ ସେହି ଅଜଣା ପାପ ପାଇଁ ଅନୁତାପ କରୁଛି । ଆରେ ମୋ’ ଦୁଃଖୀ-ସଙ୍ଗାଳି ଅରକ୍ଷିତ, ତୁ ମୋ’ର ପାପର ଫଳ ନୁହୁଁ ।

ତବେ ବଡ଼ଠାକୁରେ ତତେ ଉଦ୍ଧାର୍ ରକ୍ଷା କରିବେ । କେହି ତୋ’ର କିଛି ଅନିଷ୍ଟ କରିପାରିବେ ନାହିଁ । ଏକା ସେହି ଚକାଡ଼ୋଳା ଆମର ସାହାଭରସା । ସେହି ଆମର ବଳରେ ପୁଅ ! ବାପ ଥାଉଣୁ ତୁ ନିଆଶ୍ରା ହୋଇଛୁ । ବାପର ମୁହଁ ତୁ ଦେଖି ନାହୁଁ । ସେ ଚଣ୍ଡାଳ ଥରେ ତୋତେ ଛୁଇଁଦେଇ ଯିବାକୁ ତା’ର ମନ ତଟୁ ନାହିଁ ।

ଶୁଣୁଛି ପରା, ତା’ର ଆଉ ଗୋଟାଏ ପୁଅ ଅଛି । ସୁନା ଦେହର ପେଟରୁ ସେ ଜନମିଛି । ରାକ୍ଷସୁଣୀ ସେହି ଧାରଣା ଗୋପ୍ୟରେ ତାକୁ ଦେଇଛି । ସବୁ ସମ୍ପତ୍ତି ଓଟାରି ନେଉଛି । ତୋ’ର ପୂର୍ବପୁରୁଷଙ୍କର ସେ ସମ୍ପତ୍ତି ଛତରଖଟା କୁରି କରି ଦେଉଛି ।

ଯାଉ ରେ ଧନ, ସବୁ ଯାଉ । ମୋହିନୀ ସେ ସୁନା ବଢ଼ଉଣୀ, ସବୁ ସିନା ନେବ, ଖୁଣ୍ଟିଆ ବଂଶର ନାଁର ମହତ ନେଇ ପାରିବ ନାହିଁ । ସେହି ନାଆଁର, ସେହି ମହତପଣର ତୁଇ ଅଧିକାରୀ ରେ ବାବୁ !

ଅରକ୍ଷିତ ଶୋଇଛି । ଝିଅ ତା ଦେହରେ ହାତ ମାରିଲା । ତାତି ଉଣା ହେଲାପରି ଲାଗୁଛି । ଗୁଡ଼ି ଦାଉଁ ଦାଉଁ ପଡ଼ୁଛି ।

ଭାବିଲା, ରାତି ପାହିଲେ ଅଚ୍ୟୁତ ମଉସା ପିଲାକୁ ଦେଖିବାକୁ ପୁଣି ଆସିବେ । ତାଙ୍କୁ, ନୋହିଲେ ତାଙ୍କ ପୁଅ ରାମଦାସ କି ରଥିଆକୁ ଡ଼ାକ୍ତରଙ୍କ ଘରକୁ ପଠାଇବ । ସନ୍ଧ୍ୟାବେଳେ ଅଚ୍ୟୁତ ଆସିଥିଲେ । ଖବର ବୁଝି ଯାଇଛନ୍ତି । ଏବଯାଏ ସେ ମଣୁଛନ୍ତି, ଝିଅର ଦୁର୍ଦ୍ଦଶା ପାଇଁ ଏକା ସେ ଦାୟୀ । ନିଜକୁ ନିଜେ ସେ ଦୋଷୀ କରୁଛନ୍ତି ।

ତିନି ବର୍ଷ ତଳର ସେହି ଅଶୁଭ ରାତରେ—

ହାଲିଆ ହୋଇ ଅଚ୍ୟୁତ ଶୋଇପଡ଼ିଲେ । ଭଅଁରୀକୁ ଅପେକ୍ଷା କରି ଝିଅ ଚେଇଁ ରହିଲା । ଛଟପଟ ଉଚାଟ ମନ ।

ଏମିତି କେତେ ରାତି କଟିଛି । ଉପାସ ଭୋକରେ ଝିଅଆରା ଆଗମନକୁ ଚାହିଁ ବେଳ ବିତିଛି । ତେବେ, ଭଅଁରୀମା ବୁଢ଼ୀ ପାଖରେ ଥାଏ । ତା’କୁ ନିଦ ଆକ୍ରାନ୍ତ କରିବା ଯାଏ ବାରକଥା ଗପେ । ଭଅଁରୀ ଗାଆଁକୁ ଫେରେ । କହେ, ସାଆନ୍ତେ ମଠରେ ନାହାନ୍ତି । ଆଉ କୁଆଡେ ଯାଇଥିବେ । କୋଉଠି ଆଉ ଖୋଜିବ ?

ଟେଣ୍ଡ ଭାଗ୍ୟକୁ ଆଦରି, ମନ ଦକ ଦକ ହୋଇ ବିଚଳା ଧରେ । କାହା ଆଗରେ ଦୁଃଖ ବଖାଣିବ ? କିଏ ତା'ର ଦୁଃଖ ଦୂର କରିବ ? କେହି ନାହିଁ । ଭାବେ, ଏତେ ଦୁଃଖ, ଏତେ ଅତ୍ୟାଚାର ସହି ସେ ଆଉ ମାଟିକାମୁଣ୍ଡା ପଡ଼ି ରହିବ ନାହିଁ । ଝିଅଆ ଯେତେବେଳେ ହେଲେ ଫେରିବ 'ତ ! ତା' ଘର ସଂସାର ତା' ଜିମା କରିଦେଇ ସେ ତା'ର ବାପଘରକୁ ଚାଲିଯିବ । କେହି ନ ପଚାରିଲେ ନାହିଁ । ସେ ଯାଇ ବଳେ ପଶିବ । ସାବତ ମା ତା'କୁ ଯେଉଁ ଦୁଃଖ ଦେଇଥିଲା, ଏ ଦୁଃଖ ତୁଳନାରେ ସେତକ ପାସଙ୍ଗରେ ପଡ଼ିବ ନାହିଁ । ସେ ଆଉ ଛୋଟ ଦୁବଳିଆ ଝିଅ ହୋଇ ନାହିଁ । ତା' ଉପରେ ଅତ୍ୟାଚାର କରିବାକୁ ସେହି ସାବତ ମାଆର ସାହସ କୁଳାଇବ ନାହିଁ ।

ଝିଅଆକୁ ଦେଖିଲେ ଟେଣ୍ଡ ତା'ର ସିଦ୍ଧାନ୍ତ ପାସୋରି ଯାଏ । ମନ ବିକଳ ହୁଏ । ଭାବେ, ଆହା, ସେହି ମଣିଷଟି, କ'ଣ ଥିଲା, ଏବେ କ'ଣ ହେଲାଣି ? କେମିତି ତା'କୁ ଛାଡ଼ି ତା'ର କଥିଟିକୁ ପେଟରେ ଧରି ସେ ଚାଲିଯିବ ? ତା'କୁ କିଏ ବାଟକୁ ଆଣି ପାରିବ ନାହିଁ ?

ସେ ପୁଣି ଝିଅଆର ସେବାରେ ଲାଗିପଡ଼େ ।

ଭଅଁରର ଡାକ ଶୁଭିଲା । ସେ କବାଟ ବାଡ଼େଇଲା । ଟେଣ୍ଡ ଆଲୁଅ ଧରି ପିଣ୍ଡାରୁ ଉଠି ଦାଣ୍ଡ ଘରକୁ ଗଲା । କବାଟ ଖୋଲିଲା । ଭଅଁର ଏକା ଘର ଭିତରକୁ ପଶିଲା ।

ଚ୍ଛନଆଁ ହୋଇ ଟେଣ୍ଡ ପଚାରିଲା, ସେ— ?

ଭଅଁର କହିଲା, ସାଆନ୍ତଙ୍କୁ ପାଇଲି ନାହିଁ । କେତେ ଆଡ଼େ ଖୋଜିଲି । କେଉଁଠି ଦେଖିଲି ନାହିଁ । ଗାଁ ସାରା ଶୂନ୍‌ଶାନ୍ । ସମସ୍ତେ କବାଟ ବନ୍ଦ କରି ଶୋଇଲେଣି । କାହାକୁ ଡାକିବି ?

—କେଉଁଠି ଥିବେ ବୋଲି ତୁ ଭାବୁଚୁ ?

—ମୁଁ କେମିତି ଜାଣିବି ?

ତତେ ସବୁ ଜଣା । ତମ୍ବୁରୁଙ୍କ ଘରକୁ ଯାଇ ତାଙ୍କୁ ଖୋଜିଥିଲୁ ? ମହାରଣା ଗାଆଁରେ ଅଛନ୍ତି କି ଆଉ କେଉଁ ଗାଆଁରେ ଠିକା କାମ ନେଇ ରାତିରେ ରହି ଯାଇଛନ୍ତି, ବୁଝିଥିଲୁ ?

– ସେଇ ବାଟେ ଆସିଲି ବୋହୂ, ମା ! ତାଙ୍କ ଘରେ ଆଲୁଅର ଆଭାସ ନାହିଁ । ସବୁ ଶୂନ୍‌ଶାନ୍ । କଣ୍ଟାଛିଆ ଲାଗୁଛି । କାହାକୁ ପଚାରନ୍ତି ?

—ତୁ ବଦମାସ୍ ମିଛ କହୁଛୁ । ଯାହା ଜାଣୁ ମତେ ଲୁଚାଉଛୁ । ତୁ କପଟିଆ ଲୁଚିମିଆ, ଅବିଶ୍ୱାସୀ ।

—ମୁଁ ଗରିବ ମୂଲିଆ ମା ! କେଉଁ ବହୁପରେ କାହା ଘରର କବାଟ ବାଡେଇ ଗାଢ ଅଧରେ ଶୋଇଲା-ଲୋକଙ୍କୁ ଉଠାଇଥାନ୍ତି ? ସେମାନେ ମୋ ପିଠିରୁ ଛାଲ ଉତାରି ଦେଇଥାନ୍ତେ । ମିଛରେ ମୋତେ ଚୋର ଡକାୟତ କହନ୍ତେ । ବାନ୍ଧି, ଘୋଷାରି ଫାଣ୍ଡିକି ନଅନ୍ତେ ।

ଯାଆନ୍ତେ ମତେ କୋଠିଆପଣରୁ ବାହାର କଲେ । ଚାଷ ଛାଡ଼ିଲି । କାହିଁକି ମତେ ଆଉ ରଖନ୍ତେ ? ବାକିଆ ବର୍ତ୍ତନ ପାଇଁ ତାଙ୍କ ପଛରେ କୁକୁର ପରି ଗୋଡ଼ାଇଛି । ତମର ଦଶା ମୁଁ ଭୁଲି ପାରୁନାହିଁ । କେମିତି ନମକହାରାମ କରିବି ? ସେଥିପାଇଁ ମୋ' ରୋଗଣା ବୋଉକୁ ଛାଡ଼ି ଆସିଥିଲି । ଗାଢ ଅଧରେ ପରଙ୍କ ମାଡ଼ ସହି ବନ୍ଧା ହୋଇ ଫାଣ୍ଡିକି ଗଲେ, କିଏ ମୋ' ପିଠିରେ ପଡ଼ିବ ? କିଏ ମୋତେ ସାହା ହେବ ? ମୋ ବୋଉକୁ ବଞ୍ଚାଇବ ?

ଭେଣ୍ଡା ଟୋକାଟା ଭଉଁରି କାନ୍ଦି ପକାଇଲା ।

ଟଗ୍ରି ତାଟଙ୍ଗା ହୋଇ ଶୁଣିଲା । ନିଜର ଦୁଃଖ ଭୁଲି ସେ ବିଚାରି କଲା, ଭଉଁରି ସତ କହୁଛି । ଏତେ କଥା ଏକା ନିହସରେ ସେ କେବେ କହିବାକୁ ସାହସ କରି ନଥିଲା । ତା ଆମ୍ଭାକୁ ବାଧିଲାରୁ ମନର ଦୁଃଖ ଆପେ ଆପେ ତୁଣ୍ଡରୁ ଗଳି ପଡ଼ିଲା ।

ଟଗ୍ରି କହିଲା, ତୁ ମୋର ସାନ ଭାଇ ପରି ରେ ! ଘୃକର ବୋଲି ତତେ ମଣେ ନାହିଁ । ତୋଅରି ଭରସାରେ, ତୋଅରି ବଳରେ ମୁଁ ବଞ୍ଚି ରହିଛି, ନୋହିଲେ କେବେଠାରୁ ପ୍ରାଣ ହାରନ୍ତିଣି ।

—ସେମିତି କହନା ବୋହୂ ମା !

—ବୁଝିଛୁ, ଜୀବନ ହାରିବା ମହାପାପ । ମରଣ ପରେ ବି ଦହଗଞ୍ଜିଆ ଆମ୍ଭାକୁ ଯମପୁରରେ ଠାବ ମିଳେ ନାହିଁ । କାହିଁ କୁଆଡ଼େ ପଳାଇ ଯିବାକୁ ଉପଯନ୍ତ ମନ ବୋବାଳି ଛାଡ଼େରେ ଭାଇ ! ଦାଣ୍ଡକୁ ଗୋଡ଼ ବଢାଇଲେ ଦୁଇ ପାଦ ଯାଇ ତ୍ରିଶଙ୍କୁ ପାହୁଣ୍ଡ ଶୂନ୍ୟରେ ଝୋଙ୍କହୋଇ ରହେ । ଆଗରେ ଆସି ମୋ ଶାଶୁଙ୍କ ଛାଇ ଠିଆ ହୁଅନ୍ତି ।

—ଏଁ—ପେରେତ !

—ନାଇଁରେ ଭଉଁରି । ସେ ପୁଣ୍ୟାତ୍ମା । ସେ ସତୀ ସୁଲକ୍ଷଣୀ ଲକ୍ଷ୍ମୀ-ଠାକୁରାଣୀ ଥିଲେ । ମଲେ ତ ମୋକ୍ଷ ହୋଇଗଲେ । କାହିଁକି ବଞ୍ଚିରହି ଛତରି ବାଳୁଙ୍ଗା ପୁଅର ଅବଗୁଣ ଦେଖିଥାନ୍ତେ ! ହାତ ପିଠିରେ ଲୁହ ପୋଛି ମୋ' ପଣକା ଛଟପଟ ବିକଳ ହୋଇ ବେଲ କଟାନ୍ତେ । ମୋ ମନ ଭିତରେ ତାଙ୍କର ରୂପର ଛାଇ ଲୁଚି ରହିଛି । ମନେ ପକାଇଲେ, ସେହି ଛାଇ ଆସି ମୋ ଆଗରେ ଉଭା ହୁଏ ରେ ଭଉଁରି । ମୋର ସବୁଦୁଃଖ ତାଙ୍କୁ ଦେଖିଲେ ଦୂର ହୁଏ । ବୁଝିଲୁ ?

—ହଁ, ବୋଉ ମା !

—ତୋ' ବୋଉ ବାଧକା ପଡ଼ୁଛି । ଆଜ ଆମ ଗାଆଁରୁ ମଉସା ଆସିଛନ୍ତି । ତୁ ଯା ତୋ' ବୋଉ ପାଖକୁ । କାଲି ସକାଳୁ ନିଶ୍ଚେ ଆସି ବୁଢ଼ୀ ଦେହର ହାଲ ମତେ ଜଣାଇବୁ । ଯା— ।

ଭଅଁରୀ ଗୁଲିଗଲା ।

ନିରୁପାୟ ହୋଇ ଟେଷ୍ଟି ଦାଣ୍ଡ କବାଟ କିଳି ଅଗଣାକୁ ଆସିଲା । ମନର ସବୁ କୋହ ମରିଯାଇଛି । ଖାଲି ମନେପଡ଼ୁଛି ବେଗଣୀ ଜେଜେମାଆଟି । ତା'ର କୋଳରେ ଗୁପିହୋଇ, ଆଖିରୁ ଲୁହ ଢାଳି ସେ ସାବତ୍ ମା' ନାଁନ୍ଟୁଙ୍କର ସବୁ ଅତ୍ୟାଚ୍ୟର ଭୁଲେ । ସତେ କ'ଣ ଟେଷ୍ଟିକୁ ଦେଖିବା ଯାଏ ସେ ବଞ୍ଚି ରହିଥିବ ? ଟେରଆ କ'ଣ ତାକୁ ସଙ୍ଗରେ ନେଇ ଯିବ ? ଉପୁନା ଧାନ ଗଜା ହେବା କଥା । ଟେରଆର ଘର ଛାଡ଼ି, ତାକୁ ଏକୁଟିଆ ପକାଇ, ସେ ବା କେଉଁ ଯିବ କିପରି ? କାହା ସଙ୍ଗରେ ?

ଟେଷ୍ଟି ଆକାଶକୁ ଗୁହିଁଲା । ଜହ୍ନ ମଥାନ ଉପରୁ ତଳକୁ ଖସିଗଲାଣି । ଗ୍ରାମ ଅଧ ଗଡ଼ିଗଲାଣି । ସୁଖ ଶାନ୍ତିରେ ଯେଉଁମାନେ ସଂସାର କରୁଛନ୍ତି, ସେମାନଙ୍କର ଢ଼'ଢ଼' କଡ଼ ନିଦ ଭାଙ୍ଗି ପୁଣି ଆଖିକୁ ନିଦ ଘୋଟୁଥିବ । ଆଉ ସେ, ହୀନ କପାଳୀଟା । ଏବଯାଏ ଛଟପଟ ହେଉଛି । ଉପାସ ଭୋକ ତା'ର ଦେହସହା ହେଲାଣି । ସେତକ ସହିହେବ । କିନ୍ତୁ, ଟିକିଏ ଆଖି ନ ବୁଜିଲେ ନିଦ ମାଉସୀ କୋପ କରିବ । ବେଶୀ କୋପ କଲେ ବେଳ ଅବେଳ, ସ୍ଥାନ, ବସ୍ତୁର ସେ କରିବ ନାହିଁ । ତା' ପାଉଣା ସେ ଶୁଝାଇ ନେବ ।

ଟେଷ୍ଟି ନିଜକୁ ନିଜେ ସାନ୍ତ୍ୱନା ଦେଲା—ଚଳନ୍ତା ଜହ୍ନର ଆଲୁଅ-ଛାଇ ଖେଳ ପରି ଚଳନ୍ତି-ଜୀବନରେ ସୁଖ ଦୁଃଖର ଖେଳ । ଜହ୍ନ କ'ଣ ବାଧା ଦେଇ ପାରୁଛି, ନା ରୋକ ପାରୁଛି ? କୁଆଡ଼ୁ କୁଆଡ଼ୁ ମାଡ଼ିଆସୁଛି । ପଛକୁ ପଛ ମେଘ ଫଉଜ । କେତେ ରଙ୍ଗର, କେତେ ଢଙ୍ଗର । କିଏ ବହଳ କିଏ ପାତଳ । ସହଳ, ଉଚ୍ଛୁର ଯାହା ହେଲେ ବି ଏକ ପରେ ଏକ-ଭାସି ଯାଉଛି । ନେଳି ଆକାଶର ତାରା ଗହଣରେ ଦାଗ ଲଗା ଜହ୍ନ ପୁଣି ହସି ଉଠୁଛି । କିଏ ଜାଣେ, ହସି ହସି ସେ ତା ମାଆ କୋଳରେ ପଶିବ କି ମେଘ ଉହାଡ଼ରେ ମୁହଁଛପା ଦେଇ ବୁଲିବ ?

ସେମିତି ଏ ଜୀବନ ।

ଟେଳି ବିଶ୍ରାମ ନେବାକୁ ଝରଆର କୋଠରୀରେ ପଶିଲା । ଦରସଫା ନଳଟେଣିଟି କମାଇ ପିଣ୍ଡାରେ ଥୋଇ କବାଟ ବନ୍ଦକଲା । ପଲଙ୍କରେ ପଡ଼ି ଆଖି ବୁଜିଲା । ଦେହ ଅବଶ । ମନ କ୍ଳାନ୍ତ । କାନ ଭାଁ-ଭାଁ । ତଥାପି ଶାନ୍ତିହୀନ ନିଦ ଘୋଟିଆସିଲା ।

ଶୟନ କୋଳରେ ସପନ ।

ଗତ ଓ ଆଗତର ଆତଯାତ । ଭେଟାଭେଟି । ଧସ୍ତପସ୍ତ । ପୁଣି ସେହି ଭୟଙ୍କର ରାମଣ୍ଡାର ଆଗମନ । କାହିଁ କେତେ ଦୂରରୁ ସେ ଧାଇଁ ଆସୁଛି । ଲହଲହ ଲମ୍ବିଲା ଜିଭ । ପାଖକୁ, ଆହୁରି ପାଖକୁ ଲାଗି ଆସୁଛି । ଭୟରେ କାତର ହୋଇ ନଅ ବର୍ଷର ଝିଅଟି ଟେଳି ମୁହଁ ବୁଲାଇ ଧାଇଁଛି ।

ଆଗରେ ଲଙ୍ଗୁଳି ଗୋସାଇଁଙ୍କ ମାରଣା ଷଣ୍ଢଟା ! ଶିଙ୍ଗ ଦୁଇଟା ଗୋଜା-ଗୋଜା । ଏକ ଶିଙ୍ଗରେ ମଣିଷ ମାରେ, ଦୁଇ ଶିଙ୍ଗରେ ପର୍ବତ ଟାଳେ । ରଙ୍ଗ ଆଖିରେ ତେଢ଼େଇ ଚାହିଁଲାଣି । ହେଣ୍ଟାଳ ଗୁଡ଼ ମୁଣ୍ଡ ହଲାଇଲାଣି । ଏଥର ଧାଇଁବ । ଭୁଷିବ ।

ନଅ ବର୍ଷର ଝିଅ ଟେଳି ଦୁଇ କଡ଼କୁ ଚାହିଁଲା । ଅଣ ଓସାରିଆ ଗହ୍ୱର-ବିଲର ହିଡ଼ଗୁଡ଼ିଆ ବାଟ । ଡାହାଣ ପାଖରେ ପୁରୁଣା ଗଡ଼ଆର ପଙ୍କୁଆ ଗଡ଼ିଆଣି । ଜୋକ ସଲବଲ କୋଇଲଖିଆ କଣ୍ଟାବଣରେ ଭଡ଼ହୋଇଛି । ବାଆଁ ପାଖରେ ହୁଙ୍କା ତଳେ ବୁଢ଼ା ନାଗଟା ଫଣା ଟେକି ଜିଭ ଲହ ଲହ କରୁଛି ।

ହତାଶ ହୋଇ ଟେଳି ପଛକୁ ଚାହିଁଲା । ସେ ରାମଣ୍ଡା ନାହିଁ । ହାତରେ ପାଞ୍ଚଣ ଧରି, ବାଳ ମୁକୁଳା କରି ଅଧଲଙ୍ଗୁଳି ମାଇକିନାଟାଏ । ଅଣ୍ଟାରେ ପଣତ ଗୁଡ଼ାଇ ଧାଇଁ ଆସୁଛି । ହେଇଟି ପାଖେଇ ଆସିଲା । ପିଟି ପିଟି ଲହୁଲୁହାଣ କରିବ ।

ଯେଇଟା ତା'ର ସାବତ ମା ନାଟୁଆ !

ଟେଳି ପଛକୁ ଅନାଇଁ ଆଗକୁ ଧାଇଁଲା । ପୁଣି ଆଗକୁ ଚାହିଁଲା । ଷଣ୍ଢ କୁଆଡ଼େ ଛପିଗଲାଣି । ଦୁଇ ବାହୁ ପ୍ରସାରି ଦିବ୍ୟ ପୁରୁଷ ଧୀରେ ଧୀରେ ଆଗେଇ ଆସୁଛନ୍ତି । ନିଜେ ଶିବଶଙ୍କର ସେ । ଶିବ ବାବା । ଖୁଣ୍ଟିଆ ଘରର ଦୁଃଖିନୀ ଭୁଆସୁଣୀ ବୋହୂଟି ସେ, ନିସ୍ତମାଖି ଟେଳି । ତା'ର ମନକାମନା ପୁରଣ କରିବେ । ଆଉ କି ଡର ?

ତା'ର ଭ୍ରମ ହୋଇଥିଲା । କାହିଁ ସେ ନାଟୁଆ ? କେବେ କାଳର କଥା । ତା' ବଉଳ ସୁନାଦେଈ ତ !

ଆ ଛି । ହାତରେ ବଉଳଫୁଲର ମାଳ ! ଟେଳିର ଗଳାରେ ବାନ୍ଧିବ । ଟିକି ପୁଅକୁ ଦେଖିବ । ଶିବ କଳାରେ ଜନମ । ତା' ନା ଶିବକଳା ପରା ? ସୁନାଦେଈ କହୁଛି, ମୋ ଝିଅ ଶଙ୍କରୀକୁ ତାକୁ ବାହା କରେଇବ ।

ହଇ ଲୋ ! ତୋ'ର ଏଡ଼େ ବଡ଼େଇ, ବଡ଼ଭଉଣୀ, ଛତରୀ କୁଳଟା ! ସାଇ ଭଉଣୀକୁ ବାହା କରେଇବୁ ? ମଲୁ ନାହିଁ ଲୋ ! କର୍ଅଲକ୍ଷ୍ମୀ ? ବାହାର, ବାହାର ମୋ ଘରୁ ।

ଶାଶୁଙ୍କ ପାଟି ପର ଶୁଭୁଛି । ଶିବବାବା ଉଭେଇଗଲେଣି । ଶାଶୁ କହୁଛନ୍ତି, ତୋ ଶଶୁର ଲୋ ମା ! ଟିକ ମୁହଁ ଦେଖି ଚହ୍ନି ପାରୁନୁ ? ଗୁହଲୁ ?

କାହିଁ ଶିବକଳା ? ସେ ତା ଗେରସ୍ତ ଝରଆ, ହାଡ଼ମାଳଆ । ପାଖରେ ଶୋଇଛି ।

ଉଠି ପଳାଇବ କ ? କେଉଁ ମାଙ୍କ ତାର ଡାକ ଗୁଡ଼ଲଣି । ହେଇଟି, ଶୁଭୁଛି, କଏ ଦାଣ୍ଡ କବାଟ ବାଡ଼ଉଛି ।

ଟେଗର ସପନ ବଟେର ନଦ-ଜରଜର ହାନ୍ତ ଅଣ୍ଡାଳ ହେଲା । ସେ ନାହିଁ । ଉଠି ଚାଲଗଲା ?

ଟେଗର ନଦ ଭାଙ୍ଗିଲା । ଧଡ଼ପଡ ହୋଇ ଉଠି ବସିଲା । ସର୍ବାଙ୍ଗ ଥରୁଛି । ଘର ଅନ୍ଧାର । କବାଟ ମୁକୁଳା ହୋଇ ନାହିଁ ।

ସପନ । ଝରଆ ଫେଣ ନାହିଁ । କେତେ ରାତ ହେଲ ? ସେ ଯେଇଠି ରହଲ କ ? ସେଇ ଡାଆଣୀଟା ପାଖରେ, ଯିଏ ତା'ର ଧନ ଜୀବନ ଶୋଷି ନେଉଛି । ସମ୍ପତ୍ତିବାଡ଼ି ଓଟାଣ ନେଲାଣି ।

ନଜକୁ ନଜେ କହହେଲ, ରହ ଦେଖିବ ଲୋ ଛତରୀ ! ତୋ'ର ଦନେ କ ମୋ'ର ଦନେ । ଜାଣି ଜାଣି ମୋ ଅଜାଣତରେ ମତେ ଦନେ ଚଣ୍ଡିକା କରକରଥିଲୁ । ମୁଁ ଦନେ ସେଇଆ ହେବ । ତୋ ତଣ୍ଟି ଚୁଣିବ । ସମସ୍ତେ ଜାଣନ୍ତୁ ।

ବାହାରେ ଖୁଡ଼୍ ଖାଡ଼୍ ଶବ୍ଦ ଶୁଭଲ । କଏ କାଶୁଛି । ଅଚ୍ୟୁତ ମଉସା ଉଠିଲେ କ ଆଉ ? ରାତ କ'ଣ ପାହାନ୍ତା ହେଲ ? ଏହ ଚନ୍ତାରେ ଟେଗ କାନେଇଲ । ଦେହ ଅବଶ ଲାଗୁଛି । ତା'ର କାନରେ ପଡ଼ଲ, କଏ ଯେପର ଦାଣ୍ଡ କବାଟ ବାଡ଼ଉଛି । ଭଅ ରାର ନାମ ଧର ଡାକୁଛି । ଟେଗ ଚହିଁକ ଉଠିଲ । ମନେ ହେଲ, କଏ ଯେପର ଦାଣ୍ଡ ଘରର କବାଟ ଖୋଲୁଛି । ଶିକୁଳ ଖସିବାର ଶବ୍ଦ । ଗଲା ଖଙ୍କର ।

ଟେଗ କବାଟ ଫିଟାଇଲ । ପଦାକୁ ଆସିଲ । ଜହ୍ନ ଚାଲଘରର ମଥାନ ଉପରୁ ନଇଁଗଲାଣି ଆହୁର ତଳକୁ । ଦଶୁ ନାହିଁ । ଅଗଣା ଅନ୍ଧାରଆ । କନ୍ତୁ ମଥାନ ଉପରେ ଆକାଶରେ ଜହ୍ନ ଆଲୁଅର ଆଭାସ । ରାତ ପାହ ନାହିଁ । ଶେଷ ପହର ।

ପିଣ୍ଡାର ଆଲୁଅ ଅଚ୍ୟୁତ ବେହେରା ହାତରେ ଧର ଦାଣ୍ଡ ଘରର ବାହାର ପାଖ-କବାଟ ନକଟରେ ଠିଆ । ଘର ଭିତରକୁ ଗୋଟିଏ ପାଦ ମକାଇ,

ଚଉକାଠରେ ହାତଭରା ଦେଇ ଝିଅଟି ଠିଆ ହୋଇଛି । ବଲବଲ କରି ଚାହିଁଛି । କ'ଣ ସେ ଭାବୁଛି କେଜାଣି ?

ଅଚ୍ୟୁତ ବେହେରାଙ୍କୁ କେବେ ସେ ଆଗରୁ ଦେଖି ନ ଥିଲା । ବେହେରାଏ ଦେଖିଥିଲେ, ଥରେ ତାକୁ ଦେଖିଥିବେ ବାହାଘର ବେଳେ । ପାଞ୍ଚ ବର୍ଷ ତଳେ । ସେତେବେଳେ ସେ ଛନଛନିଆଁ ଉଣେଇଶ ବର୍ଷର ଟୋକା । ରାଜା ପୁଅପରି ରୂପ । ଆଉ ଏବେ ? ଦୁଦ୍ଦଳିଆ । କେମିତି ଚହ୍ଲଚନ୍ତ ?

ଟଭି ଟଳଟଳିଆ କେଇ ଖେପାରେ ଦାଣ୍ଡଘରେ ପହଞ୍ଚିଲା । ଅଚ୍ୟୁତ ବେହେରା କଢ଼େଇ ଗଲେ ।

ଟଭି ଝିଅଟିର ହାତ ଧରି କହିଲା, ସେ ମୋ ମଉସା । ଆମ ଗାଆଁରୁ ଖବର ନେଇ ଆସିଛନ୍ତି । କେଜେ ମା ବୁଢ଼ୀର ଦେହ ଭାରି ଖରାପ !

ଝିଅଟି ହାତ ଛୁଆଡ଼ି ଟଭିର ମୁଠା ଖସାଇଲା । ଟଳଟଳ ପାଦ ପକାଇ ଘର ଭିତରକୁ ଆସିଲା । ଅଚ୍ୟୁତ ବେହେରାଙ୍କ ମୁହଁକୁ କଟମଟ କରି ଚାହିଁଲା । ବେହେରା ବି ତାକୁ ଚାହିଁ ରହିଥିଲେ ।

କି ଅଲକ୍ଷଣା ରୂପ ! ଝିଅଟି ସମ୍ବନ୍ଧରେ ଯାହା ସେ ଶୁଣିଥିଲେ; ଦେଖିଲେ ତହୁଁ ଅଧିକ । ଖୁଣ୍ଟିଆ ଘରର ଯବାନ ଟୋକା, କାର୍ତ୍ତିକ ମହାନ୍ତିଙ୍କ ଜୋଇଁ ! କି ଦଶା ହୋଇଛି, ନିଶାପାଣିର ଦାଉରେ !

ଦେହର ଜାମା ଓ ପିନ୍ଧା ଲୁଗା ଠାଏ ଠାଏ ମଇଳା ହୋଇଛି । ଜାମାର ଛାତି ପକେଟ ଛିଣ୍ଡି ଓହଳିଛି । ସେମିତି ବାଁ ପାଖ ହାତ କନାରୁ ଚୁଲାଏ । କପାଳ ଉପରେ ଓ ଗାଲ ଉପରେ ଆମ୍ପୁଡ଼ା ଦାଗ । ବାଟରେ ପଡ଼ି ଉଠି ଆସିଛି । ଅବା କିଏ ତା'କୁ ଗଡ଼େଇ ତଡ଼େଇ ପିଟିଛି ।

ବେହେରାଙ୍କ ମନ ହା-ହାକାର କଲା । କେଡ଼େ ଭାଗ୍ୟକପାଳୀ ଏଇ ଟଭି ଝିଅଟି !

ଟଭିର ଏ ଦୃଶ୍ୟ ଦେହସହା ହୋଇଛି । ତାର ଆଖି କାନ୍ଦୁନାହିଁ । ଆତ୍ମା କାନ୍ଦୁଛି ।

ବେହେରାଏ ଦେଖିଲେ, ସେ ନିର୍ବିକାର ହୋଇ ଦାଣ୍ଡ କବାଟ କିଳିଲା । ପୁଣି ଝିଅଟିର ହାତଧରି ଆଗକୁ ଓଟାରି କହିଲା, କିଏ ତମକୁ ଏତେ ସରି କଲା ମୁଁ ଜାଣିଛି । ହଉ ଆସ ।

ଟଭି ତାକୁ ଓଟାରିଲା । ଝିଅଟି ହାତ ଛୁଆଡ଼ି ମଧ ନିଜକୁ ମୁକୁଳା ପାରିଲା ନାହିଁ । ଟାଣିହୋଇ ଯାଉଥିବା କହିଲା, ଛାଡ଼ିବେ ମତେ । ସେ ବାବନାଭୂତକୁ ଗୋଟାକେତେ ଥୁଏଁ । ଶଳା ବାଘର ଘରେ ମିଶରର ନାଟ ଲଗେଇଛି । ନିଜକୁ ସତ୍ତା ବୋଲାଇ ମୋ ସୁନାକୁ କହୁଛି ଦୋସ୍ତରୁଣୀ ।

ଅଗଣାରେ—

ଆଲୁଅ ଧରି ଅନୁତ ବେହେରା ପଛେ ପଛେ ଆସୁଥିଲେ । କଣ ଘରେ, ଯେଉଁଠି ସେ ବିଶ୍ରାମ ନେଇଥିଲେ, ଡିବିରି ଆଲୁଅ ଜଳୁଥାଏ । ବତାରେ ଗୁଳ ଲଗିଥିବାରୁ ଆଲୁଅର ଶିଖା ନିସ୍ତେଜ ନାଲିଆ ଦିଶୁଥାଏ । ହାଲିଆ-ନଦ କଡ଼େ ଗର୍ଜିଲା ପରେ, ମଶାଙ୍କ ଦାଉରେ ଛଟପଟ ହୋଇ ବେଲ କାଟିଥିଲେ । ତଥାପି, ଥକିଲା ଆଖି ବୁଜି ହୋଇ ଯାଉଥାଏ । ଗାଢ ସର ଆସିଲାଣି । ଯେଉଁ ଉଦ୍ଦେଶ୍ୟରେ ସେ ଆସିଥିଲେ, ସେତକ ସଫଳ ହେଲା ନାହିଁ । ଆଉ ଏ ଘରେ ମୁହୂର୍ତ୍ତେ ରହିବେ ନାହିଁ । ଯାହା କପାଳ ସିଏ ଭୁଞ୍ଜିବ । ବଦଳାଇବାକୁ କାହାର ସାଧ ଅଛି ?

ଏପରି ଭାବି, ସେ ନଳଟେଣି ଟଗ-ଝିଅଆଙ୍କର ରହୁଥିବା କୋଠରି ଆଗର ପିଣ୍ଡା ଉପରେ, ଖୁଣ୍ଟ ପାଖରେ ରହିଲେ ।

ଟଗର ହାତ ମୁଠାରୁ ମୁକୁଳିବାକୁ ଅଗଣା ମଝିରେ ଝିଅଆ ଓଟାରି ହେଉଥାଏ । କହୁଥାଏ, ଗୁଡ଼ ବେ ମତେ । ସେ ଶଳା ବାବନାଭୂତର ଜୀବନ ନିଏ । ବାଘର ଘରେ ନାଟ ଲଗେଇଛି ।

—ସେମିତ କାହିଁକି ହଉଛ ଝିଅବାବୁ ? ଏତେବେଳ ଯାଏ ନିଶା ତମକୁ ଘାରୁଛି । ଯାଅ, ଘର ଭିତରକୁ ଯାଅ । ଟିକିଏ ଶୋଇପଡ଼ । ଏମିତ ବାଇଆଙ୍କ ପରି ହୁଅ ନାହିଁ ।

ଅନ୍ୟୁତ ବେହେରାଙ୍କ କଥାରେ ଅଧିକ ଉତ୍ତେଜିତ ହୋଇ ଝିଅଆ କହି ଉଠିଲା, ବାଇଆ, କିଏ ବାଇଆ ? ଶୋଇବ, କାହିଁକି ଶୋଇବ ? ମୋ ମାଇପକୁ ଧରି ତୁ ଶୋଇଛୁ ? ଶଳା !

ଟଗ ଗର୍ଜି ଉଠିଲା, ସେ ମୋ ମଉସାଟି ! କ'ଣ ଗୁଡ଼ାଏ ଗପୁଛ ? ଲାଜ ସରମ ନାହିଁ ? ଚାଲ ଘର ଭିତରକୁ ।

ଟଗ ଗୋଟାଏ ଝିଙ୍କାରେ ଝିଅଆକୁ ତା କୋଠରି ଆଡ଼କୁ ଟାଣି ନେଲା ।

ଝିଅଆ ପାଟି କରି ଉଠିଲା, ତୋ ମଉସା ନା ତୋ' ଘଇତା ଲୋ ଶାଳୀ ଦୋଗୁରୁଣୀ ! ମୁନାକୁ ଝିଙ୍ଗାସି ତୁ ଘରୁ ତଡ଼ି ଦେଇଥିଲୁ ନା ? ମତେ ସେ ଘରେ ଠାବ ଦେଲ ନାହିଁ । ତୁ ଦୋଗୁରୁଣୀ ନିକଳ ମୋ ଘରୁ । ଯା, ତୋ' ଘଇତା ସାଙ୍ଗରେ । ଯା, ଯା, ଯା—

ଝିଅଆର ଅଶ୍ଳୀଳ ଝିଙ୍ଗାସରେ ଟଗର ଧୈର୍ଯ୍ୟ ତୁଟିଲା । ସୁନାର ଉପଲକ୍ଷ ହିଆ କଥାରଙ୍କକରେ ନିଆଁ ଲାଗିଲା ପରି ତାର ଦେହରେ ଚରିଲା । ଧୀରସ୍ଥିର ପ୍ରକୃତିର ସର୍ବସହଣୀ ଝିଅ, କ୍ଷଣକ ପାଇଁ ଭୁଲିଲା ଯେ ତା'ର ସ୍ୱାମୀ ପ୍ରକୃତିସ୍ଥ ହୋଇ ଯେଉଁ ଅପନା ଶବଦ ତୁଣ୍ଡକୁ ଆଣିଛି, ସେତକ ତା'ର ମନର ଭାଷା ନୁହେଁ । ଭଲବେଳରେ ହୁଏତ ସେ ଶଶୁର ଘରର ଲୋକଟି ଆଗରେ ମୁହଁ ଖୋଲି

ନଥାନ୍ତା । ଅଚ୍ୟୁତ ବେହେରାଙ୍କ ଆଗରେ ପ୍ରକାଶିଲା ଅଭଦ୍ର ଭାଷାରେ ସେ କ୍ଷଣକ ପାଇଁ ପାଗଳ ହେଲା । ସବୁ ଦୁଃଖ ନିର୍ଯାତନା ନୀରବରେ ଅଙ୍ଗରେ ଭେଦାଇ ଯିଏ ସାତ ବର୍ଷ କାଳ ସ୍ୱାମୀର ସେବା କରିଥିଲା, ସେହି ଟଙ୍କି କ୍ରୋଧରେ ଅନ୍ଧ ହୋଇ ଝିଅର କୋମଳ ଦୁର୍ବଳ ଦେହରେ ଗୁଡୁପା ମାରିଲା ।

ଝିଅ ଚିହିଙ୍କି ଉଠିଲା । ଭୁଲି ପଡ଼ି ଟଙ୍କିର ମୁକୁଳା-ମୁଣ୍ଡର କେଶକୁ ମୁଲାଏ ମୁଠାଇ ଧରି ଝିଙ୍କିଲା । ପାଟି କରିଉଠିଲା, ହଇବେ ଶାଳି, ମତେ ତୁ ମାଇଲୁ ? ତୋ ଘଇତା ଆଗରେ ?

ଟଙ୍କିର ମୁଣ୍ଡକୁ ପିତ୍ତ ଚଢ଼ିଗଲା । ସେ ଝିଅର ଗାଲରେ ବ୍ରହ୍ମ-ଚାପୁଡ଼ା ଥୋଇ ଗର୍ଜିଉଠିଲା, ହଇରେ ଗୁଣ୍ଡୀଲା, ତୁ ମତେ ସୁନାବଉଡ଼ଣୀ ମଣିଲୁ କି ? ମୁହଁ ସମ୍ଭାଳି କଥା କହ । ତୋ'ର ସବୁଦିନେ ତ ମୋ ର ଦିନେ । ବହୁତ ସହିଲିଣି । ଆଉ ସହିବି ନାହିଁ ।

ଝିଅ ଟଙ୍କିର କେଶ ଛାଡ଼ି ଗାଲ ଆଉଁସୁଥିଲା । ଟଙ୍କି ତାର ହାତ ଧରି ଘର ଭିତରକୁ ଓଟାରିନେଲା । ତାକୁ ପଲଙ୍କ ଉପରକୁ ଠେଲି ଦେଇ ଗର୍ଜି ଗର୍ଜି କହିଲା, ସେଇଠି ବସିଥା । ତୋ' ବାବାଜୀ ମୋ ଭିତରୁ ଗୁମଣ୍ଡା ଉଡ଼ାଉଛି ରେ ଛତରୀ ! ମତେ ତୁ ଗୁମଣ୍ଡା କରୁଛୁ । ମୋ ଭିତରେ ତୋ ବୋପା ଆସି ପଶିଛି । ସେ ତୋର ସବୁ ଢଙ୍ଗ ଦେଖୁଛି । ମୁଁ ଗୁମଣ୍ଡା ରେ ବଦମାସ୍ ! କାହାର ଡ଼େଉଁରିଆ ମାନେ ନାହିଁ ।

ଝିଅ ନିଶ୍ଚଳ ହୋଇ ବସିରହିଲା !

ଟଙ୍କି ଅଗଣାକୁ ଆସିଲା । କେଶ ମୁକୁଳା । ଦେହ ଥରୁଛି । ଆଖିରୁ ଜୁଳୁଜୁଳିଆ ଧୋକ ବାହାରୁଛନ୍ତି । ମୁଣ୍ଡ ଭ୍ରମୁଛି । ସେ ଦେଖିଲା, ତାର ଅଚ୍ୟୁତ ମଉସା ପଥର ମୂର୍ତ୍ତିପରି ଠିଆ ହୋଇଛନ୍ତି । ଏକ ଆଖିରେ ଚାହିଁ ରହିଛନ୍ତି । ତୁଣ୍ଡରେ କଥା ନାହିଁ ।

ସେ ସକେଇ ସକେଇ କାନ୍ଦି ଉଠିଲା ।

ଅଚ୍ୟୁତ ଆଖି ପୋଛି କହିଲେ, କାନ୍ଦୁଛୁ କାହିଁକି ? ସେ ତା'ର ବଶରେ ନାହିଁ । ତୁ ତା' ପାଖକୁ ଯା । ତା ପ୍ରତି କଠୋର ହବୁ ନାହିଁ ମା ! ବହୁତ ସହିଲୁଣି । ଆହୁରି ସହିବାକୁ ହେବ । ବୁଝାଇ ଶୁଝାଇ ତା'କୁ ବାଟକୁ ଆଣିବୁ ! ତା ଦେହରେ କେବେ ହାତ ଦେବୁ ନାହିଁ ।

—ସହି ପାରିଲି ନାହିଁ ।

—ସହିବାକୁ ହେବ । ଘଡ ପାହାନ୍ତା ହେବାକୁ ବସିଲାଣି । ମୁଁ ସହିଲ ସହିଲ ଗ୍ଲଲଯାଏ । ତୋ ମାଉସୀର ଦେହ ଭଲ ନ ଥିଲା । -ତମ ଘରେ ମୁଁ ବୁଝାଇ କହି ଦେବି ।

ଟଗ୍ରି କହିଲା, ମୋ ବାପାଙ୍କୁ କି ମୋ ଜେଜେମା'ଙ୍କୁ କିଛି କହିବ ନାହିଁ ମଉସା ! ମୋ ଭାଗ୍ୟ ମୁଁ ଭୁଞ୍ଜୁଛି । କାହାରି ଦୋଷ ଦେବି ନାହିଁ । କାହିଁକି ସେମାନଙ୍କୁ ମୋ ଦୁଃଖର ଭାଗୀ କରାଇବ ? ବୁଢୀ ଯଦି ମରିବ ତ ମରୁ ! ଏ ପୁରରେ ଦେଖା ନ ହେଲେ ସେ ପୁରରେ ଭେଟ ହେବ ।

ଅଚ୍ୟୁତ କହିଲେ, ହେଇଟି ସେ ଖଟରୁ ଉଠି ଟଳଟଳ ହୋଇ ଦୁଆର ମୁହଁକୁ ଆସୁଛି । ମୋପାଇଁ ତୁ ବ୍ୟସ୍ତ ହ ନା । ଯା ତାକୁ ସମ୍ଭାଳ । ପୁଣି ଏଣୁ ତେଣୁ କିଛି ପାଟି କରିବ ।

ଟଗ୍ରି ଦେଖିଲା, ଝିଙ୍ଗୁଆ ଘର ଭିତରୁ ବାହାରିବାକୁ ପାଦ ଟେକି ଆସୁଣୁ ଉଝୁଙ୍କି ଉଠିଲା । ତାର କପାଳ ଚଉକାଠରେ ବାଜିଲା । ସେ ଆଘାତ ପାଇ ବସି ପଡ଼ିଲା ।

ଟଗ୍ରି ଆଲୁଅ ହାତରେ ଟେକି ଘରେ ପଶିଲା । ଦେଖିଲା, ମାଡ଼ ବାଜିଛି ସିନା, ମୁଣ୍ଡରେ ଖଣ୍ଡିଆ ହୋଇ ନାହିଁ !

ନଳଟଣକୁ କାଠ ବାକ୍ସ ଉପରେ ରଖିଲା । ଦୁଇ ହାତରେ ଝିଙ୍ଗୁଆକୁ ଧରି ଉଠାଇ ପଲଙ୍କ ପାଖକୁ ନେଲା । ସେ ବାଧା ଦେଲା ନାହିଁ । ପାଟି ତୁଣ୍ଡ କଲା ନାହିଁ । ଝିଙ୍ଗୁଆକୁ ପଲଙ୍କରେ ବସାଇ ତା' ଦେହର ଜାମା ଉତାରିଲା । ଲୁଗା ପାଲଟାଇଲା । ଗେହ୍ଲେଇ ହୋଇ କହିଲା, ଏଥର ସୁନାପୁଅ ହୋଇ ଶୋଇପଡ଼ିଲ ଟିକିଏ । ମଦଗୁଡ଼ା ପିଇଛ । ଗଞ୍ଜେଇ ଧୂଆଁ ଶୋଷି କି ଦଶା ହେଲଣି ?

ଝିଙ୍ଗୁଆ କହିଲା, କାହିଁକି ବକ୍‌ବକ ହେଉଛୁ ବେ ଶାଳୀ ଗୁମଣ୍ଡୀ । ପୁଣି ମାରିବୁ ? ମୋ ରକ୍ତ ଶୋଷି ଖାଇବୁ ? ତୁ ବାହାର ମୋ ଘରୁ ।

ପାହାନ୍ତିଆ ଚଢ଼େଇଙ୍କର ବୋବାଳି ଶୁଭିଲା ।

ଅଗଣାରେ ଥାଇ ଅଚ୍ୟୁତ କହିଲେ, ଏଥର ଫରଚ୍ଛ ହେବ ଲେ ମା ! ମୁଁ ଟିକିଏ ସହଳ ସହଳ ବାହାରିଯାଏଁ । ଖରା ଟାଣ ହେବା ଆଗରୁ ଗାଆଁରେ ପହଞ୍ଚିଯିବି । ଆ, ଦାଣ୍ଡ କବାଟ ବନ୍ଦ କରିଆସିବୁ ।

ଟଗ୍ରି କହିଲା, ଯାଉଛି ।

ସେ ଅଚ୍ୟୁତ ବେହେରାଙ୍କ ପଛରେ ଗଲା । ଲୁହଭରା ଆଖିରେ ନମସ୍କାର କରି ସେ ବେହେରାଙ୍କୁ ବିଦାୟ ଦେଲା ।

ଘର ଭିତରକୁ ଫେରିଆସି ଟଗ୍ରି ଦେଖିଲା, ଝିଙ୍ଗୁଆ ଆଗ ପରି ପଲଙ୍କ ଉପରେ ବସି ରହିଛି । ଦୁଇ ହାତରେ ମୁଣ୍ଡର କେଶ ଟାଣୁଛି ।

ଟଗ୍ରି କବାଟ କିଳିଲା । ନଳଟଣ ଲିଭାଇ, ତା ପାଖରେ ବସି କହିଲା, ରାତି ପାହି ଆସିଲାଣି । ମଉସା ଚାଲିଗଲେଣି । ତମେ ଟିକିଏ ଶୋଇପଡ । ମୁଁ ତମର ପାଦ ଚିପି ଦେଉଛି ।

ଝିଅଟା ଅଟ୍ଟାଳିଆ ହସ ହସି କହିଲା, ମଉସା, ମଉସା ! ମତେ ଭଣ୍ଡାଇ ପାରିବୁ ନାହିଁ ଲୋ ସ୍ୱୈରିଣି ! ଯେଉଁ ଝିଷ୍ଟରେ ତୁ ମୋ ଘରେ ବାଢରେ ନାଟ ଲଗାଉ, ଆଗରୁ ସୁନାଠଉଁ ଶୁଣିଥିଲି । ଲୋକେ ଜାଣନ୍ତି । ଶିବବାବା ବି ଜାଣନ୍ତି । ସେଇଥିପାଇଁ ବାବାଙ୍କ ଦର୍ଶନ କରିବାକୁ ତୁ ଯାଉନାହୁଁ ଲୋ ଦୋଷ୍ଟବୁଣୀ । ଆଜି ମୁଁ ଆଖିରେ ଦେଖିଲି । ଭଅଁରିମା ବୁଢ଼ୀ ତୋର କୁଟୁଣୀ ହୋଇଛି । ଭଅଁରିକୁ ସବୁ ଦେଇନେଇ କିଣି ରଖିଛୁ । ଜାଣିଲି. ଜାଣିଲି - ''

ସତେ କି ଟଭ ମୁଣ୍ଡରେ ବଜ୍ରାଘାତ ହେଲା । ମୁଣ୍ଡ ଭ୍ରମିବାକୁ ଲାଗିଲା । ଦୁଃଖରେ, କ୍ରୋଧରେ ତା'ର ସର୍ବାଙ୍ଗ ଥରିବାକୁ ଲାଗିଲା । ସେ ସଙ୍ଗେ ସଙ୍ଗେ ଠଉରାଇ ନେଲା, ସୁନା ବଢଉଣୀ ଶୂନ୍ୟରୁ ତୋଳି ତାହା ମିଛ ଗପି ଝିଅଟାର ମଥା ବିଗାଡ଼ିଛି । ତା'କୁ ଘରେ ଥାନ ନ ଦେଇ, ଠେଲି ପେଲି କରି, କେଜାଣି ମାଡ଼ ମାରି, ପ୍ରାଭବ ଦେଇଛି । ତା'ର ମଦୁଆ ମୁଣ୍ଡରେ ନିଆଁ ଜଳାଇଛି । ଯେଉଁ ଅପମାନ ପାଇ ସେ ଏ ଘରୁ ବାହାରି ଯାଇଥିଲା, ତା'ର ପ୍ରତିଶୋଧ ନେବାକୁ ସେ ଝିଅଟାକୁ ନିଷ୍ଠୁରଭାବରେ ରାଢଅଧରେ ତଡ଼ିଦେଇଛି ।

ଭାବିଲା, ପାଗଳଟା ସଙ୍ଗେ କଥା କଟାକଟି କଲେ ସେ ଅଧିକ ଉତ୍ତେଜିତ ହେବ । ପୁଣି କି କାଣ୍ଡ ଘଟାଇବ । ସପନରେ ନ ଚିନ୍ତିଲା କାମ ନିଜେ ଉଦ୍ୟୁକ୍ତ ହୋଇ ସେ କରିପାରିଛି । ସ୍ୱାମୀର ଦେହରେ ଆଘାତ ଦେଇ ପାତକିନୀ ହୋଇଛି । ମାଇପିଜୀବନ ସହିବା ପାଇଁ । ଶୁଣୁ ବା ନ ଶୁଣୁ, ମାନୁ ବା ନ ମାନୁ, କହି, ବୁଝାଇ, ମନାଇ ଭଲବାଟକୁ ଗେରସ୍ତକୁ ଆଣିବାକୁ ସେ ପ୍ରାଣପଣେ ଚେଷ୍ଟା କରିବ । ତେଣିକି କପାଳରେ ଯାହା ଥିବ ଅବଶ୍ୟ ଘଟିବ । କାହାର ଗୃହ ଅଛି, କିଏ ବାରଣ କରିବ ?

ଟଭ ତଥାପି କହିଲା, ତମ ମୁଣ୍ଡ ଭିତରେ ସୁନା ନିଆଁ ଜାଳିଛି । ମୋ ବିରୁଦ୍ଧରେ ତମୁକୁ ମତାଇ ଦେଇଛି । ତା'ରି ବୁଦ୍ଧିରେ ତମେ ଏଣୁ ତେଣୁ ବକୁଛ । ତମର ଭୂମିବାଡ଼ି, ଧନସମ୍ପଦ, ତମ ଦେହର ରକତ-ମାଉଁସ, ଏମିତିକି ତମର କୁଳର ମର୍ଯ୍ୟାଦା, ତମର ଶିବବାବା, ତାଙ୍କର ଚେଲା ହୋଇଥିବା ସାଙ୍ଗମାନେ, ସବୁ ସେ ସୁନାବଢ଼ଉଣୀ ଓଟାରି ନେଇଛି । ବାକି ଅଛି ତମର ଦେହର ଶୁକୁଶୁକୁ ଜୀବନ ଟିକକ । ସବୁ ଦୁଃଖକଷ୍ଟ, ତମର ଅତ୍ୟାଚାର ସହି ତମରି ଭଲ ପାଇଁ ମାଟି କାମୁଡ଼ି ଡ଼ହ-କୁତା ପରି ପଡ଼ିରହିଥିଲି । ତମ ଘର, ଆଉ ତମ ଜୀବନକୁ ଜଗି ରହିଥିଲି । ମୁଁ ତମ ଭାରିଯା, ତମ ଖୁଣ୍ଟିଆବଂଶର କୁଳଲକ୍ଷ୍ମୀ । ତା'ରି ମାନମହତ ତମ ଜୀବନଠଉଁ ବି ବଡ଼ । ତମ ଜୀବନ, ପୁଣି ତମ ଭାରିଯାର ମାନ-ମହତ ଓଟାରି ନେବାକୁ ସେଇ କୁଟିଣୀଟା, ସୁନାଦେଈ ଚକ୍ରାନ୍ତ କରିଛି । ସେଇ ସୁନାଦେଈ କୁଳଟା

କରିଛୁ । ମାଉପକରି ରଖିଛୁ ସେଇ ଭଣ୍ଡବାବାଜୀଟା, ଶିବବାବା । ଚୋର, ଡକାୟତ, ମଣିଷମାରୁ, ଡ଼କାଇତ କିଏ ଜାଣେ ?

ଝରିଆ ବୁଝିଲି କି ନାହିଁ ତା'ଙ୍କୁ ଜଣା । କହିଲା, ତୁ ମୋ' ଗୁରୁ ନିନ୍ଦା କରୁଛୁ । ବେଶି ବକ୍ ବକ୍ ହେଲେ ତୋ' ତଣ୍ଡି ଚିପି ମାରଦେବି । ତୁ ଯା' ବେ ମୋ ପାଖରୁ । ମୋ' ଘରୁ ବ ଭୁ ଚଲା । ମୁଁ ଏଥର ଶୋଇବି । ବୁଝି ହୁସିଆର୍, ମୋ ଦେହରେ ହାତ ଦେବୁନି ।

ଝରିଆ ଶୋଇଲା । ତା' ମୁଣ୍ଡ ତଳର ତକିଆ ସଜାଡ଼ି ଟେଣ୍ଟି ପଲଙ୍କ ଉପରୁ ଉଠିଆସିଲା । ଅଲଗୁଣୀ ଉପରୁ ପୁରୁଣା ମଇଳା ମଶାରି ଓଟାରି ଟାଙ୍ଗିଦେଲା ।

ରାତି ପାହିଆସିଲାଣି । କାଲି ରାତି । ଆଖି ତଥାପି ମାଡ଼ି ମାଡ଼ି ପଡ଼ୁଛି । ମୁଣ୍ଡ ଭ୍ରମୁଛି । ଦେହର ଆସକତରେ ଜାଙ୍ଗୁଲୁ ଜାଙ୍ଗୁଲୁ ରାତିରେ ପଦାକୁ ବାହାରି କ'ଣ କାହିଁ କାମ କରିବାକୁ ଦେହ ଚଳୁନି ନାହିଁ । କି' କାମ ବା ଅଛି ଯେ, ତା'କୁ ବଳେଇ ପଡ଼ିବ ? ଅନ୍ୟୁତ ବେହେଲ୍ସି ଯାହା ଖାଇଥିଲେ ସେତିକି । ବାକିତକ ଘୋଡ଼ାଘୋଡ଼ି ହୋଇ ନୁଲମୁଣ୍ଡରେ ଥୁଆ ହୋଇଛି ।

ଟେଣ୍ଟି ଶପମଶିଣା ତଳେ ପାରିଲା । ଆଲୁଅ ଲିଭାଇ, ହାତକୁ ତକିଆ କରି ଶୋଇଲା । ଯାହା ପାଇଁ ସେ ଦକ ଦକ ହେଉଥିଲା, ସେ ପାଖରେ ଅଛି । ଯାହା ଘଟିବାର ଘଟିଯାଉ, ସେ ସବୁ ଉତ୍ତେଜନା ମନରୁ ପୋଛି ନିଶ୍ଚିନ୍ତରେ ଟିକିଏ ଶୋଇ ପାରିବ । ଏପରି ବିଚାରି ଟେଣ୍ଟି ଆଖିବୁଜିଲା । ତା'କୁ ନିଶ୍ଚିନ୍ତ-ନିଦ ଘୋଟି ଆସିଲା ।

ନିଦ ଭାଙ୍ଗିଲା ଡେ଼ରିରେ ।

ଅଗଣା ସାଙ୍ଗ କଅଁଳ ଖରା, ମଥାନ ସେ ପାଖେ ମୁଣ୍ଡ ଟେକିଥିବା ଡେଙ୍ଗା ଡେଙ୍ଗା ଅମୃତଛର ସନ୍ଧରେ ଗଳି ମନ୍ଦା ମନ୍ଦା ହୋଇ ପଡ଼ିଥିଲା । ଝରିଆ ତଥାପି ଶୋଇଥିଲା । ଖର ଶ୍ୱାସ ଗୁଡ଼ୁଥିଲା । ସେ ଆତୁର ଡ଼େରିରେ ଉଠେ ।

ଶୋଇଲା ଘରର କବାଟ ମୁକୁଳା କରି ଟେଣ୍ଟି ନିତିଦିନିଆ କାମରେ ଲାଗିଗଲା । କାହା ଉପରେ ସେ ରାଗ, ଅଭିମାନ, ଛଳ କରିବ ? କିଏ ଏ ସଂସାରରେ ଅଛି, ଯିଏ ତା'ର ଦୁଃଖରେ ପଦେ ଆହା କହି ତା'କୁ ସାନ୍ତ୍ୱନା ଦେବ ? ତା' ମନର ଦୁଃଖ ଊଣା କରିବ ?

କାମ, କେବଳ କାମ ହିଁ ତା'ର ବନ୍ଧୁ !

ପରଦିନ ଝରିଆ ଡେରିରେ ଉଠିଲା । ନିଶା ଗୁଡ଼ି ଯାଇଥାଏ । ଟେଣ୍ଟିର ଉପସ୍ଥିତିକୁ ଉପେକ୍ଷା କରି ସେ ତୁନି ତୁନି ତାର ନିତ୍ୟକର୍ମ ଶେଷକଲା । କ'ଣ ମନରେ ବିଚାରି ପ୍ରତି କୋଠରୀରେ ପଶି ସେ ଖୋଜିବାକୁ ଲାଗିଲା । ଟେଣ୍ଟି ତା'ର

ସଛେ ପଛେ ଥାଏ । ଯେତେ ପଚାରିଲେ ସେ ଉତ୍ତର ଦେଲା ନାହିଁ । ଫଣାଟେକା ନାଗସାପ ପରି ସେ ଫଁ ଫଁ ହେଉଥାଏ । ଯେତେ ଯାଚିଲେ ସେ ଖାଇଲା ନାହିଁ ।

ସବୁ ଦେଖିସାରି ସେ ପୁଣି ଯାଇ ତା'ର ଶୋଇବାଘରେ ପଶିଲା । ଟୁଣ୍ଡିକୁ ଆଉଜେଇ ସେ ଭିତରୁ କବାଟ କିଳିଲା । କାନ୍ଦ ବୋବେଇ ଟୁଣ୍ଡି ଯେତେ ଡାକିଲା, ସେ ଜବାବ ଦେଲା ନାହିଁ ।

ଟୁଣ୍ଡି କାବୁସ୍ଥ ହେଲା । ବାରବାଟେ ବୁଲି ସେ ମୁକୁଳା ଝରକାର କାଠ ରେଲିଂ ଧରି ଉହୁଙ୍କି ଚାହିଁଲା । ଦେଖିଲା, ଝିଅ ଝରକା ଆଡ଼କୁ ପିଠି କରି ଗୁଳୀ ହୋଇ ଶୋଇଛି । ବେଳେ ବେଳେ କାଶୁଛି । ଚିଙ୍ଗୁଡ଼ି ମାଛ ପରି ଜାକି ହୋଇ ପୁଣି ସିଧା ହୋଇ ସୁଦ୍ଧ ଖଟରେ ଶୋଉଛି ।

ଟୁଣ୍ଡି କାନ୍ଦିଲା । କାନ୍ଥରେ ମୁଣ୍ଡ କୋଡ଼ିଲା । ବିକଳ ହୋଇ କହିଲା, ଭୁଲ ହେଲା । ସବୁ ଦୋଷ ମୋର ହୋଇଛି । ବାପା ଲୋକ ପଠାଇଥିଲେ । ଅଚ୍ୟୁତ ମଉସା ମୋ ବାପାଙ୍କ ସାଙ୍ଗ । ଆମ ଜମି ଭାଗରେ ଚଷନ୍ତି । ସେ ଆମ ଘର ନ ପାଇ ଗାଁ ସାରା ଘର ଘର ବୁଲି ପଚାରୁଥିଲେ । ଭଉଁରି ହାବୁଡ଼ରେ ପଡ଼ିଲେ । ସେଇ ତାଙ୍କୁ ରାତି ପହରକ ବେଳକୁ ଆମ ଘରକୁ ଆଣିଲା । କେମିତି ତାଙ୍କୁ ଅଖିଆ ଅପିଆ ତଡ଼ି ଦେଇଥାନ୍ତି କହିଲ ? କାହିଁକି ତଡ଼ି ଦିଅନ୍ତି ? ଉପକାରିଆ ଲୋକ । ଖବର ନେଇ ଆସିଥିଲେ । ତମକୁ ଠାକୁରଙ୍କ ରାଣ, ଉଠ, କବାଟ ଖୋଲ । ସବୁ କହିବି । ଉପାସରେ ଶୋଇଛ କାହିଁକି । ତମର ଘର । ତମର ସଂସାର । ସବୁ ତମର ଦରବ ।

ଝିଅ ନୀରବ ।

ଆଖିରୁ ଲୁହ ଝରିପଡ଼ୁଥାଏ, ଟୁଣ୍ଡି ପୁଣି କହିଲା, ମଉସାଙ୍କ ହାତରେ ବାପା ଖବର ପଠାଇଥିଲେ । ମୋ ଜେଜେମା ବୁଢ଼ୀ ଆଉ ଥାଇବେ ନାହିଁ । ତାଙ୍କର ଯିବା ଆସିବା ବେଳ । ମୋତେ ଥରେ ଦେଖିବାକୁ ସେ ବିକଳ ହେଉଛନ୍ତି । ତମକୁ ବି । ଯାଇଥା'ନ୍ତେ, ଖାଲି ଚାହିଁ ଦେଇ ଫେରି ଆସିଥା'ନ୍ତେ । ପ୍ରାଣରୁ ବଳି ମତେ ସେ ଭଲ ପାଉଥିଲା । ମଉସାଙ୍କ ଆଗରେ ତମେ ଯେଉଁ ଅସନା କଥା କହିଲ, ଯେଉଁ ଦୁନିଆ ବାହାର ଢଙ୍ଗ ଦେଖାଇଲ, କେମିତି ମୁଁ ସହନ୍ତି, ତମେ ବିଚାରିଲ ? କେବେ ତ ତମ ମନରେ ମୁଁ ଏମିତି ରହେ ନାହିଁ ? ତମ ବେଆଡ଼ା ଢଙ୍ଗ ପାଇଁ ରାଗିଗଲି । ରାଗ ତ ବ୍ରହ୍ମଚଣ୍ଡାଳ । ମୁଁ କ'ଣ କରିବି ? ମୋ'ର ଦୋଷ ହୋଇଛି । ତମେ ଯେଉଁ ଦଣ୍ଡ ଦେବ ଦିଅ···।

ତଥାପି ଝିଅ ଅଟଳ । ଟୁଣ୍ଡି ପୁଣି ମିନତି କଲା, ମୁଁ ସହିବି । ତମର ଦୁର୍ବଳ ଦେହ । କେତେ ସରି ହେଲଣି । ନିଆଁଲଗା କାଶଟା ବି ତମକୁ ଛାଡ଼ୁ ନାହିଁ । ଔଷଧ ଖାଉନା । ଖାଲି ମଦ ଗୁଡ଼ା ପିଉଛ । ଗଞ୍ଜେଇ ଟାଣୁଛ । ନିତି

କାକରରେ ଅଣ୍ଡାରେ ଦେଡ଼ୁଛ । ଭଲ ବୁଦ୍ଧି ଦେବାକୁ, ତମର ସେବା କରିବାକୁ ମୋ ଛଡ଼ା କିଏ ଆଉ ତମର ଅଛୁ ? ଉଠ, କବାଟ ଖୋଲ । ମୋ ସୁନାଟା, ମୋ ଧନଟା, ଉପାସ ରହ ନାହିଁ । ସୂର୍ଯ୍ୟ ପଶ୍ଚିମକୁ ଗଡ଼ିଲେଣି । ମାରିବ ଯଦି ତମର ମନ ଇଚ୍ଛା ମତେ ମାର । ମୁଁ ସହିବି । ମୋ' ରଜାଟା, ଉଠ, କବାଟ ଖୋଲ ।

ଝିଅ କାଶିକାଶି ନସ୍ତାନାବୁଦ ହେଲା । ଉଠି ବସିଲା । ପୁଳାଏ ଖଙ୍କାର ଝରକା ବାଟେ ପଦାକୁ ଫିଙ୍ଗାଇଲା । ଟିକେ ଆଡେଇଗଲା ।

ଝିଅ ମୁହଁ ଖୋଲିଲା, କାହିଁକି ଏମିତି ବକର ବକର ହୁ ହେଉଛୁ ବେ, ଶାଳୀ ଗୁମଣ୍ଡି ? ମତେ ଖାଇବାକୁ ଦେବୁ, ନା ତୁ ମତେ ଖାଇବୁ, ହଇବେ ? ତୋ' ଜେଜେମା ମରୁଛ ତ ସେଶଲା ତୋ' ଘଇତା ସାଙ୍ଗରେ ପଳେଇଲୁ ନାହିଁ ? ଗୁଳିଯା ଏ ଘରୁ । ତୁ ଦୋଗୁରୁଣୀ । ତୋ ହାତରୁ ପାଣି ଛୁଇଁବି ନାହିଁ । ପଳା, ପଳା ଏଠୁଁ ।

ଝିଅ ପୁଣି ଶୋଇଲା ।

ଜରର ସର୍ବାଙ୍ଗରେ ନିଆଁ ଜଳିଲା । ଦେହ ଥରିବାକୁ ଲାଗିଲା । ଦିନସ୍ପୁର ତାକୁ ଅନ୍ଧାର ଦିଶିଲା । ସେ ଥର ଥର ହୋଇ ବଉଳଗଛ ମୂଳକୁ ଆସିଲା । ସେଇ ଗଛର ଛାଇରେ ଅଖିବୁଜି ବସି ବିଚାର କଲା, ଆଉ ତେଣିକି କରିବ କାହିଁକି ? ଝିଅର ସର୍ବନାଶ ହୋଇସାରିଛି । ସେ ତାକୁ ସୁନାର ମୁଠାରୁ ମୁକୁଳା ପାରିବ ନାହିଁ । ଶିବବାବାର କବଳରୁ ଉଦ୍ଧାର କରିପାରିବ ନାହିଁ । ସବୁ ଚେଷ୍ଟା ତାର ବିଫଳ ହୋଇଛି । ଶେଷ ପରିଣତି ଦେଖିବାକୁ ସେ ରହିବ କାହିଁକି ? ଝିଅ ତାକୁ ବିଦାୟ ଦେଇଛି । ଏ ଘରେ ଆଉ କ୍ଷଣେ ରହିବା ତା' ପକ୍ଷରେ ଉଚିତ ନୁହେଁ । ସେ ଯିବ, ଗୁଳିଯିବ—

କେଉଁଠିକୁ ?

ଦୁଇଟି ସ୍ଥାନ ତା ପାଇଁ ଖୋଲା ରହିଛି । ଦିଓଟି ଲୋକ ହାତ ଲମ୍ବାଇ ତାକୁ ଆହ୍ୱାନ ଦେବାକୁ ଗୁହିଁ ରହିଛନ୍ତି—ସେପୁରରେ ତା'ର ବୋଉ, ଏପୁରରେ ତା'ର ବାପା । ସେପୁରକୁ ଯିବାକୁ ବାଟଟି ହାତ ପହଞ୍ଚରେ । ଉପରେ ବଉଳ-ଗଛର ଡ଼ାଳ । ନିକଟରେ ଅନ୍ଧାରୁଆ ଗହୀର କୂଅ ।

ଲୁହଭରା ମୁଦିଲା ଆଖିତଳେ କାହାର ସେ ଲୁହଝରା ମୁହଁଟି ! ଶାଶୁ ! ହାତ ହଲାଇ, ମୁଣ୍ଡ ଦୋହଲାଇ ବାରଣ କରି କହୁଛନ୍ତି । ବାଇଆଣୀ ବୁଦ୍ଧି କର ନା ଲୋ ମା ! ତୋ' ପାଇଁ କ'ଣ ଝୁଣ୍ଟିଆ ବଣ ବୁଡ଼ିବ ? ତୋ'ର ଅମୋକ୍ଷ ଆତ୍ମା ପେତନୀ ହୋଇ ବୁଲୁଥିବ ଲୋ !

ବାପର ଘର ତା' ପାଇଁ ସବୁବେଳେ ମୁକୁଳା ।

ଆଖିରୁ ଲୁହ ପୋଛୁ ଟଗ୍ ଖଞ୍ଜା ଭିତରକୁ ଆସିଲା । ବାର କବାଟ କଲଲା । ବାଇଆଣୀ ପରି ଏଘର ସେଘର ହେଲା । କ'ଣ କରିବ ବସ୍ତୁର କରୁ ସ୍ଥିର କରି ପାରିଲା ନାହିଁ । ପାଣି ଗିଲାସେ ପିଇ ସେ ଯାଇଁ ଦାଣ୍ଡଘରେ କାନ୍ଥ ପାରି ଶୋଇଲା । ଗୋଟାଏ କଥା ତା' ମନରେ ଖାଲି ଘୋରତେଇ ହେଲା, ଝିଅଆ ତାକୁ ଏ ଘରୁ ତଡ଼ିଦେଇଛି । ଏଠି ଆଉ ସେ ରହିବ ନାହିଁ ।

କାନ୍ଦି କାନ୍ଦି ଟଗ୍ ଦାଣ୍ଡଘରର ଚଟାଣ ଭିଜାଇଲା ।

କାନ୍ଦିବାକୁ ସତେ କି ସେ ଜନମ ହୋଇଛି । ଜୀବନଟା ତାର ପାଣି ବରଷିଲା ଅଷାଢ଼ ପୁନିଅଁ ପରି । ପୂରୁବ ଜନମର କେଉଁ ପୁନିଅଁ ଫଳରେ ପିଲା ବଅସର ଉଦିଆଣି ସକାଳ ବେଳରେ ସୁରୁଯଠାକୁର ମୁହଁ ଦେଖାଇ ହସିଥିଲେ । ତାକୁ ହସାଇଥିଲେ । ମାଆର ମରଣ ପରେ ମେଘ ଉହାଡ଼ରେ ସେ ଲୁଚିଲେ । ସାବତମା ଆସିଲା, ତା' ଦୁଃଖ ବଳେଇ ପଡ଼ିଲା । ଆଖିରୁ ଲୁହ ବରଷିଲା ।

ପୁଣି କେଉଁ ପୁନିଅଁ ପାଇଁ ବଉଦ ଫାଟିଲା । ସୁଖର ଆଲୁଅ ଉପରୁ ଝରିଲା ନିରମାଖି ଟଗ୍‌ର ନିରସ-ନୀରସ ଜୀବନ ଶାଶୁଙ୍କ କୋଳରେ ସରସ ସତେଜ ହୋଇ ହସିଉଠିଲା । ସେମାନେ ହଜିଲେ, ଶାଶୁ ଓ ଶଶୁର ଦହେଁ । ଘୋଟିଗଲା କଳା-ହାଣ୍ଡିଆ ମେଘ ।

ଯିଏ ତା'ର ଜୀବନ-ଦୋସର, ସେ ମାଡ଼ି ଆସେ ତ ଦମକା-ପବନ ପରି । ହଲାଇ, ଦୋହଲାଇ, ତାକୁ ଛିନ୍‌ଭିନ୍ କରେ । ତା'କୁ ନୁଆଁଏ । ଆଘାତ କରେ । ସେହି ଆଘାତ, ସେହି ବେଦନା ଭିତରେ ତା'ର ସତି ପଣିଆଁର ଆହ୍ଲାଦ ଥାଏ । ମୋ'ର ତାକୁ ବୋଲି କହିବାର ଟାଣ ଥାଏ ।

ସେହି ପବନ ଦୁର୍ବଳ ହୋଇଛି । ଅନ୍ୟ ଆଡ଼କୁ ମୋଡ଼ିହିଛି । ତାକୁ ପଛ କରିଛି । ତୁଚ୍ଛ କରିଛି । ତଥାପି ଟଗ୍ ଧଇର୍ଯ୍ୟ ଧରି, ଘର ଅବୋଡ଼ି ରହିଛି । ଝିଅଆକୁ ମୁରୁଛି ପାରି ନାହିଁ । ଏ ଘର ତେଜ ଚାଲିଯିବ, ଏପରି ଭାବନା ମନକୁ ଆଣିନାହିଁ ।

ଟଗ୍ ଦାଣ୍ଡଘରେ ମୁହଁ ମାଡ଼ି କାନ୍ଦୁଛି । କାନ୍ଦି କାନ୍ଦି ପୁଣି ମନକୁ ବୁଝାଉଛି, ତା' ଜୀବନଟା ଏଇଆ । କାହିଁକି ଆଉ କାନ୍ଦିବ ? ଝିଅଆ ତା'କୁ ମେଲାଣି ଦେଇଛି । ସେ ନିଜ ଘରକୁ ବାହୁଡ଼ିଯିବ । ଏକା ଆସିଥିଲା, ନେଇ ଫେରିବ ବେତାଏ ଅନୁଭୂତି । ମୁଣ୍ଡ ଭିତରେ ବହୁ ଘଟଣାର ମାଳଟିଏ । ପେଟ ଭିତରେ ଝିଅଆର ଟିକିଏ ଅଂଶ ! ଶିବବାବାର କି ? ସେହି ଦୁରାତ୍ମା ଲମ୍ପଟ, ଲୋଭୀ, କୁଚକ୍ରୀ ବାବାଜୀଟାର ?

ନା, ନା, ନା ! ଟଗ୍ ଅସ୍ଥିର ହୋଇ ଉଠି ବସିଲା । ବାଇଆଣୀ ପରି ମୁଣ୍ଡ ହଲାଇଲା । କବଟ ଫିଟିଲା । ତା'ର ବର ଝିଅଆର ଦେହର ପୀଡ଼ା ଭଲ ହେଲା ପରେ, ତାକୁ ସେ ତା'ର ଦୁଇ ଭୁଜରେ ବାନ୍ଧି ରଖିଥିଲା । ଅକ୍ଷମ ଦୁର୍ବଳ ଦେହଟି ଟଗ୍‌ର କଅଁଳ ସବଳ ଛାତିର ଆଶ୍ରା ଲୋଡ଼ିଥିଲା । ତା'ର ରୋଗଣା ଦେହକୁ ବାଧା

ହେବା ଆଶଙ୍କାରେ ତାର ଗେହ୍ଲାଳିଆ କାକୁତି ନ ଶୁଣି ଝିଅ ନିଜର ଖବସା ଖୋଇରେ ମଜି ଯାଇଥିଲା । ନିତି । ସେତିକି ତା'ର ଟେଗପ୍ରତି ସେନେହର ପରିଚ ନୁହେ । ଗେରସ୍ତିଗିରିର ଦାବି । ଟେଗ ଭଲ କରି ଜାଣେ, ବଞ୍ଚିଥିବା ଯାଏ ସେ ଋଣୀ । ବଞ୍ଚିଥିବା ଯାଏ ସେହି ଅପରିମିତ ଋଣ ଦାବି କଲାମାନେ ଶୁଝିବାକୁ ପଡ଼ିବ ।

ଟେଗ ଭାବିଲା, ତା' ଭିତରେ ନିଜକୁ ସମ୍ପାଦ, ଝିଅ ତା'କୁ ଅଧିକ ଋଣୀ କରି ମୁକାଲି ଦେବ, ତା'ର ଏତେ ବଡ଼ପଣ ? ଏ ଘର କେବଳ ତା'ର ନୁହେଁ । ଏ ଘର ଟେଗର । ସେ ଯିବ ନାହିଁ । ସେ ଝିଅକୁ ଶାସନ କରିବ । ଖରାପ ବାଟରେ ଧାଇଁଥିବା ସ୍ୱାମୀକୁ ସେ ଅଟକାଇ ରଖିବ । ଆକଟ କରି ବାଟକୁ ଆଣିବ ।



ଦାଣ୍ଡ ପଟରୁ କବାଟ ବାଡ଼େଇ କିଏ ଡାକ ଛାଡ଼ୁଛି, ବୋହୂ-ମା, ବୋହୂ ମା !

ସ୍ୱର ବାରି ଟେଗ ବୁଝିଲା, ଭଅଁରା ଡାକୁଛି ! ସେ ଡାକରେ ଡର ଭରପୂର । ସେ ଡାକ କାତର । ଥର ଥର । ବିକଳ । ତା'ର କ'ଣ ହୋଇଛି ? ଅବେଳାରେ ଧାଇଁ ଆସିଛି କାହିଁକି ? ନିଜର ଦୁଃଖକୁ ଆଡ଼େଇ ସେ ଉଠିଲା । ଲୁଗା ମୁଣ୍ଡ ଉପରକୁ ଟାଣି କବାଟ ଖୋଲିଲା ।

ଭଅଁରା ଦୁଇ ପାହାଚ ପିଣ୍ଡା ତଳକୁ ଓହ୍ଲାଇ ଠିଆ ହୋଇ ଟେଗର ମଳିନ ମୁହଁକୁ ଚାହିଁଲା । ସେ ମୁହଁରେ ଲୁହର ଦାଗ ଛପି ନ ଥିଲା । କପାଳ ଉପରେ କିଏ ଆଘାତ କଲା ପରି ଦୁଇଟି ଫୁଲା ଦାଗ ଦିଶୁଥିଲା ।

ନିଜର ଦୁଃଖ ଭୁଲି କାକୁସ୍ଥ ହୋଇ ଭଅଁରା ପଚାରିଲା, ତମର କ'ଣ ହୋଇଛି ମାଆ ? ବୋଉ ବାଉଳା ଚାଉଳା ହେଉଥିଲା, ସକାଳୁ ଆସି ପାରିଲି ନାହିଁ ।

ଟେଗର କୋହ ଉଠି ଆସୁଥିଲା । ସେ ଦମନ କଲା । ଭାବୁଥିଲା, ଗରିବ ବାଉରୀ ପିଲାଟିଏ ହେଉ ପଛେ ତା'କୁ ପଛେ ଚାକିରୀରୁ ତଡ଼ି ଦିଅନ୍ତୁ, ଏହି ଅଭିଟ ଗାଆଁରେ ସେହି ଜଣେ ହେଲେ ଅଛି, ଯିଏ ତା'ର ଦୁଃଖରେ ପଦେ ପଚାରୁଛି ।

ଟେଗ କହିଲା, ଆରେ ଭାଇ, ମୋ' ଦୁଃଖର କ'ଣ ଆଦିଅନ୍ତ ଅଛି ? କହିଲେ ପୁରାଣ ହେବ । ଶୁଣିବାକୁ କେହି ନାହାନ୍ତି । ଶୁଣିଲେ କିଏ କ'ଣ ସେଥିରୁ ଭାଗ ନେବ ? ଛାଡ଼ ସେ କଥା । କହ, ତୋ'ର କ'ଣ ହୋଇଛି । ତୋ' ମୁହଁ ଶୁଖିଲା ଦିଶୁଛି କାହିଁକି ? କିଛି ଖାଇନୁ ?

ଭଅଁରର ଆଖିରେ ଲୁହ ଟଳ ଟଳ ହେଲା । ସେ କହିଲା, ଆଜି ସକାଳେ ବୋଉ ଚାଲିଗଲା । ବୋଉ ମା ! ଡାକୁ ତ ଖାଇଲା, ଏବଯାଏ ମଡ଼ା ପଡ଼ିଛି ।

ଭାଇମାନେ କହିଲେ, ତୋ ଭାଗ ଆଠ ଟଙ୍କା ଆସିଲେ ମଡ଼ା ଉଠିବ । କାଠ କିଣା ହେଲେ ଯେ ପୋଡ଼ାହେବ । ଆଉସବୁ କ'ଣ କାମ କରିବେ । ଗାଁ ସାରା ସାଆନ୍ତଙ୍କୁ ଖୋଜିଲି । ମଠକୁ ଗଲି, କେଉଁଠି ପାଇଲି ନାହିଁ । ଶୁଣିଲି, ରାତିରେ ସେ ଡମ୍ବରୁ ମହାରଣା ଘରକୁ ଯାଇଥିଲେ । କାଲେ ସେଠି ଥିବେ ବୋଲି ଗଲି । ସୁନା ବଢ଼େଇଣୀ ନଇଁକି ଯାଇଥିଲା । ତା ପି'-ଶାଶୂ ଠୁଣ୍ଟା ପୁଅକୁ ଖେଳାଉଥିଲା । ତାକୁ ପଚାରିଲି ଯେ—

ଭଅଁରି ତୁମ ରହିଲା ।

—ସେ କ'ଣ କହିଲା ?

—କେମିତି କହିବ ବୋଉମା !

—କହ ।

—କହିଲା, ସାଆଁନ୍ତେ ମଦ ଗୁଡ଼ାଏ ପିଇ ରାତି ପହରକ ସରିକି ତାଙ୍କ ଘରେ ପହଞ୍ଚିଲେ । ସୁନା ନ ଥିଲା । ମଠରୁ ଫେରି ନ ଥିଲା । ସାଆନ୍ତେ ଏଣୁତେଣୁ ବକୁଥିଲେ । ବୁଢ଼ୀ ତାଙ୍କୁ ଦାଣ୍ଡ ଧାରେ ଶୁଆଇ ସମ୍ଭାଳି ରଖିଥିଲା । ସେ ଟିକିଏ ଶାନ୍ତ ହେଲେ । ସୁନା ଫେରିଲା ବେଶି ରାତିରେ । ସାଆଁନ୍ତଙ୍କୁ ଦେଖି, ମୋ' ନ ଥିଲା ବେଳେ କାହିଁକି ତାକୁ ଥାନ ଦେଲୁ ବୋଲି ବୁଢ଼ୀକୁ ଶୋଧିଲା । ତାକୁ ଗୋଇଠାଏ ପକାଇଲା ।

ସୁନା ବି ଟଳଟଳ ହେଉଥିଲା ବୋଉମା ! କ'ଣ ଗୁଡ଼ାଏ ପୁଣି ଖାଇ-ଥିଲା । ସାଆନ୍ତେ ଉଠିଲେ । ସେଇଠୁ ଲାଗିଲା ପାଲା । ସୁନା ତାଙ୍କୁ ଗାଳିଗୁଲଜ କଲା । ଦୁହେଁ ଧରାପରା ହେଲେ । ସୁନା ପାଖରେ ସାଆଁତେ ବା କେତେ ? ପଡ଼ିଗଲେ । ସୁନା ଖାଲି ତାଙ୍କୁ ଠିଆ ଗୋଇଠା ମାରିଲା । ଗୁଞ୍ଜୁରିରେ ପିଟିଲା । ସାଆଁତଙ୍କ ବେଣା ଧରି ଘୋଷାରି ପଦାକୁ ଠେଲି କବାଟ କିଳିଲା ।

କେତେବେଳ ଯାଏ ରେଗଣା କୁକୁର ପରି ବାହାରେ ପଡ଼ି ସାଆନ୍ତେ କୁଆଡ଼େ ବୋବାଳି ଛାଡ଼ୁଥିଲେ । କବାଟ ଧଡ଼ଧଡ଼ କରି ସୁନାକୁ ଡାକି ଖୋଲିବାକୁ କହୁଥିଲେ । କେହି ଶୁଣିଲେ ନାହିଁ । ସେ ଗାଳି ଦେଇ ଟଳି ଟଳିକା କୁଆଡ଼େ ଗଲେ । —

ଆଖିରୁ ଲୁହ ଝରି ପଡ଼ୁଥାଏ । ଟଗ୍ରି କହିଲା—ସେ ଏଇଠିକି ଆସିଲେ ରେ ଭାଇ ! ଏଠିକି ଆସି ଯେଉଁ କାଣ୍ଡ ଭିଆଇଲେ, କ'ଣ କହିବି । ଲାଜରେ ମନଦୁଃଖରେ ରାତି ନ ପାହୁଣୁ ମଉସା ମୋ'ର ଚାଲିଗଲେ । ଅଖିଆ ଅପିଆ ତୋ' ସାଆନ୍ତେ ଶୋଇଛନ୍ତି । ଭିତରୁ କବାଟ କିଳିଛନ୍ତି । ଯେତେ ଡାକିଲେ ଉଠୁ ନାହାନ୍ତି । କ'ଣ କରିବି, ଏଇଠି ମୁଁ ଏଇ ଦାଣ୍ଡଘରେ ଶୋଇଥିଲି ।

—କ'ଣ କରିବ ବୋଉମା ? ମଡ଼ା କେମିତି ଉଠିବ ? ଭାଇଏ ଏତିକ ବେଳକୁ ଅଡ଼ି ବସିଛନ୍ତି !

—ତୁ ଜାଣୁ ନାହିଁ ଭଉଣୀ, ଜମିବାଡ଼ି, ଜିନଷପତ୍ର, ଗୁହାଳ ପଦାକର ସବୁ ଗାଈ ଗୋରୁ ବିକି ଯେତେ ଟଙ୍କା ଯୁଆଡ଼ୁ ଆଣିଲେ ସବୁ ନେଇ ମଠରେ ଉଡ଼ାଇଲେ, ବାବାଜୀଙ୍କୁ ଦେଲେ, ନୋହିଲେ ସୁନାବଢ଼ଉଣୀ ଘରେ ପୁରାଇଲେ । ତାଙ୍କ ପାଖରେ କିଛି ନାହିଁ । ଆଉ ସବୁ କ'ଣ ବିକିବେ ବୋଲି, ହେବ ପରା, ଦିନ ଦିପହରକରେ ଏ ଘର ସେ ଘର ଉଣ୍ଡି ବୁଲୁଥିଲେ । ଧାନ, ବିରି, ମୁଗ, କୋଳଥ ଓଳିଆଡକ ତାଙ୍କ ନଜରରେ ପଡ଼ିଲାଣି । ସେତକ ବି ଯିବ କି କ'ଣ ।

– ତେବେ ମୁଁ କି ବୁଦ୍ଧି କରିବି ?

—ବହୁ କଷ୍ଟରେ ସାମାନ୍ୟ କେତୋଟି ଟଙ୍କା ମୁଁ ଲୁଚାଇ ରଖିଛି । ଦଶ ଟଙ୍କା ମୁଁ ତତେ ଦେବି । ତୋ' ବୋଉ, ଆହା ମତେ ସେ କେଡ଼େ ଭଲ ପାଉଥିଲା, ସେ ମଲାରୁ ମୁଁ ଭାବୁଛି, ମୋ' ବୋଉ ଆଉ ଥରେ ମରି ମତେ ନିଆଶ୍ରା କରି ଛାଡ଼ିଗଲା । ମୋ'ର ବି କିଛି ଦେବାର କର୍ତ୍ତବ୍ୟ ଅଛି । ଯାହା ଦେବି, ସେତକ ମୋ ଭାଗରେ ଭଉଣୀ !

ଆଖି ସଜଳ କରି ଟେଳ୍ପା ମୁହଁ ବୁଲାଇଲା । ଅଗଣା ଅତିକ୍ରମ କରି ସେ ତଳ ଧାଉଡ଼ିର କଣ ଘରେ ପଶିଲା । ଗୋଟାଏ ପୁରୁଣା ବେତ ପେଡ଼ି ଭିତରେ ଚିରିଣ୍ଡା ଶାଢ଼ୀତଳେ ଗ୍ରେଟ ଟିଣଡବାରେ ସେ ତା'ର ସମ୍ବଳ ଲୁଚାଇ ରଖିଥିଲା । ଶାଢ଼ୀ-ଗୁଡ଼ିକ ଖଣ୍ଡି ଖଣ୍ଡି କରି ପଦାରେ ଥୋଇ ସେ ଟିଣରୁ ଦଶଟି ଟଙ୍କା କାଢ଼ିଲା । ବାରମ୍ବାର ଗଣିଲା । ଯାହା ରହିଲା, ସେତକ ବି ଗଣିଲା । ପୁରା ବାରଟଙ୍କା ଓ କେତେ ଟଙ୍କାର ରେଜା । ସେତକ ପୁଣି ସେ ସଜାଡ଼ି ରଖିଲା । ଭଲ କରି ଲୁଚାଇ ନ ରଖିଲେ, କେଜାଣି କେତେବେଳେ ଝିଅଆର ହାବୁଡ଼େ ପଡ଼ିବ । ଉପ୍ରୋଧ ନ ରଖି ସବୁ ସେ ନେଇ ପଳାଇବ ।

ଟେଳ୍ପା କଣଘରର କବାଟ ଆଉଜାଇ ଅଗଣାକୁ ଆସୁଣୁ ଦେଖିଲା, ଶୋଇଲା ଘରର କବାଟ ଅଳପ ମୁକୁଳା ହୋଇଛି । ଭାବିଲା, ସତେ ଝିଅଆର ଭଲ ବୁଦ୍ଧି ହେଲା, ସେ ପଦାକୁ ଆସିବ ? ସେ ଟିକିଏ ଅପେକ୍ଷା କଲା । କବାଟ ଠିଆମେଲା ହେଲା ନାହିଁ । ଘର ଭିତରେ ସେ କ'ଣ କରୁଛି ଦେଖିବାକୁ ଟେଳ୍ପା ଧଅସି ଆସିଲା । କବାଟ ଭଲକରି ମୁକୁଳା କଲା ।

ସେ ଘରେ ଝିଅଆ ନାହିଁ । ଗଲା କୁଆଡ଼େ ? ବାଡ଼ି କବାଟ ବନ୍ଦ ଅଛି । କବାଟ ଫାଙ୍କରେ ବୋଧହୁଏ ସେ ତା'କୁ ଦେଖୁଥିଲା । ଓରି ଉଣ୍ଡୁଥିଲା । ତାକୁ କଣଘରେ ପଶିବାର ଅନାଯା କରି ଚାଲି ଭଳି ପଦାକୁ ଛୁଟି ପଳାଇଛି । ଯେତେ ହେଲେ ବାପର ପୁଣି ଫାଗକୁ ଡର ।

ବାହାରୁ ଝରିଆର ପାଟି ଶୁଭିଲା । ଟଙ୍କର ମନେ ହେଲା, ଝରିଆ ବଗୁଲି ଭଅଁରକୁ ତା'ର ଦୁଃଖରେ ଟିକିଏ ଆଶ୍ୱାସନା ଦେବା ପରିବର୍ତ୍ତରେ ତା' ଉପରେ ତୋଡ଼ ଦେଖାଉଛି । ତା'କୁ କଟୁକଥା କହି ଗାଳିଦେଉଛି । ସେ ଶୁଣିବାକୁ କାନ ଡେରିଲା । ବାରି ପାରିଲା ନାହିଁ । ଝରିଆର ପାଟି ଦୂରେଇ ଯାଉଛି ।

ଟଙ୍କ ଦାଣ୍ଡକୁ ଧାଇଁଲା । ପାହାଚ ଓହ୍ଲାଇ ଆଗେଇଲା । ଝରିଆ ହାତରେ ଖଣ୍ଡେ ବାଉଁଶ କଣି । ଉଞ୍ଚେଇଛି । ଭଅଁର ହାତଟେକି ପ୍ରତିବାଦ କରୁଛି । ପ୍ରତିରୋଧ କରୁଛି । ସେ କେତେ ଗୁଡ଼ାଏ ଖାଇଲାଣି କେଜାଣି ।

କହୁଛି, ମୁଁ ଚୋରି କରିନାହିଁ । ମୁଁ ତାଙ୍କୁ ଚିହ୍ନେ ନାହିଁ । ସେ ଘର ଖୋଜୁଥିଲେ ।

ଝରିଆ ଆହୁରି ଗୁଡ଼ାଏ ପିଟି ଚିତ୍କାର କଲା, ଶଳା ଚୋର ! ମୋ' ଉପରେ ତୋ'ର କିଛି ପାଉଣା ନାହିଁ । ଆଉ ଦିନେ ଯଦି ଏ ଘର ଦ୍ୱାରମୁହଁ ମାଡ଼ିଛୁ ତ ଫେର୍ ଦେଖିବୁ ।

କାଠ ପିଢ଼ୁଲା ପରି ଟଙ୍କ ପଛରେ ଖଣ୍ଡେଦୂରରେ ଠିଆ ହୋଇ ଦେଖୁଥିଲା । ସେମାନଙ୍କ କଥା ଶୁଣୁଥିଲା । ବାଧା ଦେବାକୁ ତା'ର ପାଦ ଚଳୁ ନ ଥିଲା । ଗାଁ ଗୋହିରିରେ ଗଲା ଆଇଲା କେତେଜଣ ଠିଆ ହୋଇ ଘଟଣା ଜାଣିବାକୁ ଆଗ୍ରହୀ ହେଲେଣି । କିଏ କିଏ ପଚାରିଲେଣି, କଥା କ'ଣ ଟିକିବାବୁ !

ଭଅଁର ଆଖି ପୋଛି ପୋଛି ଚାଲିଗଲା । ଝରିଆ ଲୋକଙ୍କ ପ୍ରଶ୍ନର ଉତ୍ତର ନ ଦେଇ ମୁହଁ ବୁଲାଇ ଚାହିଁଲା । ଟଙ୍କକୁ ଦେଖି ସେ କ୍ରୋଧରେ ଜଳିଉଠିଲା । କଣି ଉଞ୍ଚାଇ ଅରଣା ମଇଁଷି ପରି ତା' ପାଖରୁ ଛୁଟି ଆସିଲା । ଟଙ୍କର ଦେହରେ ଦି' ଗୁଡ଼ାଏ ବସାଇ ଗର୍ଜିଉଠିଲା, ତୁ ବି ମୋ ଘରୁ ବାହାରି ଯା ଚଣ୍ଡ, ଚାମଣ୍ଡୀ ! କ'ଣ ଦେଖୁଛୁ ?

କେତେ ଜଣ ମାଇପେ ହାଁ ହାଁ ହୋଇ ଟଙ୍କକୁ ଝରିଆର କୋପରୁ ବଞ୍ଚାଇବାକୁ ଧାଇଁ ଆସିଲେ । ଟଙ୍କ କହିଲା, ତାଙ୍କର ମାଡ଼ ସହିବାକୁ ମୋ ଦେହରେ ତାକତ ଅଛି ମ ! ମୋ' କଥା ମୁଁ ବୁଝିବି । ତମେ ସବୁ ଯାଅ । କାହାରି ସାହାଯ୍ୟ ମୁଁ ଲୋଡ଼ୁ ନାହିଁ । ତମର ଗାଆଁର ପୁଅ ସେ, ମୋ' ଅପେକ୍ଷା ତାଙ୍କୁ ତମେସବୁ ଅଧିକ ଜାଣ । କାହିଁକି ସେ ଏମିତି ଆଡ଼ବାଇଆ ହେଉଛନ୍ତି ସମସ୍ତଙ୍କୁ ଗୋଚର ।

ହେଲେ, କାହିଁକି ?

ଟଙ୍କ ସେମାନଙ୍କର ପ୍ରଶ୍ନର ଜବାବ୍ ଦେଲା ନାହିଁ । ଝରିଆର ଗୋଟିଏ ହାତକୁ ଜୋରସେ କରି ମୁଠାଇ ଧରି ସେ ଘରକୁ ଟାଣିଲା ! କହିଲା, ଭଲ ଦଶା ଅଛି ତ ଆସ । ପିଲାଟାର ମା'ଆ ମରି ପଡ଼ିଛି । ମଡ଼ା ଉଠିବ ବୋଲି ତା'ର ହକ୍

ପାଉଣାରୁ କିଛି ସେ ମାଗିବାକୁ ଆସିଥିଲା । ଆଚ୍ଛା, ତା'କୁ କିଛି ପକାଇଲ ? ଘରୁ ତଡ଼ି ଦେଲ ? ତମକୁ ଦଇବ ଛୁଇଁଲାଣି ।

ହାତ ଓଟାର ମୁକ୍ତ ହେବାକୁ ଅମଙ୍ଗ ବାଛୁରି ପରି ଝିଅଆ ପଛକୁ ଟାଣି ହେଲା । କହିଲା, ଛାଡ ବେ, ନୋହିଲେ ତୋ' ପିଠିରୁ ଛାଲ ଉତୁରେଇ ଦେବ ।

ଟଗ୍ରା କହିଲା, ଏଠିଟାରେ ଲୋକହସା ହୁଅ ନାହିଁ । ଆଜ ମଦ ଖାଇନା, ଗଞ୍ଜେଇ ଟାଣି ନା, ଏମିତି ଉପାସ-ଶୋକରେ ବାଇଆଙ୍କ ପରି ଦେଉଛ କାହିଁକି ? ଘରକୁ ଚାଲ, ଯାହା କରିବ ସେଇଠି କରିବ ।

ଚ୍ଛରିଆଡ଼କୁ ଚାହିଁ ଝିଅଆ ସୁଧାର ହେଲା । କହିଲା, ଛାଡ଼ ମୋ ହାତ, ମୁଁ ଯାଉଛି । ସେଇ ବାଉରି ଟୋକାକୁ ଦେଖିଲେ ମୋ ବ୍ରହ୍ମ ଜଳେ । ମହା ଚୋରର ସଇତାନ୍ ସେଇଟା ! ଯାହା ହେବାର ହେଉ, ଦିନେ ତା' ରକ୍ତ ଚଟା ପିଇବି କହୁଛି ।

ଝିଅଆ କଟାଳ କଲା ନାହିଁ । ଟଗ୍ରାର କଥା ମାନି ସେ ପେଟପୂରା ଖାଇ ବିଶ୍ରାମ ନେବାକୁ ଘରେ ପଶିଲା । ପୁଣି ପଲଙ୍କ ଉପରେ ଶୋଇଲା । ଟଗ୍ରା ଭାବିଲା, ଝିଙ୍କୀ ଲୋକ, ଗତରାତିରେ ସୁନାର ଝିଙ୍କାସ, ଗୁଞ୍ଜୁଣି-ମାଡ଼ ଖାଇ, ଘରୁ ତଡ଼ା ହୋଇ ଆସିବାର ଦୁଃଖ-ଅପମାନ ତା'ର ମନରେ ଆଉଟି ହେଉଥିଲା ପରା ! ସେଥିପାଇଁ ଏତେବେଳେ ଯାଏ ରାଗରେ ସେ ଭିତରେ ଭିତରେ ଆଉଟି ହେଉଥିଲା । ମନ ଭିତରର କ୍ରୋଧକୁ ପଦାକୁ ଫିଙ୍ଗି ସେ ଶାନ୍ତ ହେଲାଣି ।

ଟଗ୍ରା ନିଜେ ଖାଇ ବସିଲା । ମନେ ମନେ ସେ ବଳିଆର-ଭୁଜ ଜଗନ୍ନାଥଙ୍କୁ ସୁମରଣା କରୁଥିଲା, ସୁନାଠାରୁ ପରାଭବ ପାଇ ସେ ଫେରେଇ ଆସିଛି । ଭଲ ହୋଇଛି । ଠାକୁରେ, ତା'କୁ ଏବେ ହେଲେ ଭଲ ବୁଦ୍ଧି ଦିଅ । ସେଇ ଡାଆଣୀର ପାଲରେ ସେ ନ ପଡ଼ୁ । ସବୁ ତା'କୁ ଦେଇ ସାରିଛି । ତା' ପ୍ରାଣଟା ନ ନେଉ ।

ହାଣ୍ଡି ପଖାଳିଲା । ରୋଷଘର ସଫାକରି କବାଟ କିଳିଲା । ଅଇଁଠା ବାସନ ଏକାଠି କରି ସବୁ ମାଜି ଧୋଇ ଆଣିବାକୁ ଟଗ୍ରା କୂଅମୂଳକୁ ନେଲା । କାମ ଶେଷ କରି ସେ ସବୁ ଆଣି ପୁଣି ରୋଷଘରେ ରଖିଲା । ବେଳ ଗଡ଼ି ଗ୍ରାଇ ନେଉଛିଲାଣି । ଦେହ ଅଳସ ଲାଗୁଛି । ଭାବିଲା, ସେ ଝିଅଆ ଥିବା ଘରେ ପଶିବ ନାହିଁ । କବାଟ ଅଧ-ଆଉଜା କରି ସେ ଶୋଇଛି ତ ଶୋଇଥାଉ । ସେ ଏବେ ଘରଗୁଡ଼ିକ ଓଳାଇ ସଫା କରିବ ।

ସେ କାମ ସାରିଲା । ଓଳାଇବାକୁ ଦାଣ୍ଡଘରକୁ ଗଲା । ଆଚମ୍ବିତ କଥା ! ଦାଣ୍ଡ କବାଟର ଶିକୁଳି ଖୋଲିଲା କେମିତି ? ଆସିଲା ବେଳେ ଭୁଲରେ ସେ କ'ଣ ଦେବାକୁ ପାସୋରି ଯାଇଥିଲା ? ତା'ର ଛାତି ଦାଉଁ ଦାଉଁ ପଡ଼ିଲା । ସେ ଡ଼ରଡ଼ର

ଆଖିରେ କବାଟ ଖୋଲି ପଦାକୁ ଚାହିଁଲା । କେହି କୁଆଡ଼େ ନାହିଁ । କବାଟ କିଳି ଧାଇଁ ଆସିଲା ଶୋଇବାଘର ପାଖକୁ । ଅଧାଖୋଲା କବାଟକୁ ଦୁଇ ହାତରେ ଠେଲି ଭିତରକୁ ଚାହିଁଲା ।

ଯାହା ସେ ଆଶଙ୍କା କରୁଥିଲା ଠିକ୍ ତାହା ହିଁ ଘଟିଛି । ପଲଙ୍କ ଉପରେ ଝରଅ ନାହିଁ । କାମ କରୁଥିବାବେଳେ କେଉଁ ଛଟକରେ ଉଠି ଚାଲିଯାଇଛି ।

ସେ ଏପରି ଲୁଚି ଲୁଚି ଚାଲିଯିବା ଆଜି ନୂଆ ଘଟଣା ।

କୁଆଡ଼େ ଗଲା ?

କିଏ କହି ପାରିବ ? ଯେଉଁ ଅଲକ୍ଷଣୀ ତାକୁ ମାଡ଼ ମାରି ଘରୁ ତଡ଼ି ଦେଇଥିଲା ଗାଢଅନ୍ଧାରେ ପୁଣି ସେ ଝରଅ ଭିତରେ ତାକୁ ଖୋଜୁଥିବ । ସେ କମିଆଁ ଜାଣେ । କେଜାଣି, ଦମେ ଗଞ୍ଜେଇ ଧୂଆଁ ଟାଣିବାକୁ, ମଦ ଚଳେ ପିଇବାକୁ ଛଟପଟ ହୋଇ କେଉଁ ସାଙ୍ଗ ପାଖକୁ ଅବା ଶିଅଳଘରକୁ ଯାଇଥିବ । ନୋହିଲେ ଶିବବାବାଙ୍କ ମଠକୁ ?

ତା' ହାତରେ ଧନ ନାହିଁ । ଘରେ ଯାଇତା ବାସନ କୁସନ ଅବା ଗହଣାଗାଣ୍ଠି ଆଉ କିଛି ନାହିଁ ଯେ ବନ୍ଧା ପକାଇ କି ବିକି କରି ତା'ର ଖୋଇ ମେଣ୍ଟାଇବ । ନିଜେ ସେ ଓଳିଆ ବନ୍ଧାଇ ରଖିଥିବା ଧାନ, ମୁଗ, ବିରି ଉପରେ ତା'ର ଲୋଭିଲାଦୃଷ୍ଟି ପଡ଼ିଲାଣି । ଅମାରରେ ଯେଉଁ ଧାନ ଥିଲା ସେତକ ସରିବା ଉପରେ । ସବୁ ସରିଲେ ଲୋକ ଚଳିବ କିପରି ? ତା' ଡରରେ ଏଥିରେ ସେ କେବେ ହାତ ଦେବାକୁ ଭରସି ନାହିଁ । କଣ କରିବ କେଜାଣି ?

କେଡ଼େ ନିର୍ଲଜ୍ଜ ଲୋକଟା !

ଟଭି କବାଟ ବନ୍ଦ କରି ଖଞ୍ଜା ଭିତରକୁ ଆସିଲା । ହାତଗୋଡ଼ ଧୋଇ ମୁହଁ ପଖାଳି ସଫା ଲୁଗା ପିନ୍ଧିଲା । ଗ୍ଳେଟ ଆଇନା ଧରି କେଶ ସାଉଁଳିଲା । କଳାସିନ୍ଦୂର ପିନ୍ଧିଲା । ନିଜର ମୁହଁକୁ ଆଇନାରେ ଦେଖି ନିଜେ ସନ୍ତୁଷ୍ଟ ହେଲା ଯେ ଏତେ ଦୁଃଖ ସହି ମଧ୍ୟ ତା'ର ରୂପ ମଳିନ ହୋଇ ନାହିଁ । ବାଟରେ ଦେଖିଲାଲୋକେ କେବେ ଅନୁମାନ କରିପାରିବେ ନାହିଁ ଯେ ଟଭି ଦୁଃଖରେ ଅଛି ! ସେ ଭାବିଲା, ବହୁତ ଦିନ ପରେ ଆଜି ଦାଣ୍ଡକୁ ବାହାରିବ । କିଏ ଯାହା ମନେକରୁ ସେଥିକି ସେ ଭ୍ରୂକ୍ଷେପ କରିବ ନାହିଁ । ଝରଅ ଯେଉଁ ପାପ କରିଛି, ସେ ତା'ର ପ୍ରାୟଶ୍ଚିତ୍ତ କରିବ ।

ଟଭି ଦାଣ୍ଡକୁ ଗୋଡ଼ କାଢ଼ିଲା । ଆଗେଇ ଚାଲିଲା । ଗାଁ ଗୋହିରି । ଯେଉଁମାନେ ଆସୁଛନ୍ତି, ଯାଉଛନ୍ତି, ତା' ଆଡ଼କୁ ଚାହୁଁଛନ୍ତି । କିଏ କ'ଣ କହୁଛି ।

ତେଣିକି ଦୃଷ୍ଟି ପକାଇବାକୁ, କାନ ବଢ଼ାଇବାକୁ ତା'ର ଡର ନାହିଁ । ସେ ବାଟ ଦେଖିଛୁ । ଯିବ । ତା'ର ମନାସିଲ କାମ ଶେଷ କରି ଗୋଡ଼େ ଗୋଡ଼େ ଫେରି ଆସିବ । ଗୋହିରି ଶେଷରେ ଚଲାବାଟ । ସେମାନଙ୍କର ସାହି ଦେଖା ଯାଉଛି । ଆଗରୁ ତା'ର ସ୍ମୃତି ସେ ବାଉଁଶବଣ ସେପାଖେ ଦେଖିଥିଲା । କେବେ ଯାଇ ନଥିଲା ।

ଚଲାବାଟଟି ଦୁଇଟି ଲଗାଲଗି ଗ୍ରେଚଠ ପୋଖରୀର ଅଣ-ଓସାରିଆ ହିଡ଼ ଉପରେ । ଟଭି ପାରିହେଲା । ବାଉଁଶବଣ ପାରି ହେଲା ପରେ ସେମାନଙ୍କର ଦାଣ୍ଡ ଓ ସାହିର ଖୁଡ଼ୁଖୁଡ଼ିକା ଘର, ଦାଣ୍ଡର ଦୁଇ କଡ଼ରେ । ତାକୁ ଦେଖି ସେ ସାହିର ଲଙ୍ଗଳା, ଅଧ-ଲଙ୍ଗଳା ଧଡ଼ିଆ ଧେଡ଼ଙ୍ଗ ପିଲାଗୁଡ଼ିଏ ତା' ପିଛୁ ଧରିଲେ । ମାଇପି-ଗୁଡ଼ିଏ ପାଖକୁ ଆସିଲେ । କୁହାକୁହି ହେଲେ, ଇଲୋ ମା, ଖୁଣ୍ଟି ଆଘର ବୋହୂ-ସାନ୍ତାଣୀ ଲୋ !

ଜଣେ ପଚାରିଲା, ମା' ଠାକୁରାଣୀ ଏ ସାହିରେ କାହିଁକି ପାଦ ଦେଇଛ ?

ଅଲପ ହସି ଟଭି କହିଲା, ଭଉଁରୀ ଘରକୁ ଯାଉଥିଲି ।

—ତା' ଘର ତ ହେଇ ଆଗରେ । ସେ ମୋଡ଼ରେ । ବାଉଁଶ ବଣ କଣରେ । କଅଣ ଆଉ ଦେଖିବାକୁ ଯିବ ? ବୁଢ଼ୀଟା ମଲା ନାହିଁ ଯେ ଡରିଗଲା । ବିଚାରି ଚୁଣ୍ଡେଇ ପୁଣ୍ଡେଇ ଯାହା ଯେଉଁଠି ଗୁଣ୍ଡିଥିଲା, ତା' ବୋହୂମାନେ ସବୁ ହରଣଚାଲ କରିନେଲେ । ବଇଦ ଘରକୁ ଧାଁ ଧପଡ଼ କରି, ତମ ଘରେ ଯାଇଁ କାମ କରି, ବିଚାରି ଭଉଁରୀଟି ତା'ପାଖରେ ରହି ପାରିଲା ନାହିଁ । ବୋହୂମାନେ, ଆଉ ତାଙ୍କ ପିଲାଏ ଯାହା ପାଇଲେ ଗୁଣ୍ଡୁଚି ମୂଷା ପରି ସବୁ ବୋହିନେଲେ ।

—ସତେ; ମଡ଼ା ଉଠିଲାଣି ?

—ବଡ଼ପୁଅ, ଆଉ ମଝିଆଁ ଦି'ଟା ବୁଢ଼ୀକୁ ଦେଖି ପାରନ୍ତି ନାହିଁ । ଭଉଁରୀ ସେମାନଙ୍କର ବଇରି । ଏବେ ଅକଡ଼େଇଛନ୍ତି । ଆଣ ତୋ ଭାଗ ଟଙ୍କା । ମଡ଼ା ପୋଡ଼ା ହେବ । ମାଲଭାଇମାନେ ମଶାଣିରୁ ଫେରିଲେ କ'ଣ ହେଲେ କିଛି ଖାଇବେ । ଅଧେ ଖର୍ଚ୍ଚ କୁଆଡ଼େ ଭଉଁରୀ ଦେବ ! ସବୁ ନେଲେ, ବିଚାରି କାହୁଁ ପାଇବ ? ବାସନ କୁସନ ଯାହା ଦି'ଖଣ୍ଡ ଥିଲା ଆଣି ଗଦେଇ ଦେଇଛି । କହୁଛି ନିଅ, ମଡ଼ା ଉଠାଅ । ତା' ଦୁଆରେ ହିଣାପ ହେଉଛି ।

ମୋ ନାଁ କହି ଟିକିଏ ଭଉଁରୀକୁ ଏଠିକି ଧଅସି ଡାକିଦେବ ? କହିବ, ବାସନ କୁସନ ବିକିବା ଦରକାର ନାହିଁ ।

ମାଇପିଟିଏ ଧାଇଁଗଲା ।

ଟଭି ସେଇଠି, ନଇଁଆସିଥିବା ବାଉଁଶ ବୁଦାର ତଳେ ଅପେକ୍ଷା କରି ରହିଲା । ଖବର ପାଇ ଭଉଁରୀ ଆସିଲା । ଟଭିର ମୁହଁକୁ ଚାହିଁ କଇଁ କଇଁ ହୋଇ କାନ୍ଦିଉଠିଲା ।

ଟଗର ଆଖିରେ ଲୁହ ଛଳ ଛଳ ହେଲା । ସେ କାନର ଗଣ୍ଠି ଖୋଲି ଦୁଇ ଖଣ୍ଡି ପାଞ୍ଚଟଙ୍କିଆ ନୋଟ୍ ଭଉଁରୀର ହାତକୁ ବଢ଼ାଇଦେଲା । କହିଲା, କାନ୍ଦ ନା । ଯା, ଆଗ କାମ ଉଠା । ଲେଡ଼ା ହେଲେ କାଲିଆଡ଼କୁ ଥରେ ଯାଇ ଦେଖା କରିବୁ । ବାବୁ କୁଆଡ଼େ ବାହାରି ଗଲେଣି । ଘରେ ତାଲା ପକାଇ ଆସିଛୁ । ଯାଉଛୁ ।

ଉତ୍ତରକୁ ଅପେକ୍ଷା ନ କରି ଟଗ ବାହୁଡ଼ି ଆସିଲା । ବେଳ ରତରତ ହେଉଛି । କବାଟରେ ତାଲା ଝୁଲୁଛି । ଖୋଲିବାକୁ ହାତ ଚଳୁନାହିଁ । ଆଜି କାହିଁକି ଖାଁ ଖାଁ ଲାଗୁଛି । ଘର ଭିତରକୁ ଯିବାକୁ ମନ ଡାକୁ ନାହିଁ । ସବୁ ଶୂନ୍-ଶାନ୍ । ଗୁହାଳଟା ଖାଲି; ଅନ୍ତତଃ ସେହିମାନେ ତା'ର ସଙ୍ଗୀ ଥିଲେ । ସେମାନଙ୍କ ସଙ୍ଗେ କଥାଭାଷା କରି ତା'ର ଏକୁଟିଆ ଜୀବନର କିଛି ସମୟ କଟି ଯାଉଥିଲା । ଭଉଁରୀମା ଓ ଭଉଁରୀକୁ ଅପେକ୍ଷା କରି ବସିବାରେ ମଧ୍ୟ ବେଳ କଟୁଥିଲା । ସେମାନେ ଆଉ ଆସିବେ ନାହିଁ ।

ଝିରିଆ କ'ଣ ଫେରିବ ?

ଏହି ପ୍ରଶ୍ନର ଉତ୍ତର ଟଗର ଆଶାହିଁ ତା' ମନକୁ ଦେଲା, ପୁନା ତା' ଘରେ ଠାବ ଦେବ ନାହିଁ । ବୁଲି ବୁଲି ବଳେ ଫେରିଆସିବ । ଯିବ କୁଆଡେ ?

ରନ୍ଧାବଢ଼ା ସାରି ସେ ଏକୁଟିଆ ଝିରିଆକୁ ଅପେକ୍ଷା କରି ରହିଲା ।

ଆଷାଢ଼ ପୂନେଇଁ ରାତି ।

ଆକାଶରେ ବହଳ ମେଘର ଧୀର ଚଳନ । ଜହ୍ନର ମୁହଁ ଦିଶୁନାହିଁ । ତାରାଗୁଡ଼ିକ ଲୁଚି ଯାଇଛନ୍ତି । ପବନର ଚଳନ ନାହିଁ । ଅଗଣାଟା ଟିକିଏ ଫରଗ୍ସ ଦିଶୁଛି । ଯୁଆଡ଼େ ଗ୍ନହିଁଲେ ଆଜି କାହିଁକି ଡ଼ରଡ଼ର ଲାଗୁଛି । ଯେଉଁ ଆପଣା ମଣିଷ, ପୁଣି ଜଣାଶୁଣାମାନେ ମରି ହଜି ଗଲେଣି, ସେହିମାନଙ୍କର ମୁହଁଗୁଡ଼ିକ ଦିଶିଯାଉଛି । ବେଶି ମନେ ପଡ଼ୁଛି ଭଉଁରୀମା ବୁଢ଼ୀଟି ! ସତେ ଯେମିତି ସେ ଆଗରେ ବସି କ'ଣ ସବୁ ଗପୁଛି ।

ବଲୁଆ ବୋବାଇ । ତା' ସାଙ୍ଗକୁ ବନ୍ଧ ତଳେ କିଏ ଖେଙ୍କି ଉଠୁଛି । ସେଇଠୁ ଟହ ଟହ ହସ । ଡକାଡକି ହୁଁ-ହୁଁ କା ରଡ଼ି । ବାରିଆଡ଼ ଅରମାବଣରୁ ଛୁଡ଼ଚହିଙ୍କା ଭୁମାଭୁନିଆଁ କଣ୍ଟଲତା । କେତେ ଦୂରରୁ କାହାର ବିକଳ କାନ୍ଦଣା । କେଉଁଠି ଟିକିଛୁଆର ଗ୍ନହାଧରି କାନ୍ଦ । ସବୁ ତୁନ୍‌ତାନ୍ । ନୂଆ ନୁହେ । ଶୁଣି ଶୁଣି ଦେହସହା । ଝିଙ୍କାରୀଙ୍କ ରହି ରହିକା ଝିଁ-ଝିଁ । ଆଉ କେତେ ଦୂରରେ ବେଙ୍ଗ ପଲଙ୍କ ରଡ଼ି ।

ହେଉପାଉଳା ଦିନରୁ ଶୁଣି ଶୁଣି ଅଭ୍ୟାସ ହୋଇଛି । କେବେ କହେ ଭୂତ, ପ୍ରେତ, ଡାଆଣୀ ଚଉଗୁଣୀ, ଚଣ୍ଡୀ, ଗ୍ରୁମୁଣ୍ଡାଙ୍କ ନାଟ ଓ କଳକଳା ରଡ଼ି । ଧରାପରା, ଆଡୋଳ ଶୁଙ୍ଘାଶୁଙ୍ଘି । ଲଡ଼ାପଟର ଟହ ଟହ ହସ । ଦ୍ୱାରଲଙ୍କର ବକଳ ବୋବାଳି ।

କେଉଁ ଜାଗିଲାର ଲୋକେ, ଯାହାସ ପଟରେ ବଳଆର ଡରୁଆ ଛେଉଆଙ୍କ ଗ୍ରୁଣଆଁ ପଣକୁ ଫୁଟକ ମାର ଉଡ଼ାଇ ଦିଅନ୍ତି । ଦେଖି ଜାଗିଲାଲୋକଥା କହନ୍ତି ଯେ ଦୁଡ଼ୁଗୁଡ଼ୁଆ ଯେଉଁ ଲୋକଙ୍କର ମନ, ନିଜ ଗ୍ରୁଇକୁ ଦେଖିଲେ ଯାହାଙ୍କ ଗ୍ରୁତିରେ ଛନକା ପଶେ, ସେମାନଙ୍କ ପାଇଁ ଏସବୁ ସତ । ସତ ବି ଫଳିଯାଏ । ଗଛର ଗ୍ରୁଇ ଦେଖି, କୀଟପତଙ୍ଗ, ଘୁଡ଼ଆ ଚଢ଼େଇ, ବିଲୁଆ, କୋକି ଅବା କେଉଁ ଜୀବଜନ୍ତୁଙ୍କର ରଡ଼ି ଶୁଣି, ସେହି ପାତଳାମନୁଆଁଙ୍କୁ ଭେଟଣା ହୁଏ, ଦି ମୁହଁ ଛୁଟେ, ମରନ୍ତି ।

କହନ୍ତି, ନ ମଲ ଯିବେ କୁଆଡ଼େ ? ଅଜବ ମିଛ । ଡରୁଆ କଥାଗୁଡ଼ା । ବଦ୍‌ମାସିଆ, ନୋହିଲେ ଛେଉଆ ଲୋକଙ୍କ ଶୁଣାକଥା । ନିଜେ ନ ଦେଖି ନଶୁଣି ଅନ୍ୟଙ୍କ ମୁହଁରୁ ଶୁଣିଲା ଘଟଣାକୁ ଆପେ ଦେଖିଲା ପରି ମିଛୁଆଏ ସତ ଫଳାଇ କହନ୍ତି ।

ଲୋକଙ୍କ କୁହା ସେହି ଧାରଣା ମନରେ ଭରିଥିଲା । ଶିବବାବା ସେହି ଧାରଣାକୁ ତା ମନରେ ସଜ ଫଳେଇଲା । ସେଇଥିପାଇଁ ସେ ଗୋଟାଏ ଗ୍ରୁମୁଣ୍ଡାକୁ ନିଜ ଭିତରେ ଅନୁଭବ କରୁଥିଲା । ତା'ର ଭୟଙ୍କର ରୂପ ବାହାରେ ଦେଖୁଥିଲା । କେଉଁଥିପାଇଁ ସେହି ପ୍ରଗ୍ରର, ଦିନେ ସେ ବୁଝିଲା । ପିସାଦିଆଦଳଙ୍କ କାରସାଦି ଜାଣିଲା । ଜାଣିଲା ଦିନରୁ ସେ ତା'ର ପ୍ରମାଦ ବୁଝିଲା । ଆଉ ସେ ଗ୍ରୁମୁଣ୍ଡାର ଦେଖା ଦର୍ଶନ ମିଳନାହିଁ । ସୁନା କହିବ, ଶିବବାବାଙ୍କ ଦୟା, ତାଙ୍କ କରାମତି । ଟଗ୍ରର ମନ କହୁଛି ସବୁ ମିଛ କଥା । ମନରୁ ସେ ନିଜେ ଗ୍ରୁମୁଣ୍ଡାର ଧାରଣା ପୋଛି ଦେଲାରୁ ତା'ର ମାୟାରୂପ ଉଭେଇଗଲା । ବଡ଼ଠାକୁର ଜଗନ୍ନାଥେ ତା' ମନରେ ବିଜେ କରିଛନ୍ତି; ଆଉ କିଏ ପଶି ପାରିବ ?

ମନକୁ ସବୁ ସାନ୍ତ୍ୱନା ଦେବା ପରେ ମଧ୍ୟ ଦିନ୍ଛଟିଆ ଘରେ କେଜାଣି କାହିଁକି ସେ ମନ ଦୁର୍ବଳ ହେଉଛି । ଗ୍ରୁତିରେ ଛନକ ପଶୁଛି । ତାର ନିସାହା-ପଣର ସୁଯୋଗ ନେଇ ଯଦି ଗ୍ରୋର ତସ୍କର ଘରେ ପଶନ୍ତି ଏକୁଟିଆ ସେ ମାଇପି ଲୋକ କ'ଣ କରିପାରିବ ? ସବୁ ଗାଁରେ ଠାଉରିଆ ଅଛନ୍ତି । ଭାବିଲା, ସେ ବାହାରେ ଅପେକ୍ଷା କରିବ ନାହିଁ । ଝିଅଆକୁ ଅନିସା କରି ଅନିଦ୍ରା ରହିବା ବୃଥା ଆଶା ।

ଟଗ୍ର ଆଲୁଅ ଧରି ଘର ଭିତରକୁ ଗଲା । କବାଟ କିଲିଲା । ଆଲୁଅ କମାଇଁ ପଲଙ୍କରେ ଶୋଇଲା । ଆଖି ବୁଜୁବୁ ମନେ ପଡ଼ିଲା ବେଗଣୀ ବୁଢ଼ୀମାଆଟି !

ଭାବିଲା, ସେ ଆଉ ନାହିଁ । ସେପୁରକୁ ଚାଲିଗଲାଣି । ଥରେ ଦେଖିବ ବୋଲି ଆଶା କରିଥିଲା । ଦେଖି ପାରିଲା ନାହିଁ । ତା'ର ଆଶା ମେଣ୍ଟିଲା ନାହିଁ । ଆହା ! ବିଚାରି, ତାକୁ ସେ କେତେ ଭଲ ପାଉଥିଲା ।

ଆଖିରୁ ଦି'ଧାର ଲୁହ ଝରିଲା । ସେ ଲୁହ ଆପେ ଶୁଖିଲା । ବଳିଆରଭୁଜ ଚକାଡୋଳାଙ୍କୁ ସୁମରଣା କରି ତାଙ୍କୁ ସବୁ ଦୁଃଖ ଜଣାଇ, କି କରିବ ମତେ ବତାଇ ଦିଅ ବୋଲି ନେହୁରା କରୁକରୁ ତା'ର ବ୍ୟଥା-ବ୍ୟାକୁଳ ଥିତକୁ ନିଦମାଉସୀ କୋଳକୁ ଟାଣିନେଲା । ସପନ ବି ଅପସରି ରହିଲା ।

ଆଖି ଖୋଲିଲା ବେଳକୁ ଦେଖିଲା, ଝରକାର ଫାଙ୍କବାଟେ ରଶ୍ମି ଆସୁଥିବା ଖରାରୁ ଦି' ଗାର କାନ୍ଥରେ ପଡ଼ିଛି । କେତେବେଳୁ ରାତି ପାହିଲାଣି । ମନରେ ଚହଙ୍କା ଭାବନା ଖେଳିଲା । ରାତିରେ ଝିଅ ଫେରିଲା ନାହିଁ ? କେଉଁଠି ରହିଲା ? ସୁନା ପୁଣି ତା'କୁ ଘରେ ଥାନ ଦେଲା ? ଡ଼ାକୁଣୀଟା ତା' ଉପରେ ଦାଉ ସାଧୁଛି ? ଅବା କେଜାଣି ଝିଅ କେତେବେଳେ ନିଶା ଟଳଟଳ ହୋଇ ଆସି ଡ଼ାକି ଡ଼ାକି କେହି ନ ଶୁଣିଲାରୁ ଦାଣ୍ଡ ପିଣ୍ଡାରେ ଶୋଇଛି ?

ଧଡ଼ପଡ଼ ହୋଇ ଉଠି ଈଶ୍ୱ କବାଟ ଖୋଲି ପଦାକୁ ବାହାରିଲା । କେତେ ଖରା ପଡ଼ିଲାଣି ! ସେ ମୁହଁ ନ ଧୋଇ ଧାଇଁଗଲା ଦାଣ୍ଡ ଘରକୁ । କବାଟ ଖୋଲି ଦାଣ୍ଡକୁ ଆସିଲା । ସୂର୍ଯ୍ୟ ଗଛ ଗହଳି ଭିତରୁ ଆକାଶ କୋଣକୁ ଉଠି ଆସିଲେଣି । ଝିଅର ଦେଖା ନାହିଁ । ଯଦି ଆସିଥିବ, ଡାକି ଡ଼ାକି ସେ ଫେରିଯାଇଥିବ ?

କାହାକୁ ପଚାରିବ ? କାହିଁକି ପଚାରିବ ? କିଛି ନୂଆ କଥା ନୁହଁ । ଘରକୁ ନ ଫେରି ସେ ସେମିତି କେବେ କେବେ ରହିଯାଏ । ଭଲେଇ ହୋଇ ଆଗରୁ କହେ, ମଠରେ କନ୍ତାଳ ହେଉଥିଲା, ହାଲିଆ ହୋଇ ସେଇଠି ଶୋଇପଡ଼ିଲି ।

କିଏ ପଚାରୁ ଥାଏ ?

ତା'ର ପାପମନ ଛୁଆଁକୁ କଇଫତ ଦିଏ । ଈଶ୍ୱରକୁ ନୁହେଁ, ଲୋକଲଜ୍ଜାକୁ, ହୋଇଥିବ ତା'ର ପିଲାବେଳର ଭଲପଣିଆକୁ, ତା ମନର ବିବେକକୁ । ଦି'ଗୋଡ଼ିଆ ଛେଳି-ଛୁଆଠାରୁ-ହୀନ ଈଶ୍ୱର ଜାଣି ଖାଲି ତା'ର ସେହି ମିଛମିଛିକା ସତଫଳା-କଥାର ଗୁହାରି । ଖାଲି ସେ ଶୁଣିବ । ମାନୁ ବା ନ ମାନୁ, ମୁହଁ ଖୋଲିବ ନାହିଁ । ଜେରା କରି ନିଜ ଆଗରେ ନିଜକୁ ଧରାପକାଇବ ନାହିଁ ।

ଏଠି ଆଉ ଚଳି ହେବ ନାହିଁ । ରହି ହେବ ନାହିଁ । କେତେ ଦିନ ଦହଗଞ୍ଜ ହେଉଥିବ ? ଗେରସ୍ତର ଅବହେଳା, ତା'ର ଅତ୍ୟାଚାର, ତା'ର ପର-କାମିନୀ ରଙ୍କପଣିଆଁ ଈଶ୍ୱର ସହିବାର ସୀମା ଟପିଗଲାଣି । ଝିଅ ବାଟକୁ ଫେରିବ, ଏପରି ଆଶା ତା'ର ଭାଙ୍ଗିଗଲାଣି ।

ଆଉ ନୁହେଁ । କେଉଁ ଜନମରେ କି ପାପ କରିଥିଲି ବୋଲି ଏ ଜନମରେ ଏତେ ଶାନସ୍ତା ସେ ହେଲଣି । ଖାନକପାଳୀ । ଦହିଗଣ୍ଡ ତାର କପାଳରେ ଲେଖା । ସେହି ଲେଖାର ଗାର କେହି ଲିଭାଇ ପାରିବେ ନାହିଁ ।

ସବୁ ଚେଷ୍ଟା ବିଫଳ ହୋଇଛି । ଝିଅଟାକୁ ସେ ବାଟକୁ ଆଣିପାରି ନାହିଁ । କୁକୁର ଲାଙ୍ଗୁଡ଼ ବଙ୍କା । ବାର ବରଷ ତାକୁ ନଳରେ ପୁରାଇ ରଖିଲେ ସିଧା ହେବ ନାହିଁ । କାହିଁକି ସେମିତି କାମୁଡ଼ା କୁକୁରର ଶରଣ ପଶିବ ? ସବୁ ନିର୍ଯାତନା ସହି ଉଦ୍ଧବକୃତି ପରି ଓହି କରି ପଡ଼ି ରହିଥିବ ?

ଟେଶର ଅଳସ ମୁଣ୍ଡ ଦୋହଲିଗଲା । ସେ କବାଟ କିଳିଲା । ଦୁଇ କାନରେ ଦୁଇ ହାତ ରଖି ଅଗଣାକୁ ଓହ୍ଲାଇଲା । ଅଧା-ବାଇଆଣୀ ! ମୁଣ୍ଡ ହଲାଇ ଯେ ତା'ର ଅନ୍ତର ଭିତରେ ଶୁଭୁଥିବା ଶାଶୁ ଓ ଶଶୁରଙ୍କର ଦାରୁଣ-ବାଣୀକୁ ଯେମିତି ନ କରିବାକୁ ଜବାବ ଦେଲା – ଶୁଣିବି ନାହିଁ, ମାନିବି ନାହିଁ, ସହିବି ନାହିଁ, କି ରହିବି ନାହିଁ । ଯିବି, ନିଶ୍ଚୟ ଯିବି । ଭାଇ ଭଉଣୀ ହୋଇ ଖେଳିବ ତ ? ଖେଳିବ । ଆସିବ ତ ? ହଉ, ଆସିବ । କାହାର ମଣ୍ଡିରୁ ତମେ ଅଙ୍କୁରିବ, ବଢ଼ିବ, ଜନମିବ ମୁଁ ଜାଣେ ନାହିଁ ।

ପରର ଝିଅକୁ ନିଜ ଝିଅର ସ୍ନେହ ଦେଇଥିଲି । ମୋ ପେଟରୁ ଜନମିଲେ ତହୁଁ ଅଧିକ ସ୍ନେହ ପାଇବ । ଶେଷ କଥା କହିଦେଇଛି । ଶୁଣିଥା ଗୋ ମା ବୃନ୍ଦାବତୀ ! ତମେ ଏଠି ଅଛ, ସେଠି ଅଛ, ସବୁଠି ଅଛ । ତମେ ଏଠି ସବୁ ଦେଖିଛ, ସେଠି ଦେଖିବ, ଆର ଜନମରେ ବି ଦେଖିବ । ତମେ ମୋର ସାକ୍ଷୀ । ତମେ ତ ସଭିଙ୍କର ସବୁକାଳର ଜଳଜଳ-ଚହ୍ନାଁ ଜଳକା ମୂକସାକ୍ଷୀ !

ଟେଶ କାନରୁ ହାତ ଝିଙ୍କାଇଲା । ସେ ଘରଆଡ଼କୁ ଗୁହାଁଇଲା । କେବଳ ଶୋଇବା ଘର ଛଡ଼ା ଆଉ ସବୁ ଘରର କବାଟ ବନ୍ଦ ଅଛି । କାହିଁକି ଖୋଲିବ ? କି ପାଇଁଟି କରିବ ? କାହା ପାଇଁ ? ବାସି ମୁହଁରେ ତ ସେ ପାଣି ଦେଇ ନାହିଁ ।

ପୁଣି ଭାବିଲା, କିଏ ଅଛି ଯେ ସେ ଅଭିମାନ କରିବ ? ନିଜ ଉପରେ ରବେଇ ଖବେଇ ହୋଇ ନିଜକୁ ସେ କଷ୍ଟ ଦେବ କାହିଁକି ? ଯାହା କରିବାର ସେ ସ୍ଥିର କରି ସାରିଛି । ତା'ର ଭାଗ୍ୟ ତା'କୁ ଯେଣିକି ଟାଣିନେବାର ନେଉ ।—

ଟେଶ ବାରିଆଡ଼କୁ ଗଲା ।

ମନକୁ ବୁଝାଇ ସେ ନିଜେ ପ୍ରସ୍ତୁତ ହେଲା । ନିଜ ଦେହର ଯତ୍ନ ସେ ଆଜି ନେଇଛି । ନିଠେଇ ନିଠେଇ ଦେହ ସଫା କରିଛି । ମଥାରେ ସିନ୍ଦୂର, ଆଖିରେ କଜଳ ମଣ୍ଡିଛି । ଯଥାସାଧ୍ୟ ଚେଷ୍ଟାକରି କେଶ ପ୍ରସାଧନ କରିଛି । ବେଣୀ ପକାଇ ଜୁଡ଼ା ବାନ୍ଧିଛି । ସଫା ଶାଢ଼ୀ ଖଣ୍ଡେ ପିନ୍ଧିଛି ! ଦିଶୁଛି ହଳଦୀ-ବସନ୍ତ ଚଢ଼େଇଟି ପରି ।

ଫେରିଯିବ ସେ ବାପଘରକୁ । ପୁରୁଣା ଦେହ ପାଲଟାଇ ନୂଆ ପୋଷାକ ଦେହ ଧରି ସେ ଜନମମାଟିକୁ ଫେରିଯିବ ।

ସେମାନେ ଆଖି ଠଗ୍‌ଠର ହେବେ । ତାକୁ ଶୁଣାଇ ବୋଲଣାଦଆ କଥା କୁହାକୁହ ହେବେ ।

—ସେହ ଗାଁ ନାନ୍ଦୁରଏ । ଦେଖ ଗୋ, ଚୂଡ଼ା ଫଡ଼ଲଲା ପର ଦଶୁଛୁ । ସାବତମା ନାହ୍ନୁଣର ମାଡ଼ ଖାଇ, ଗଞ୍ଜଣା ସହ କାମରେ ଝଟି କର୍କଟିଏ ହୋଇ ଯାଇଥଲା । ପାଣି-ତୋରାଣି ପିଇ ପ୍ରାଣ ଧରଥଲା । ଖୁଣ୍ଟିଆ ଘରେ ଗେହ୍ଲା ପଶିଅାଁ । ଖସ୍ତାପୁର, ଦୁଧ ଦହ ଖାଇ ଫାଲୁକା ବେଙ୍ଗ ହୋଇ ଆଇଛୁ ।

କହବେ, ଶାଶୁଶଶୁରଙ୍କୁ ଖାଇଲା । ଘରର ଘରଣୀ ସର୍ବେସର୍ବା ହେଲା । କ ଗୁଣ କାଢ଼ିଲା ଯେ ଘଇତା ତାକୁ ଛୁ କରଦେଲା । ବପଫିତା ଗୋ ! ବାବନାଭୁତ ହୋଇ ବାଁ ବାଁ ବୁଲଲା ? ଘରେ ପଶିଲା ନାହିଁ । ବାବାଜୀ ହୋଇ ଗଞ୍ଜେଇ ଟାଣିଲା । ଶିବବାବାଙ୍କ ଭଗତ । କାଳକାମାଈଙ୍କ ଶରଣ ପଶିଲା । ମଦ ଖାଇ ଦାଣ୍ଡରେ ଗଡ଼ିଲା । କ ଗୁଣ ପକେଇଲା ଯେ ଗାଁବାଲା ତଡ଼ ଦେଲେ ? ପକାଇ ଆଇଛୁ କ ?

ହାଡ଼ରୁ ମାଉଁସଟଡ଼ା କଥା କହବେ । ସାବତମା ଗୁହା ଗୁନ୍ଦୁରବ । ସତେ ଯଦ ଜଗନ୍ନାଥେ ପେଟର କଣିକୁ ଫଳ କରାଉଥିବେ, ପେଟ ଉଠିବା ସଙ୍ଗେ ପୁଣି ସେମାନେ ଅସନା ଅପବାଦ ରଟାଇବେ । କହବେ, ଏଇଥିପାଇଁ ଗୋ ସାତ ବରଷର ଘରଣୀକୁ ଗେରସ୍ତ ଦୂର୍ ପଲା, ଦୂର୍ ପଲା କର ତଡ଼ଥିବ । କ'ଣ ହାବୁଡ଼େ ତା'ର ପଡ଼ଥିବ ବୋଲ ନା, ନୋହଲେ କାହିଁକ ? ନଅଟା ଛଅଟା ନାହାନ୍ତି । କେଡ଼େ ଭାଗ୍ୟର କଥା ହୋଇଥାନ୍ତା । କୁଳ ରଖିବଟି ! ନଜ ଫଳ ନଜକୁ ବୋଝ ହୁଏ ନାହିଁ । ବୁଝିଲ ଏ ଅଭଲର ଢଙ୍ଗ ?

ଟଗ୍ର ଥକା ହୋଇ, ପଥର ପାଲଟି ଗ୍ଭଲକୁ ଧର ଠିଆ ହୋଇଥଲା । ଅଗଣାରେ ମେଘୁଆ ଖରାର ଆଲୁଅ-ଗ୍ଭଇ ଖେଳ ତା' ଆଖିରେ ପଡ଼ୁଥଲା । ଲୁହ ଛଲ ଛଲ ଆଖିକୁ ଜଳକା ଦଶୁଥଲା । ଭାବୁଥଲା, କାହାରକୁ ସେ ଓଲଟ-ଜବାବ ଦେଇପାରବ ନାହିଁ । କାହା ଆଗରେ ସାତ ବରଷର ଅଙ୍ଗେନଭା ଦୁଃଖର କାହାଣୀ ବଖାଣି ପାରବ ନାହିଁ । ଯେଉଁ ଜଣକ ତା'ର ଦହଗଞ୍ଜିଆ ଜୀବନର ଦୁଃଖ ବୁଝି ସାନ୍ତ୍ୱନା ଦଅନ୍ତା, ସେହ ନେକେମା ସ୍ୱର୍ଗପୁରକୁ ଗ୍ଭଲ ଯାଇଥିବ ।

ସିବ ନାହିଁ ? ମନ ଓ ଦେହକୁ କାଠ କର ରହବ ? ଝିଅାର ସବୁ ଗାଲିମନ୍ଦ ସହବ ? ମାଡ଼ ଖାଇ ମାଟି କାମୁଡ଼ି ପଡ଼ଥିବ ?

ମରଦ ପୁଅ । ଗେହ୍ଲାରେ ବଢ଼ିଥଲା । ଅଭାବ ଅନାଟନ ଜାଣି ନ ଥଲା । ପାଞ୍ଚ ମାଗିଲେ ପଚଶ ପାଇ ଅବ୍ୟାଜରେ ମନଇଚ୍ଛା ଉଡ଼ାଉଥଲା । ଦାତାପଣକୁ ଝଣ୍ଟୁ । ବାପମାଆଙ୍କର ଆକଟ ନଥଲା । ଭଲ ମନ୍ଦ କେହ ବୁଝାଇ ଦେଉ ନ ଥଲେ ।

ଅବାଟରେ ଗ୍ଭଲିଲା । ଦୋଷ କ'ଣ ଏକା ତା'ର ? ସେ ବୁଝିଲା, ନିଶା-ଅମଳରେ ମଉଜ ଅଛି । ଝିଅ ଦେହରେ ସୁଖଭୋଗ ଅଛି । ମରଦ ପୁଅକୁ ସୁଖ ଆନନ୍ଦ ଦେବାକୁ ସେହି ଦେହକୁ ଦଇବ ସର୍ଜନା କରିଛି । ଏ ଦେହ ସେ ଦେହର ବାଛ ବିଗ୍ଭର ପୁଣି କ'ଣ ? ଅଗମ୍ୟାକୁ ଛାଡ଼, ଯିଏ ହସିଲା, ଯିଏ ରୁଚିଲା, ଯେଉଁଠି ପ୍ରମାଦ ନାହିଁ, ସେଠି ବି ଆନନ୍ଦ ମିଳିବ । ସ୍ୱେଚ୍ଛ ଲମ୍ପଟଙ୍କ ବିଗ୍ଭର ।

ମାନ ସନମାନ, ଧର୍ମ-ଅଧର୍ମ କ'ଣ ଝିଅଆକୁ କେହି ପିଲା ବୟସରୁ ସମଝାଇ ନ ଥିଲା । ସେ ଜାଣିଥିଲା ଧନ ଦେଲେ ମଉଜ କିଣିବ । ସେଇଠୁ ସେଥି ବାଟରେ ଯିବ । ସେମାନେ ଏତେ ଆଡ଼ମ୍ବରରେ ଢ଼ାକ ବଜାଇ ଯେଉଁ ଝିଅଟାକୁ ଘରକୁ ଆଣିଲେ, ତା'ର ମଉଜ ପାଇଁ ତା' ପାଖରେ ଛାଡ଼ିଲେ, ସେହି ଝିଅଟାର ଦେହଟା କେବଳ ତାଆର ଭୋଗ ପାଇଁ ଅଣା ହୋଇଛି । ଏଇଆ ସେ ଝିଅଆ ଜାଣିଥିଲା ।

ଏବେ ସଜ ହେଲାଣି, ଦେହ ସେମିତି ଗ୍ଭଲ ହାଡ଼ ଗଣିହେଲାଣି, ତେବେ ବି ଦେହର ମଉଜ ପାଇଁ ତା' ଅଭ୍ୟାସ ତା' ଅରଣା ମନକୁ ବାଇ କରିଛି । କରୁଥାଉ ଯାହା ତା'ର ମନ । ସୁନାଦେଈ ଯଦି ତା'କୁ ସୁଖ ଦେଇ ପାରିଲା, ଦେଉ । ତା' ପାଇଁ ଆଉ ତା' ନିଶାପାଣି ଓ ଶିବବାବାଜୀ ପାଇଁ ଯଦି ସେ ତା'ର ବାକି ସମ୍ପତ୍ତି ଜୁର କରିବ, କରୁଥାଉ । ସବୁ ସରିଲେ, ସମସ୍ତେ ତା'କୁ ଗୋଡ଼ରେ ଆଡେଇ ଦେବେ । ସେଇଠୁ ମେ ବଳେ ଫେରିଇବ ତା' ମୁହଁ । ସେ ଆସି ଟଭିର ଶରଣ ପଶିବ । କେଜାଣି, ଠାକୁରେ କଲେ ଏ ଘରେ ତା' ରକତର କୁଆଁ ରଡ଼, ତା'କୁ ଓଟାର ଆଣିବ ।

ଟଭି ଭାବିଲା, ଯାହା ପଛେ ହେଉ, ଏ ଘରୁ ସେ ଗୋଡ କାଢ଼ିବ ନାହିଁ । ଜଗନ୍ନାଥେ ଯେତେ ଦୁଃଖ ଦେବାର ଦେଉନ୍ତୁ, ସେ ସହିବ । ଠାକୁରେ ତାର ସହିଣିପଣ ପରଖୁଛନ୍ତି ! ହଉ ହେଲା, ସେଇଆ ହେଲା । ଜେଜେମାଆର ଆତ୍ମା ସେପୁରରେ ଥାଇ ତା'ର ଦୁଃଖ ବୁଝିବ ।

ଟଭି ମନକୁ ବୁଝାଇ ଅଗଣାକୁ ଓହ୍ଲାଇଲା । ବୃନ୍ଦାବତୀଙ୍କ ଚଉରା ଆଗରେ ଆଣ୍ଠେଇ ବସିଲା । ଆଖିରୁ ଲୋତକ ଝରି ପଡ଼ୁଥାଏ । ତଳେ ବାରମ୍ବାର ମୁଣ୍ଡ ଲଗାଇ ହାତଯୋଡ଼ି ବସି ପାଟି ଖୋଲିଲା, ମୋ' ମନର ଭାବନା ଜାଣିଲୁ ତ ମା ! ତତେ ଛାଡ଼ି ମୁଁ କୁଆଡ଼କୁ ଯିବ ନାହିଁ । କେତେ ଗୁହାରି ନିତି ନିତି ତୋ' ଆଗରେ କରିଛି । ନ ଶୁଣିଲେ ନାହିଁ, ମୋ' ମନରେ ସାନ୍ତ୍ୱନା ଦେଇଛୁ । ସବୁ ସହିବାକୁ ମୋ' ଛାତିରେ ବଳ ଦେଇଛୁ । ଆଜି ଥରଟିଏ ମତେ କହିଦେ, ମୋ' ବିଗ୍ଭର କ'ଣ ଠିକ୍ ?

—ଏଁ, ଠିକ୍ ନୁହେଁ ?

—କାହିଁକି ଲୋ ମା ?

—ଆଜିକି ନାହିଁ ? ଡାଆଣୀ ପୁନା ବଡ଼ଉଣୀ ସବୁ ଟାଣିଟୁଣି ନେଇ ତା'କୁ ଫଟୁର କରିବ ? ସରଗଲେ, ତା କଙ୍କାଳରୁ ଉଧୁରିବାକୁ ତା'ର ଆଉଛୁ-କି-ଯାଉଛୁ ଜୀବନକୁ, ମଦ ସଙ୍ଗେ କେଉଁ ବିଷ ମିଶାଇ ତାକୁ ପିଆଇ, ଉଡ଼ାଇ ଦେବ ? ବାଟରେ, ଘାଟରେ, କେଉଁ ଅପଲ୍ଲିରେ ପଡ଼ି ସେ ଜୀବନ ଗୁଡ଼ିବ ? ସମସ୍ତେ କହିବେ—

—କ'ଣ କହିବେ ?

—ମଦୁଆ ଗଣ୍ଡଡ଼ଟା, ଗୁଡ ଫାଟିଗଲା । ପୁନାବଡଉଣୀ ଆଉ ତା ମରଦ ଓ ମାଇପି ଭଗତ ପ୍ରଚାର କରିବେ, ଯେଉଁ ଗ୍ରାମଣ୍ଡାଟା ଟଙ୍କା ଭିତରୁ ବାହାରି ଏ ଗାଆଁରେ ଏକଡ଼ ସେକଡ଼ ହେଉଥିଲା, ଟଙ୍କା ଉପରେ ବସି ତା' ଗେରସ୍ତକୁ ଖାଇ-ଦେଲା । ଶିବବାବା ଧ୍ୟାନରେ ବସି ଏହା ଜାଣିଲେ । ଭଗତମାନଙ୍କୁ କହିଲେ ।

—ଲୋକେ ପରତେ ଯିବେ ?

—କାହିଁକି ପରତେ ନ ଯିବେ ? ଜାଣୁ ନାହିଁକି ଏବଯାଏ ପରର ଦୁର୍ଦ୍ଦଶା ଦେଖି ଉଣ୍ଡରେ ଆହା-ଉହୁ କରି ମନରେ କୁରୁଳିବା ଲୋକ ଏ ସଂସାରରେ ଅଳପ ନାହାନ୍ତି ? ଘରେ ଜନବଳ ନାହିଁ । ହାତରେ ଧନବଳ ନାହିଁ । ଘରଡ଼ିହ ଥିବ କି ନ ଥିବ ଜଣା ନାହିଁ । ଖାଲି ମନବଳ କେତେଦିନ ଭଲେ ଚଳାଇ ପାରିବ ଯେ ତୁ ନିଜକୁ ବଞ୍ଚାଇ ପାରିବୁ, ଆଉ ତୋ' ପେଟର ଛୁଆକୁ ?

—ମୁଁ କି ବୁଦ୍ଧି କରିବି ଗୋ ବୃନ୍ଦାବତୀ ମା ?

—ପେଟକୁ ଦାନା, ଦେହକୁ କନା, ମୁଣ୍ଡ ଗୁଞ୍ଜିବାକୁ ଥାନ, ପେଟରୁ ଜନମିଲା ଛୁଆଟି ପାଟିକୁ ଅଧାର ନ ମିଳିଲେ କୋଉ ମନବଳ ରହିବ ? ପିଲାକୁ ବଞ୍ଚାଇବ କିପରି ? ସାହା ହେବାକୁ ଯିଏ ଆସିବ, ତା'କୁ ତୋ' ଦେହଟା ଛଡ଼ା କଅଣ ଦେବାକୁ ଥିବ କି ? ସେହି ମହତ ଟିକକ ସରିଲେ ସବୁ ସରିଲା । କେଉଁ ଗୁଣରେ ପୁନାଦେଈଠାରୁ ତୁ ବଡ଼ ବୋଲି ଗରବ କରିବୁ ? ମହତକୁ ଖରଚ କରିବୁ ?

ନାଇଁ, ନାଇଁ, କହି ଟଙ୍କା ମୁଣ୍ଡ ହଲାଇଲା । ବାଇଆଣୀ ପରି ଖଞ୍ଜା ଭିତରେ ଏକଡ଼ ସେକଡ଼ ହେଲା । ସମସ୍ତେ ଯେପରି ତା'କୁ ଏ ଘରେ ଅଟକି ରହିବାକୁ ଅଳି କରୁଛନ୍ତି—ଘରର ମଥାନ ଉପରେ ସେହି କାଉ ଦିଓଟି, ଶୁଭ କାଉ, ଚାଳ ଉପରେ ପାରି ଦିଓଟି, କାନ୍ଥ ଓ ଚାଳ ସନ୍ଧିରେ ଯେଉଁ ଘରଚଟିଆଗୁଡ଼ିକ ବସା ବାନ୍ଧିଛନ୍ତି, ଡ଼ାକ ପାରିଛନ୍ତି ସେମାନେ ବି ।

କିଏ ଦାଣ୍ଡ କବାଟ ଧଡ଼ ଧଡ଼ କରୁଛୁ । ଆସିଲା କି ଝିଅଆ ? କଅଁଳ-ଗାଧୁଆବେଳ ଗଡ଼ିଗଲାଣି । ଏତେ ବେଳକେ ? କେଉଁଠି ରହିଲା ରାତିରେ, ପୁଣି ଆଜି ଏତେବେଳ ଯାଏ ?

ପସ୍ତ୍ରଶବ ନାହିଁ । ତାର ଯାହା ମନ ତାହା କରୁ । ଖାଇବାକୁ ମାଗିଲେ ଗୁଡ ରନ୍ଧାଭାତ ପଖାଳ ହୋଇଛୁ, ସେଥିରୁ ଦେଲଏ ବାଢ଼ିଦେବ । ଡାଲି ତରକାରୀ ଗଣ୍ଡିଆ ହେବଣି । ରୁଚଲେ ଖାଇବ, ନୋହିଲେ ନାହିଁ । ବଡ଼ ପୁଞ୍ଜିଏ ପୋଡ଼ି ଦେଲେ, ଶୁଖୁଆ ଖଣ୍ଡେ ଭାଜି ଦେଲେ ତା'ର ଚଳିବ । ଏଥିରେ ତା'ର ଶରଧା । ଯେଉଁ ଝିଅ ତ । ଦନୁଦନ କମି ମୁଠିକରେ ରହିଲାଣି ।

ପୁଣି କବାଟ ବାଡ଼ିଆ ଶବଦ । ଟଗ୍ର ଦ' ଖେପାରେ ଧାଇଁଗଲା ।

ଡ଼ାକୁ ନାହିଁ କାହିଁକି ? ନଟଗ୍ର କାଣ ବ ଶୁଭୁ ନାହିଁ । ଶିକୁଳରେ ହାତ ଦେଉଣୁ ବାହାରୁ ଡ଼ାକ ଶୁଭିଲା ।

ଭଅଁ ଗ୍ର ।

ଟଗ୍ର ପଦାକୁ ଆସିଲା ।

ଭଅଁ ଗ୍ର ଦାଣ୍ଡ ପିଣ୍ଡା ତଳକୁ ଓହ୍ଲାଇ ଗଲା । କହିଲା, ସାଆନ୍ତେ ମତେ ଛଡ଼ ଦେଇଛନ୍ତି । ମାଡ଼ମାର କହିଛନ୍ତି, ମୁଁ ଏ ଘର ଦୁଆରମୁହଁ ମାଡ଼ିବ ନାହିଁ । ବାକଅ ବର୍ତ୍ତନ ବୁଡ଼ିଲେ ବୁଡ଼ୁ, ମୁଁ ଏଠିକି ଆସି ନ ଥାନ୍ତି । ତମେ ଆସିବାକୁ କହି-ଥିଲ ବୋଲି ଆସିଲି ।

—ଭଲ କଲୁ । ତତେ ମୁଁ ଖୋଜୁଥିଲି । ମଶାଣିରୁ କେତେବେଳେ ଫେରିଲ ?

—ଘଡ ଅଧ ବଳେଇଥିଲା । ବୋଉମା, ସାଆନ୍ତେ କ'ଣ ଘଡରେ ଫେରିଥିଲେ ? ଶୁଣିଲି, କାଲି ମଠରେ ଜଣ୍ଜାଳ ହୋଇଥିଲା । ସେମାନେ ସବୁ ଶାଗୁଆଡ ଗ୍ରହିଥିଲେ । ଆମ ସାହିରୁ ପିଲାଏ ଯାଇଥିଲେ ଯେ କହୁଥିଲେ । ଆଉ କୋଉ ଗାଆଁରୁ କୁଆଡ଼େ ଦୁଇଟା ଛେଳି ଅଡ଼େଇ ଆଣିଥିଲେ । କେଜାଣି କଣି କରି ଆଣିଥିବେ ।

ଟଗ୍ର କହିଲା, ସେ ଫେ'ର ନାହାନ୍ତି । ମୋତେ ତ ଡ଼ର ଭୟ ନ ଥାଏ । ଗ୍ରେର ଡକାଇତ ପଶିଲେ ପଶିଥାନ୍ତେ । ଯାହା ତାଙ୍କର ମନ ନେଇଥାନ୍ତେ । ହଁ, ଶୁଣ୍, ତତେ କାହିଁକି ଡକାଇଥିଲି, ମଉସା କାହିଁକି ଆସିଥିଲେ, ତତେ କହି ନ ଥିଲେ ?

—ନାଇଁ, ବୋଉମା !

—ମୋ ଜେଜେ ମା' ଶକ୍ତ ବେମାର । ତୋ ବୋଉଠାରୁ ସେ ବହୁତ ବୁଢ଼ୀ । କହୁଥିଲେ, ଆଉ ବ କି ନାହିଁ ଦଇବ ଜାଣେ । ମତେ ଥରେ ଦେଖିବାକୁ ସେ ଗ୍ରହୁଁଛୁ । ଆଜ ଯଦ ଯାଇପାରନ୍ତି, କେଜାଣି ତା'ଙ୍କୁ ଥରେ ଦେଖନ୍ତି । ସାତ କୋଶ ବାଟ । କେମିତ ଯିବ ?

—ଶଗଡ଼ରେ ତାଟ ବାନ୍ଧଦେଲେ ତମେ ବସି ଯାଇ ପାରବ । ନଧି ବେହେରାଙ୍କର ତାଟବନ୍ଧା ଗାଡ଼ି ବି ଅଛି ଯେ ! ଏବେ ତ ଦେଖିଲ, ନଧି ବେହେରା ତାଙ୍କ ପିଣ୍ଡାରେ ବସି ଜାଲ ବୁଣୁଥିଲେ । କହିଲେ, ସେ ସଙ୍ଗେ ସଙ୍ଗେ ଉଠିବେ । ତାଙ୍କ ପୁଅ ବି ସଙ୍ଗରେ ଯିବ । ସେ ବଳଦ ଅଡ଼େଇବ ଶଗଡ଼ରେ ବସି । ନଧି ତ ପଛରେ ଥାଇ ଦଣ୍ଡା ଧରିବେ ।

— ତେବେ ତ ଭଲରେ ! ଭଡ଼ା ?

—ନଅଣ୍ଡା କୋଣକୁ ଟଙ୍କାଏ । ତା' ଉପରେ ଖୋରାକ । ତମେ ଜଣକଆ ଲୋକ ଯିବ । କହିଲେ ଟିକିଏ ଓଣା ବି କରି ପାରନ୍ତେ, ବସିଛନ୍ତି ବେକାରିଆ ।

—ତୁ ଠିକ୍ କର । ଯେତେ ଜଲଦି ଆସିବେ ଆମେ ବାହାରି ଯିବା । ହେଲା ? ରହ, ମୁଁ ଆସୁଛି ।

ଟଗ୍ରା ମନ ଖୁସିରେ ଘର ଭିତରକୁ ଗଲା । ତଳଧାଡ଼ିର କଣଘର ଖୋଲି ଭିତରେ ପଶିଲା । ଗ୍ରେରଣୀପରି ତରଙ୍ଗ ତରଙ୍ଗ ହୋଇ ପେଟରା ଖୋଲିଲା । ଟଙ୍କା ନୋଟ୍ ଗଣି ଟଙ୍କା ବାରଟି କାଢ଼ି ଆଣିଲା । ପୁଣି ପଦାକୁ ଆସିଲା ।

ପାଞ୍ଚଟି ଟଙ୍କା କାନିରେ ବାନ୍ଧି ବାକି ସାତ ଟଙ୍କା ଭଉଁରୀକୁ ଦେଇ ଟଗ୍ରା କହିଲା, ନେ; ସେ ଗାଡ଼ିବାଲା ବାହାରିଲେ ତା'ଙ୍କୁ ଭଡ଼ାଟା ଆଗତୁରା ଦେଇ-ଦେବୁ । ଖୋରାକ ଯାହା ମାଗିବେ, ତାଙ୍କୁ ମୁଁ ଆମ ଗାଆଁରେ ଦେବି । ଏ ଗାଆଁରେ ପ୍ରଚାର କରିବୁ ନାହିଁରେ ଝିଅ ! ଗାଡ଼ି ସଙ୍ଗେ ତୁ ଟିକିଏ ଆସିବୁ ।

—କେବେ ଫେରିବ ବୋଉ ମା ?

ଭଉଁରୀ ପ୍ରଶ୍ନର ଉତ୍ତର ନ ଦେଇ ସେ ଭିତରକୁ ଫେରିଲା । ପିଣ୍ଡା କବାଟ କିଳା ନ ଥିଲା । କୋଠରୀକୁ ଆସିଲା । ପଲଙ୍କ ଉପରେ ମୁହଁମାଡ଼ି ପଡ଼ି କହିଁ କହିଁ ହୋଇ କାନ୍ଦିଲା । କେତେବେଳ ପରେ ଉଠି ବସିଲା । ଆଖି ପୋଛି ଝରିଆ ଉଦ୍ଦେଶ୍ୟରେ କହିଲା, ଯାଉଛି ରେ, ପଥ ସୁମରି ବାପ ଘରକୁ ଯାଉଛି । ତୋ ଅଯୋଧ୍ୟା କାହିଁକି ମନେ କରିବି ? ଯେବେ ମୁଁ ତୋର ଲେଡ଼ା ପଡ଼ିବିରେ ଝରିଆ ତୁ ନଜେ ଯାଇଁ ମନେ ଡାକିବୁ । ମନା କରିବି ନାହିଁ । ଏଇ ମୋର ନିଧାର୍ଯ୍ୟ !

ବାଇବଛ ପରି ଉଠି ସେ କବାଟ ଖୋଲିଲା । ଆଖିରୁ କେତେ କେତେ ଲୁହ ଝରି ପଡ଼ୁଥାଏ ।

କୋଠରୀରେ ଯେତେ ଜିନଷ ଥିଲା, ସବୁରେ ଗୋଟି ଗୋଟି କରି ସଜାଡ଼ି ରଖିଲା । ପ୍ରତି ଜିନଷ ଧଡ଼ୁଶୁ ତାର ହାତ ଅଟକି ଯାଉଥାଏ । ସବୁ ତାର ଅତି ଆପଣାର । ତାଅରି ହାତର ପରଶରେ ଜୀଅନ୍ତା । ସତେ କି ସେମାନେ ବହିଲଜୀବ ଗୁଡ଼ିଏ । ପଚାରୁଛନ୍ତି ତୁନିତାନିଆ ଥିଡର ଅଶୁଣା ଭାଷାରେ, ପର କରି ଯାଉଛୁ ?

ପଲଙ୍କ ଝାଡ଼ି ବିଛଣା ସଜାଉଁଣୁ ହାତ ଅଚଳ ହେଲାପରି ଲାଗିଲା । ଜୀବନର କେତେ ଗତ ଘଟଣା ମନେପଡ଼ିଲା । ଭଲ ଓ ମନ୍ଦର । ସୁଖ ଓ ଦୁଃଖର । ସବୁ ଏଇଠି ମୁହଁଛପା ଦେଇ ରହିଛି । ସେମିତି ରହିଥିବ । କେହି ଜାଣିବେ ନାହିଁ । ସେସବୁ ଅଣ-ବାହୁଡ଼ା । ଯାଉଛି, ଯାଉଛିରେ ! ମନେ ରଖିଥିବୁ । ମୁଁ ତ ବଞ୍ଚିଥିବା ଯାଏ ଭୁଲି ପାରିବ ନାହିଁ ।

ଘର ଖରକଲା । ନଜର ଦରସଫା ଶାଢ଼ି ଦି'ଖଣ୍ଡ ଓ ନିର୍ମାଲିପେଡ଼ି ପଦାକୁ କାଢ଼ିଲା । ସେହି ପେଡ଼ିରେ ଥିଲା ତା'ର ସ୍ନେହ ସିନ୍ଦୂର-ଫରୁଆ, କଜଳପାତି, ଆଇନା, ଚିରୁଣୀ ଓ ଗୋଟିଏ ସ୍ନେହ ଟିଣଡ଼ବାରେ କିଛି ନିର୍ମାଲି । ସେହି ପେଡ଼ିରେ, କାଗଜରେ ଗୁଡ଼ାଇ ସେ ତା'ର ଶେଷ-ସମ୍ବଳ ପାଞ୍ଚଟି ଟଙ୍କା ସାଇତି ରଖିଲା । ଘରର କବାଟ କିଲିଲା ।

ଠାକୁରଘର ଖୋଲି ଥରେ ଗୁହିଁଦେଲା । ତଳେ ମୁଣ୍ଡ ଲଗାଇ ବଡ଼-ବଡ଼ୁଆଙ୍କୁ ଜୁହାର କଲା । ହାତ ଯୋଡ଼ି ମନେ ମନେ ଜଣାଣ କଲା, ଯାଉଛି ସାଆନ୍ତ-ସାଆନ୍ତାଣୀମାନେ । ତମେମାନେ ସେପୁରରେ ଥାଇ ସବୁ ଦେଖିଛ । ସବୁ ଜାଣିଛ । ବହୁତ ସହିଲି । ଆହୁରି ସହିବାକୁ ମୁଁ ମନା କରୁନାହିଁ । କେମିତି ସହିବି କୁହ ? କାହା ସାହସରେ ? କାହିଁକି ରହିବି ! କେଉଁ ଭରସାରେ ?

ତମକୁ ସବୁ ଜଣା ଅଛପା ଅଛି ! ସେଇ ଝିଅଆରି ଲମ୍ପଟିଆ ଖୋଇ, ଆଉ ନିଶାପାଣିରେ ନାଶ ହେଲା ବିବେକ ପାଇଁ ତମଶମାନଙ୍କ ଅଂଶର ଭିନୋଟି କିଷି ମୋ' ପେଟ ଭିତରେ ନଷ୍ଟ ହୋଇଛନ୍ତି । ଫୁଲଲଗା ଚିକ କସିଚି ତା' ଦାଉରେ ମଉଳିଲେ ଏ ସଂସାରରୁ ତମ ବଂଶର ନାମ ବୁଡ଼ିବ । ଦେଖୁଛଟି ତା'ର ରୂପ, ଢଙ୍ଗ ? ତମ କଲ୍ୟାଣରୁ ଝିଅ ବଞ୍ଚି ରହୁ ବଡ଼ବଡ଼ୁଆଏ, ତା ଢଙ୍ଗ ବଦଳୁ । ମତେ ସେ ଲୋଡ଼ିଲେ ମୁଁ ତମ ପାଖକୁ ଫେରଆସିବି ।

ହଁ ବଡ଼ବଡ଼ୁଆଏ, ମୁଁ ତମକୁ ମୋ'ର ଠିକଣା ଜବାବ ଦେଇଯାଉଛି । ଯେତେଦିନ ଯାଏ ମୋ ପେଟକୁ ଦାନା ମିଳୁଥିବ, ଲାଜ ଘୋଡ଼ାଇବାକୁ ଦେହକୁ କନା ମିଳୁଥିବ, ମୁଁ ତମରି କୁଳର ବୋହୂ ହୋଇ ରହିଥିବି । ମୁଁ ତମକୁ ପାଣି ଟେକୁଥିବି ।

ଏଇ ଦେହର ଭୋକକୁ ସିନା ସମ୍ଭାଳି ପାରିବି, ପେଟରେ ଭୋକ ଯେବେ ଅସହ୍ୟ ହେବ, ମିଳିଟିଏ ସନ୍ଦ ହୁଏ, ତା' ଜୀବନ ଉପରେ ଯେବେ ଆପଦ ପଡ଼ିବ । କେମିତି ଏବେହୁଁ ମୁଁ କହି ପାରିବି ଯେ ମୋ ଛଟପଟ ମନଟା ବିବେକର ଖୁଣ୍ଟ ଓପାଡ଼ି ଅରଣା ନ ଧାଇଁବ ! ଅନ୍ୟର ଆଶ୍ରା ନ ଲୋଡ଼ିବ ?

ଦେବଘରର କବାଟ କିଲିଲା । କେହି ବାକି ନାହିଁ, ସମସ୍ତଙ୍କ ପାଖରୁ ସେ ବିଦାୟ ନେଇ ସାରିଛି ।

ଟଗ୍ର ପ୍ରସ୍ତୁତ ହେଲା । ତା'ର ମିଲା ଲୁଗାର ଗୋଟିଏ ଗ୍ରେଟ ପୁଡ଼ା, ନର୍ମାଲ ପେଣ୍ଟ, ବାପଘରୁ ଆଣିଥିବା ପୁରୁଣା ଲୋଟାଟି, ଯାହାର ପେଟରୁ ଅଳ୍ପ ଚେପା ହୋଇଥିଲା, ଯାହାକୁ ଝଣ୍ଟଆ ଦିନେ ତା' ଉପରକୁ ଫିଙ୍ଗିଥିଲା, କିନ୍ତୁ ଟଗ୍ର ଆଡ଼େଇ ଯିବାରୁ ଚଉକରେ ବାଜିଥିଲା, ସେ ଦାଣ୍ଡଘର କାନ୍ଥକଡ଼ରେ ରଖିଲା । ବଗୁଣଲା, ଧାରର ଗୁବ ସେମୁନ୍ଟି କି ସେ କାହାକୁ ଦେବ ? ସ୍ଥିର କଲା, ଝଣ୍ଟଆ ଯଦି ନ ଫେରେ, ସେ ଭଉଁରୀକୁ ଘର ଜଗାଇବ । ଗୁବ ମୁଠାକ କେଉଁ ପଡ଼ୋଶୀ ଘରେ ରଖି ଭଉଁରୀକୁ ମାନ କରାଇ ଯିବ । ମିଛରେ କହିବ, ଆଜି ଯାଇ କାଲି ଜେଜେମା'ଙ୍କୁ ଗୁହିଁଦେଇ ନଧି ବେହେରାଙ୍କ ଗାଡ଼ିରେ ସେ ଗୋଡ଼େଗୋଡ଼େ ଫେରିଆସିବ ।

ଟଗ୍ର ଦାଣ୍ଡ କବାଟ ଖୋଲିଲା । ପିଣ୍ଡାକୁ ଆସିଲା । ତା' ଗାଡ଼ି ଆସିଗଲାଣି । ଦିଓଟି ବଳଦ ଯୋଚା ହୋଇଛନ୍ତି । ଗାଡ଼ି ଗାଁ ଗୋହିରୀରେ ଠିଆହୋଇଛି । ଆଗଟେ ଷୋଳ ସତର ବର୍ଷର ଟୋକାଟିଏ । କଳା ମିଚମିଚ କନ୍ଥୁଆ ଦେହ । ଗାଡ଼ି ପଛରେ ନଧି ବେହେରା । ମୁଣ୍ଡରେ ଚେତାଏ ବାଳ । ତାଙ୍କର କାଳିଆ ଦେହ, ସ୍ୱାସ୍ଥ୍ୟ ଭରପୂର । ଦରବୁଢ଼ା ।

ଗାଁ ଗୋହିରୀରୁ କିଛି ଦୂର ଆଗରେ, ଖୁଣ୍ଟିଆଘର ଦାଣ୍ଡରେ ଭଉଁରୀ ଠିଆ ହୋଇଛି । ତା' ଆଗରେ ଝଣ୍ଟଆ ରାଗ ତମତମ ହୋଇ ଭଉଁରୀକୁ ଗାଳି ଦେଉଛି । ଟଗ୍ର ଉପରେ ତା'ର ଆଖି ପଡ଼ିବାରୁ ସେ ଅଧିକ କ୍ରୋଧରେ ଚିହିଙ୍କି ଉଠିଲା । ଭଉଁରୀକୁ ଆପଡ଼ ମାରୁଣୁ ସେ ମୁଣ୍ଡ ବଙ୍କାଇ ଆଡ଼େଇ ଗଲା । ବ୍ୟର୍ଥ ଗୁପଡ଼ାର ଝାଙ୍କରେ ଝଣ୍ଟଆ ନିଜେ ଟଳ ଟଳ ହୋଇ କେତେ ପାଦ ଆଗକୁ ଯାଇ ଠିଆ ହେଲା । ଟହ ଟହ ହସି ଭଉଁରୀ କହିଲା, ସମ୍ଭାଳ ସାଆନ୍ତେ ! ମୋ ବାକିଆ ପାଉଣା ବାବଦକୁ ମତେ ମନଇଚ୍ଛା କୋଇଲ । ପାଉଣା ଶୁଝ୍ଟ ହେଲା । ମୋ' ବୋଉର ମରଣ ଦୁଃଖକୁ ତମ ମାଡ଼ର ବେଦନା ବଳାଇ ପଡ଼ୁଛି । ମୁଁ ତମର କୋଠିଆ ନୁହେଁ । ପୁଣି ଯଦି ହାତ ଉଠାଇବ, ହଁ, ଆଗରୁ କହି ଦେଉଛି, ନଶା-ଫିଶା ଛଡ଼େଇ ଦେବ । ସାକ୍ଷୀ ରହିଲେ ନଧି ବେହେରାଏ ।

ଝଣ୍ଟଆ ଏତେ ଦିନକେ ଗରିବର ନିଜରୂପ ଦେଖିଲା । ଦେହ ମିହିନ୍ତରେ ପେଟ ପୋଷୁଥିବା ଚିହିଙ୍କି ଚେଙ୍ଗିଲା ଶୋଇଲା ସିଂହକୁଆଁଟିର ଗର୍ଜନ ଶୁଣିଲା । ତା' ଆଖିର ତେଜରେ ଡରିଛି ସେ ସିଆଳ ପରି ଘର ଆଗକୁ ଆଗେଇ ଅଟକିଲା । ରଡ଼ି ଗୁଡ଼ିଲା, ରହ ରେ ଶଳା, ତୋ' ବହପ ଭାଙ୍ଗୁଛି । ଟଗ୍ରର ମୁହଁ ପାଇ ତୋ' ସାହସ ବଢ଼ିଛି, ନା ?

ରାଗ ତମତମ ହୋଇ ସେ ପିଣ୍ଡାକୁ ଉଠିଲା । ପ୍ରମାଦ ଗଣି ଟଗ୍ର ଆସିଲା ଅଗଣାକୁ । ତୁଳସୀ ଚଉରାର ଗୋଟିଏ କଡ଼ରେ ଠିଆ ହେଲା ।

ଝଣ୍ଟଆ ଧାଇଁଆସିଲା ତା' ପଛରେ ।

ଟସ୍ ତଳୁ ଗୋଟାଇ ବଢ଼ିଣା ମୁଠାକ ହାତରେ ଧରିଲା । ଗର୍ଜି ଉଠିଲା, ଯାହା କହିବାର ସେଇଠି ଠିଆହୋଇ କହ୍, ଆରେ ଅଲକ୍ଷଣା ! ପୁନା ତତେ ଗଦ ଶୁଙ୍ଘେଇ ମେଣ୍ଢା କରିଛି । ଡମ୍ବରକୁ ସେଇ ଡାଆଣୀ ପଢ଼ଆସ୍ କରି ତତେ ଧରି ନାଚୁଥିଲା । ଏବେ ତତେ ପଢ଼ଆସ୍ କରି ଆଉ କାହାକୁ ସେ ଧରିଲଣି । ତା' ଶିବବାବାଜା, ଆଉ ତୋ' ଚେଲାଙ୍କର ସେ କଣାଖରଦା ରେ ।

ନୋଧିଲା ଗଳାରେ ସେ ପୁଣି କହିଲା, ଆରେ ଛତରା, ତୋତେ ପାଲରେ ପକାଇ ମତେ ସେ ତାପାର ପରିକା କରିବାକୁ ଚାହୁଁଥିଲା । ତା' କଥାରେ ଭୁଲିଥିଲେ, ମୋ ଚୁଟି ଧରି ସବୁବେଳେ ଟାଣୁଥାନ୍ତା । ତା' ପଦ୍ମତୋଳାରେ ଭୁଲିଲି ନାହିଁ । ଖୁଣ୍ଟିଆ କୁଳର ମହତ ରଖିଲି । ତୋ'ର ସେ ସବୁ ଲୁଚି ନେଇଛି, ହେଲେ ତୋ' କୁଳର ମହତରେ କଳା ବୋଳି ପାରି ନାହିଁ । ସେ ତୋ' ଜୀବନ ନେବ । ନେଲେ ନଉ । ମୁଁ ନାଗୁର । ଖୁଣ୍ଟିଆ ବଂଶର ମହତ ରଖିଛି । ତୋ' ପିଲାକୁ ପେଟରେ ଧରିଛି । ତଥାପି ଆଜ ମୁଁ ଚାଲି ଯାଉଛି । ନେ ତୋ' ଚାବ ମୁଠାକ ।

ଟସ୍ ଚାବ ମେଞ୍ଚା ଫେରିଆ ଆଗକୁ ଫିଙ୍ଗି ଦେଲା । ହାତରୁ ବଢ଼ିଣା ଖସାଇ ଫେରିଆର କଡ଼କୁ ଆସିଲା । ଆଖିରୁ ଲୁହ ଝରି ପଡ଼ୁଥାଏ । ପୁଣି ସେ କହିଲା, ବଡ଼-ବଡ଼ୁଆଙ୍କୁ କହିଯାଇଛି । ଦୋଷ ମାନି ନେଇଛି । ବାପ ଘରକୁ ଯାଉଛି ରେ ଫେରିଆ, ତୁ ଯେବେ ଭଲବାଟକୁ ଆସିବୁ, ମତେ ଲୋଡ଼ିବୁ, ନିଜେ ଯାଇ ମତେ ଆଣିବୁ, ନୂଆ ସଂସାର ପାତିବାକୁ ମୁଁ ତୋ' ସଙ୍ଗରେ ଆସିବ ।

ଆଖିରୁ ଲୁହ ପୋଛି ସେ କହିଲା, ଯଦି ପୁନା ତୋ'ର ଜୀବନ ଶୋଷିନିଏ, ଖବର ପାଇଲେ ମୁଣ୍ଡରୁ ସିନ୍ଦୁର ପୋଛିବ, ହାତରୁ ଶଙ୍ଖା ଭାଙ୍ଗିବ । ଯଦି ପିଲାଟିଏ ତୋର ମୋ' ପେଟରୁ ଜନମିଥିବ, ମୋର ସେହି ବିଧବା ବେଶରେ ପିଲାକୁ କାଖେଇ ଏଇ ଘରକୁ ନିଜେ ମୁଁ ଫେରି ଆସିବ ରେ ! ତୋ' ସମ୍ପତ୍ତି ଲୋଭରେ ନୁହେଁ, ଆସିବ ଏଇ ଡିହରେ ପଲ ମାରି ରହିବାକୁ, ବାଲୁଆ ତଡ଼ିବାକୁ ।

ଫେରିଆ ଦାନ୍ତ ରଗଡ଼ିଲା । ମୁଣ୍ଡ ହଲାଇ ହାତ ମୁଠା କରି ଉପରକୁ ଟେକିଲା । ଟସ୍ ଦି'ପାଦ ପଛେଇ ଆସିଲା ।

ଫେରିଆ କହିଲା, ଭାରି ବଡ଼ି ବଡ଼ି କଥା କହୁଛୁ । ଦେଖିବୁ, ଯୋଇବ ଦି' ପୁଞ୍ଚା ? ତୋ' ବେଁଶିସ୍ ହାଡ଼ ଭାଙ୍ଗିବ ଦେ ।

– ଭାଙ୍ଗିବୁ ତ ଟିକିଏ ଅପ୍ସ ଧର । ମୋ' ପେଟର ଗଜାଟି ଭାଙ୍ଗିଲେ ତୋର ବଉଁଶ ବୁଡ଼ିବ । ତନୋଟି ପିଲାଙ୍କୁ ମୋ ପେଟରେ ଥାଉଣୁ ତୁ ଦଇଦାଙ୍କ ଆଗରୁ ମାରି ପାରିଛୁ ରେ ଚଣ୍ଡାଳ ! ମୋ ଭିତରେ ଗୁମଣ୍ଡା ନ ଥିଲି । ତୋ ଭିତରେ ସଇତାନ ଥିଲା । ଯାଉଛି ରେ, ଯାଉଛି—

ଟଗର ଆଖିରୁ ଲୁହ ଝରିଲା । ସେ କୋହ ଅଟକାଇ ଆଖି ପୋଛିଲା । କଣେଇଁ ଚାହିଁଲା ଦାଣ୍ଡଘରକୁ । ଦେଖିଲା, ଭଉଁରୀ ବାହାରେ ଠିଆ ହୋଇଛି ।

ଟଗ ତାକୁ କହିଲା, ଲୁଗାପୁଡ଼ା, ଆଉ ଲୋଟାଟି ନେଇ ଗାଡ଼ିରେ ଥୁଅରେ ଯାଇ । ଏ ପାଖରେ ରଖା ହୋଇଥିବା କମ୍ପାନୀ ପେଡ଼ିଟି ମୁଁ ନିଜେ ନେଇଯିବି । ତୁ ଛୁଇଁ ନା ।

ଲୁହଝରା ଆଖିରେ ସେ ଝରିଆ ଆଡ଼କୁ ମୁହଁ ଫେରାଇଲା । ତା' ଦାନ୍ତରଗଡ଼ା ବନ୍ଦ ହୋଇଥିଲା । ମୁଠାଖୋଲା ହାତ ତଳକୁ ଓହଳିଥିଲା । ମୁହଁ ଶୁଖି କଳାକାଠ ପଡ଼ିଥିଲା । ଅଳିଆ ବାଳ କପାଳ ଉପରେ ଝୁଲୁଥିଲା । ତା' ହାତ ଓ ମୁଣ୍ଡର ଶିରା-ଗୁଡ଼ିକ ଟାଣକି ଉଠିଥିଲା ।

ଟଗ ମଣିଲା, ଝରିଆ ଟଳୁଛି । ସ୍ୱର ନରମାଇ ସେ କହିଲା, ମାରିବାକୁ ମନ ହେଉଛି ତ ମନଇଚ୍ଛା ମାର ଏଥର । ହାତମୁଖ ମାରିବାକୁ ଆଉ ଏ ସଂସାରରେ କାହାରିକୁ ପାଇବୁ ନାହିଁରେ····

ଝରିଆ ଖୁଣ୍ଟପରି ଠିଆ ହୋଇଥିଲା । ତା' ତୁଣ୍ଡରୁ କଥା ବାହାରୁ ନ ଥିଲା । କ'ଣ କହିବ କହିବ ହେଉଥିଲା ପରା ।

କହିଲା ନାହିଁ ।

ଟିକଏ ଗଲା ଖଙ୍କାରୁଣ୍ଡ, ଲୋଟଣି କାଶ ତାକୁ ଆକ୍ରାନ୍ତ କଲା । ସେ ଧନୁପରି ବଙ୍କେଇ ଗୁଡ଼ ଆଉଁସିଲା । ମେଞ୍ଚା ମେଞ୍ଚା ଖଙ୍କାର କାଢ଼ି ତଳେ ପକାଇଲା । ଆଖିରୁ ପାଣି ନିଗିଡ଼ି ପଡ଼ୁଥିଲା ।

ହାତପାପୁଲିରେ ଆଖି ପୋଛି ସେ ସଳଖି ଠିଆ ହେଲା । ଟଗଆଡ଼ୁ କୋରଡ଼ିଆ ଦୃଷ୍ଟି ବୁଲାଇଲା ଦାଣ୍ଡଘରକୁ ।

ଭଉଁରୀ ଲୁଗାପୁଡ଼ା, ଆଉ ଚେପା ଲୋଟା ଧରି ଦ୍ୱାରବନ୍ଧ ପାଖରେ ଠିଆ ହୋଇଥିଲା । ଟଗର ଦୃଷ୍ଟି ତା' ଉପରେ ପଡ଼ିବାରୁ ସେ କହିଲା, ଗାଡ଼ି ପାଖରେ ଚଗଲା ପିଲାଏ ଆସି ଠିଆ ହେଲେଣି । ବଳଦଙ୍କୁ ହୁଡୁଡ଼ାଉଛନ୍ତି । ଗଲା ଅଇଲା କେତେ ଲୋକ ଜମିଲେଣି । ବୁଧି ବେହେରାଙ୍କୁ କ'ଣ ସବୁ ପଚାରୁଛନ୍ତି ।

ସେ ଜବାବ ଦେଉଛନ୍ତି, କାହାପରର କଥା ମତେ କି ଜଣା ହୋ ? ଆଗରୁ ଭଡ଼ା ପାଇଲେ ଲଙ୍କାକୁ ନେ କହିଲେ ନେବି । ମୋ' କାଳିଆ-ଧଳିଆ ବଳଦ ଦୁଇଟା ସଂସାରଯାକର ବୋଝ ବୁହନ୍ତି ।

ଭଉଁରୀ ଡାକଗୁଡ଼ି କହିଲା, ତମେ ଧଅସି ଆସ ସାନ୍ତାଣୀ । ମୋ'ର ତେଣେ ଭିତରୁ କାମ । ଫେରିବାକୁ ଉଚ୍ଛୁର ହେଲେ ଖାଉକମାନେ ମୋ ନିରୋଳା ଘରେ କଳାକନା ବୁଲେଇ ଦେବେ ।

ଝରିଆ ଦାନ୍ତ ରଗଡ଼ି ମୁଣ୍ଡ ହଲାଇଲା ।

ଟଙ୍କି ଭାବିଲା, ଝିଅଆ ଉଅଁସି ପଛରେ ଧାଇଁବ, ତାକୁ ମାରିବ ପରି । କିନ୍ତୁ ସେ ଚର୍ଚ୍ଚିଲି ନାହିଁ ।

ଟଙ୍କି କହିଲା, ମତେ ମାରିବୁ ତ ମାର । ସେତିକି ତୋ' ଦରିବ ସାଙ୍ଗରେ ନେଇଯିବ । ମନେ ପକାଉଥିବ । ତୋ'ର ଆଉ କିଛୁ କିଧିସମ୍ପତ୍ତି ବାନ୍ଧିନେଇ ନାହିଁରେ, ଖୋଲି ଦେଖିବୁ ତ ଦେଖ୍ । ତୋ'ର ପିନ୍ଧା ଲୁଗା ଦି'ଖଣ୍ଡି, ଆଉ ସେ ଚେପା ଲୋଟାଟି, ମୋ' ବାପ ଘରର । ସେଇଟିକୁ ଦେଖୁଥିବ, ତୋ' ଯୋଗତ-ସତ୍ରୀଗ ସୁମରୁଥିବ । ···

ଝିଅଆ ଏତେ ବେଳକେ ମୁହଁ ଖୋଲିଲା । କହିଲା, ମୋ' ସେନେହି ଚୁଲିକ ଯାଉ ବେ ! ଏ ଘରକୁ ତତେ ମୁଁ ଆଣି ନ ଥିଲି । ସିଏ ତତେ ସକସକ ହୋଇ ଆଣିଥିଲା, ଆଗ ତୋ' ଗ୍ରମଣ୍ଡା ତାକୁ ଖାଇଲା । ଯାହା ପାଖରେ ତତେ ଛାଡ଼ିଥିଲି ସେହି ବୋଉଟି ମୋ'ର, ସିଏ ତତେ କୋଳରେ ବସାଇ ଖୋଉଥିଲା, ଛାତିରେ କାନ୍ଦି ଶୋଉଥିଲା, ତା'କୁ ବି ତୋ' ଗ୍ରମଣ୍ଡା ଛାଡ଼ିଲା ନାହିଁ ।

ଝିଅଆ ଧଇଁସଇଁ ହେଲା । କାଶ ଅଟକାଇ ପୁଣି କହିଲା, ମତେ କ'ଣ ତୋ ଗ୍ରମଣ୍ଡା ସହିଜରେ ଛାଡ଼ିଥାନ୍ତା ? ଶିବବାବାଙ୍କର ଶରଣ ପଶିଲି । ମୋତେ ଧରି କେଣ୍ଟା କେଣ୍ଟା କରି ବୂଣିଲା ସିନା, ବାବାଙ୍କ ଡରରେ ଛାଡ଼ିଦେଲା । କେତେ ଧନ ଦେଲି, ନେହୁରି ହେଲି, ଉକଟି କଲି, ତେବେ ଯାଇଁ ବାବା ଦୟା କଲେ । ତୋ' ଭିତରୁ ଗ୍ରମଣ୍ଡା ତଡ଼ିଲେ ।···

ଟିକଏ ରହି ଦମ୍ ନେଲା । ମୁଣ୍ଡ ଆଉଁସିଲା । କହିଲା, ତାଙ୍କୁ କିନ୍ଦୁଛୁ ! ତୁ ଜାଣ୍ ସେ ଗ୍ରମଣ୍ଡା ମୋ' ପଛେ ପଛେ ଗୋଡ଼େଇଛୁ । ଏ ଗାଆଁରେ ତୁ ଥିବାଯାଏ ସେ ଏମିତି ଗୋଡ଼େଇଥିବ । ବାଗ ପାଇଲେ କାବୁ କରିବ । କେବେ ଅକଲରେ ପଡ଼ିଲେ ଜୀବନ ନେବ । ଯାଉଛୁ ତ, ତୋ' ଧିଅରେ ଟିପ ଗ୍ରେଇଁବି ନାହିଁ । ···

ଏତେ ଦୁଃଖରେ ବି ଟଙ୍କିକୁ ହସ ମାଡ଼ିଲା । ଭାବିଲା, ଏଇସବୁ ଧାରଣା ନିଶାଖୋର କବୁଡ଼ିଆ ଝିଅଆର ମୁଣ୍ଡରେ ଭର୍ତ୍ତି କରି ସେମାନେ ତା'ର ସର୍ବନାଶ କଲେଣି । ଯେତେ ବୁଝାଇଲେ ସେ କେବେ ବୁଝିବ ନାହିଁ । ସୁନାଦେଇ ନିଶା ଖୁଆଇ ତା' ଅଜାଣତରେ ଯାହା କରାଇଛୁ, ସେ ପ୍ରକାଶ କରି ସେମାନଙ୍କର ଚକ୍ରାନ୍ତ ପଦାରେ ପକାଇ ପାରିବ ନାହିଁ ।

କିଧି ବେହେରା ଦାଣ୍ଡରୁ ଡାକ ଛାଡ଼ିଲେ, ଉଚ୍ଛୁର ହେଲା ମା'; ଦୂର ବାଟ, ଅସାଧ ଦଣ୍ଡା ବାଟ । ବେଶି ରାତି ହେବ । ଝଅଟି ଆସ ।

ଟଙ୍କି ମେଲଣି ନେଉଣୁ କହିଲା, ଭୁଣ୍ଡର ଭାପା ତା'ର କୋହରେ ଥରୁଥାଏ, ତଣ୍ଟିରେ ଅଟକ ଅଟକ ଯାଉଥାଏ, ଯାଉଛୁ ରେ, ସେମାନଙ୍କର ମିଛ ପ୍ରଗ୍ଭରରେ

ପରତେ ଗଲୁ; ମୁଁ ଆଉ କ'ଣ କହିବ ? ମୋ'ର ସବୁ ଦୋଷ ମୁଁ ମାଗି ନେଉଛୁ। ସୁମଣ୍ଡାଟାକୁ ବ ସାଙ୍ଗରେ ନେଇ ଯାଉଛୁ । ହେଇଟି ଦେଖ୍, ତତେ ମୁଁ ଜୁହାର କରୁଛୁ ।

ଟଙ୍କ ତଳେ ମୁଣ୍ଡ ଲଗାଇଲା । ମୁଣ୍ଡ ଉଠାଇଲା । ଆଖିର ଲୁହ ତା'ର ମାଂସଲ ପୁଚକା ଗାଲ ଉପରେ ଗଡ଼ି ପଡ଼ୁଥାଏ ।

କୋହ ଚୋକ ପୁଣି ସେ କହିଲା, ସୁମଣ୍ଡା ମୋ ପଛେ ପଛେ ଗୋଡ଼ାଇ ଏଗାଁରୁ ଯିବ। ଆଉ ତୋ'ର କାହାକୁ ଡ଼ର ? ଜଣାପାଣି ଛୁଇଁବୁ ନାହିଁ, ସେ କୁଜପୁରୀ ମୋହନୀ ପୂନାବଢ଼ଉଣୀର ଘର ମାଡ଼ିବୁ ନାହିଁ । ବାବାଜୀଟା ଭଣ୍ଡ, ଲୋଭୀ, ମାଇପିରଙ୍କା, ଲମ୍ପଟିଆ । ତା' ମଠରେ ଗୋଡ଼ ଦେବୁ ନାହିଁ । ନିଜ ହାତରେ ନିଜେ ଫୁଟାଇ ଖାଇବୁ । କାହା ଘରେ ପାଣି ମନ୍ଦାଏ ଛୁଇଁବୁ ନାହିଁ । ତୁ ଘଛେ ନ ଯାଆ, ଯେଉଁ ଦନ ମତେ ଡ଼ାକବୁ, ମୁଁ ଶୁଣିବ ତୁ ମୋ ବୋଲ ମାନବୁ, ମୁଁ ନିଜେ ତୋ' ପାଖକୁ ଧାଇଁ ଆସିବ ।

ବାହାରେ ନିଧି ବେହେରା ବରକୁଆ ସ୍ୱରରେ ପୁଣି ରଡ଼ି ଗୁଡ଼ଲେ । ଟଙ୍କ ବୁଲପଡ଼ି ୯ଶଆକୁ ପଛକର ଦାଣ୍ଡ ଘରକୁ ଆସିଲା । ନିର୍ମାଳ୍ୟ ପେଡ଼ିଟି ଉଠାଇ ପଦାକୁ ଆସୁଣୁ ଦ୍ୱାରବନ୍ଧ ଝୁଣ୍ଟି ଟଲ ଟଲ ହୋଇ ପାହାଚ ଓହ୍ଲାଇଲା । ଗାଡ଼ି ପାଖକୁ ଆସିଲା । ଭିତରକୁ ପଶି ପସ୍ତ ହୋଇଥିବା ସପମଣିଣା ଉପରେ ପୁଡ଼ାକୁ ଆଉଜ ବସିଲା ।

କାଳିଆ ବଳିଆ ଯୋଗୁ ହେଲେ । ନିଧି ବେହେରାଙ୍କ ପୁଅ ଗାଡ଼ି ଆଗରେ ଯୁଆଳି ପାଖରେ ବସିଲା । ଗାଁ ପିଲାଏ ହୋ-ହୋ ହେଉଥାନ୍ତି । ଚନ୍ଦ୍ରା ମାଇପିଗୁଡ଼ାକ କ'ଣ ସବୁ ପଗୃରୁଥାନ୍ତି । ଟଙ୍କ କାନକୁ ନେଉ ନ ଥାଏ । ଉତ୍ତର ଦେଉ ନ ଥାଏ । ଛାଟର ଫାଙ୍କବାଟେ ଖୁଣ୍ଟିଆ ଘରର ଖୋଲା ଦ୍ୱାରକୁ ଏକା ଆଖିରେ ଗୃହିଁ ରହିଥାଏ । ତଥାପି ସେ ଭାବୁଥାଏ, ୯ଶଆ ବାହାରବ କ ? ଧାଇଁ ଆସି ଗାଡ଼ି ଅଟକାଇବ ? କହିବ, କୁଆଡ଼େ ଯାଉଛୁ ଲୋ ଘରର ଘରଣୀ ? ଓହ୍ଲା କହୁଛୁ, ଓହ୍ଲା—

୯ଶଆ ପଦାକୁ ଆସିଲା । ଦୁଇ ହାତର ପାପୁଲିରେ ସେ ଆଖି ପୋଛୁଥିଲା ।

କାନ୍ଦୁଛି କ ? ଧ ଇଁ ଆସିବ ? ଅଟକାଇବ ?

ଗାଡ଼ି ଗୃଲିଲା । ୯ଶଆ ଆଖିଆଗରୁ ଛପିଲା । ସେ ଆସିଲା ନାହିଁ, ବାଟ ଓଗାଳି ଅଟକାଇଲା ନାହିଁ ।

ଏବଯାଏ ତା'ର ଗାଡ଼ି ଚାଲିଛି । ବଳିଆ କାଳିଆ ଭିଡ଼ି ନେଉଛନ୍ତି । ଷଣେ ତ ଅଟକୁ ନାହିଁ । ଦିନ ଓ ରାତି । ସେଇ ଦିନୁଁ ଯାହା ଆଖି ଦେଖାଣକୁ ଭୂମିଡାଳି ବସି ରହିଁ ରହିଛନ୍ତି ବନ୍ଦ ଦେଉଳରେ । ମଝିରେ ମାଆ, ସୁଭଦ୍ରା ଠାକୁରାଣୀ । ଝିଅ, ଭଉଣୀ, ଘରଣୀ ପୁଣି ମା—ସର୍ବନାକାରଣୀ ।

ସେଇ ତ ଯୁଆଳି । ବଳିଆ କାଳିଆଙ୍କ ବେକରେ ବନ୍ଧା । ସମସ୍ତ ଯାଉ । ଯୁଆଳି ଉପରେ ବସିଛି ତା'ର କେତେ କେତେ ଜନମରୁ ସାଇତା କରମଫଳର ମାଲିପିଟା ପ୍ରାରବ୍ଧ ପୁରୁଷ । ଗାଡ଼ିଆଳ । ଆଖିକୁ ଦିଶୁ ନାହିଁ । ଜାଣି ହେଉଛି । ଅନୁଭବ କରି ହେଉଛି ।

ଦଉଡ଼ି ଧରିଛି ତା'ର ଏଇ ଜନମର କରମ ପୁରୁଷ । ଆଶା ଓ ଦୁରାଶାର ଦିଓଟି ଦୁର୍ବଳ ହାତ । ଅନ୍ଧଟିଏ । ବୋକାଟିଏ । କାଳ ବି । ଓଟାଳ ହୋଇ ସାରନ୍ତୁ ଦଉଡ଼ିକୁ ମୋଡ଼ି ଦେଉଛି । ଖାଲ-ଖମା, ଢ଼ିପ-ଢମା, ପଙ୍କ-କଙ୍କର, ବାଲି-ପଥରର ଯେଣେ ମନ ତେଣେ ମୋହିଁ ଦେଉଛି—

ଗାଡ଼ି ତ ଚାଲିଛି । ଚକ ଖାଲି ଗଡ଼ି ଯାଉଛି । ମୁହୂର୍ତ୍ତମାନେ ଦୁଇ ପାଖରେ ଅତି ବେଗରେ ଛୁଟି ପଳାଉଛନ୍ତି । ଦିନ, ରାତି, ମାସ ଓ ଋତୁମାନେ ଆସୁଛନ୍ତି, ଯାଉଛନ୍ତି । ସେମାନଙ୍କର ଭିନ୍ନ ଭିନ୍ନ ଗୀତ ।

ସେମିତି ବିତିଯାଇଛି ପାଞ୍ଚଟି ବର୍ଷ । ଚାହିଁକି ଚାହିଁଲେ ଲାଗୁଛି କାଲି ପରିକା । ବଠେଇ ବସାଇଲେ, ସୁଖ ଓ ଦୁଃଖର ଘଟଣାଗୁଡ଼ିକୁ ଟିକନଖି ନଖାର ଝୁରିଲେ, ମନେହୁଏ, ଓଃ କେତେ ଯୁଗ ସତେ ବିତିଯାଇଛି ।

ଦୁଃଖର ହେଉ କି ସୁଖର ହେଉ, ଘଟଣାଗୁଡ଼ିକର ଫାଙ୍କରେ ଟଳିର ନଗ୍ନୋଳା ବେଳର ଆଖିକୁ ଦିଶିଯାଏ ତା'ର ତୀର୍ଥକ୍ଷେତ୍ର ପୁଣ୍ୟଭୂଇଁ, ଖୁଣ୍ଟିଆବଂଶର କେତେକାଳର ସେହି ପୁରୁଣା ଡ଼ିହଉପରେ ଠିଆ ଅଜାଶଶୁରଙ୍କ ଅମଳର ଚାଳ ଘରଟି । କାରୁକାର୍ଯ୍ୟଭରା ଓଟ୍ରା ଓ କବାଟଗୁଡ଼ିକ । ଗୋଟିଏ ପୁରୁଣା ମନ୍ଦିର ପରି ।

ସେଇଠି, ମଣିଷର ଦେହ ଧରି ତା'ର ଠାକୁର ଓ ଠାକୁରାଣୀମାନେ ଜନମି ଥିଲେ । ଲୀଳାଖେଳା ସାରି ପୁରୁଷକୁ ପୁରୁଷ ସେମାନେ ଦେହକୁ ମଶାଣିକୁ ପଠାଉଥିଲେ । ବଡ଼ବଡ଼ୁଆ ହୋଇ ଆପେ ଖାଲି ତାଙ୍କର ଥିତିର ସ୍ମୃତିକୁ ଥାପି ସରଗ, ନରକ, ଅବା ଆଉ କାହାର ପେଟ ଭିତରକୁ ଚାଲି ଯାଉଥିଲେ ।

କଏ କେତେଦିନ ବଞ୍ଚି ରହିଥିଲେ କେହି ଜାଣେ ନାହିଁ । ବାପ, ଅଜା, ପଣଅଜାଙ୍କର ନାଁ କେହି କେହି ଅବା ମନେ ରଖିଥିବେ, ନୋହିଲେ ଆଉଆଉ ପୁରୁଣା-ପୁରୁଷଙ୍କ ନାମ କାହାରି ମନେ ନାହିଁ । ସେ-ସମସ୍ତଙ୍କର ବିଷୟ ଗୋଟିଏ —'ଥିଲେ' । ନା ବି ଗୋଟିଏ—'ବଡ଼ବଡ଼ୁଆ' ।

ସେମାନଙ୍କୁ ସେ ଭକ୍ତି କରୁଥିଲା । ପୂଜା କରୁଥିଲା । ପାଣି ଢେଳୁଥିଲା । ଦୂରରୁ ଆସି ସେତକ କଲେ ସେମାନେ ଦେଖନ୍ତି ନାହାନ୍ତି କି ? ସେମାନେ କ'ଣ ଉପାସ ଭୋକରେ ଶୋଷ ବକଳରେ ତା'ର ପାଇଁ ଅପେକ୍ଷା କରିଛନ୍ତି ? ଏ ପୁରରେ ନୁହେଁ, ସେ ପୁରରେ ?

ସେହି ଘରେ, ସେହି ଘରଣ କ୍ଷେତରେ ଚଳପ୍ରଚଳ ହେଉଥିବ ତା'ର ଏ ଜନ୍ମର ଦେବତା, ତା'ର ବର, ଗତି ମୁକ୍ତିର କାରଣ । ହଁ, ସେ ବି ତା'ର ଦେବତା ପରି । କେଉଁ ଦୁଷ୍ଟ ଗ୍ରହର କୋପରୁ ସେ ଅବିବେକୀ । ଅରଣା । କେମିତି ସେ ଚଳୁଥିବ ? କିଏ ତା'ର ସେବା କରୁଥିବ ? ସେ କ'ଣ ଅନୁତାପ କରୁ ନ ଥିବ ? ମନେ ମନେ ଟୋକୀକୁ ଖୋଜୁ ନ ଥିବ ? କାହିଁକି ଏବଯାଏ ଲେଉଟିଲା ନାହିଁ ତ ?

ମନେମନେ ସେହି ଶେଷ ଦୃଶ୍ୟଟି । ଚଳନ୍ତା ମେଘର ଅଳପ ଫାଙ୍କରେ ଚଉଠୀ ଜହ୍ନର କ୍ଷଣିକ ପ୍ରକାଶ ଓ ବିଲୋପ ପରି । ଦାଣ୍ଡ ପିଣ୍ଡାରେ ଝରଆ ଠିଆ ହୋଇଛି, ହାତ ପାପୁଲିରେ ଆଖି ପୋଛୁଛି ।

ଝରଆର ପଥର-ମନ ତରଳିଥିଲା ? ସେ ଦୁଃଖ କରୁଥିଲା ? ତା' ମନର କେଉଁ ଅନ୍ଧାର କୋଣରେ ଟୋକୀପାଇଁ ସ୍ନେହର ଟିକି ଝରଣାଟିଏ ଝରୁଥିଲା ? ଟୋକୀ ଆଖି ଆଗରୁ ଅନ୍ତର ହେଲାରୁ ସେହି ଝରଣାଟି ଆପେ ଶୁଖିଗଲା ? ନୋହିଲେ, କାହିଁକି ସେ ଆଖି ପୋଛୁଥିଲା ?

ଏବଯାଏ ସେ ଆଖି ପୋଛୁଛି କି ? ଝୁରି ହେଉଛି ? ଅପକର୍ମ ପାଇଁ ଅନୁତାପ କରୁଛି ? ଦୁଃଖରେ ସନ୍ତୁଳି ହେଉଛି ? ଲାଜରେ ଲେଉଟି ପାରୁନାହିଁ ?

ଅରକ୍ଷିତ କର ମୋଡ଼ିଲା ।

ସବୁ ଭାବନା ବାହୋଇ ଆଖିରୁ ଯେଉଁ ଲୁହର ଧାର ଛୁଟିଥିଲା, ଟୋକୀ ଚମକି ଉଠି ନିଜ ପଣତରେ ସେତକ ପୋଛିଦେଲା । ଜଭ କାମୁଡ଼ିଲା । ପୁଣି ଭାବିଲା, କି ବୁଦ୍ଧି କି ସେ ନ କଲା ସତେ ! ରୋଗଣା ପିଲାର ପାଖରେ ଜଗି ବସି ଆଖିରୁ ଲୁହ ଢାଳିବା ଭଲ ନୁହେଁ । ହେ ବଡ଼ ଠାକୁରେ ! ମୋ' ଅରକ୍ଷିତକୁ ଭଲ କରି ଦିଅ, ତମର ଶରଣ ପଶୁଛି ।

ଟୋକୀ ଓଲଗି ହେଲା । ଜଣାଣ କଲା, ଗତ କଥାଗୁଡ଼ାକ ମୋ ମନକୁ କେବେ ନ ଆସୁ ଠାକୁରେ, ତମରି ଦୟାରୁ ମୋର ବେଳ କଟିଯାଉଛି ।

. ଅରକ୍ଷିତ ଦେହର ତାତି ଊଣା ହେଲାଣି । ଜର ଓହ୍ଲାଇ ଗଲାଣି କି ! ରାତି କେତେ ହେଲା ଜାଣି ହେଉ ନାହିଁ । ପାଖ ଘରେ ଜେଜେମା କାହିଁକି ବ୍ୟସ୍ତ ହେଉଛି । କୁନ୍ଥାଉଛି । ସେ ବି ଜରୁଆ । ଚିର ରୋଗଣୀଟି । ଧନେ ଭଲ ରହିଲେ,

ଦିନଦିନ ବେମାର ପଡ଼ୁଛି । ତଥାପି ସେ ଘୋଷାରି ହୋଇ କାମ କରୁଛି । ଅତି ଅଶକ୍ୟ ହେଲେ ବିଛଣା ଧରୁଛି । ମରିବାକୁ ସେ ନିଜର ମନକୁ ମନା କରୁଛି ।

ହାତ ଯୋଡ଼ି ବିଛଣାରେ ପଡ଼ି, ସେ ଜଣାଣ କରେ—ହେ ଜଗନ୍ନାଥେ, ଆଉ ଦିନାକେତେ ସଞ୍ଚାର କର । କାର୍ତ୍ତିକା ଜେଲ୍‌ରୁ ଫେରୁ, ମତେ ନିଅ । ଏ ଝିଅଟି ଚଳିବ କେମିତି ? ଝିଅଟାକୁ ଧରି ବାରି ଦହଗଞ୍ଜ ହେବ । ହେ ଠାକୁରେ, କାର୍ତ୍ତିକାଟି ଫେରୁ, ନୋହିଲେ କିଏ ମୋ ମୁହଁରେ ନିଆଁ ଦବ, କହ ? ମୋ ଆତ୍ମା ଅମୋକ୍ଷ ରହିବ । ହେ ଠାକୁରେ, ମୋ' ଗୁହାରି ଶୁଣ ।

କିଛି କରିପାରୁ ବା ନ ପାରୁ ବୁଢ଼ୀଟି ଝିଅର ମନରେ ବଳ ଆଣେ । ସେ ଏକା ନୁହେଁ, ଏହି ଧାରଣା ଝିଅର ନିସାହାପଣ ଊଣା କରେ । ଭଲ ଥିଲାବେଳେ ସେ ଅରକ୍ଷିତକୁ ଜଗେ । ତା'କୁ ଖେଳାଏ, ତା'ର ଯତ୍ନ ନିଏ । ତା' ସଙ୍ଗରେ ଗୁରୁରୁ ଗୁରୁରୁ ହେଉଥାଏ । ତା' ପଛେ ପଛେ ଗୋଡ଼ାଇ ଥାଏ । କୋଡ଼ରେ ବସାଇ ପିଲାକୁ ଝୁଲାଉଥିବୁ ସେ କିରିକିରି ହୋଇ ହସେ । ବୁଢ଼ୀ ଗମ୍ଭୀର ହୁଏ । ଚୁ, ଚୁ କରେ । ଅରକ୍ଷିତର ପିଠି ଆଉଁସି ଦିଏ ।

ପାଖରେ ଝିଅ ବିରି ବାନ୍ଧୁଥାଏ, ଅବା ଦହି ମୋହୁଁ ଥାଏ । ଜାଡ଼ିଜାଡ଼ିକା ବଡ଼ି ପାରି, ସେ ଶୁଖାଇ ରଖେ । ଦହି, ଦହିଛେନା, ଘିଅ ତିଆରି କରେ । ଯିଏ ଚାହେଁ ତା'କୁ ବିକ୍ରି କରେ । ଗାଈଟି ଅଚ୍ୟୁତ ବେହେରା କିଣାଇ ଦେଇଛନ୍ତି । ତାଙ୍କର ଗୋରୁଗାଈ ଯେଉଁ ପୁଅଟି ଜଗେ, ସେହି ରଥିଆ ଆସି ଗାଈ ଦୁହେଁ । ତା'କୁ ପୁଣି ଚରାଇବାକୁ ନିଏ । ଗୋ'ରୁର ଆଉସବୁ କାମ ଝିଅ ନିଜେ କରେ । କାଳିଆ ଗାଈଟିର ନାଁ ବୁଧେଇ । ଧଳା କଳା ଛଉକା ତା' ବାଛୁରିର ନାଁ ଝିଅ ଦେଇଛି ଛଉଳି । ନିଜ ପିଲାଠୁଁ ବଳି ସେ ତାଙ୍କର ଯତ୍ନ ନିଏ ।

ଅଚ୍ୟୁତ ଓ ବେଳେ ବେଳେ ତାଙ୍କ ଘରଣୀ ଧୀରା ଓ ପୁଅ ଦିହେଁ ସିହାସ ଓ ରଥିଆ ଆସି ଦେଖନ୍ତି । ଖୁସି ହୁଅନ୍ତି । ଆଞ୍ଜୁଳେ ଗୋରୁ ମୂତ କି ଲଣ୍ଡାଏ ଗୋବର ଅଚ୍ୟୁତ ନଷ୍ଟ କରାଇ ଦିଅନ୍ତି ନାହିଁ । ଝିଅର ବାରିର ଗୋଟିଏ ପାଖରେ ସେ ଯେଉଁ ଚଉଖୁଣ୍ଟିଆ ଅଣ୍ଟାଏ ଗଭୀର ଖାତ ଖୋଳି ଦେଇଛନ୍ତି, ସେହି ଖାତରେ ସବୁ ଢ଼ାଳି, ଅଜାଡ଼ି ଖତ କରିବାକୁ ସେ ଉପଦେଶ ଦେଇଛନ୍ତି ।

ବାରିରେ ନାଟୁସି ପନିପରିବା କରୁଥିଲା । କାର୍ତ୍ତିକ ସାହାଯ୍ୟ କରୁଥିଲେ । ଦିହେଁ ବଳୁଆ ପାରଙ୍ଗମ ଥିଲେ । ଝିଅ ଘରକୁ ଜାଣି ଏକା । ବୁଢ଼ୀ ଅପାରଗ । ଟିକି ପିଲାର ଲେଞ୍ଜାଲ । ତା ଛଡ଼ା ବାରି କାମ । ମନ ହାଇଁପାଇଁ ହୁଏ । ସବୁ ଜଞ୍ଜାଳ ଭିତରେ ତଥାପି ସେ ବାରିରେ କାମ କରେ । ପୁଞ୍ଜାଏ ଲଙ୍କା ମରିଚ, ଦି' ପୁଞ୍ଜା ସାରୁ, ଖମ୍ବଆଳୁ ଅବା ଛିନଛିନିଆ ବାଇଗଣ ଦି'ଗଣ୍ଡା ପାଇଁ କାହା ମୁହଁକୁ ଡ଼ାଆଣୀଙ୍କ ପରି ସେ ଅନାଇଁ ରହିବ ? ତା ସାଙ୍ଗକୁ ବନ୍ଧୁଲ କଦଳୀ ।

ଟେଡ ପାଇ ତା' ହାତରେ ଗଛ ବଳିଷ୍ଠ ହୁଏ । ଦୁଇ ଜଣଙ୍କର କେତେ ବା ଲେଡ଼ା । ନିଜ ଗୁଜରାଣ ମେଣ୍ଟାଇ, ଗଳା-ଆଇଲା ମାଗରୁଣୀଙ୍କୁ କିଛି ଦେଇ, ବଳକା ପରିବା ବିକିଲେ ନଗଦ ପଇସା ହାତକୁ ଆସେ ।

ଶିମିଳି ଭଲ କିଆରି, ସୁନାଥାଳି ପାଇଁ ରାଇତନ ପାଣ୍ଡଙ୍କ କୋଠିଆ ତା' ବାପର ପାହାରରେ ଖଣ୍ଡିଆ ହୋଇ ଜୀବନ ହାରିଲା । ସେଥିପାଇଁ କାର୍ତ୍ତିକ ମହାନ୍ତି କେହେଲ ଭୋଗିଲା । ଜମିଖଣ୍ଡିକ ପାଣେ ମାଡ଼ିବସିଲେ । ବାକି ଜମିର ଫସଲର ଭାଗରେ ଗ୍ରେଟ କୃଷ୍ଣମୂର୍ତ୍ତିର ବର୍ଷିକ ଚଳିଯାଏ । ଅଚ୍ୟୁତ ବେହେରା ଭାଗ ଧରିଛନ୍ତି । ସେ ଯାହା ଦିଅନ୍ତି ସେଥିରେ ଓଜର ଆପତ୍ତି କରିବାର ପ୍ରଶ୍ନ ଉଠେ ନାହିଁ ।

ତାଙ୍କ ଉପରେ ଟଗିର ଅବିଶ୍ୱାସ ନ ଥାଏ । ଘରଭଙ୍ଗା ଲୋକେ ତାଙ୍କ ସଚ୍ଚୋଟପଣ ବିରୁଦ୍ଧରେ ଟଗି ଆଗରେ ଏଣୁ ତେଣୁ ପାଞ୍ଚ କଥା ଫୋଡ଼ିବାକୁ ଚେଷ୍ଟା କଲେ ସେ କାନକୁ ନିଏ ନାହିଁ । ସେ ଜାଣେ, ରତନପୁର ଗାଆଁରେ ଆପଦ ବିପଦ, ହାନି ଲାଭରେ ସେହି ଏକା ତାର ସାହାଭରସା ।

ଅଚ୍ୟୁତ ମନ୍ତ୍ରୀ, ଏବଂ ଏବେଯାଏ ପ୍ରକାଶ କରନ୍ତି ଯେ ଯେଉଁଦିନ ସ୍ୱରରେ ସେ ଟଗି ଆଗରେ ଓଲଟା ଖବର ଦେଇ ଅନ୍ୟାୟ କରିଛନ୍ତି । ସତ କହିଥିଲେ, ଟଗିର ଦୁଃଖ ପାଇଁ ନିଜକୁ ସେ ଦୋଷୀ ମଣୁ ନ ଥାନ୍ତେ ।

ଟଗି ନିଜ କପାଳର ଦୋଷ ଦିଏ । ତାଙ୍କୁ ଦୋଷରୁ ମୁକ୍ତ କରିବାକୁ ଚେଷ୍ଟା କରେ ।

ସେ ଜବାବ ଦିଅନ୍ତି, ସତ ଯେ ମା' କପାଳ ଲିଖନ କେ କରିବ ଆନ ? ତେବେ, ଯେଉଁ ଖବର ଦେଇ ବୁଢ଼ୀ ମତେ ଝରିବାବୁଙ୍କ ପାଖକୁ ପଠାଇଥିଲେ, ସେ ଖବର ମୁଁ ଦେଇ ନାହିଁ । ଝରିବାବୁଙ୍କ ଢଙ୍ଗ ଦେଖି, କଥା ଶୁଣି, ତାଙ୍କର ଲକ୍ଷ୍ମୀଛଡ଼ା ଅଭଦ୍ର ବ୍ୟବହାରରେ ମୁଁ ଗ୍ଲାନିଆଁ ହୋଇଗଲି । ସେ କ'ଣ ଜାମିନ୍‌ଦାର ହୁଅନ୍ତେ ? କୋର୍ଟ କଚେରୀକୁ ଧାଇଁ ଶଶୁରଙ୍କୁ ମୁକାଳି ଆଣିବାକୁ ଚେଷ୍ଟା ଚରିତ କରନ୍ତେ ? ସେଇଥିପାଇଁ କଥାକୁ ବୁଲେଇ କହିଲି । ଗୁଟିପିଟି ହୋଇ ପଳାଇ ଆସିଲି ।

—ଅମଣିଷ ମଦୁଆ ଆଗରେ ସତ କଥାର ମୂଲ୍ୟ ରହି ନ ଥାନ୍ତା ମଉସା ! ସ୍ନେହ ଭକ୍ତି ତା' ହୃଦୟରେ ନାହିଁ । ହିତ ଅହିତ ସେ କେବେ ବିଚାରି ନାହିଁ ।

—ମୁଁ କ'ଣ ଭାବେ ଜାଣୁ କି ମା ? ସତ କଥା କହିଥିଲେ ହୁଏତ ତୋର ସେହି ନିର୍ଜୀବ, ମଦୁଆ ସ୍ୱାମୀକୁ ଏକୁଟିଆ ଛାଡ଼ି ଆସି ନ ଥାନ୍ତୁ । ତୁ ନିଜେ ଏ ଘରେ ଏକୁଟିଆ ପଡ଼ି ବାର-ହଇରାଣ ହୋଇ ନ ଥାନ୍ତୁ । ଦୁହେଁ ଛଡ଼ାଛଡ଼ି ହୋଇ ଅଧିକ ଦୁଃଖ କଷ୍ଟ ଭୋଗି ନ ଥାନ୍ତ । ଅପମାନ ସହିବାକୁ ଏମିତ ବାଇବଛ ପର ଗୃହଆସି ନ ଥାନ୍ତୁ ! ତୋ' ଦୁଃଖ କଷ୍ଟ, ତୋ' ଏକୁଟିଆ ଘରକରଣା, ତୋର

ଅଭ୍ୟାସ ହୋଇ ଯାଇଥିଲା । ତୋତେ ଆରେଇ ଯାଇଥିଲା । ତୋ'ର ଶଷ୍ଟ ଖଣ୍ଡନ ହେବାଯାଏ ସେଇଠି ତୁ ରହିଥାନ୍ତୁ । ଏ ଗାଆଁର ଖଲ ଲୋକେ ତୋ'ର ବାର ନନ୍ଦା କର ନ ଥାନ୍ତେ ।

ଟଭ ଭାବେ, ଅତ୍ୟନ୍ତ ବେହେରା ଯାହା ଯାହା କହିଲେ, ହୁଏତ ସତ । ମଣିଷର ଢ଼ଙ୍ଗ ମଣିଷ କ'ଣ ନଜେ ଜାଣି ପାରେ ? କଏ ଜାଣେ କ କ ଘଟଣା ପୁଣି ଘଟି ଯାଇଥାନ୍ତା ? ସେହି ସବୁର ପ୍ରଭାବ ତାର ଉଜର୍ନ୍ତ, ନସ୍ତଶିଆ ମନକୁ କେଉଁ ବାଟରେ ଦଉଡ଼ାଇ ନେଇଥାନ୍ତା । ବାହାରେ ଘଟୁଥିବା ଘଟଣାଗୁଡ଼ିକ ଉପରେ ତା'ର ତ ହାତ ନାହିଁ ।

ଟଭ ଭାବେ, ଝରଅର ଅନ୍ଧ-ଦୃଷ୍ଟାମଣା ଭବଷ୍ୟତ୍‌କୁ ଟିକଏ ହେଲେ ନଯା ନ ଦେଇ ତାର କଣ୍ଢେଇ ନାଟ, ଟଭ ଉପରେ ଅତ୍ୟାଗ୍ରର, ସବୁ ଶେଷ ସୀମାର ପାହ ପାଖରେ ପହଞ୍ଚିଥିଲା । ତା'ର ସହିବାର ଶକ୍ତି ଦୋହଲୁଥିଲା । ସେ ଶକ୍ତି କେବେ ଟଳି ପଡ଼ିଥାନ୍ତା କଏ ଜାଣେ ? ପେଟକୁ ଦାନା, ଦେହକୁ କନା, ପଦେ ଆହା କହି ଛଟପଟ ଜୀବନରେ ଟିକଏ ଆଶ୍ୱାସନା ଦେବାକୁ କେହି ନଥିଲେ । ପେଟର ପିଲା କ'ଣ ମନକୁ ଆସ୍ୱନ୍ତ କର ରଖି ପାରଥାନ୍ତା ।

କଏ ଜାଣିବ ?

କେତେଥର ସେ ଭାବଥିଲା, ଆତ୍ମହତ୍ୟା କରବ । ବାଇଆଣୀ ପର ଏକୁଟିଆ ଝଜ୍ଞାରେ ସେ ଏପାଖ ସେପାଖ ଧାଉଁଥିଲା । ବସ୍ତୁରୁଥିଲା, କେମିତ ମରବ ? କୂଅକୁ ଡେଇଁବ ? ବେକରେ ଦଉଡ଼ା ଲଗାଇବ ? ଜୀବନ ଗଲା ପରେ ତା' ଆତ୍ମା ଅମୋକ୍ଷ ପ୍ରେତ ହୋଇ ଦୁଃଖ ସହିଲେ ସହୁ, ଏ ଜୀବନର ଦହଗଞ୍ଜରୁ ସେ ପରତ୍ରାଣ ପାଇଯିବ ତ !

ଏହି ସିଦ୍ଧାନ୍ତରେ ପହଞ୍ଚି ଆଗେଇ ଯାଉଣୁ, ମନ ଆଗରେ ଉଭା ହୁଏ ସୁନା-ବଉଉଣୀ । କହେ, ସେଇଆ କର ଲୋ, ଖୁଣ୍ଟିଆ ଘରର ବୋହୂ, ମୋ' ସାନ୍ତାଣୀ । ଅହିଅ ଡ଼େଙ୍ଗୁରା ବାଜବ । ମଶାଣିକୁ ଯିବୁ । ଝରଆ ଖଇ କଉଡ଼ି ବର୍ଷି ଆଗେ ଆଗେ ଚାଲିବ । ତା'ପରେ ତା'କୁ ମୁଁ କାଠିରେ ନସ୍ତଇବ । ତାକୁ କେଣ୍ଟା କେଣ୍ଟା କର ଝଣି ଖାଇବ ।

ପେଡନୀ ହୋଇ ଯିବି ଥିବୁ ଲେ ! ପଛରେ ଗୋଡ଼ାଇଥିବୁ । ପାଖ ପଶି ପାରବୁ ନାହିଁ । ତୁ କାନ୍ଦୁଥିବୁ ମଶାଣି ଭୂଇଁରେ । ରାତ ଅଧରେ । କଟିକଟି ଅନ୍ଧାର ରାତରେ । ମୁଁ ହସୁଥିବ ମୋ ଘରେ ।

ଦୁଇ ପିଲା ମୋ'ର ଦୁଇ ପାଖରେ ଶୋଇଥିବେ । ମହାରଣାଏଁ ମୋ ପାଦ ମଞ୍ଚାଳୁଥିବେ ? ତୋ' ଗେରସ୍ତ ଝିଅ ମଦ ପିଇ, ମାତାଲ ହୋଇ, କାହା ପିଣ୍ଡାରେ କି ବାଟ କଡ଼ର କେଉଁ ଗଛ ମୂଳର ଧୂଳି ଉପରେ ପଡ଼ି ଗଡ଼ୁଥିବ । ଘେଗଣା-କୁକୁର ପରି ବେଳେ ବେଳେ ଭୁକି ଉଠୁଥିବ ।

ଡ଼େରି କାହିଁକି କରୁଛୁ ? ଯାଆ ଲୋ, ଖୁଣ୍ଟିଆ ଘରର ଗେହ୍ଲା ବୋହୂଟି ! ଡେରି କାହିଁକି ? ବାରି କବାଟ ମୁକୁଳା କରିଛୁ । ଆଗରେ ପାତାଳଫୁଟା କୂଅ । ତେଣି ପଡ଼ିଲେ କହମାନେ ଜୀବନ ଗ୍ରୁଡ଼ିବ । ଆଲୋ, ରହ ରହ କାହିଁକି ? ଖଣ୍ଟିଆ ଖାବଡ଼ା ହେବୁ ବୋଲି ଡ଼ରୁଛୁ ? ସେତକ ନ ହେଲା ନାହିଁ । ଟାଣ ଦଉଡ଼ିଟା କୂଅ ମୂଳରେ ପଡ଼ିଛି । ତୋ' ସ୍ନେହର ବଉଳ ଗଛଟି ଅଛି ପାଖରେ । ଖେପାଏ ଉହୁଙ୍କି ଚଢ଼ିଲେ ମୋଟା ଡ଼ାଳ !

ଯା, ଆଗେଇ ଯା ! ତୋ' ଭିତରୁ ଗ୍ଲିି ଯାଇଥିବା ଗ୍ଧମଣ୍ଡା ଆଗରି ବୁଦା ଗହଳି ପଛରେ ଲୁଚିଛି । ଟାକି ବସିଛି । ଆଲୋ ମୋର ସେବକା-ବଉଳ ! ତୋ' ଆତ୍ମାକୁ ସେ ଗ୍ଧମଣ୍ଡା ସେନେହରେ ପାଗ୍ଳେଟି ନବ ।

ଟଭି ସ, ସ ହୁଏ । ବାରି କବାଟ ସଜୋରେ କଲେ । ମୁଣ୍ଡ ହଲାଇ ଗୁଣୁ-ଗୁଣୁ ହୋଇ ସୁନାର ସୁମରଣାକୁ କହେ, ସତେ ? ମୋ' ଅଲ୍ଲେ ଧୁ ସିଆଣୀ ଝିଅର ନାକରେ ଦଉଡ଼ି ଗଳାଇ ଟାଣିବୁ ? ସବୁ ତ ନେଲୁଣି, ଘର ଡ଼ିହ ସମେତ ବାକି ଯାହା ଅଛି ନେବୁ ? ସେଇଠୁ, କେଉଁ ବାଗରେ କେମିତି ତା' ପ୍ରାଣଟାକୁ ବି ଓଟାରି ନେବୁ ଲୋ ଡ଼ାଆଣୀ, ସେତକ ମୁଁ କରିପାରିବ ଯେ ! ପେଟର କପି ଯଦି ଫଳ ହୋଇ ଆସେ, ମୁଣ୍ଡ ଗୁଞ୍ଜିବାକୁ ଜାଗା ଟିକେ ଥିବ । ଖୁଣ୍ଟିଆ ଘରର ପୁଅ, ଯିଏ ମୋ ପେଟରେ ଅଛି, ବାର-ଦ୍ୱାର ଶୁଣ୍ଢୀ-ପିଣ୍ଡା ହେବ ନାହିଁ ।

ଦାଣ୍ଡ କବାଟ କିଏ ଧଡ଼ ଧଡ଼ କରେ । ଅସ୍ତବ୍ୟସ୍ତ ହୋଇ ଟଭି ଧାଇଁଯାଏ । କବାଟ ଖୋଲେ ।

ଝିଅ ଆସିଛି । ସେ ଭଲ ଥିଲା ପରି ଦିଶୁଛି । ମଦ ପିଇ ନାହିଁ । ଟାଣି-ଥିଲେ ଗଞ୍ଜେଇ ଚିଲମ ଟାଣିଥିବ । ହଁ, ସେଇଆ । ଟଳ ଟଳ ହେଉଛି ।

ଟଭି କବାଟ କଲେ । ଯାହାର ଅଶୁଭ ସେ ମନାସୁଥିଲା, ତାକୁ ଦେଖି ସେ ବିକଳ ହୁଏ । ଗ୍ଲବେ, ସେ କେଡ଼େ ପାତଳୀ ।

ଝିଅର ହାତ ଧରି ସେ ଘରକୁ ନିଏ ।

ଦୁଇଟି ଦେହ ଅଲଗା କରିଇ ଦିଏ ନାହିଁ । ସେ ଦୁଃଖ ଓ ଅନୁତାପରେ ଛଟପଟ ଖୁଣ୍ଟିଆ-ଘରର ଘରଣୀ । ଗ୍ଧ ସାଗ୍ରୀ ଆଖିରୁ ଲୁହ ତାଲି ମନର କଳୁଷ ଧୋଇ ଧୋଇ ସଫା କରୁଥାଏ । ଧଡ଼ିଆ-ଧେଡ଼ଙ୍ଗ, ଅବଶ-ଅଚେତିଆ ହାଡ଼ୁଆ ଦେହରେ ତା'ର କଅଁଳ ଦେହର ପରଶ ଲାଗି ରହିଥାଏ ।

ବିଗତ ବିସୋର ଯାଏ ।

ଅଚ୍ୟୁତ ବେହେରାଙ୍କର ଭାବନା ଓ ଅନୁଶୋଚନା ହୁଏତ ନଭୁଲ । ସେ ସତ କହିଥିଲେ, ଯେଉଁଥିପାଇଁ ସେ ମଣିନ୍ଦ୍ରଦ ଯାଇଥିଲେ, ସବୁ କର୍ତ୍ତନା କରିଥିଲେ, କିଏ ଜାଣେ, ଘଟଣାର ଚକ କେଉଁ ବାଟରେ ଗଡ଼ି ଚାଲିଥାନ୍ତା ।

ପର ଘରେ ସୁଖ ଦୁଃଖରେ ସାତ ବର୍ଷ କଟାଇଲା । ତା'ର ବାପା ହନେ କେବେ ମଣିକୁଦରେ ପାଦ ଦେଇ ନ ଥିଲେ । ସତେକି ସେ ମଣିଥିଲେ, ଟଭି ପର-ଘରକୁ ଯାଇ ନାହିଁ, ଯମପୁରକୁ ଯାଇଛୁ । ଅବା ଟଭି ନାମରେ ତାଙ୍କର ଝିଅଟିଏ କେବେ ନ ଥିଲା । ନାଟୁଆ କ'ଣ ତାକୁ ନିଜ ଗୋଡ଼ରେ ବାନ୍ଧି ରଖିଥିଲା ?

ଏପରି ଯେଉଁ ବାପଘରର ସ୍ନେହ, ଯେଉଁଠି ସେ ଅଲୋଡ଼ା, ଅଖୋଜା ସେଠାରେ ସେହି ବାପର ଶରଣ ନେବାକୁ ସେ ଚାଲି ଆସିଥିଲା ଗୋଟାଏ ଆନ୍‌ରେ । ବାପ ତା ମୁହଁକୁ ଚାହିଁଲେ ତାଙ୍କର ପଥର ଛାତି ତରଳିବ । ମନ ତଟିବ । ଆଉ ଗୋଟାଏ ପିଲା ତ ନାହିଁ ? ସେହି କାରଣରୁ ନାଟୁଆର ମନ ବଦଳିଯିବ ।

ଅଚ୍ୟୁତ ବେହେରାଙ୍କ ତୁଣ୍ଡରୁ ସତ ଘଟଣା ଶୁଣିଥିଲେ ସେ ମହାରଗରୁ କାନ୍ଦାରକୁ ଡେଇଁ ପଡ଼ିବାକୁ ସାହସ କରି ନଥାନ୍ତା । ଯିଏ ତା'ର ଜୀବନ-ସର୍ବସ୍ୱ ତାକୁ ବାଟକୁ ଆଣିବାକୁ, ନଜର କରିବାକୁ, ତା'ର ହେଉ କି ଝିଅଆର ହେଉ, ଶେଷ କନାଖ ଯାଏ ସେ ତା'ର ତୀର୍ଥ-ଭୂଇଁରେ ମାଟି କାମୁଡ଼ି ପଡ଼ି ରହିଥାନ୍ତା । ସେଇଠି ପଡ଼ି ମରିଥିଲେ ତା'ର ଗତମୁକ୍ତି ହୋଇଥାନ୍ତା । ଅନ୍ୟ କିଛି ବିଘଟନ ଘଟି ଥିଲେ, ତାର ଦୁର୍ନାମ ଦୁଇ କୂଳରେ ରଟି ନ ଥାନ୍ତା !

ଅରକ୍ଷିତ ସେଇଠି ତା'ର ବାପ-ଜେଜେପାଙ୍କ ଜନମମାଟିରେ ଜନମିଥାନ୍ତା । ଅଲକ୍ଷଣୀ ବିଧବାର ପେଟରଣ୍ଡା ଛୁଆ ବୋଲି ଦୁନିଆର ଲୋକ କହିଲେ କୁହନ୍ତୁ, ଖୁଣ୍ଟିଆ ବଂଶର ବାଘପିଲା ବୋଲି ସେମାନେ ଅବଶ୍ୟ ଜାଣନ୍ତେ ।

ଆଜି ସେ କ'ଣ ଏଇ ବକଟକ ଛୁଆଟି !

ଯେଉଁ ଗାଆଁରେ ଟଭିର ଜନମ, ଯେଉଁଠି ତା'ର ବୋଉ ବଞ୍ଚିଥିବା ଯାଏ, ଠିକ ବୟସରେ ରତନପୁରର ମା' ମାଉସୀ, ଖୁଡ଼ୀ, ଦେଠେଇ ଓ ଅନ୍ୟମାନଙ୍କର ଏକୋଳ ସେକୋଳ ହେଉଥିଲା, ବଡ଼ ହେଲା ପରେ, ଯେଉଁଠି ପୁଣି ସାବତ ମାଆର ଗଞ୍ଜଣା ସହି ଆଖିରୁ ଲୁହ ଗଡ଼ାଇଲାବେଳେ ସେହି ମାନ୍ୟଗଣ୍ୟ ମାଇପେ, ଅଭ ପର-ଗାଆଁରୁ ଆସି ଖୁଡ଼ୀ, ଭାଉଜ, ନୂଆ-ବୋହୂଟିମାନେ ତା'ର ଆଖିରୁ ଲୁହ ପୋଛି ସାନ୍ତ୍ୱନା ଦେଉଥିଲେ, ସେହି ଗାଆଁରେ ଆଠବର୍ଷ ପରେ ଗୋଡ଼ ଆପୁଣ୍ଡ

କେଇଟିମାସ ନ ବରୁଷୁ ସେହି ସ୍ନେହଶୀଳାମାନେ ମରିଲେ କୁଆଡ଼ୁ ଗୋଟାଏ କଏ ପଳାଇ ଆସିଛି । ପିଲାର ମା ହେବ । ଗୁଣ ଜାଣି ଗେରସ୍ତ ବାହାର କରି ଦେଇଛି ।

ସେମାନେ ଦଳ ଦଳ ହୋଇ ଆସିଥିଲେ । କଏ କେବେ । ଆଖି ଠାରେଠାରେ । ଚମୁଟା ଚମୁଟି । ବିନାକାରଣରେ ହସାହସି । ଉପଲକ୍ଷ୍ୟ ଦିଆ କେତେ କଥା । ପଚରା ଉଚରା ।

ମଣିକୁଦରେ କଏ କ'ଣ ଦୁର୍ନାମ ରଟାଇଥିଲା ଗଲା ଅଇଲାଙ୍କ ତୁଣ୍ଡରୁ କ'ଣ ସବୁ ଶୁଣି, ପାଞ୍ଚରେ ପଚିଶ ଯୋଡ଼ି ଆପଣାର ହୋଇ ସତମିଛ ଜାଣିବାକୁ ବ୍ୟାକୁଳ ହେଉଥିଲେ । ଜବାବ ନ ଦେଲେ ପରିତ୍ରାଣ ନାହିଁ । ଜବାବ ଦେଲେ ଖିଅ କାଢ଼ି, ଭଲେଇ ହୋଇ ଆହୁରି ଆହୁରି ସହସ୍ର ପ୍ରଶ୍ନ ।

ସତ କହି ହେବ ନାହିଁ । ମିଛର ଆଶ୍ରା ନେବାକୁ ସାହସ ନାହିଁ । ବୁଦ୍ଧି ନାହିଁ । କେମିତି କଥା ଯୋଡ଼ି ମିଛକୁ ସତ ଫଳାଇ କହିବାକୁ ହୁଏ ତା'କୁ ଜଣା ନାହିଁ । ଆଉ ପାଞ୍ଚଜଣ ବୋହୂ ଭୂଆସୁଣୀଙ୍କ ସଙ୍ଗେ ମିଶି ଆଳାପ କରିବାର ସୁଯୋଗ ସେ ମଣିକୁଦରେ ପାଇନାହିଁ ।

ଯେତେ ସାବଧାନ ହୋଇ ଉତ୍ତର ଦେଲେ କ ହେବ, ସେହି ପର-ଛିଦ୍ର-ଖୋଜାଳୀ ମାଇପେ ତୁଣ୍ଡରେ ନ କହି ମୁଣ୍ଡରେ ଅସନା ଧାରଣା ନେଇ ବାହୁଡ଼ନ୍ତି—

ଟୋକିର ଦୋଷଗୁଣ ପଣ ପାଇଁ ତା' ଗେରସ୍ତ ତାକୁ ଛି କରିଦେଇଛି । ପ୍ରାଣ ବିକଳରେ ସେ ପଳାଇ ଆସିଛି । ରତନପୁରର ଝିଅମାନଙ୍କ ମୁହଁରେ ସେ ଚୂନକାଳି ବୋଳିଛି ।

ଟୋକିର ବଶ୍ରାପୀ କେହି କେହି, କଏ ଜାଣେ ସେମାନେ ଅତି ସିଆଣିଆ-ପଣରେ ତା' ଭିତରୁ ଗୁପତ ଦାରଜା ଓଟାରି ନେବା ଛଳନାରେ ବ ହେବ, ଗୋଟାଗୁଏଁ ଆପଣାର ହୋଇ କାନରେ ଏସବୁ ଗାଆଁ-ଆଲୋଚନା ବାରମ୍ବାର ଫୋଡ଼ି ଯାଇଥିଲେ । କହୁଥିଲେ, ନ ଦେଖିଲୁ ଓଉ ଛ' ଫଡ଼ା ଲୋ ଟୋକି; ନ କହିଲୁ କାହିଁକି ? ଉ ବିସ୍ମରୁ ? ତାଙ୍କମାନଙ୍କ ମନର ସନ୍ଦେହ କେହି ଓଳାଇ ସଫା କରି ପାରିଲା ନାହିଁ ।

—କାହାର କି ଗରଜ ବଳେଇଛି ।

—ଏମିତି କହିଲେ ଚଳିବ ? ରତନପୁରରେ ଛତିଶିପାଟକ ଘରକରି ରହିଛନ୍ତି । କୋଉ ଜାତି ନାହିଁ ? ଛୁଆଁ-ଅଛୁଆଁ । ଏବକାଳକୁ ସିନା ସରକାର ଆଇନ ବଳରେ ଅଛୁଆଁ ନାଆଁଟା ଉଠାଇ ଦେଲେ । ଥିଲା ତ ! ସବୁ ଜାତିର ସବୁ କୁଟୁମ୍ବର, ଚଉଦନ ପାଟଙ୍କ ପରି ଥିଲାବାଲା ହେଉ, କି ଆମପରିକା ମୂଳିଆମୁଣ୍ଡି ହେଉ, ଗାଆଁ ସନମାନ ସମସ୍ତଙ୍କ ପାଇଁ ନୁହେଁ କି ? ଗୋଟିଏ କୁଟୁମ୍ବର ନିନ୍ଦା ରଟିଲେ, ସେଇଟା ଗାଆଁକୁ ବାଧେ ।

—ମିଛଟାରେ ? ନାହିଁକି, କଣ କ'ଣ ଦେଖିଛୁ ନା ଜାଣିଛୁ? ସେମାନଙ୍କର ଝିଅ ବୋହୂ ଅଛନ୍ତି । ମୋ ଜାଣତରେ ଏଇ ଗାଆଁର ଝିଅ ବି କେତେ ଏଇ ଗାଆଁର ବୋହୂ ହୋଇଛନ୍ତି । କେତେକଙ୍କର ଗୁଡ଼ବାଡ଼ ଘରେ ଦୁଧଅଘର ହୋଇଛି ।

—ଯେଉଁ କୁଳରେ ଅଛୁ, ଯେଉଁ କୁଳରେ ଏବକାଳକୁ ଚଳେଇ ନେଲେଣି, ସେଥିରେ ଦୋଷ ଲେଖେ ନାହିଁ । ଗାଁ ସନମାନ ହାନି ହୁଏ ନାହିଁ । ବାରଆଡ଼େ ନିନ୍ଦା ରଟେ ନାହିଁ । ଗେରସ୍ତ ଥାଉଣୁ ଆଉ କାହାର ପିଲାକୁ ପେଟରେ ଧରିଲେ ତ ମହତ ସରେ । ଜାଣିଲୁ ଟକି !

—କେଉଁ କୁଳବୋହୂ ନ ଜାଣେ ? ମୁଁ କାର୍ତ୍ତିକ ମହାନ୍ତି ଝିଅଟି ? କାର୍ତ୍ତିକ ମହାନ୍ତି ଲୋକଙ୍କ ସତପଣିଆଁକୁ ବିଶ୍ୱାସ କରେ । ଅନ୍ୟାୟକୁ ବରଦାସ୍ତ ନ କରି ଜୀବନ ନେବାକୁ, ଅବା ଜୀବନ ଦେବାକୁ ଆଗେଇଯାଏ । ମୋ' ବାପା ଜେଲ୍ ଭୋଗିଲା । ମୋ'ର ଦୁଃଖ ନାହିଁ । ଲାଜ ନାହିଁ । ମୋ ସନମାନରେ, ରତ୍ନପୁର ଗାଆଁର ସନମାନରେ କଳା ବୋଲା ହୋଇ ନାହିଁ । ସେ ନିଜର ଟେକ ରଖିଛି, ଗାଆଁର ଟେକ ରଖିଛି ।

—ଏ କି କଥା କହୁଛୁ ଟକି ?

—କହୁଛି ତ । ସେ ଗରିବ ଥିଲା, ହେଲେ ସେ ପେଞ୍ଚୁଆ ପରପଞ୍ଚ ନ ଥିଲା । ଯେଉଁ କୋଠିଆ ଗରିବଟି ତା' ପେଟ ପାଇଁ ମଲା, ତା'କୁ ସେହି ପରପଞ୍ଚ ବାଘ ମୁହଁକୁ ଠେଲି ଦେଇଥିଲା । ସେ ଜାଣିଥିଲା ମ, ବାଘ ମରିବ ନଇଲେ ସେହି କାର୍ତ୍ତିକ-ବାଘର ମୁହଁରେ ବିଚରା କୋଠିଆ ମରିବ । ସେହି ବାଘର ମୁଁ ଛୁଆ । ଯାହାର ବୋହୂ ହୋଇ ଯାଇଥିଲି, ସିଏତ ମହାବଳ । ମୁଁ ବାଘୁଣୀ ଜାଣିଥା ।

—ହୋଇଥିବ । ଅଚ୍ୟୁତ ବେହେରାକୁ ତୋ' ବୁଢ଼ୀମା ତୋ' କଥକି ପଠାଇଥିଲା । କଥା କ'ଣ ଛପି ରହେ ? ବେହେରାର ବଉଁଶତମାମ ମୁହଁରେ ପାଲବଣ୍ଡା ମାରି ରହିଥିଲେ । ତମର ଗୁପତ କଥା କୋଉ କନ୍ଦିବାଟେ ଗଳି ଆସି ପ୍ରଘଟ ହେଲାନି । କେହି ତ ଦେଖି ନ ଥିଲେ ? କେହି ତ ଜାଣି ନ ଥିଲେ ?

—ଜାଣିଲେ ଜାଣନ୍ତୁ । ସେଥିରେ କେଉଁ ଗହନ ବେଭାର ଛପିଥିଲା କି ? ମଉସା ଗଲେ, ଖବର ଦେଇଁ ଗୋଡ଼େ ଗୋଡ଼େ ବାହୁଡ଼ିଲେ ।

—ସେଇଆ ଲୋ ଟକି । ଜୋଉଁ ତ ଶୁଣିଲେ ଶଶୁରଙ୍କୁ ଖୁଣୀ ମକଦ୍ଦମାରେ ପୁଲିସି ହାତକଡ଼ା ଦେଇ ବାନ୍ଧି ନେଇଛି । ତା' ସାବତଶାଶୁ ଫେରାର ହୋଇଛି । ଶଶୁରକୁ ମୁକାଲି ଆଣିବାକୁ ସେ ଧାଇଁ ଆସିଲେ ନାହିଁ ?

କ୍ୱାଇଁ କେବେ ପୁଅ ହୁଏ ନାହିଁ । ଝିଅ ବି ହୁଏ ନାହିଁ । ଝିଅ ମନ କ'ଣ ସହନ୍ତା ? କିଛି କରିବାକୁ ପାରଙ୍ଗମ ହେଉ, ଅବା ନ ହେଉ ତା' ଗ୍ରୁଆଁକୁ ଦୁଆରେ ଆସି ଠିଆ ହୁଅନ୍ତା କି ନାହିଁ, ତମେ ନିଜେ ବିଚାର କରୁନ ? ଯେଉଁ

ସୈରଗଣୀ ବୁଢ଼ୀମା ମୋ ବାପକୁ ପେଟରେ ଦଶମାସ ଧରିଥିଲା,'ତା' ଜୀବନ କେମିତି କଳବଳ ହେଉଥିବ ବିଚାରିଲ ? କେମିତି ବଞ୍ଚିଲା ? ଏବେ ବୁଝିଲ ତ ପେଟରେ କୁଆ ଧରି କାହିଁକି ଧାଇଁ ଆସିଲି ?

—ତୋ' ବରି ତୋ' ମୁହଁ ଗୁହଁ ନାହିଁ କାହିଁକି ? ଏ ଗାଆଁରେ ସେଇଥି-ପାଇଁ ଶହେ ବିଚାର । କହୁଛନ୍ତି, ଅରକ୍ଷିତ ଯଦି ତା' ପିଲା ହୋଇଥାନ୍ତା, ସେ ଆପେ ଧାଇଁ ଆସନ୍ତା । ମଦ ଖାଇ, ଗଞ୍ଜେଇ ଟାଣି ବାବନାଭୂତ ପରି ବୁଲନ୍ତା ନାହିଁ । ବାବାଜୀର ଆଶ୍ରା ନେଇ ସମ୍ପତ୍ତି ଉଡ଼ାନ୍ତା ନାହିଁ । ଲୋକେ ନିଜ ପିଲାପିଚିକାଙ୍କ ପାଇଁ ଦୁଃଖ ସହି, ପେଟରେ ଓଦାକନା ଦେଇ ସମ୍ପତ୍ତି କରିଯାଉଛନ୍ତି । ତୋ' ଗେରସ୍ତ ତୋ' ପେଟର ପିଲାଟିର କଥା ନ ବିଚାରି ଥିଲା-ସମ୍ପତ୍ତି ନୁର କରନ୍ତା ନାହିଁ । କେଉଁ ଦୁଃଖରେ କେଜାଣି ନିଜ ଜୀବନକୁ ସେ କୁଆଡ଼େ ଛୁ କରି ଦେଇଛି । ଲୋକଙ୍କର ବିଚାରିବା ଫାଲୁଛି ।

—ହଁ ଫାଲୁଛି । ଆହା, ବିଚାରିଟିମାନେ ! ତାଙ୍କ ଗାଆଁର ସନମାନ ପାଇଁ ଏତେ ଛଟପଟ ହୋଇ ମୁଣ୍ଡ କୋରୁଛନ୍ତି ? ତମମାନଙ୍କୁ ଚର କରି ପଠାଉଛନ୍ତି ? ଏତେ ଲୋକଙ୍କୁ ସଫେଇ ଦେବାକୁ ମୋ'ର ଡର ନାହିଁ । ସେମାନେ ମଣିକୁଦ ଯାଇ ବୁଝି ଆସି ମାରୁ ନାହାନ୍ତି ? ଆଗୋ ! ବାଟ ସାତ କୋଶ । ସକାଳେ ଯାଇ ସଞ୍ଜରେ ଫେରନ୍ତେ । ବୁଝି ଆସିନ୍ତେ, ଖୁଣ୍ଟିଆଘରର ବୋହୂ ସତୀ କି ଅସତୀ । ଦେଖି ଆସନ୍ତେ ଆଖିରେ, ତା' ଗେରସ୍ତ କଅଣ କରେ, କଅଣ କରୁଛି । ମନକଲେ ପଗ୍ଭରନ୍ତେ କିଏ କାହାକୁ ଛୁ କରିଛି, କିଏ କାହାକୁ ଝୁରି ହେଉଛି ।

—ସୀତାଠାକୁରାଣୀଙ୍କ ବନବାସ ଯୋଗ ।

—ନ ହେଲେ ବି, ସେମିତିକା ଛଡ଼ାଛଡ଼ି । ଏଇ ଅରକ୍ଷିତା ଠେଇଁ ଲବ-କୁଶର ଧାରଣା ଲୁଚି ରହିଥିବ । ମୁଁ ଅଳପ ପଢ଼ୁଆ । ଶାଶୁଘରକୁ ଗଲାଦିନୁ କେବେ ନାଟ ସୁଆଙ୍ଗ ଦେଖିନାହିଁ ଯେ ସେହି ଭାବ ବୁଝିବି । ଯାହା ଶୁଣିଛି, ସେତିକି । ମନେ ତ ପକାଇଦେଲ, କହୁଛି ଶୁଣ । ···

ଟଭ ଆଖି ଛଳ ଛଳ କରି ଆଧୀନ୍ୟ ହୋଇ ପୁଣି କହିଲା—ଆମର ଭେଟା ଭେଟି ଧନେ ହେବ । ଦେଖ ବା ନ ଦେଖ, ଜାଣିବ । ବଳେ ବୁଝିବ, ରତନ-ପୁରର ଝିଅ, ମଣିକୁଦର ବୋହୂ ସତୀ କି ଅସତୀ । ଏ ଗାଆଁର ଟେକ ରଖିଛି କି ନାକକାଣି ତଳେ ପକାଇଛି । କହିଦେବ ଗୋ, ସଭିଙ୍କୁ କହିଦେବ, ସମସ୍ତଙ୍କର ସ୍ନେହ-ଶ୍ରଦ୍ଧାରୁ ମୁଁ କାଣିଚାଏ ଲେଖାଁ ଭିକ ମାଗୁଛି । ଏ ଗାଆଁରେ ମୋ'ର ଅଛି କଅଣ ଯେ ଶୁଝି ପାରିବି ? ବଡ଼ଙ୍କୁ ଭକତି, ସାନଙ୍କୁ ଆଦର । କେହି ମୋର ଶତ୍ରୁ ନୁହେଁ । ତମେ ସମସ୍ତେ ମୋ'ର ମାଆ, ମାଉସୀ, ଭାଉଜ, ଭଉଣୀ ସମାନ ।

ଯେଉଁମାନେ ତମଠାରୁ ମୋ ଖବର ଶୁଣି, ଗାଢ଼ ଅନିଦ୍ରା ହୋଇ ବସୁର ବସାଇଛନ୍ତି, ସେମାନେ ମୋର ବାପ, ଖୁଡ଼ୁତା, ଭାଇ ସମାନ । କେଉଁଠି କ'ଣ ଶୁଣି ଯଦି ଗାଁ ଟିଅଟାର ନିନ୍ଦା ରଟାଇବେ, ତମେ ବସୁର କର, ଗାଆଁର ନିନ୍ଦା, ଅପମାନ ମୁଁ କରାଇଲି ନା ତମେମାନେ କରାଇଲ ନା ସେମାନେ କରାଇଲେ ।

ଟଭି ଆଖିରୁ ଲୁହ ପୋଛିଲା ।

କେହି କେହି ମୁଣ୍ଡ ଟୁଙ୍ଗାଇ ସାନ୍ତ୍ୱନା ଦେବାକୁ କହିଲେ, ସତ କହିଲୁ ମା ' ସେ ଗୁଡ଼ାକ ଅବିବେକୀ । ଆମ ଜାତିବାରେ ଯେମାନଙ୍କୁ ଚଇତନ ପାଣେ ମତାଇ ଦେଇଛନ୍ତି ।

ଟଭି ବସୁରଲା, ଯେଉଁ ଚଇତନଭାଇ ତା'ର ପିଲାଟି ଦିନରୁ ଶାଶୁ ଘରକୁ ଗିବାଯାଏ ତା'କୁ ସାନଭଉଣୀ ପରି ଭଲ ପାଉଥିଲେ, ସେ ତା'ର ବାପର ଶତ୍ରୁ ହେଲେ ସିନା, ତାର ତ ସେ ଭାଇ । ପୁଣି ବିମଳାଭାଉଜ ବସିଛନ୍ତି । ତାକୁ କେତେ ଭଲ ପାଉଥିଲେ । ସେମାନେ କ'ଣ ତା' ପ୍ରତି ବି ନିର୍ଦ୍ଦୟ ହେଲେ ?

ଆଉ କଏ କହେ, ପାଣେ ଏସବୁ କଥାରେ ପଶନ୍ତି ନାହିଁ । ତାଙ୍କ ଧନ୍ଦାରେ, ତାଙ୍କ ଦୁଃଖରେ ସେ ଥା'ନ୍ତି । ସାତବର୍ଷର ବଡ଼ ପୁଅ ହାଉଜା ହେଲା । ତା'କୁ ଖୋଇଦେଲା ଥାନରେ ସେ ହଗେ, ମୁତେ । ତା ମଳକୁ ହାତରେ ଚକଟେ ।

ଟଭି ଚୁ ଚୁ କରି କହେ, ଆହା, ବିଚରା । ଠାକୁରେ କଲେ, ଦେଖିବ ରହ, ପିଲାଟି ଭଲ ହୋଇଯିବ । କେତେ ଶୋଭାକାର ତା'ର ମୁହଁଟି । ଗାଁ ଦାଣ୍ଡରେ କେତେଥର ଦେଖିଛି । ତାଙ୍କର ଷ୍ଟର ବର୍ଷର ପୁଅଟିକୁ ବି ଦେଖିଛି । ତା' ମୁହଁଟି ଆହୁରି ଅଧିକ ସୁନ୍ଦର । ତା' ବୋଉଙ୍କର ମୁହଁ ପରି ନୁହେଁ କି ? ଦଶବର୍ଷ ତଳେ ଦେଖିଥିଲି । ସେ ଭାରି ସ୍ନେହୀ ଥିଲେ ।

କଏ ଜଣେ କହିଲା, ସାନ ପୁଅ ଅଲେଖା ପାଇଁ ବିମଳାର ବିଛଣା-ଲଗା ପୁଅର ଆଣୁ ତଳକୁ ଗୋଡ଼ଦିଓଟି ନଡ଼ନଡ଼ । ସେଇଥିପାଇଁ ସେ ଦୁଇ ହାତ ଭରା ଦେଇ ଘୁଷୁରି ଘୁଷୁରି ଚାଲେ । ବୁଦ୍ଧିଆ ପିଲାଟା, ଥରେ ଶୁଣିଲେ ମନେରଖେ ।

ଆଉ ଜଣେ କହିଲା, ସେ ପାଣଙ୍କର ଜୀବନ । ଯେତେ ଧନ ଦାନା ଉପାସରେ ପାଣେ ଭୋଗିଲେ, ତା'ର ଅନେକ ଅଧିକ ସେନି ଦୁଇ ପିଲାଙ୍କୁ ଭଲ କରିବାର ଚେଷ୍ଟାରେ ବିଏ କଲେ ।

ଛ' ମାସ ତଳେ ତାଙ୍କ ଭଣଯା ସନ୍ତଟାରେ ବାରଆଡ଼େ ଉଠିଲା । କୁଆଡେ ଗୋଟାଏ ଗ୍ରାମଣ୍ଡା ଓଉଗଛର କେନାରେ ବସିଥିଲା । ଅଦ୍ଭୁତ ଲଙ୍ଗଳା । ଲୁଖୁରା କହଡ଼ା ବାଳ ଗୋଛାକ ଗୋଡ଼ ତଳଯାଏ ଓହଳିଥିଲା । ଆଉ, ତାର ଆଖି ଦୁଇଟା ନିଆଁ ପରି ଜଳୁଥିଲା । ଏତେ ବଡ଼ ଜିଭଟା ଲହ ଲହ ହେଉଥାଏ । ଲମ୍ବାଇଲେ ସେ ଜିଭ ଲମ୍ବି ଲମ୍ବି ଆସୁଥାଏ । ହେଲେ, ତା' ହାତ ଦୁଇଟା ବେଶି ଲମ୍ବ ନୁହେଁ ।

– କ'ଣ ହେଲା ? ଝୁମ୍ପି ଡରି ଡରି ପଚାରିଲା । ବିମଳା ଷ୍ଟଭିଜ ମନ ଭିତରେ ଦେଖିଥିଲେ କି ସତରେ ଜାଗ୍ରତ ଥାଇ ଖୋଲା ଆଖିରେ ଦେଖିଥିଲେ ? ଶୁଣିଲା କଥା ଏକୁଟିଆ ବେଳେ ନିକାଞ୍ଚନ ଥାନଟିରେ ଆପେ କେମିତି ମନରୁ ବାହାରି ଆଖିକୁ ଦିଶିଲାପରି ଲାଗେ । ଜାଣ ନାହିଁକି ?

କେଜାଣି ଲୋ ମା ! ବୋହୂଟା ତ ଡରି ଘ୍ରାନିଆ ହେଲା । ପାଚି କରି ତଳେ ପଡ଼ିଗଲା । ପିଲାଟା ପେଟରେ ମଲା । ଦିନକ ପରେ ଦାଇବ ସାହା ହେଲାରୁ ମଲାଛୁଆଟି ଜନମିଲା । ବୋହୂ ଯେ ମରୁ ମରୁ ବଞ୍ଚିଲା । ହେଲେ କି ହେବ, ସେହି ଦିନରୁ ସେ ବିଛଣାଲାଗି । କଣ୍ଠା ଦୋହଲିଲଣି । ଏକାଥରେ ଅକାମୀ । ହୁଁ, ବଞ୍ଚିଛି । ସେତିକି ଡାକ୍ତରଙ୍କ କରାମତି । ପାଦେ ସେହି ଦିନରୁ ଉଦାସିଆ । ଆଗର ତେଜ ଆଉ ତାଙ୍କର ନାହିଁ ।

ଝୁମ୍ପି ମନରେ ଆହା ଆହା ଭାବେ ।

ଆଉକେବେ ନଗର ନାଉଳିଏ ତା'କୁ ବିରକ୍ତ କରନ୍ତି ନାହିଁ ! ଯିଏ ଯାହା ବିଚାରୁ, ନିଜ ଭିତରେ ଯାହା ସେମାନେ ଆଲୋଚନା କରନ୍ତୁ, ତା'ର କି ଥାଏ ? ଯେଉଁମାନେ ତା' ଘରକୁ ଆସନ୍ତି, ସମସ୍ତଙ୍କୁ ସେ ସନମାନ ଦେଖାଏ ।

ଅରକ୍ଷିତକୁ ସେମାନେ କଲ୍ୟାଣ କରନ୍ତି । କୋଳକୁ ନିଅନ୍ତି । ତା'କୁ ଗେଲ କରନ୍ତି । ତା' ରୂପକୁ ଦେଖି ପ୍ରଶଂସା କରନ୍ତି । ତାକୁ ଜଙ୍ଘରେ ବସାଇ ଝୁଲିହାଣ୍ଡି କରନ୍ତି ।

ବିଶ୍ୱାସ ଓ ସନ୍ଦେହରେ, ହସିଲା ମୁହଁ ଓ ଡରିଲା ମନରେ ଝୁମ୍ପି ଗୃହିଣୀ ରହିଥାଏ ।

## —୧୦

ଅଣ-ଅଟକା ସମୟର ଚକ ଗଡ଼ି ଚାଲିଲା । ଦିନ ଓ ରାତି । କଳାଆ କାଳଆ ଚକ ଦୁଇଟି ଉଡ଼ାଇ ନେଉଣୁ ଋତୁମାନେ ବି ଗୋଡ଼ାଇ ଚାଲିଲେ । ନୂଆ ଜୀବନ ଝୁମ୍ପିକୁ ଆଉରେଇ ଗଲା । ସେ ହେଲା ପାଞ୍ଚରେ ପଞ୍ଚେଇ । ଅରକ୍ଷିତକୁ କାଖରେ ବସାଇ ସେ ଗାଆଁର ଅନ୍ୟମାନଙ୍କ ଘରକୁ ଯାଏ । ହସଖୁସିରେ ଆଳାପ କରେ ।

ଅଣ୍ଟା ମାଇପେ ଟାହୁଲି କରନ୍ତି । ସେ ଅବଗୁଣ ପାଏ ନାହିଁ । ଦେହକୁ ନିଏ ନାହିଁ । ହସି ହସି ଜବାବ ଦିଏ ।

—ଦ୍ୱିଆର ମା' ବୋଲି ତତେ କିଏ କହିବ ଲୋ ଟୋକି ! କାହା ପିଲାକୁ କୋଉଠୁ ଗୋଟାଇ ଆଣିଛୁ ? ତାଳୁରୁ ତଳଯାଏ ତୋ ଧିଅରେ ଚନ୍ଦ୍ରମା ଲେପିଛୁ, କହିଲୁ ଭଲ, ଟକଲା ଟୋକାଏ ରକ୍ଷ୍ଣା ହେବ କି ନାହିଁ ?

—ମୁଁ ମହାକାଳ ଫଳ । ମୋ' ଭିତର ପୋଡ଼ାଅଙ୍ଗାର, କଳା କଟି କଟି ଭଆଁସ ରାତି ।

—ବୟସ କାହିଁକ ସାରୁଛୁ ? ଶୁଣାଶୁଣିରେ ତୋ ଗେରସ୍ତ ଛତର କୁଆଡ଼େ ବାବାଜୀ ହେଲାଣି । ସବୁ ନିଶା ଖାଇ ଅଣପୁରୁଷା । ଲୋକେ କହୁଛନ୍ତି ଲୋ, ସେଇଥି ପାଇଁ ତତେ ଘରୁ ତଡ଼ିଲା । ତତେ ଛାଡ଼ପତ୍ର ନ ଦେଲା ତ ତୁ ତାକୁ ଛାଡ଼ପତ୍ର ଦେଇ ନୂଆ ସଂସାର କରୁନୁ ? କେତେଦିନ ଆଉ ଆକାଶକୁ ଅନାଇଁ ବୟସ ସାରୁଥିବୁ ? ଆଜି ମଲେ କାଲିକି ଦୁଇଦିନଟି । କିଏ କାହାର ବା ? ତୁ ଆଜି ହଁ କଲେ, ଦେଖିବୁ, କାଲିକୁ ସତର ପନ୍ଦର ଧାଉଡ଼ିଆ ହେବେ । ରୂପ, ଗୁଣ, ଧନରେ ଯହୁଁ ବଳି, ତହୁଁ ବଳି ।

ଝରର ଭିତର ଜଳଉଠେ । ପିଠି ଆଉଁସି, କେତେଥର ତା'ର ଜେଜେମା ବୁଢ଼ୀ ତାକୁ ଏମିତି କହି ବୁଝାଇଛନ୍ତି ।

ଶାଶୁ ଘରେ ସାତ ଆଠ ବରଷର ଘରକରଣା ସମ୍ବନ୍ଧରେ, ଦିନ ଦିନକର ଘଟଣା ଯେତେ ଯାହା ତା'ର ମନେ ପଡ଼ୁଛି ସବୁ ସେ ଜେଜେମା ଆଗରେ ଟିକିନିଖି ବର୍ଣ୍ଣନା କରୁଛି ।

କିନ୍ତୁ ଜିଭର ଅଗଯାଏ ଆସି ଅଟକି ଯାଉଛି ଖାଲି ତା'ର ଅଣ-ଆୟତ୍ତ ସ୍ଖଳନର କଥା ।

ଜେଜେ ମା କହନ୍ତି, ଆଲୋ, କାଲିପରି ଲାଗୁଛି ତୋ'ର ଜନମ । ଧୋବ ଫର ଫର କଇଁଫୁଲ ପରି ଏଡ଼ିକି ଟିକିଏ ଛୁଆ । ତୋ' ବୋଉ ବରଗ । ଟିକିଏ ବଡ଼ ହେଲାରୁ ଗାଆଁ ଟା ଯାକର ମରଦ ମାଇପେ ଯିଏ ତତେ ଦେଖେ, କୋଳରେ ଧରି ଗେଲ କରିବାକୁ ହାତ ବଢ଼ାନ୍ତି । କହନ୍ତି, ଏଇଟିକୁ ମୁଁ ବୋହୂ କରିବି । କାଳେ କାହା ଦୃଷ୍ଟି ପଡ଼ିବ ବୋଲି ତୋ ହାତରେ ତେଉଁରିଆ, ବେକରେ ବାଘନଖ, ଅଣ୍ଟାରେ ମନ୍ତୁରା ହରଡ଼ାରୁ ପୁଞ୍ଜାଏ ମାଳକରି ପିନ୍ଧାଇ ଦେଇଥିଲି । ତତେ କାହା କୋଳକୁ ଦେବାକୁ ମନା କରନ୍ତି ? ଲୋକେ ଅଇଁଗୁଣ ପାଆନ୍ତେ । ହିଏ । କହେ, ମେ ' ନାତୁଣୀର ସ୍ୱୟମ୍ବର କରାଇବି । ସେ ତା'ର ଇଚ୍ଛାବର କରିବ ।

ଜେଜେମା ପୁଣି କହନ୍ତି, କିଏ ଜାଣେ, କେଉଁ ନିଆଁ ଲାଗି ଡାଆଣୀ, ଅବା କେଉଁ ଚୂଲିପଶା ମଉନାମୁହାଁ ଡାଆଣୀ ପଦ-ଜାଣିଲା ମଣିଷ ତୋ ଭିତରେ ସେହି ଗୁମଣ୍ଡାକୁ ଆପିଥିଲା । ହଂସୁକାଟା, ତୋ' ରୂପର ତେଜ ସହିପାରି ନ ଥିଲା । ଆମେ ଜାଣିଲୁ କିପରି ? କାହିଁକି କିଏ ଅନୁମାନ କରନ୍ତା ? ସେ ତ ଆଖିକି ଅଦେଖା ।

ଶିବବାବା, ସେ ଯାହା ପଛେ ହେଉନୁ, ଜାଣି ପାରିଥିଲେ । ତୋ'ଠଉଁ ତାକୁ ବିଦା କରିଦେଲେ । ଖରି ଡେରିରେ । ଲେଡ଼ିଗୁଡ଼ କହୁଣୀକୁ ଗଡ଼ିସା'ରିଥିଲା ଲୋ ଟସି !

ଜେଜେମା ପିଠି ଆଉଁସନ୍ତି । ସତେ କି ଟଭି ଅଭିଆଡ଼ୀ ଅନୁଚା ହିଅଁଟି । ବୁଢ଼ୀ ତାର ହାଡ଼ୁଆ ଥିଲା ହାତରେ ଚବୁକ ଧରି ମୁ ଣ୍ଡଟି ଆସ୍ତେ ଟେକନ୍ତି । ଏଣେ

କୋଳରେ ବସି ଅରକ୍ଷିତ ଝିଅର ମୁକୁଳା ସ୍ତନର ଥନରେ ମୁହଁ ଲଗାଇ ଚଁ-ଚଁ କରି କ୍ଷୀର ଶୋଷୁଥାଏ ।

ବୁଢ଼ୀମା କହନ୍ତି, ଯାହା ହୋଇଛି ଭଲ ହୋଇଛି । ତୋ' ଭିତରର ସୁମଣ୍ଡା ସେ ଗୁଡ଼ାକୁ ଖାଇଲେ ଖାଉ, ତୋ' ଭିତରୁ ସେ କଥାଁଲଗୀ ବାବାଙ୍କ ଦସ୍ତାରୁ ପଳାଇଛି ତ ! ତୁ ତା' କବଳରୁ ମୁକୁଳିଲୁ । ଘରଝିଅ ଘରକୁ ଫେରିଆସିଲୁ ।

ଝିଅ କହେ, ସୁମଣ୍ଡାକୁ ଡର ଯେ କୋକୁଆ ଭୟ ପରି ମା ! ଡରିଲେ ଡରାଏ । ଥିଲପରି ଲାଗେ । ନ ଡରିଲେ, ସେ ନାହିଁ । ବଡ଼ ଠାକୁରଙ୍କୁ ଯିଏ ଆଶ୍ରା କରିଛି ତା'ର ଡର କାହାକୁ ?

—ହଁ, ଲୋ ଝିଅ ! ଭଗବାନ ପାଖେପାଖେ ସେ ଥାଆନ୍ତି । ସେ ଜଗତ-କରତା । ତାଙ୍କ ଆଜ୍ଞାକୁ ସମସ୍ତେ ଅବଧାନ । ଆଉ ସେ ସୁମଣ୍ଡା ତୋ ପାଖ ନ ପଶେ । କ'ଣ କହୁଥିଲି କି ମା, ତୁ ନୂଆ ମଣିଷ ହୋଇ ଫେରିଆସିଛୁ । ନୂଆ ଦେହ, ନୂଆ ମନ । ବାଳ ବଅସ ତୋ'ର ବିତିଲାଇ ଯାଇ ନାହିଁ । ଏ ଘରେ ଯିଏ ତୋର କାଳ ହୋଇଥିଲା, ସେଇଟା ତା' ମନକୁ କୁଆଡ଼େ ପଳେଇଛି । ନାଉଟି ଆଶାରେ ମୁହଁ ପୋଡ଼ାମୁହାଁ ତୋ' ବାପକୁ ମତାଇ ତାକୁ ଆଣିଥିଲି । ଭଲ ହେଲା, ସେଇଟା ଗଲା । ଭଲ ହେଲା, ତୋ' ବାପ ଜେହେଲ ଗଲା । ସ୍ବେରି ଚମାର ତ କରି ନାହିଁ ? —

—ତୁ ପୁଣି ସ୍ବା କହୁଛୁ ?

—କାହିଁକି କହିବ ନାହିଁ ? ସେ ଏମିତି ମାଇପିବୋଲା ହେବ ବୋଲି କିଏ ଜାଣିଥିଲା ? ନାଟୁଆ ତାକୁ କାଠିରେ ନଚାଉଥିଲା । ଚଇତନ ପାଣ୍ଡଙ୍କ ପରି ମ୍ଳେଚ୍ଛ ଲୋକଙ୍କୁ ସେ ଶତ୍ରୁ କରିଦେଲା । ଭୁଣ୍ଡ ଖର ଖପ୍ପା ! କାଟିପାର୍ଶି ସେ ଅଲାନୂଲା ମହତ ପାରେ ଲୋ ! ତୋ' ବାପ ତାକୁ ଡରି ଡରି ଚଳୁଥିଲା । ସେଇଥି ପାଇଁ ସେ ତୋ' ଘର ମାଡ଼ିବାକୁ ସାହସ କରୁ ନ ଥିଲା । ଭାବିଥିଲା, ଝିଅ ସୁଖରେ ଅଛି । ମୁଁ ଲୋ ଝିଅ, ତା'ର ଶରଣ ପଶିଥିଲି । ତଥାପି ତା' ଗୋଇଠାର ସୁଆଦ ଚାଖିଥିଲି । ଗୁହାରି କରନ୍ତି କାହା ଆଗରେ ?

ଆହୁରି ସେ କହେ, ତୋ' ବାପ ଫେରୁ, ସେ ଅରକ୍ଷିତକୁ ପୁଅ କରିବ । ଏମିତି ଚଳେ । ଯେଉଁଠୁ ତୁ ଆଉଥରେ ସଂସାର କରିବୁ । ତହୁଁ ବଳି, ତହୁଁ ବଳି ପାଣ୍ଡ ମିଳିବେ । ଏଣିକି ତୋ' ବାପ କାର୍ତ୍ତିକ ମୋ କଥା ମାନିବ ଯେ ! ସେ ଚଇତନପାଣ୍ଡର ଶରଣ ପଶିବ । ନଇ ସେ ଶିମୁଳି ମୂଳ କଆଁରି । ସେଇଥିପାଇଁ କାର୍ତ୍ତିକା ଗୋଟାଏ ମଣିଷର ଜୀବନ ନେଇଛି । ଜୀବନର ମୂଲ କିଏ ଦେଇପାରିବ ? ପାଣ୍ଡ ସେହି ମୂଲ ଆର ଯାନପୁଅ ନାଆଁରେ, ଆଉ କୋଉଠି ଦ' ମାଣ ଜମି ଲେଖି ଦେଇଛି । ବୁଝିଲୁ, ସେ କେଡ଼େ ଭଲ ଲୋକ ? ସେ ତୋ' ବଡ଼ଭାଇ ପରିକା

ପିଲାଦିନେ ତୋତେ ଭାରି ଗରଧା କରୁଥିଲା । ବାପ ସଙ୍ଗେ ଗିନା ଅଦଉଦ, ତୋ ସଙ୍ଗେ ତ ନୁହେଁ । ମୁଁ କହିଲେ, ସେ ତୋ' ପାଇଁ କେଡ଼େ ଭଲ ଜୋଇଁ ଖୋଜି-ଦେବ ।

ଝୁଲିର ଆଖିରୁ ଲୁହ ଝରିପଡ଼େ । ତା' ଆଖି ଆଗରେ ଝରିଆର ଧଡ଼ିଆ ରୂପ ଆସି ଠିଆହୁଏ । ଦିଶିଯାଏ, ଦାଣ୍ଡରେ ଠିଆ ହୋଇ ସେ ହାତ ପାପୁଲିରେ ଆଖି ପୋଛୁଛି । କହିମାକରେ ପୁଣି ଦିଶିଯାଏ, ସେ ରୂପ ବଦଳିଯାଇଛି । ଉଭି ହୋଇଛି ଉଣେଇଶି ବର୍ଷର ଯୁଆନ, ଛନଛନିଆଁ ଟୋକାଟିଏ । ପନ୍ଦର ବର୍ଷର ଲାଜକୁଳୀ ଝିଅ ଝୁଲିକୁ ସେ ଶୂନ୍ୟେ ଶୂନ୍ୟେ ଟେକି ଗ୍ରୀତରେ ଧରୁଛି ।

ସ୍ମରଣ ଚେଇଁଉଠୁଛି । ଗତ ଓ ଆଗତକୁ ଏକାଠି ଭିଡ଼ି ବାନ୍ଧୁଛି । ଦୁଇଟିର ମଝିରେ ହଜି ଯାଉଛି ଏବକାର ଥିତ । ପୁଣି, ଗତ ଓ ଆଗତ ହୁଗୁଳି ଯାଉଛନ୍ତି । ଦୁଇ ବିପରୀତ ଦିଗରେ କାହିଁ କେତେ ଦୂରକୁ ପୂଞ୍ଚ ଯାଉଛନ୍ତି । ଏବକାର ଥିତ ଚେଇଁ ଉଠୁଛି ।

କୋଳରେ ଥାଇ ଅରକ୍ଷିତ କୁଳୁକୁଳୁ କରି ମୁହଁକୁ ଚାହୁଁଛି । ତା'ର ଟିକିଟିକି ଆଖି ଦୁଇଟି ଉପରେ ଯେଉଁ ଭ୍ରୂଲତା, ସେତକ ମନେ ପକାଇଦେଉଛି, ଆଉ ଗୋଟାଏ ମୂର୍ତ୍ତି ।

ଶିବବାବା !

ନା, ନା । ହେଇଟି, ସେହି ଗ୍ରେଟ ନାକଟି, ଅବିକଳ ଝରିଆର ନାକପରି ଦିଶିଯାଉଛି । କିନ୍ତୁ ଜେଜେମା କହେ, ସ୍ୱେତ କାର୍ତ୍ତିକାର ନାକକୁ ଓଟାରି ନେଇଛି, ଆଉ, ତୋ' ବୋଉର ଓଠ ଦିଓଟି !

—ନେଲୁ ମା ଲୁ ଏ ଅବେଇଜକୁ, ମତେ ଝୁଣି ଖାଉଛି । କେତେ କାମ ବାକି ପଡ଼ୁଛି । ଏଇଟା ଯଦି ମୋ ପେଟରେ ପଶି ନ ଥାନ୍ତା, ମୋ ସ୍ୱୟମ୍ବର ସେପୁରରେ ହୋଇଥାନ୍ତା । ବରଣମାଳାଟି ମୁଁ ମୋ ଜେଜେଙ୍କ ବେକରେ ଗଳାଇ ଦେଇଥାନ୍ତି ।

ଅଣ୍ଟା-ନକଲରେ କହୁଥିବା ମାଇପିଙ୍କ କଥାର ଜବାବ ଝୁଲି ହସିହସି ଦିଏ । ମନ ହେଉଛି ତ ମୋର ସ୍ୱୟମ୍ବର କରାଉନ, ସେଥିକି ମୁଁ ରାଜି ଯେ ! ମାଳଟି ତ ମୋ' ହାତରେ ଥିବ । ଯଦି ମୋ ନଳ ରଜାଙ୍କୁ ନ ଦେଖିବ, କାହା ବେକରେ ଗଳାଇବି କହ । ଆଉ କେହି ମୋ ମନକୁ ପାଇବେ ନାହିଁ । ବରଣିଆଁମାନେ ଧରାପରା ହେବେ । ମତେ ହରି ନେବାକୁ ଠେଲାପେଲା ହୋଇ ଧାଇଁବେ । ତମେ ସବୁ ତ ମୋ' ପାଖେ ପାଖେ ଥିବ । ତମକୁ କାହାକୁ ହାରଟି ଧରାଇ ମୁଁ ଲୁଚି କରିବି । ସେମାନେ ତ ଅନ୍ଧ ହୋଇଥିବେ । କିଏ କାହାର ହାତ ଧରି ଟାଣିବେ କିଏ ଜାଣେ ? କର ମ ସ୍ୱୟଂମ୍ବର ସଭା । ଭାରି ମଜା ହେବ ।

ଟସ୍ସ କଥା କହି ଶିଖିଛୁ । ପାଖରେ ପହଞ୍ଚି ନ ହେଲେ ଗାଆଁ-ମାଇପିଙ୍କ ମେଳରେ ଚଳିହେବ ନାହିଁ, ଏହା ସେ ବୁଝିପାରିଛୁ । ପରଘର ଚର୍ଚ୍ଚାରେ ସେ ମୁହଁ ଖୋଲେ ନାହିଁ । କାନ ଖୋଲି ରଖି ଶୁଣେ । ଓଠକୁ ଚାପି ରଖିଥାଏ । ସେ ବୁଝି ସାରିଥିଲି ଯେ, ପାଟିରୁ ଖସିଲି ପଦ ଅଣବାହୁଡ଼ା । ହାତରୁ ଛୁଟିଲି ବୋଲୁଅ ପରି ।

ବୋଲୁଅ କାହା ଦେହରେ ବାଜୁ ବା ନ ବାଜୁ ଯେଉଁଠି ହେଲେ ଥମେ । ତାର ଜୀବନ ସରେ । ପାଟିରୁ ଖସିଲି ପଦର ପକ୍ଷୀ ଲାଗେ । ଆକାର ବଢ଼େ । ପରକୁ ଖୁମ୍ପାଏ ମାରି ସେ ଓଲଟିଆସେ । ଭୟଙ୍କର ହୁଏ । କହିବା ଲୋକକୁ ସାଙ୍ଗସାଥୀ ଧରି ଖୁମ୍ପୁଥାଏ, ବିଦାରୁ ଥାଏ ।

ଦିନେ ଦି' ପହରେ ରାଣୀ ଗୁଡ଼ିଆଣୀ ତାଙ୍କ ମୁଢ଼ି, ଉଖୁଡ଼ା, ଖସାଲଡ଼ୁ ପସରା ଧରି ଆସିଥିଲେ । କେବେ କେମିତି ସେ ଆସନ୍ତି । ଜେଜେମାଙ୍କର ଧୋବ ଫର ଫର ଚିନା ପକା ଉଖୁଡ଼ାରେ ଆଶା । ପାଟିରେ ଗଣ୍ଡାଏ ପକାଇଲେ ସେତିକି ମିଳାଇ-ଯାଏ ।

ନରୁ ଗୁଡ଼ିଆଙ୍କ ଭାରିଯା ସେ ରାଣୀ, ପାକଳି ଆମ୍ବପରି ଦେହର ରଙ୍ଗ । ସାଧାରଣ ଉଚ୍ଚ । ମୁହଁଟି ଗୋଲଗାଲିଆ, ସୁନ୍ଦର । ବାଁ ଆଖିରେ ଫୁଲ ପଡ଼ିଛି । ନଷ୍ଟ ହୋଇଛି ବସନ୍ତ ରୋଗରେ । ଛଅ ବରଷ ତଳେ । ମୁହଁରେ ଗୁଡ଼ିଏ ଦାଗ ।

ପାଞ୍ଚୋଟି ଝିଅର ମା । ପୁଅଟିଏ ପାଇଁ ଆତୁରି ।

ସ୍ନେହରେ ସେ ଅରକ୍ଷିତର ହାତରେ ପୁଞ୍ଜାଏ ଖସାଲଡ଼ୁ ଧରାଇଦେଲେ । ଟସ୍ସ ଅଶୁଖା ରଖିଲି ନାହିଁ । ନିଜ ହାତରେ ବାଉରୁ ତୋଳି ଦି' ପୁଞ୍ଜି କଲା ମିଚ-ମିଚ ଛନଛନିଆଁ ବାଇଗଣ ରାଣୀଙ୍କ କାନରେ ବାନ୍ଧିଦେଲି । କହିଲି, ନରୁ ଭାଇଙ୍କି ଉହୁଁ କରିଦେ ଭାଉଜ ! ଆଉ କେତେଥର ଶୂଳି ଖାଉଥିବୁ ?

ରାଣୀ ହସି ଦେଇ କହିଲେ, ସେଥିକି ମୋର ଦୁଃଖ ନ ଥାଏ ଗୋ ଟସ୍ସ ! ମନ ଦୁଃଖ ହୁଏ, ଯେତେବେଳେ ମୁଁ ଦେଖେଁ ପୁଣି ସେଇ ପରଘରକୁ ଗୋଟାଏ ତଳେ ପଡ଼ି କୁଆଁ ରଡ଼ି ଛାଡ଼ୁଛି । ସାହୁ ଘର ବଉଁଶ ରହିବ କେମିତି ? ଦୁନିଆଁ ମତେ ନିନ୍ଦୁଛି । ତମ ଭାଇଙ୍କୁ ପଦେ କେହି କହନ୍ତି ଭଲ ।

ମଧୁରିଆ ହସି ରାଣୀ ପୁଣି କହନ୍ତି, ମୁଁ କୁଆଡ଼େ କୁମ୍ଭାର ଯେ ମୂର୍ତ୍ତିଗୁଡ଼ାକୁ ପେଟରେ ଗଢୁଛି । ସତ କଥା, ହେଲେ, ଦିଶୁ ନାହିଁ ତ ଆଖିକି ? ଦଇବର ହାଟ ! ମୋ'ର ଦୋଷ ନାହିଁ । ଗଢ଼ୁଥିବ, ଗଢ଼ୁଥିବ । କାଳେ ବଂଶ ରଖିବାକୁ ଗୋଟିଏ କେବେ ଅଣ୍ଡିରା ଫଳ ଆସି ଯିବ । ନ ଆସିଲେ ନାହିଁ । ମୁଁ ପାଳି, ବଢ଼ାଇ, ପଣ୍ଡୁରା ଶିଖାଇବ । ସେଗୁଡ଼ାଙ୍କୁ ପରଘରେ ଥୋଇବାର ଦାୟିତ୍ୱ ତମ ଭାଇଙ୍କର । ଲୋକ

ଦେଖାଣକୁ ନଣଦାଢ଼ି ଗୁଡ଼ି ବାବାଜୀ ବୋଲଉଛନ୍ତି । ହେଲେ ପୁଅ ବକଟେ ପାଇଁ ନଦୋଳାରେ ଅଳ୍ପକୁକ ସାକୁଲେଇ ହେଉଛନ୍ତି । ଉହୁଁ କାହିଁକି କହିବ ?

ଝେମି ହସି ହସି ଗମ୍ଭୀର ହେଲା । ମନେପଡ଼ିଲା ଝିଅଆର ସେ କାଳର ଢଙ୍ଗ । କେମିତି ଖ୍ରୀମବାହୁଆ ଝୋକାଝାକୁ ସେ ନବାର ପାରେ ନାହିଁ । ସମସ୍ତେ ସେଗୁଡ଼ାକ କାହିଁକି ବାଉଆ ହୁଅନ୍ତି । ଭଲମନ୍ଦ ଆପଦ ବିପଦ କଥା ବିଚାରନ୍ତି ନାହିଁ ।

—ବାବାଜୀଆ ଭେକ କ'ଣ ଗୋଟାଏ ଭେଲକିଲଗା ଫାନ୍ଦ ? ସେହି ବାହାନାରେ ନ ଜାଣିଲା ଲୋକ ଅମୃତ ମଣି ବିଷ ଢୋକେ । ଅଣାସ୍ୱନ୍ତି ହୋଇ ଭେଲା ବୁଡ଼ାଏ । ଯେଇ ନୁ ଉବୁଟୁବୁ ହୋଇ ପ୍ରାଣ ବିକଳରେ, ଉଦ୍ଧାର ପାଇବା ଆଶାରେ ସେହି ଭେଲକିକୁ ହାତ ବଢ଼ାଏ । ହାବୁଡ଼ିଲେ କାବୁଡ଼ି ଧରେ ।

—ସୁନାର ସେଇଆ ହୋଇଥିବ । ଅତି କଷ୍ଟରେ ସେ ନଜେ ଗରଳ ଢୋକ ଗୁଟିପିଟି ହୋଇ କୂଳରେ ଲଗିଲା ।

ରାଣୀ କହିଲେ, କଅଣ ଏତେ ଭାବିବସିଲ ଗୋ ଝେମିଦେଇ ? ତମ କଥା ସବୁ ମୁଁ କେତେ ଘରୁ କେତେ ପ୍ରକାରେ ଶୁଣିଛି । ସେଥିରୁ ତମକୁ କି ମିଳିବ ? ତେବେ, ଏତିକି ଜଣାଯାଉଛି, ଯେଉଁଥିପାଇଁ ହେଉ, ତମେ ଦହେଁ ଛଡ଼ାଛଡ଼ି ହୋଇଛ । ଠାକୁରେ ଅରକ୍ଷିତ ପରି ପୁଅ ଦେଇଛି । ତମର ଭାବନା କ'ଣ ? ସପନ ଭିତରେ ସେତିକି ସତ । ତମର ରୂପ, ଯୌବନ, ବୟସ ଅଛି । ସାତ ପୁଅର ମାଆ ନ ହେବ କାହିଁକି ? ମୁଁ କହୁଛି, ତମେ ବ୍ୟର୍ଥରେ ଆଉ ବୟସ ବିତାଅ ନାହିଁ । ପୁଣି ସଂସାର ଗଢ ।

ଝେମି ହସିଲା । କହିଲା, ମୋ' ସଂସାର ମୁଁ ଗଢ଼ି ସାରିଛି । ଅରକ୍ଷିତ ମୋ' ସଂସାର । ତା'କୁ ତମେ କଇଲାଣ କର ଭାଉଜ !

—ଆରେ ହଁ, ଭୁଲି ଯାଇଥିଲି । ମନେ ପଡ଼ିଲା । ଦୁଇ ଦିନ ତଳେ ଚଇତନ ପାଣଙ୍କ ଘରକୁ ଯାଇଥିଲି । ତାଙ୍କ ଖରଯା ବିଛଣା ଗୁଡ଼ି ଟିକିଏ ଉଠିଲେଣି । କୁଆଡ଼କୁ ଯା ଆସ କରିବାକୁ ତାଙ୍କର ଜୋର୍ ପାଉ ନାହିଁ । ମନ ଦୁଃଖ କରି ସେ କହୁଥିଲେ, ଆଲୋ ରାଣୀ, ଝେମିକୁ ମୁଁ ସୁଖ ପାଉଥିଲି । ଶାଶୁ ଘରୁ ଫେରିଲା, ପୁଅର ମା ହେଲା । ପୁଅକୁ ଦିନ ବରଷ ପୂରିବଣି । ସମସ୍ତଙ୍କ ଘରକୁ ଯାଉଛି । ମୁଁ କି ଅପ୍ରାଧ କଲି ? ମୁଁ ବେମାର ପଡ଼ିଛି, ଝେମି ଜାଣିଥିବ । କ'ଣ ଉଠି ବସି ପାରୁଛି ଯେ, ତା'କୁ ଆଉ ତା' ପୁଅକୁ ଦେଖିବାକୁ ଧାଇଁଯିବି ? ମିଣିପଙ୍କ କାରବାରରେ ଆମର କି ଥାଏ ଲୋ ରାଣୀ ? କହିବୁ ମ, ଯଦି କେବେ ଯାଉ, ତା' ପୁଅକୁ ଟିକିଏ ମୋତେ ଦେଖାଇଯିବ ।

ଝେମି ତୂନୀ ରହେ ।

ରାଣୀ ବିଦାୟ ନେଇଯାଏ ।

ଟେଣ୍ଟି ଶାଶୁଘରକୁ ଗଲବେଳେ ବିମଳା ତିନି ବର୍ଷର ବୋହୂ ହୋଇଥିଲେ । ବଡ଼ ଘରର ଝିଅ । ଶ୍ୟାମଳ ରଙ୍ଗ । ଊଣେଇଶ ବର୍ଷରେ ବାହା । ବେଶ୍ ହୃଷ୍ଟପୁଷ୍ଟ ବଳିଷ୍ଠ । ନିଖୁଣ ସାଧାରଣ ମୁହଁ, କିନ୍ତୁ ତାଙ୍କର ପୋଟଳ-ଫାଳିଆ ଆଖିର ଚାହାଣୀ, ଆଉ ଚୂଳୀରେ ଆଙ୍ଗୁଳିପରି ଭ୍ରୂଲତା ମନ କିଣିନିଏ । ପରକୁ ଆପଣାର କରେ । ଶାଶୁଙ୍କର ଗେଲବସର । ଶ୍ୱଶୁରଙ୍କର ଝିଅର ଅଭାବ ସେ ପୂରଣ କରିଥିଲେ । ସେମାନଙ୍କର ପୁଅ ଚଇତନ ପିଲାଦିନରୁ ହିସାବୀ । ମାମଲତକାରିଆ । ଘରର ଦାୟିତ୍ୱ ସେହି ମୁଣ୍ଡାଇଥିଲେ । ବୁଢ଼ାବୁଢ଼ୀ ତାଙ୍କ ଧର୍ମକର୍ମରେ ବେଳ କଟାଉଥିଲେ ।

ନାଟୁଆର ଅତ୍ୟାଚାର ସହି ଟେଣ୍ଟି ହତାଶ ହେଲେ ଚଇତନ କେବେ କେବେ ବାଟ ଘାଟରେ ତା'ର ହାତୁଡ଼େ ପଡ଼ିଲେ, ତା'କୁ ମିଛରେ କୁହନ୍ତି, ଆଲୋ ଟେଣ୍ଟି, ତତେ କାହିଁକି ତୋ ଭାଉଜ କେତେ ଖୋଜୁଥିଲେ । ଆ, ମୋ ସଙ୍ଗରେ । କାହିଁକି ସେ ଭୁଲାଇ ନେଉଛନ୍ତି ଟେଣ୍ଟିକୁ ଅଜଣା ନ ଥିଲା । ନାହିଁ କଲେ ସେ ହାତ ଧରି ଘୋଷାରି ନେବେ ।

ସେ ହାଣ୍ଡିକୁ ନେଲା ପରି ଚଇତାଭାଇ ପଛରେ ଓଟାରି ହୋଇଯାଏ । ଗରିବ ଘରର ଝିଅ ହେଲେ ବି ଚଇତନ ଅତି ପିଲାଦିନୁ ତା'କୁ ସୁଖ ପାଆନ୍ତି । ଗେଲ କରନ୍ତି । ପିଠି ଆପୁଡ଼ାଇ ଦିଅନ୍ତି । ତା' ମୁଣ୍ଡର ଫୁରୁ ଫୁରୁ କେଶକୁ ହାତ ଆଙ୍ଗୁଠିରେ ସାଉଁଳି ସଜାଡ଼ି ଦିଅନ୍ତି । କେମିତି ସେ ମନା କରନ୍ତା ?

ସେ ଯାଏ । ଘର ହେଲାରୁ ଚଇତନ ତା' ହାତ ଧରି ନେଇ ବିମଳାଙ୍କ ଆଗରେ ଠିଆ କରାଇ ଦିଅନ୍ତି । କହନ୍ତି, ଦେଖ ଏହା ଅବସ୍ଥା ! କାର୍ତ୍ତିକା'ଦି ଯୋଉ ବାଘୁଣୀଟାକୁ ଆଣିଛି, ସେ କେମିତି ଏହାର ରକ୍ତ ଶୋଷି ଖାଉଛି । ନାଟୁଆ ତା'କୁ ବାଉ ଅବସ୍ଥା ଦେଲାଣି । ଏହା ଖବର ତମେ ବୁଝ ।

ଚଇତାଭାଇ ଚାଲିଯାଆନ୍ତି ।

ବିମଳା ସବୁ ଜାଣନ୍ତି । ବେଶି କିଛି ପଚାରନ୍ତି ନାହିଁ । ସାନ ଭଉଣୀଟି ପରି ତା'ର ମୁଣ୍ଡ ବାନ୍ଧିଦିଅନ୍ତି । ମୁହଁଟିକୁ ଘଷିମାଜି ଚକଚକ୍ କରନ୍ତି । ଭଲ ଭଲ ଚିଜ, ଯେତେବେଳେ ଯାହା ତାଙ୍କ ପାଖରେ ଥାଏ, ପେଟେ ଖୁଆଇ କହନ୍ତି, ଏଥର ଯାଅ ଟେଣ୍ଟି ! ତମକୁ ମୋ' ରାଣ, ଆସୁଥିବ । ଏ ଘର ତ ତମର, ଲାଜ କାହିଁକି ? ଡର କାହିଁକି ?

ଟେଣ୍ଟିର ଆଖି ଛଳ ଛଳ ହୁଏ । ତା ମନ କଥା ବୁଝିଲାପରି ବିମଳା କହନ୍ତି, ନାଟୁଆଖୁଡ଼ୀ ପଚାରିଲେ କହିବ, ତମେ ମୋ ହାତୁଡ଼େ ପଡ଼ିଲ । ମୁଁ ତମକୁ ଧରିନେଇଗଲି । ରାଣ ଦେଉଛି, କହିବ ଆମଆଡ଼େ ସେ ବୁଲି ଆସିବେ ।

ଟଗର ତା' ବୋଉ ଆଗରେ କିଛି କହେ ନାହିଁ। ହେଲେ ନାଟୁଗ୍ର ଅନୁମାନ କରେ। ମୁହଁ ଛୁଆଡ଼, ତା' ମନକୁ ଯାହା ଆସେ, ଶୋଧେ। ଅସଭ୍ୟ ଅଭଦ୍ର ଭାଷା ! ମୋ' ଗୁଣ ଗାଇବାକୁ ଯାଇଥିଲୁ ଲୋ ଛତରଖାଇ, ପୋଡ଼ାମୁହିଁ ? ସେଇଠୁ, ଯାହା ମନ ତାହା। କାନରେ ହାତଦିଆ କଥା। ଗୁଣ୍ଡୁଣୀ ଉଠାଇ ଚମଚମ ହୋଇ ଆଗେଇ ଆସେ।

ଜେଜେମା ବାହାରି ଆସି ଗର୍ଜି ଉଠନ୍ତି। ଆଲୋ ଘିହାବାଳୀ, ତତେ ଏ ଘରେ ଠାବ ଦେଇ ମୁଁ ପାପ ଅରଜିଛି। ମାରିବୁ ତ ମତେ ମାର। ତା' ଧିଅରେ ଟିପ ଛେଇଁଛୁ ତ ଫେର୍ ଦେଖିବୁ। କାର୍ତ୍ତିକାକୁ ସିନା ମନ୍ତ୍ରି କରିଛୁ, ତା' ହାତଗୋଡ଼ ବାନ୍ଧି ପକାଇଛୁ, ଏ ଗାଆଁ ଟାରେ ଲୋକେ ଅଛନ୍ତି। ଡାକି ଆଣିବି। ତତେ ପବପବ କରି ଟାଙ୍କେ ଛେଚେଇବି। ତୋ' ମୁହଁରେ ନିଆଁ ଜଳାଇ ତତେ ଘରୁ ତଡ଼େଇବି ଲୋ।

ନାଟୁଗ୍ର ରଗରଗ ହୋଇ ବୁଢ଼ୀଙ୍କ ଆଗରୁ ପଳାଏ। ବୁଢ଼ୀଙ୍କର ସବୁଦିନେ ସେଇ ଗୋଟାଏ ଧମକ। ପାବତମା ପଶ୍ଚିଇ ଯାଏ। ହେଲେ ତା'ର ରାଗ, ଘୃଣା, ଅଦଉଦ ପଶ୍ଚିଏ ନାହିଁ। ସେ ହାତରେ ନ ମାରି ଭାତରେ ମାରେ।

ବିମଳାଙ୍କର ଆଦର ଓ ସ୍ନେହ ଯେ ଟଗରପାଇଁ ଅଧିକରୁ ଅଧିକ ଦୁଃଖ ଟାଣି ଆଣେ, ସେ କଥା ଚଇତନ ଜାଣନ୍ତେ କିପରି ? ଆଉ କେବେ ଦେଖା ହେଲେ ବିମଳା ସ୍ନେହ ଊଣା କରନ୍ତି ନାହିଁ। କେତେ ଅଭିମାନିଆଁ କଥା କହନ୍ତି। ଟଗର ପ୍ରକାଶ ନ କଲେ ବି ଘଟଣାଟି ଅନୁମାନ କରି ସାନ୍ତ୍ୱନା ଦିଅନ୍ତି, ମନଦୁଃଖ କରିବ ନାହିଁ ଟଗର ! ଠାକୁରେ ତମ କପାଳେ ରାଜରାଣୀ ଯୋଗ ଲେଖିଛି। ଦେଖିବ ରହ।

ସେଇ ବିମଳାଭାଉଜ ମନେ ପକାଇଛନ୍ତି, ଟଗର ଭାବିଲା, ନ ଯିବ କାହିଁକି ? ବାହା ହୋଇ ପରଘରକୁ ଯାଇଥିବା ଗାଁ ଝିଅ କାହାରି ଶତ୍ରୁ ନୁହେଁ। କେହି ବି ତା'ର ଶତ୍ରୁ ନୁହନ୍ତି।

କ' ସରି ହେଲେଣି ? ପିଲାଙ୍କ ପାଇଁ ଦୁଃଖ କରି, ଝୁରିଝୁରି ତାଙ୍କର କଣ୍ଠା ଦୋହଲିଛି। ସବୁବେଳେ ଆଖିରୁ ଲୁହର ଧାର ଛୁଟିଛି। ତହିଁରେ ରୋଗ ତାଙ୍କୁ କାବୁ କଲାଣି। ଅରକ୍ଷିତକୁ କୋଳରେ ଧରି ସେ କେତେ ଖୁସି ହେଲେ। ପିଲାଟି ତ କାହାକୁ ଅଚିହ୍ନା ବାରେ ନାହିଁ, ତାଙ୍କ କୋଳରେ ହାଗଝୁଲି ହୋଇ ଶୋଇ ପଡ଼ିଲା।

ତାଙ୍କ ତୁଣ୍ଡରୁ ତାଙ୍କ ଦୁଃଖଦୁର୍ଦ୍ଦଶା ଓ ସୁଖଦୁଃଖର କାହାଣୀ ଅନର୍ଗଳ ଛୁଟିଥାଏ।

ଶାଶୁ ଓ ଶଶୁର ତକାତକ ହୋଇ ସେପୁରକୁ ଚାଲିଗଲେ। ପୁଅ ଦିଓଟି ରୋଗଣା। ସ୍ୱାମୀ ସବୁବେଳେ ବାର ଧନ୍ଦାରେ ବ୍ୟସ୍ତ। ଧନ ସମ୍ପତ୍ତିର ଅଭାବ ନାହିଁ।

କେମିତି ଆସୁଛି, କେମିତି ଯାଉଛି ସେ ଜାଣନ୍ତି ନାହିଁ । ହଳିଆ, କୋଠିଆ, ଗୁଳର-
ବାକର ଉଣା ନାହାନ୍ତି । ସ୍ୱାମୀ ଦିନେ କେବେ ପଦେ ଟାଣକଥା କହିନାହାନ୍ତି ।
ସବୁ ଥାଇ ମଧ୍ୟ ନିଜକୁ ସେ ଅତି ଦୁଃଖିନୀ ବୋଲି ମନେକରନ୍ତି । ଭାଗ୍ୟକୁ ନିନ୍ଦନ୍ତି ।

ନିଜ କଥା କହିସାରି, ଟଗର ଦୁଃଖରେ ସେ ସାନ୍ତ୍ୱନା ଦେଇଥିଲେ ।
କହିଲେ, ତମ ଶାଶୁଘର କଥା ମୁଁ ସ୍ୱାଙ୍କ ମୁହଁରୁ ସବୁ ଶୁଣିଛି । ଖୁଣ୍ଟବାଇଦ ସହିସ
କୋଣ ଲୋ ଭଉଣୀ ! ସ୍ୱାଙ୍କ ସାତ ପୁରୁଷର ଖବର ଜଣା । ନିଶାପାଣିରେ ମାତିଲେ
ତମପର ଘରଣୀକୁ ମୁହଁ ମୋଡ଼ି ଆଉ କେଉଁ ଛଇଳା ଛଟକାର ଫାନ୍ଦରେ ପଡ଼ିଲେ
ଅବସ୍ଥା ଯାହା ହୁଏ ସମସ୍ତଙ୍କୁ ଜଣା ।

ଭଣ୍ଡ ବାବାଜୀଟା ! କେତେ ଘରେ ନିଆଁ ଲଗାଇଲଣି । ସେ ଗାଆଁର ଲୋକେ
କେମିତି ଏତେବର୍ଷ ଯାଏ ସବୁ ସହି ଭୂମି ହୋଇ ବସିଛନ୍ତି ? ତମ ଭାଇ ସେଇଆ
ବସ୍ତିର କାବା ହେଉଥିଲେ । କହୁଥିଲେ, ମଣିକୁଦିଆ ମାଇପୁରୁଷଗୁଡ଼ାକ ! ଏକା
ଦିନରେ ସେଇଟା ଗାଁ ଛାଡ଼ି ପଳାନ୍ତା । ତା' ମଠ ପାଉଁଶଗଦା ହୁଅନ୍ତା ।

ନିବଳିଆ ଶେଥା ହାତ ଟଗର ଚିବୁକରେ ଥାପି ସେ ପୁଣି କହନ୍ତି, କାହିଁକି
ତମ ବାପାଙ୍କର ସେଇ ପୁରର ଶିମୁଳତଳ କିଆରି ଉପରେ ତମ ଭାଇ ଏମିତି ଲୋଭ
କଲେ ? କୋଉ ଏବେ ତାଙ୍କର ଜମି ନାହିଁ ? ଏବେ ଦିନେ ତାଙ୍କୁ ନେହୁରା ହୋଇ
ପଚାରିଲି । ତାଙ୍କ ପେଟରୁ କଥା କାଢ଼ିବା କାଠିକର ପାଠ । କଥା ବୁଲେଇ ଦିଅନ୍ତି,
ଭୁଲେଇ ଦିଅନ୍ତି । କିନ୍ତୁ ସେ କହିଲେ । ମୋ'ର ବିଶ୍ୱାସ ହେଲା ଯେ, ସେ ସତ
କହିଲେ । ତମେ ଶୁଣ ।

ବିମଳା ଟିକିଏ ରହି କହିବାକୁ ଲାଗିଲେ—ପାଣୁଆଁ ନାହାକ ଟାଉଟରଟା
ମଧ୍ୟସ୍ଥ କାମ କରେ । ମିଛଟାରେ ଜାତକ ଶୁଝାଇ ବୁଝାଇ ଏଣୁ ତେଣୁ ବକେ ।
କଳାକୁ ଧଳା, ଧଳାକୁ କଳା କରି ଆକାଶରୁ ତୋଳି କଥା କହେ । ତା' କଥାରେ
ଭୁଲି ତମର ଜେଜେମା କାର୍ତ୍ତିକା ଦାଦିଙ୍କୁ ସେଇ ବାଘୁଣୀଟାକୁ ବୁଢ଼ିଅ ହେବାକୁ
ମଙ୍ଗେଇଲେ । ଭଲ କରି ବୁଝିଥିଲେ, ଖବର ଯୋଗାଡ଼ କରିଥିଲେ, ନାଟୁଆର ନିଜ
ଗୁଣ ବଳେ ଜଣା ପଡ଼ିଥାନ୍ତା । ଯେଉଁଦିନ ତମ ବାପା ଟଙ୍କା ଧାର ନେବାକୁ
ଆସିଥିଲେ, ତମର ଭାଇ ତାଙ୍କୁ ସାବଧାନ କରି ଦେଇଥିଲେ ।

ଆଗୋ ଟଗର ! ତମେ ସେତେବେଳେ ଛୋଟ ପିଲା । ମନେ ଥିବ, ରକ୍ତର
ଭଉଣୀ ନ ହେଲେ ନାହିଁ, ଇଏ ଆଉ ମୋ ଶାଶୁ ଶଶୁର ତମକୁ କେଡ଼େ ଭଲ
ପାଉଥିଲେ ?

—ହଁ, ଗୋ ଭାଉଜ ! ଭୁଲି ନାହିଁ, ଭୁଲି ପାରିବି ନାହିଁ । ମୁଁ ଆଶ୍ଚର୍ଯ୍ୟ ହୁଏ,
ସେହି ଚଇତାଭାଇ କାହିଁକି ପୁଣି ଏଡ଼େ ନିଷ୍ଠୁର ହେଲେ ।

—ନିଷ୍ଠୁର ହୋଇ ନାହାନ୍ତି । ଏବଯାଏ ତମକୁ ସେ ସ୍ନେହ କରନ୍ତି । ଦେଖାଇ ହୁଅନ୍ତି ନାହିଁ । ଜାଣ ନାହିଁ କି ଦୁନିଆର ଲୋକଙ୍କ କଥା ? ଖଗି ଆକାଶରେ ତଗି ଫୁଟାନ୍ତି । ହଁ, କ'ଣ କହୁଥିଲିଟି ? ତମ ବାପା ଜବାବ ଦେଲେ, ବୋଉ ବାଧ କରୁଛୁ, ମୋର ଗୃହ ନାହିଁ । କୁଆଡ଼େ ତା'ର ନାତିଟିଏ ନ ହେଲେ, ବଡ଼ବଡ଼ୁଆଙ୍କୁ କେହି ପାଣି ଟେକିବାକୁ ନ ଥିବେ । କଣ୍ଟିମୁଠା ଟାଣ ଥିଲେ ବଳଦ-ବାପୁଡ଼ା ଯେତେ ଅମଣିଆଁ ଅବାଗିଆ ହେଲେ ବି ଶୁଧୁରାଣରେ ବଳେ ଯୁଆଳି ଟାଣିବ ।

—ସେ ସାଧା କାଗଜରେ ଟିପଚିହ୍ନ ଆଉ ସନ୍ତକ ନେଇ ଟଙ୍କା ଦେଲେ । ଭାଗିଦା ବି କରି ଦେଇଥିଲେ, ହେଲି କାର୍ତ୍ତିକାଦ, ବଳଦ ଯଦି ସୁଧାରି ନ ପାରିବନ୍ତି ସେ ଟଗ ପରଜା ପୁନାପିଲାଟାକୁ ଛିମ୍ପି ଲହୁଲୁହାଣ କରିବ । ଗାଁ ଲୋକେ ଖାଲି ହଁା, ହଁା କହି ନିଶ୍ଚିନ୍ତ ହେବେ ନାହିଁ । ଅମଣିଆଁକୁ ମଣ କରିବାର ବାଟ ଖୋଜିବେ ।

ସେଇଆ ତ କଲେ ଗୋ ଟଗ ! ମାରଣା ବଳଦ ଖସି ପଳାଇଛି । କାର୍ତ୍ତିକାଦ କଲା କାମର ଫଳ ଭୋଗୁଛନ୍ତି । ଫାଶୀ ଖୁଣ୍ଟରେ ଚଢ଼ିଥାନ୍ତେ, ଅବା ଜୀବନ ସାରା, ଗୋଟାଏ ଯୁଗ ଗୋ, ଜେଲରେ ସଢ଼ୁଥାନ୍ତେ । ସେ ଦୋଷ ମାନିଥିଲେ । କେହି ତାଙ୍କ ପାଖରେ ତାଙ୍କ ବିପଦ କାଳରେ ଠିଆ ହେଲେ ନାହିଁ । ଶେଷକୁ ଠିଆ ହେଲେ ତମ ଭାଇ ।

—ଚଇତା ଭାଇ ?

—ହଁ, ଗୋ ଟଗ ! ସେଇ ସାକ୍ଷୀମାନଙ୍କୁ ଏମିତି କୁହାଇଲେ ଯେମିତି ହାକିମେ ବୁଝିବେ ନିଜ ପ୍ରାଣ ବଞ୍ଚେଇବାକୁ ଆଉରିଆ ହୋଇ କାର୍ତ୍ତିକାଦ କୋଠିଆକୁ ପିଟି ପକାଇଲେ ।

କେଇଟି ବର୍ଷ ପରେ କାର୍ତ୍ତିକାଦ ଫେରିଆସିବେ । ଛତରଖାଇ ଡ଼ାଆଣୀ ବାଘୁଣୀଟା ଗାଁ ଛାଡ଼ି ପଳେଇଛି । ଆଉ ସେ ନ ଫେରେ । ଯଦି ଫେରିବ, ହଗାଲଗା ଛେଚା ଖାଇ ସେ ପୁଣି ପଳେଇବ । ଶୁଣିଲି, ସେ ନାଟୁଗ୍ଣ କୁଆଡ଼େ ତା' ପୁଅ ପାଖରେ ଆଶ୍ରା ନେଇଛି ।

—ତା' ପୁଅ ?

—ତମ ଭାଇ କହୁଥିଲେ, ତା'ର ପ୍ରଥମ ଗେରସ୍ତର ପୁଅ । ସେଇଟି ଯେମିତି ସାତ ବରଷର ହେଲା, ସେ ପୁଅକୁ ଛାଡ଼ି ବାପଘରକୁ ଦରମରା ହୋଇ ଚାଲିଆସିଲା । ତା' ଉପ୍ରାନ୍ତ ଗେରସ୍ତଟା କେତେ ସହିଲା ? କଳକାଣ୍ଡୋଇ ନାଟୁଗ୍ଣର ଗୁଣ ଜଣା ପଡ଼ିଲା ବେଳକୁ ତା' ପେଟରେ ପିଲା ଥିଲା । ତା'ର ଓଷଦ ଯେ ମାଡ । ନଅ ବରଷ ସହିଲା, ଧନ୍ୟ କହିବ ତା ଗେରସ୍ତକୁ । ଗାଁବାଲାଏ ତା' ଗାଲଗୁଜବ ସହି ନ ପାରି ମେଲ ବାନ୍ଧି ତା' ଗେରସ୍ତକୁ ଘେରିଗଲେ । କୁଆଡ଼େ ଗୋଟାକେତେ ଥୋଇଲେ । ଚନ୍ଦାଟା, 'ତୋ' ଭାରିଯାର ଉଣ୍ଡିକୁ ତୁ ସମ୍ଭାଳ, ନୋହିଲେ ପୁଅକୁ ରଖି ଏ

ଗାଆଁରୁ ତାକୁ ତଡ଼ିଦେ । ସେତକ ନ କଲେ, ତମ ଝିଅଙ୍କୁ ଏ ଗାଆଁରୁ ବିଦା ହବାକୁ ପଡ଼ିବ ?'

—ପ୍ରଥମ ସ୍ୱାମୀ ବଞ୍ଚିଛନ୍ତି ?

—ବୁଢ଼ା କେବଠୁ ମଲେଣି । ବଞ୍ଚିଥିଲେ ନାଟୁଆ ସେ ଘରେ ଆଶ୍ରା ପାଇଥାନ୍ତା ? ସେତେ ହେଲେ ପୁଅ ତ । ତା'ର ସ୍ତ୍ରୀ ଓ ପିଲା ବି କୁଆଡ଼େ ଅଛନ୍ତି ।

—ତାଙ୍କ ବୁଢ଼ୀଅ ବର ?

—ସେ ଖବର ତମ ଖାଇ ରଖି ନାହାନ୍ତି । କହୁଥିଲେ, ଶୁଣାଶୁଣିରେ, ସେ ବଞ୍ଚିଛନ୍ତି । ସେଠି ବି କୁଆଡ଼େ ତା'ର ଧନ ବରଷର ଝିଅ ଥିଲା । ଚେଷ୍ଟା କଲେ ସେ ଖବର ମିଳନ୍ତା ଯେ କ ଦରକାର ଅଛି ? ପାଣୁଆ ନାହାକ ସବୁ ଜାଣିଥିଲା । ଶହେଟି ଟଙ୍କା ନାଟୁଆର ବାପଘରୁ ପାଇ କଲାକୁ ଧଲା କହିଲା । ପାଞ୍ଚ ବର୍ଷ ତଳେ ଖୋଡ଼ରୋଗରେ ଗାଆଁରୁ ପଳେଇଲା । ବଞ୍ଚିଛି କି ନାହିଁ କିଏ ଜାଣେ ?

କାହ୍ନିକ ଟିକି ଆଗରେ ସେଦିନ ସେ ନିଜର ରୋଗଣା ଅବସ୍ଥାକୁ ଭୁଲି ଏତେ କଥା ଏକା ଲହରରେ ଗପିଲେ, ଟିକି ବୁଝିପାରି ନ ଥିଲା ।

ବିଦା ହେଲା ବେଳେ ସେ କହିଲେ, ଠାକୁରେ ତମ ପିଲାକୁ କୋଟି ପରମାୟୁ ଦେଉ । ସ୍ତ୍ରୀର ଜୀବନ ଏଇଥିପାଇଁ ସାର୍ଥକ । ଯାହାର ପିଲା ପଛେ ପେଟରେ ଧର, ସିଏ ଯେ ପର, ସେ ପୁଣି ଆପଣାର ହୁଏ । ଜୀବନ-ସର୍ବସ୍ୱ । ସ୍ନେହ, ଶରଧା, କର୍ତ୍ତବ୍ୟ ପାଇଁ ତାର ଜୀବନ ସଙ୍ଗେ ଢଳିଲା ଜୀବନ ବନ୍ଧା । ଯେଉଁଟିମାନେ ପେଟରୁ ଜନମନ୍ତି, ସେମାନେ ତ ଜୀବନର ଅଂଶ । ସିଏ ଆଗ ସିଏ ପଛରେ ରହେ । ସିଏ ପଛ ସିଏ ଆଖି ଆଗରେ ନାଚେ । ସେ ତ ମନର ଅକୁହା କଥା । କନ୍ଥି ଜଣେଇ ଜଣା ।

ବିମଳା ଯେତେ ଯାହା ଗପିଥିଲେ ଟିକି ତା' ଜେଜେମାଙ୍କ ଆଗରେ ପ୍ରକାଶ କଲା ନାହିଁ । ଯାହା ଘଟିଯାଇଛି ସେସବୁ ଆଉ ଫେରିବ ନାହିଁ । ସମସ୍ତ ଯେ ଭୁକୁଣାରଥ, ଅଣବାହୁଡ଼ା ।

ଝିଅଆ କେମିତି ଅଛି, କଣ କରୁଛି ଜାଣିବ କୁ ମନ ଆତୁରଆ ହୁଏ । ସତେ କ'ଣ ସେ ଏକାଥରେ ଭୁଲିଗଲା ? କେମିତି ଚଳୁଛି ?

ମନର ଉଚ୍ଚାଟ ସହି ନ ପାରି ସେ ଅଚ୍ୟୁତ ବେହେରାଙ୍କୁ ବିକଳ ହୋଇ କହିଥିଲା । କେଉଁ କାମର ବାହାନାରେ, ବନ୍ଧୁଘର ଓଗ୍ରାଙ୍କ ଯିବା ଆଗରେ ମଣିକୁଦ ଯାଇ ହାଲଚାଲ ବୁଝି ଆସିବ ବୋଲି ବଚନ ଦେଲେ । କନ୍ଥି କେଜାଣି କାହିଁକି

ଢେର ଢେର କଲେ । ଆଉ ଥରେ ଅନୁରୋଧ କରିବାକୁ ଟେଣ୍ଟି ମନରେ ସାହସ ବାନ୍ଧି ପାରିଲା ନାହିଁ । ନିଶାର କବଳରେ ପଡ଼ି ଝିଅଟା ତାଙ୍କରି ଆଗରେ କାନରେ ହାତ-ଦିଆ ଅସନା କଥା ଶୁଣିରୁ ଖସାଇଥିଲା । ସେତକ ତାଙ୍କର ମନରେ ଲାଗି ରହିଥିବ । ସେଇଥିପାଇଁ ସେ ଯିବାକୁ ପଚାରୁଥିଲେ ପରି ।

ଭାବିଲା, ଯାହା ତା ଭାଗ୍ୟରେ ଅଛି ଅବଶ୍ୟ ଘଟିବ । କିଏ ଅନ୍ୟଥା କରି ପାରିବ ? ଏକା ଚକାଡୋଳା ସାହା ।

ଝିଅଟା ପାଖକୁ ଧାଇଁଯିବାକୁ ମନ ଉଚାଟ ହେଉଛି । ମାନ ଅପମାନ, ନିନ୍ଦା ପ୍ରଶଂସାକୁ ଡର ନାହିଁ । କିଏ କଣ କହିବେ, ପଚାରିବେ, ତା' ଆଗରେ ଆଲୋଚନା କରିବେ ସେଥିକି ତା'ର ଖାତିର ନାହିଁ । କିନ୍ତୁ, ଯେଉଁ ମିଲଟି ସେଟରେ ଥିଲାବେଳେ ସେହି ନିର୍ମମ ଲୋକଟି ତାକୁ ଦୋଷୀରୁଣୀ ଆଖ୍ୟା ଦେଇଥିଲା, ଯାହାକୁ ଥରେ ଦେଖିବାକୁ ସେ ମନ କଲା ନାହିଁ, ସହସ୍ର ଲୋକଙ୍କ ଆଗରେ ତାକୁ ଦେଖି ଯଦି ସେ ସ୍ୱୀକାର ନ କରେ, ମା' ଓ ଟିକି ପୁଅକୁ ଯଦି ଘରେ ଠାବ ନ ଦିଏ, କି ଅବସ୍ଥା ସେମାନଙ୍କର ହେବ ?

—ହେ ଜଗନ୍ନାଥେ ! ମୋତେ ବାଟ ଦେଖାଅ । ବୁଦ୍ଧି ବତାଅ । ମୋର ବିଚାରିବାର ମନବଳ ହଜି ଗଲାଣି । ତମେ ମୋର ଏକମାତ୍ର ସାହା । ଏହିପରି କଣାଣ ମନେ ମନେ କରି, ଦୁଇ ହାତ ଯୋଡ଼ି ଟେଣ୍ଟି ମୁଣ୍ଡରେ ଲଗାଇଲା । ତାର ସବୁ ସମସ୍ୟା ବିଶ୍ୱାସ-ଦେବତାଙ୍କ ଉପରେ ନ୍ୟସ୍ତ କଲା । ମନରେ ନୂଆ ବଳ ଧରି କାମରେ ନିଜକୁ ବୁଡ଼ାଇଦେଲା ।

ସବୁ ଭାବନା, ସବୁ ଉତ୍ତେଜନା ମନରୁ ପୋଛିଦେବାକୁ ସେ ଚେଷ୍ଟା କଲା ସତ, ଟିକିଏ ଅବସର ବେଳେ ଶାଶୁଘରେ ବିତାଇଥିବା ଆଠୋଟି ବର୍ଷର କେଉଁ ଘଟଣାର ଜୀଅନ୍ତା ରୂପ ଆସି ତା ମନରେ ଉଙ୍କି ମାରେ । ସେ ନିବାରି ପାରେ ନାହିଁ । ସେହି ଦୃଶ୍ୟପଟରେ ବିଭିନ୍ନ ଢଙ୍ଗର ଝିଅଟା !

ଟେଣ୍ଟି ଦିନେ ଖବର ପାଇଲା, ବିମଳା ବାଧକା ପଡ଼ିଛନ୍ତି । ଦି'ପହରେ, ଅରକ୍ଷିତ ଶୋଇ ପଡ଼ିଥାଏ, ସେଦିନ ମାର୍ଗଶିର ମାସ ବୁଧବାର, ଦେହ ଶୀତଉ ଥାଏ, ମନ ହେଲା ଦେଖିଆସିବ । ତା'ର ଜେଜେମାଙ୍କୁ ପୁଅ ଜଗାଇ କହିଲା, ମୁଁ ଠାଏ ଯାଉଛି ମା ! ଗୋଡ଼େ ଗୋଡ଼େ ଫେରି ଆସିବି । ମନ ଭଲ ଲାଗୁ ନାହିଁ ।

ବୁଢ଼ୀ କହିଲେ, ସବୁବେଳେ ଘରେ ବସି ରହିଲେ କେତେ କଥା ମନେ ପଡ଼େ ଲୋ । ମନକୁ ଜୋର ପକାଏ । ସାଙ୍ଗମେଳରେ ହସଖୁସିରେ ମିଶିଲେ ମନ ହାଲୁକା ହୁଏ । ଅରକ୍ଷିତକୁ ମୁଁ ଖେଳାଇବି । ତୁ ଯାଆ ।

ବାରିରୁ ଗୁଡ଼ିଏ ଗଣ୍ଡା ଛନ ଛନଆଁ ବାଇଗଣ, ବାଛି ବାଛି ଗଛରୁ ତୋଳି ଦଶଟି କାଗଜି-ଲେମ୍ବୁ, ଦି ଫେଣା ବନ୍ତଳ କଦଳୀ ଓ ପାଞ୍ଚଣ୍ଡା ହେବ ସଜନା ଛୁଇଁ

ଖଣ୍ଡେ ଝାଡ଼ଣରେ ସେ ଭଲ କରି ବାନ୍ଧିଲା, ଯେପରି ଅନ୍ୟ କାହାରି ଦୃଷ୍ଟି ନ ପଡ଼ିବ । ନିଜେ ହାତରେ ଧରି ଗଲା । ଲୋକେ ଦେଖିଲେ କିଏ କଣ ଭାବିବେ, ଅବା ପଚାରିବେ, ଏପରି ଭାବନା ମନରେ ପଶିଥିଲା । କିନ୍ତୁ ସେ ମନକୁ ବୁଝାଇ ଦେଲା, ମୁଁ ଏ ଗାଁର ଝିଅ । ସମସ୍ତେ ମୋର ଆପଣାର । ମୋର ଏଠି ଧ ଧନର ରହୁଣୀ । କେହି ମୋର ଶତ୍ରୁ ନାହିଁ ।

ଦାଣ୍ଡ ଖଞ୍ଜାର ଅଗଣାରେ ପାଦ ଦେଉଣୁ ଆଗ ଭେଟ ହେଲା ଚଇତନ ପାଟଙ୍କ ସଙ୍ଗରେ । ସେ ଭିତର ଖଞ୍ଜାରୁ ବାହାରି ଆସୁଥିଲେ । ଦାଣ୍ଡ ଅଗଣାକୁ ଓହ୍ଲାଇ ଆସିଲେ ।

ଚଉହାତିଆ ବଳିଷ୍ଠ ମଣିଷ । ଧୋବ ଫରଫର ଲୁଗା ପିନ୍ଧିଛନ୍ତି । ପୁରା ହାତ ତୋରିଆ ଖଦଡ଼ ଜାମା । ବାଁ ହାତରେ ଗ୍ରେଟ ଘଣ୍ଟା ବାନ୍ଧିଛନ୍ତି । ଉପରୁ ତମ୍ବାଳିଆ ମୁହଁରେ ବଡ଼ ନାକ । ନିଶ ହାଲକା ଗ୍ରେଟ ଗ୍ରେଟ ହୋଇ କଟା । ତେଜସ୍ୱୀନ ଆଖି । ମୁଣ୍ଡରେ ଗୁଖଣ୍ଡେ ଲମ୍ବର ବାଳ ଦୁଇ ପଟକୁ କୁଣ୍ଡା ହୋଇଛି । ସ୍ୱାସ୍ଥ୍ୟଭରା ମୁଖ, କିନ୍ତୁ ଗୋରା ମୁହଁର ରଙ୍ଗ କମି ତମ୍ବାଳିଆ ହେଲାଣି ।

ଟଗରୁ ଦେଖି ସେ ଅଟକା ହୋଇ ଠିଆ ହେଲେ । ଟଗ ମଧ୍ୟ କାବା କାବା ହୋଇ ଚାହିଁ ରହିଲା । ଗୁହେଁକି ଆଖିରେ ବିସ୍ମୟ । କେତେ କେତେ ପ୍ରଶ୍ନ । ଟଗ ଦୃଷ୍ଟି ନୁଆଁଇଲା । କେଜାଣି କାହିଁକି ତାର ଗ୍ଧଦଭିତର ଅଶରୁଠୁଥିଲା । ସେ ଗ୍ରେଟ ପୁଡ଼ାଟି ତଳେ ରଖି, ନଇଁ ପଡ଼ି, ତଳେ ମୁଣ୍ଡ ଲଗାଇ ପ୍ରଣତ ହେଲା । ମୁଣ୍ଡ ଉଠାଇ ଠିଆହେଲା ।

ଚଇତନ ହସୁ ନ ଥିଲେ, କିନ୍ତୁ ତାଙ୍କ ମୁହଁରେ ବୋଳି ହୋଇଥିଲା ଉଲ୍ଲାସର ଆଭା । ଯେଉଁ ତେଜସ୍ୱୀନ ଆଖିରେ, ଯହିଁରେ ବିସ୍ମୟ ଭରପୂର ହୋଇଥିଲା ସେଥିରେ ଟଗ ସହାନୁଭୂତିର କୋମଳତା ଅନୁଭବ କଲା ।

ସେ କହିଲେ, ବିମଳା ଟିକିଏ ଭଲ ଅଛନ୍ତି । ଏକୁଟିଆ ଚ ତୋର କଥା ସେ କହୁଥିଲେ । ତୋ' ପୁଅକୁ ଆଣିଲୁ ନାହିଁ ?

ଟଗ କହିଲା, ଶୋଇ ପଡ଼ିଛି ।

—ଆଚ୍ଛା । ବହୁ ଦିନ ତଳେ ଆସିଥିଲା

ଦେଖି ନାହିଁ । କିନ୍ତୁ ବିମଳା ତାକୁ ଭଲ ପାଇ

କେତେଥର କହିଲେଣି । ତାକୁ କିଛି ଦ

ଥିଲେ ।

—ତାଙ୍କର ସ୍ନେହ ଆଉ ଆଶୀ

ଦେଇଥାନ୍ତେ ? ମୁଁ ତ ଗରିବ, ହତଭାଗିନ

ନାହିଁ ।

କେତେ ଅକୁହାକଥାର ଝଡ଼ ଈଶ୍ୱର ମନ ଭିତରେ ବୋହୁଥିଲା । ଯେତେ ଯିଏ ବୁଝାଇ କହିଲେ ମନ ତ ଘେନୁ ନ ଥିଲା ସେ ଯେଉଁ ଚଇତାଭାଇ ତା' ଆଗରେ ଦସ୍ୟୁର ଅବତାର ପରି ଠିଆ ହୋଇଛନ୍ତି, ସତେ ସେ ସେଇଆ । ଜମି ଖଣ୍ଡିକ ମାଡ଼ି ବସି ସେ ଆଗରୁ ବାର ହଇରାଣ କରୁଥିଲେ । ବାପକୁ ଅଧାପାଗଳ କରିଥିଲେ । ଶେଷକୁ ତା'କୁ ଜେଲକୁ ପଠାଇଲେ । ଆହୁରି କଅଣ ତାଙ୍କ ମନରେ ଅଛି କିଏ କଳନା କରିବ ?

ଚଇତନ କହିଲେ, ମଣିକୁଦର ସବୁ ଖବର ମୋତେ ଗୋଚର । ବିଶ୍ୱାସୀ ଲୋକ ପଠାଇଥିଲି । ସେ ତା'ର ବନ୍ଧୁଘରେ ସେଇଠି ଦୁଇଦିନ ରହି ସବୁ ବୁଝି ଆସିଲା । ନିଜେ ଦେଖି ଆସିଲା । ସେଠି ଗୋଟାଏ ଭୂମିକମ୍ପ ଦିନେ ହେବ । କେବେ ହେବ କିଏ ଜାଣେ ? ତେବେ ତୋ' ବର ଝିଅର ଯାହା ହୋଇଛି, ଯେମିତି ସେ ଚଳୁଛି, ଯାହା କରୁଛି—

ସେ ଭୁମ୍ମା ହୋଇଗଲେ । ଈଶ୍ୱର ସ୍ୱରରେ ଛନକା । ଆକୁଳ ପ୍ରଶ୍ନିଳ ଆଖିରେ ଚାହିଁ ରହିଲା । କ'ଣ ଭୟଙ୍କର କଥା ଶୁଣିବାକୁ ସେ ଆଶା କରିଥିଲା । ତା'ର ଉତ୍କଣ୍ଠା ବୁଝି ପାରି ଚଇତନ କହିଲେ, ଅଧିକା ଶୁଣି ତୋ'ର ଲାଭ ନାହିଁ । ତେବେ, ସେ ବାବାଜୀଟାକୁ ସାଧୁ କରିବାକୁ ଗ୍ରାମର ଗୋଟିଏ ଦଳ ଉପାୟ ଫାନ୍ଦୁଛନ୍ତି । ଆଉ ଦଳଟି ପ୍ରତିବାଦ କରୁଛନ୍ତି । ସେସବୁ ଯାହା ହେଉ, ତୋ' ବର ଝିଅ ଯେଉଁ ତଳପାହାଚକୁ ଓହ୍ଲାଇ ଗଲାଣି, ତାକୁ ଉପରକୁ ଉଠାଇବା ସହଜ ହେବ ନାହିଁ ।

ଡରି ଡରି ଈଶ୍ୱ ପଚାରିଲା, କ'ଣ ହୋଇଛି ?

—ମୁଁ ଠିକ୍ ଜାଣେ ନାହିଁ । ତେବେ, ଯେତିକି ଶୁଣିଲି ସେଥିରୁ ବୁଝିଲି, ସେ ରସାତଳକୁ ଖସି ଗଲାଣି । ହଉ, ଭିତରକୁ ଯା । ବିମଳା ଭାରି ଖୁସି ହେବେ । ପିଲା ଦୁଇଟା କୁଆଡ଼େ ଗଲେ, ତାଙ୍କ ଖବର ବୁଝେଁ । ସବୁ ଥାଇ ବି ମୁଁ ଅତି ଦୁଃଖୀ ଲୋ ଈଶ୍ୱ !

ସେ ହସିଦେଇ ଚାଲିଗଲେ ।

ଈଶ୍ୱର ମନକୁ ସେ ମନ୍ଥି ଦେଇଗଲେ । ଯନ୍ତ୍ରଚାଳିତ ପରି ପୁଡ଼ାଟି ଉଠାଇ ସେ ଭିତରକୁ ଆସିଲା । ବିମଳାଙ୍କ ସଙ୍ଗେ ଆଳାପ କରୁଥିଲାବେଳେ ତା'ର ମନ ଖାଲି ଉଡ଼ିଓଟାରି ହେଉଥିଲା । ଭାବୁଥିଲା, ଧାଇଁଯାଇ ଚଇତନ ପାଖକୁ ପଚାରିବ, କ'ଣ ହୋଇଛି ଝିଅର, କ'ଣ ସେ କରୁଛି ? ପାଣେ·ବୋଧହୁଏ ବିମଳାଙ୍କ ଆଗରେ ମଣିକୁଦର ଖବର ପ୍ରକାଶ କରିନାହାନ୍ତି । କରିଥିଲେ, ବିମଳା ସେ ବିଷୟରେ ପଦେ [illegible] ନ କହନ୍ତେ କାହିଁକି ?

ସେ ଗପୁଛନ୍ତି, ତାଙ୍କର ନିଜ ଦେହର କଥା, ପିଲା ଦୁଇଟିଙ୍କ ଦୁରବସ୍ଥାର କଥା !

—ଆଗୋ ଟେଣ୍ଡ, କଅଣ ହେବ ଏତେ ଧନସମ୍ପଦ ? କେମିତି ଆମ ଶଶୁରେ, ଆଉ ନିଜେ ସ୍ୱେ କମେଇ ଠୁଳେଇଥିଲେ କେଜାଣି ? କେତେ ଲୁହ ମୁର ଆଖିର ଲୁହ, ମନର କୋହ ଏ ସମ୍ପତ୍ତିରେ ମିଶିଛି ପରା ! କେଜାଣି କେଉଁ ଗରିବଙ୍କ ସମ୍ପତ୍ତି ହରାଇ ବାଇଆ ବାତୁଳ ହୋଇଥିବ । ଠେଙ୍ଗାମାଡ଼ରେ ଆଉ କାହାର ଅଣ୍ଟା ଭାଙ୍ଗିଥିବ । ସେଇ ଦ'ଟା ଅକସ ସାଧିବାକୁ ଏ ଘରେ ମୋ ପେଟରୁ ଜନମିଛନ୍ତି ଗୋ ! କି ପାପ ମୁଁ ଗତଜନ୍ମରେ କରିଥିଲି କେଜାଣି ।

—ସେମିତି କହନା ଭାଉଜ ।

—ବେମାର ପଡ଼ ଘଡ଼ ଘଡ଼ ମୁଁ ମୂର୍ଚ୍ଛା ହେଉଥିଲି । ସେପୁରରୁ ଗୋ.ଡ଼ ବଢ଼ାଇଥିଲି । ପୁଣି କଷ୍ଟ ଭୋଗିବାକୁ କପାଳରେ ଅଛି ବୋଲି ବଞ୍ଚିଗଲି । ଆଉ ମୋର ବେଶୀ ଦିନ ନୁହେଁ । ସ୍ୱେ' ଆଉ ଗୋଟାଏ ବାହା ହେବେ । ନ ହେବେ କାହିଁକି ? ପୁରୁଷ ପିଲା । ବୟସ ଅଛି । ସମ୍ପତ୍ତି ଅଛି । ଲୋକେ ଝିଅ ଦେବାକୁ ଅଧିଆ ପଡ଼ିବେ । ଦେଖିବ ରହ । ପିଲା ଦୁଇଟାଙ୍କ କପାଳ ଫାଟିବ ।

—ତମେ ଏଣୁ ତେଣୁ ବହୁତ ଭାବୁଛ ଭାଉଜ ! ବିଛଣାଲାଗି ହେଲେ ମଣିଷ ଏମିତି ଡରୁଆ କଥା ଭାବେ । ମୁଁ କହୁଛି, ତମେ ଝାଡ଼ଝୁଡ଼ ହୋଇ ବସିବ । ପୁଣି ତମର ସୁନ୍ଦର ସ୍ୱାସ୍ଥ୍ୟ ଫେରି ଆସିବ । ତମ କୋଳରେ ଜନମ ଲଭିବ ଦିବ୍ୟ ସୁନ୍ଦର ପୁଅ । ପୁଣି ପୁଅ । ସେଇଠୁ ସୁନାନାକୀ ଝିଅଟିଏ । ସେମାନେ ସମସ୍ତେ ହେବେ ନିଖୁଣ । ଏ ଘର ହସିଉଠିବ ।

ବିମଳା ହସିଲେ । କହିଲେ, ହଁ ଗୋ ଟେଣ୍ଡ ! ଭସୁନା ଧାନ ଗଜା ହେବ, ନଈବାଲିରେ ପଦ୍ମ ଫୁଟିବ, ଉଆଁସ ରାତିରେ ଜହ୍ନ ଉଇଁବ ! ଏସବୁ ମନବୋଧିଆ କଥା । କେବେ ହୋଇ ନାହିଁ କି କେବେ ହେବ ନାହିଁ । ଆଉ କଏ କହୁଥିଲେ ମଣିଥାଆନ୍ତି, ମରମର ମଣିଷଟା ଦେହରେ କେଉଁ ଗତ ଅଦଉତ ସାଧିବା ପାଇଁ ପାତଳା ଲୁହାର ଚାଆଁ ଦେଉଛୁ । କିନ୍ତୁ ଟେଣ୍ଡ, ତମର ଅକପଟ ସୁନାମନର ପରିଚ ମୁଁ ପାଇଛି । ଅବିଗୁଣ ପାଇବ ନାହିଁ ।

ଟେଣ୍ଡର ଆଖିରୁ ଲୁହ ଝରିଲା । ବିମଳାଙ୍କ ପାଦରେ ହାତ ଥାପି ସେ କହିଲା, ମୋ' ମନର ଆଶା ମୋ' ତୁଣ୍ଡରୁ ବାହାରିଗଲା ଗୋ ଭାଉଜ ! ସେଥିରେ କପଟ ନ ଥିଲା । ପରପଲ୍ଲୀ, ଅତି ଦୁଃଖିନୀ, ନିରମାଖି ନଣନ୍ଦଟା ମୁଁ, କା'ହାରି ଉପରେ ମୋ'ର ଆକ୍ରୋଶ ନାହିଁ । କେହି ମୋ'ର ଶତ୍ରୁ ନୁହେ । କାଲିଆ ବଲିଆ ଦ'ଭାଇ ମୋ ଗାଡ଼ି ଟାଣି ନେଉଛନ୍ତି । ସୁଭଦ୍ରାମାଇ ମୋ କରମର ଦଣ୍ଡ ଧରି ଅଡ଼ାଇ ନେଇଛନ୍ତି

ମୋ କପାଳ ଯେ ମୋ ଅଦେଖା ବାଟ । ମୋ ଶଗଡ଼ ତ ଗଡ଼ି ଯାଉଛି । କାହା ଉପରେ କି ଅଦଉତି ମୁଁ ସାଧିବାକୁ ପାରନ୍ତିମ ? ମତେ କ୍ଷମାକର ଭାଉଜ !

ବିମଳା କହିଲେ, ମନ ଦୁଃଖ କଲକି ? ମରିବାକୁ ମୁଁ ଡରୁ ନାହିଁ । ମଣିଷର ରକତ ମାଉଁସରେ ମୋ ଦେହ ଗଢ଼ାଟି ? ସେଇଥିରୁ ଜନମିଛନ୍ତି ସେ ପିଲା ଦୁଇଟି । ମୋ ଅନ୍ତେ ତାଙ୍କର କି ଦଶା ହେବ ଏଇ ଚିନ୍ତାଟା ମୋ ମନକୁ କଲବଲ କରୁଛି । କଅଣ ବା ମୁଁ କରିପାରିବି ? ତମ ଭାଇ ଅବଶ୍ୟ ତାଙ୍କର ଚିକିତ୍ସା ଓ ଯତ୍ନ ନେବାରେ, ତାଙ୍କ ଭଲ ପାଇଁ ଯେତେ ଲୋଡ଼ା ସେତେ ଧନ ଖରଚ କରିବାରେ ହେଳା କରି ନାହାନ୍ତି । ମୋ ଅନ୍ତେ ବି ହେଳା କରିବେ ନାହିଁ । କହିବି, ମୋ' ମନରେ ଗୁଡ଼ିପିଡ଼ି ହେଉଛି ଯେଉଁ ଦୁର୍ଭାବନା, କହିବି ଟିକି !

—ମୋ ଉପରେ ଯଦି ବିଶ୍ୱାସ ନ ହେଉଛି କାହିଁକି କହିବ ! ମୁଁ ତ ଘରର ମାଇପିଟିଏ ।

— ନ କହିଲେ ମୋ ଛାତି ଫାଟିଯିବ । କହିଲେ କେଜାଣି ଛାତିର ବୋଝ ଟିକିଏ ହାଲୁକା ହେବ । ମୋର ଜା' ନାହିଁ କି ନଣନ୍ଦ ନାହିଁ । ଯେଉଁମାନେ ସାଙ୍ଗ ସୁଖ ହେବାକୁ ଆସି କଥା କହି ପାଣିରେ ଘର ପକାଇବାକୁ ଗୋଟାଗୁଏଁ ଆପଣାର ବୋଲି ଦେଖାଇ ହୁଅନ୍ତି, ସେମାନଙ୍କର ମନ ନିର୍ମଳ ନୁହେଁ । ମନରେ କେଉଁ ସ୍ୱାର୍ଥ ଛପି ରହିଥାଏ । କେଜାଣି କାହିଁକି ମୋର ପରତେ ହେ'ଇଛି, ତମର ମନଟି ନିର୍ମଳ ।

—ଭାଉଜ ! ମୋ ଉପରେ ଏତେ ଆସ୍ଥା ରଖନା ଗୋ ! ମୁଁ ଦୁଃଖିନୀଟାଏ ।

—ଶୁଣ । ସମସ୍ତେ କହନ୍ତି, ଧାନକୁଟୁଣୀ ମାଆଟିଏ ଥିବ, ଘୋଡ଼ାଚଢ଼ା ବାପ ନ ଥିବ । ତମ ଜୀବନରୁ ବଳି ଅଧିକ ତମର ପୁଅ ଅରକ୍ଷିତ କଥା ମୁଁ ବିଶ୍ୱରୁଛି । ତା'ର ସେହି କୁଳାଙ୍ଗାର ବାପ ଥରେ ହେଲେ ପୁଅର ମୁହଁ ଚାହିଁବାକୁ ଆଇଲା କି ? ଯା' ସଙ୍ଗେ ଆଠ ବର୍ଷ ସଂସାର କଲା, ଓଲଟି ସେ ନିନ୍ଦା କରୁଛି, ଅପବାଦ ଦେଉଛି । ଆଉ କାହାକୁ ଧରି ନାଚୁଛି । ଶୁଣିଛି ଗୋ, ତମ ଭାଇଙ୍କଠୁଁ ସବୁ ଶୁଣିଛି ।

ଟିଙ୍କି ଚାଟଙ୍ଗା ହେଲା । କୌଣସି ଖବର ଲୁଚି ରହେ ନାହିଁ । ମନକୁ ପଗ୍ଭରିଲା, ଅପବାଦ । କି ଅପବାଦ ? ଯେଉଁ ଘଟଣାଟି ତା' ମନର ପାତାଳ ପଥରତଳେ ଲୁଚାଇ ରଖିଥିଲା, ମନ ଅନ୍ଧାର ଭିତରେ, ତା'କୁ ଦେଖିଲା, ଜାଣିଲା କିଏ ? ସେ ପଥରରେ ଦଉଡ଼ି ଛିଦ୍ର ଥିଲା । ଶିବବାବା ଓ ସୁନାଦେଇ ।

ବିମଳା କହିବାକୁ ଲାଗିଲେ, ମିଶିପଶୁଡ଼ା ଯେଇଆ । ମାଇପି-ଧିଅଟାର ନିଶାରେ ତାଙ୍କର ମନଧ୍ୟାନ ଠୁଳ । ପିଲା-ପିଚିକା ପଛ । ମୋ ଅନ୍ତେ ଯିଏ ଆସିବ, ତା'ର ଦୟା ଉପରେ ଏ ହତଭାଗ୍ୟ ପିଲା ଦୁଇଟାଙ୍କ ଭଲମନ୍ଦ ଜୀବନମରଣ ନିର୍ଭର

କରବ । ତମ ବାପାଙ୍କ କଥା ବୁଝୁନ ? ଦରବୁଢ଼ୀ ନାଟୁଣୀ ଆସିଲା ପରେ କାର୍ତ୍ତିକା'ଦ ତମକୁ ପଚାରିଲେ ନାହିଁ । ଏହା କଏ ନ ଜାଣେ ?

—ଚଇତା ଭାଇ ସେମିତି କୁହନ୍ତୁ ।

ଟେଭାର ପାଟିରୁ ଏତକ ସାନ୍ତ୍ୱନା ଛଳରେ ଖସିଗଲା ସିନା, ମନ ନିଜକୁ ଆଉଟି ପ୍ରଶ୍ନ ପଚାରିଲା, କଏ ତୋ' ବାପର ସୁନାଥାଳ ଜମି ଉଦ୍ଧାର ନେଲା ? କଏ ଏ ଗାଆଁରେ ଆତଙ୍କର ଚଳନ୍ତି ପ୍ରତିମା ହୋଇଛି ? ପରର ସୁଖଦୁଃଖ ଯେ ବିଚାରେ ନାହିଁ, ଯିଏ ଲୋକଙ୍କୁ କୌଶଳରେ ଅକଳରେ ପକାଇ ନିଜର ଗୋଡ଼ାଣିଆ କିଙ୍କର କରେ, ତଥାପି ଯାହାକୁ ଲୋକେ ପ୍ରଶଂସା କରନ୍ତି, ସ୍ୱର୍ଗକୁ ଟେକନ୍ତି, ସେ କେମିତିକା ମଣିଷ ?

ବିମଳା କହିଲେ, ସେମିତି କୁହନ୍ତୁ ? ଆଗୋ ଟେଭା, ଦେଖୁଛ ବେଳ କେତେ ହେଲଣି ? ପିଲା ଦୁଇଟା କୁଆଡ଼େ ରହିଲେ, କ'ଣ ଖାଇଲେ ସେ ଖବର ସେ ଜାଣନ୍ତି ନାହିଁ । ତାଙ୍କ କାମରେ ସେ ବ୍ୟସ୍ତ । ପଚାରିଲରୁ ତାଙ୍କୁ ତଲାସ କରିବାକୁ ଏବେ ସେ ଯାଉଛନ୍ତି । ମୁଁ ଯଦି ବେମାର ପଡ଼ି ନ ଥାନ୍ତି, ମୋ ପିଲାଏ କ'ଣ ଏମିତି ବାବନାଭୂତ ହୋଇ ବୁଲୁଥାନ୍ତେ ?

ଟେଭା ନିରୁତ୍ତର ରହିଲା ।

ବିମଳା କହିଲେ, ମରିବ ତ, କିନ୍ତୁ ମୋ ଅନ୍ତେ ଯଦି ତମର ପରିକା ବୋଉଟିଏ ପାଆନ୍ତେ ସେମାନେ—

—ଏ କି କଥା କହୁଛ ଗୋ ଭାଉଜ !

—କହୁଛି ତ । ସତେ ଯଦି ପାଆନ୍ତେ, ଯିଏ ମାଆ ହୋଇଛି, ମାଆର ମନର ବେଦନା ବୁଝିଛି, ତେବେ କେଜାଣି ତାଙ୍କର ଦୁଃଖ ଯାଆନ୍ତା । ମଣିକୁଦର ଯେଉଁ ଖବର ମୁଁ ବୁଝିଲି, ତମ ଭାଇ କହୁଥିଲେ ମ—

—ଅରକ୍ଷିତ ମୋର ଉଠିବଣି ଭାଉଜ । ମତେ ଖୋଜୁଥିବ । ସ୍ୱାହାଧର କାନ୍ଦୁଥିବ । ରୋଗଣୀ ବୁଢ଼ୀଟି ବିଚରା ହାଇରାଣ ହେଉଥିବ । ତମ ଦେହ ଖରାପ । ତମକୁ ବେଶୀ ଗପେଇବା ନାହିଁ । ଟିକିଏ ଶୋଇପଡ଼ । ମତେ ଅନୁମତି ଦେଲେ ମୁଁ ଯାଆନ୍ତି । ଆଉ ଦିନେ ଆସିବି ଯେ —

—ନିଶ୍ଚେ ତମ ପୁଅକୁ ସଙ୍ଗରେ ନେଇ ଆସିବ । ତମକୁ ମୋ ରାଣ । ତାକୁ ଟିକିଏ ଆଖି ପୂରାଇ ଦେଖିବି । ତା' ବାପ ଚୁଲିପଶାକୁ, କ'ଣ କହିବି ଗୋ ଟେଭା, ଯାହା ତମ ଭାଇଙ୍କ ମୁହଁରୁ ଶୁଣିଲି, ଅଲକ୍ଷଣା ବାବାଜୀ ହୋଇ ସେଇ ବାବାଜୀର ମଠରେ ରହୁଛି । ତା'ର ଜୀବନ ଯାଉଛି କି ଆଉଛି । କୁଆଡ଼େ ନିଶାପାଣି ପିଇ ମଉଆଲ ହୋଇ ଏଠି ସେଠି ପଡ଼ୁଛି । କାଶିକାଶିକା ନସ୍ଥାନ୍ତ ହେଉଛି । ପାଟିରୁ

କାଢ଼ି ରକ୍ତ-ମିଶା ଖଙ୍କାର ଥୁ ଥୁ କରି ଘୃରଆଡ଼କୁ ପକାଉଛି । କେହି ତା ପାଖ ପଶୁ ନାହାନ୍ତି । ଲୋକେ କହୁଛନ୍ତି, ତାକୁ ରୋଗ ଧରିଲାଣି ।

ଝଙ୍କି ଆଉରିଆ ପ୍ରଶ୍ନ ପଗ୍ଚରିଲା, କି ରୋଗ ?

—କେଜାଣି ଗୋ ! ସ୍ରେ କହୁଥିଲେ, ଖରି ଖରାପ ରୋଗ । ଆଇସ ଥିଲେ କିଛିଦିନ ବଞ୍ଚିପାରେ । ନୋହିଲେ ନାହିଁ ।

—ମୁଁ କ'ଣ କରିବି ଖାଉଜ !

ଝଙ୍କିର ଆଖିରୁ ଝପ୍ ଝପ୍ ହୋଇ ଲୁହ ଝରି ପଡ଼ିଲା । ବିଗ୍ଚରିଲା, ଯିଏ ଯାହା ଭାବୁ, ଯିଏ ଯାହା କହୁ ପିଲାଟିକୁ ସଙ୍ଗରେ ନେଇ ସେ ନିଶ୍ଚୟ ମଣିକୁଦ ଗ୍ଚଲିଯିବ ।

ଝରିଆ ଯେତେ ଯାଉ ହେଲାଣି, ସେଥିରେ ସେ ଆଉ ଅଟ୍ଟିଆ ଉତ୍ପାତ କରିବ ନାହିଁ । ତା'ର ରୁଗ୍ଣ ଅବସ୍ଥାରେ ସେ ଝରିଆର ସେବା କରିବ । ଭୁଡ଼ୀମା କୌଣସି ମତେ ଚଳିଯିବ । ଝଙ୍କି ଏ ଗାଆଁକୁ ଆସି ନ ଥିଲେ ସେ ଯେମିତି ଚଳିଥାନ୍ତା ସେମିତି ।

ବିମଳା କହିଲେ, କ'ଣ ଆଉ ତମର କରିବାର ଅଛି ? ତମକୁ ସେ ତଡ଼ି ଦେଇଛି । ମୁକ୍ତ ଦେଇଛି । ସେ ତମର କେହି ନୁହେଁ । ଉପରେ ପଡ଼ି ଯିବ ଯଦି, ନିଜ ପାଇଁକି, ଆଉ ପିଲାଟି ପାଇଁ କି ବିପଦ ଓଟାରି ଆଣିବ । ତମ ଭାଇ ତ କହୁ-ଥିଲେ, ଝଙ୍କିର ମଣିକୁଦକୁ ଭୁଲିଯିବା ଦରକାର । ତା'ର ବିଗ୍ଚରିବା ଉଚିତ ଯେ, ସେ ଏବଯାଏ ବାପଘରେ ଅଭିଆଡ଼ା ଝିଅ ହୋଇ ରହିଛି । ଶୂନ୍ୟରୁ ଆଣି ଠାକୁରେ ତା' କୋଳରେ ଦିବ୍ୟ-ସୁନ୍ଦର ପୁଅ ଥୋଇଦେଇ ଯାଇଛନ୍ତି । କାର୍ତ୍ତିକାଦ'ଙ୍କ ବଂଶ ସିଏ ରକ୍ଷା କରିବ ।

—ଝରିଆ କ'ଣ ଭଲ ହେବ ନାହିଁ ଖାଉଜ, ଚଇତା'ଇ କ'ଣ କହୁଥିଲେ ?

—ପଗ୍ଚରିଲି । ସେ କହିଲେ, କାଶି କାଶି ତଣ୍ଟି ଟିକିଏ ଛିଣ୍ଡିଗଲେ ଖଙ୍କାରରେ ରକ୍ତ ପଡ଼େ । କାହାର ନ ପଡ଼ୁଛି ? ତା' ବି ହୋଇପାରେ; ତେବେ ଚଲମ ନ ଗ୍ଛଡ଼ିଲେ କାଶ ବନ୍ଦ ହେବ କିପରି ?

ମୁଁ ଯାଉଛି ଖାଉଜ ! ଡେରି ହେଲାଣି । ପିଲାଟି କାନ୍ଦୁଥିବ ।

ଏତିକି କହି ଝଙ୍କି ବିଦାୟ ନେଇ ଦାଣ୍ଡ ଖଞ୍ଜାକୁ ଆସିଲା । ଦେଖିଲା, ଚଉପାଢ଼ୀରେ ଗୋଟିଏ ଆରାମ ଚଉକିରେ ବସି ଚଇତନ ପାଣ୍ଡ ଖବର-କାଗଜ ପଢ଼ୁଛନ୍ତି । ଝଙ୍କିକୁ ଦେଖି ସେ ତା' ନାମ ଧରି ଡାକି କହିଲେ, ଶୁଣ୍ ।

ଝଙ୍କି ପାଖକୁ ଗଲା । ମୁଣ୍ଡ ଉପରକୁ ଓଢ଼ଣା ଅଲପ ଟାଣି କଣେଇ ଠିଆ ହେଲା ।

ଚଇତନ ପଗ୍ଚରିଲେ, ଅନେକ ସମସ୍ତ ତାଙ୍କ ପାଖରେ ରହିଗଲୁ । ସେ ବୋଧହୁଏ ମଣିକୁଦର ହାଲଗ୍ଚଲ୍ ଗପୁଥିଲେ ।

— ହଁ, ଭାଇ !

—ତୋତେ ସେ ଖୁବ ଭଲ ପାଆନ୍ତି ।

—ହଁ ଭାଇ, ସେ ଏ ଗାଆଁକୁ ବୋହୂ ହୋଇ ଆସିଲା ଦିନରୁ । ଆପଣଙ୍କର ସେହି ଦୋଲରେ, ଆଉ ତା' ଆଗର ସ୍ନେହ ବି ମୁଁ ଭୁଲି ଯାଇନାହିଁ । ଜମିଟା ସମ୍ବନ୍ଧରେ ବାପାଙ୍କ ସଙ୍ଗେ ଆପଣଙ୍କର କଅଣ ବିବାଦ ଲାଗିଥିଲା । ମୁଁ ଗାଆଁର ଝିଅ, ଆପଣଙ୍କର ସ୍ନେହ ଆଉ ଦୟା ମୁଁ ଜାଣିଥିଲି । ଆପଣ ଅନ୍ୟାୟ କଲେ ବୋଲି ସେମାନେ ପ୍ରଚାର କରୁଥିଲେ । ମୁଁ ବିଶ୍ୱାସ କରି ପାରୁ ନ ଥିଲି । ବାପା ଜେଲ୍ ଗଲାରୁ—

— ତୁ ବିଶ୍ୱାସ କଲୁ ? ହଉ, ସେ କଥା ପରେ କହିବି । ମଣିବୁଦ, ଆଉ ଝିଅଆର ଖବର ଭଲକରି ବୁଝିବାକୁ ବିମଳା ମତେ କେତେଥର କହିଲେ । ବାଧ୍ୟ ହୋଇ ମୁଁ ଲୋକ ପଠାଇଲି । ସେ ବିଶ୍ୱାସୀ ଲୋକ । ଯାହା ଦେଖିଲା, ଯାହା ଶୁଣିଲା ଆସି କହିଲା । ଅନେକ କଥା ମୁଁ ଠିକେ ଠିକେ ବିମଳାଙ୍କୁ କହିଥିଲି । ଶୁଣିଥିବୁ ।

—ହଁ ।

—ଏତେ କଥା ଜାଣିବା ତୋର ଦରକାର ନାହିଁ । ମୁଁ ଯାହା ବୁଝିଲି, ମତେ ଆଶ୍ଚର୍ଯ୍ୟ ଲାଗୁଛି । ସେହି ଝିଅଆଟା ଗୋଟାଏ ନିର୍ଦ୍ଦୟ ପଶୁ । ତା' ସଙ୍ଗେ ତୁ ଆଠବର୍ଷ ଚଳିପାରିଲୁ କିପରି ? ସେ ତୋ' ପରିକା ସ୍ତ୍ରୀକୁ ମାଡ଼ମାରି ଘରୁ ତଡ଼ି ଦେଇଛି । ଏବେସାଏ ବି ସେ ତୋ'ର ଦୁର୍ନାମ ରଟାଉଛି । ସେ ଗାଆଁକୁ ତା' ପାଖକୁ ଫେରିଯିବା ତୋ' ପକ୍ଷରେ ସମ୍ଭବ ନୁହେଁ ।

—ତା'କୁ କ'ଣ କ୍ଷୟକାଶ ଧରିଛି ଭାଇ, ସେ ଆଉ ଭଲ ହେବ ନାହିଁ ?

ଟଗର ଆଖିରେ ଲୁହ ଦେଖି ଚଇତନ ନୀରବ ହେଲେ । ତଳକୁ ଚାହିଁ କଣ ଭାବିଲେ । ମୁଣ୍ଡ ଟେକି କହିଲେ, କିଏ ଜାଣେ ? ମୁଁ ତ ନିଜେ ଦେଖି ନାହିଁ, ଶୁଣିଛି, ତଣ୍ଟି ଛିଣ୍ଡି ଭଲ ମଣିଷର ଖଙ୍କାର ସଙ୍ଗରେ ବି ବେଳେ ବେଳେ ରକ୍ତ ପଡ଼େ । ଭଗବାନଙ୍କର କୃପାରୁ ସେ ଭଲ ହୋଇଯାଉ ।

—ତମ ତୁଣ୍ଡ ଘି-ତୁଣ୍ଡ ହେଉ ଭାଇ ! ମୋ ପିଲାଟି ରଡ଼ି ଛାଡ଼ୁଥିବ । ମୁଁ ଯାଉଛି ?

—ହଉ ଯା । ଆରେ, ଶୁଣ୍ । ତୁ ସେହି ଗାଆଁରେ ଥିବାବେଳେ ଯେଉଁ ଶିବବାବା ଥିଲେ, ସେ ଆଉ ତାଙ୍କର ଚେଲା କୁଆଡ଼େ କୈଳାସ-ପର୍ବତକୁ ତପସ୍ୟା କରିବାକୁ ଚାଲିଗଲେଣି । ଏକାଥରେ ଉଭାନ୍ ।

—ଏଁ ? ମଠ ?

—ଆଉ ଜଣେ କୁଆଡ଼ର ବୁଢ଼ା ବାବାଜୀଟିଏ ଆସି ମଠରେ ଆଶ୍ରା ନେଇଥିଲେ । ତାଙ୍କରି ମାରଫତରେ ସବୁ ଛାଡ଼ି ଯାଇଛନ୍ତି । ସ୍ୱେ ଶିବଙ୍କ ଅବତାର

ନୁହନ୍ତି । ତାଙ୍କର ଭକ୍ତ । ତପସ୍ୟା ଶେଷକରି ଶିବବାବା କୁଆଡ଼େ ଫେରିଆସିବେ । ଆଗପରି ମଠରେ ଗଞ୍ଜେଇ ମଦର ଧୂମ୍ ଉଡ଼ୁଛି ଯେ, ଆଉ ବେଶୀ ଭକ୍ତ ଠୁଳ ହେଉ ନାହାନ୍ତି । ବାଞ୍ଝମାନେ, ଅପୁତ୍ରିକମାନେ ସନ୍ତାନ ପାଇଁ ଢ଼େଉଁରିଆ ନେବାକୁ ତ ଆସୁ ନାହାନ୍ତି ? ତେବେ, ବଂ-ଭୋଳିଆ ଗଞ୍ଜେଇ ମଦୁଆଙ୍କ ଭିଡ଼ କମି ନାହିଁ । ବୁଢ଼ା ପଶ୍ଚିମା ବାବାଜୀଟା କୁଆଡେ ସବୁବେଳେ ଚିଲମ ଧରିଥାଏ । ଏତେ ସବୁ ହେଲାଠେଇଁ ବି ଝିଅ ସେଇଠି ଜୁଟୁଛି । ସେଇଥିପାଇଁ କହିଲି, ମଣିକୁ ଫେରିଯିବା ତୋ' ପକ୍ଷରେ ସମ୍ଭବ ନୁହେଁ । ଉଚିତ ବି ନୁହେଁ ।

ଝିଅ ଆଖି ପୋଛିଲା ।

ଚଇତନ ପାଟି ବୁଝାଇ କହିଲେ, କାନ୍ଦୁଛୁ କାହିଁକି ? ତୋ' ମନରେ ଆଘାତ ଦେବାକୁ ମୁଁ ଏ ସବୁ କହୁ ନାହିଁ । ସତ ଘଟଣା ଜାଣିଲେ ତୋ'ର ଆଉ ତୋ'ର ଶ୍ରେଷ୍ଠ ଛୁଆଟିର ଭବିଷ୍ୟତ କଥା ତୁ ବିଚାରିବୁ । ଯାହା ଉଚିତ ମଣିବୁ କରିବୁ । ତୋ' ଜୀବନକୁ ଏମିତି ଛାରଖାର କେଉଁମାନେ କଲେ, ତୁ ଜାଣି ମଧ୍ୟ ଜାଣିପାରି ନାହୁଁ, ବୁଝି ମଧ୍ୟ ବୁଝିପାରି ନାହୁଁ ।

—ମୋ ଭାଗ୍ୟ, ଭାଇ !

—ଭାଗ୍ୟ ! ଏହାକୁ ଅସ୍ୱୀକାର କିଏ କରିପାରିବ ଝିଅ ? ତେବେ, ଯେଉଁମାନେ ତୋ'ର ଭାଗ୍ୟକୁ ଗଢ଼ିଲେ, ସେମାନଙ୍କୁ ମୁଁ ଜାଣିଲି । ମନରେ ମୋର ଦୁଃଖ ହେଲା । ସେମାନଙ୍କୁ ମୁଁ ଶାସନ କରିସାରିଛି । ଦଣ୍ଡ ଦିଆଇଛି । ତୋ' ଭାଗ୍ୟକୁ ନୂଆ କରି ଗଢ଼ିବାର ସୁଯୋଗ ତୋ' ନିଜ ହାତରେ ଛାଡ଼ି ଦେଇଛି ।

—କେମିତି ?

—ଶୁଣିବୁ ? ତୋ' ପିଲାଟି ଆଉ ଟିକିଏ ବାଢିବ ତ କାନ୍ଦୁ । ନାତିଟିଏ ପାଇଁ ତୋ' ବୁଢ଼ୀମା ଆକୁଳ ହେବାଟା ସ୍ୱାଭାବିକ । କାର୍ତ୍ତିକା'ଦି ଆଉଥରେ ବାହା ହେବାକୁ ରାଜି ହେଲା । ସେଇଟା ବି ଅସ୍ୱାଭାବିକ ନୁହେଁ । ତେବେ, ସେ କେଉଁଠୁ, କାହାକୁ ଆଣୁଛି ଶେଷବେଳଯାଏ ଲୁଚିଲା । ଯେଉଁ ପାଣୁଆ ନାହାକ ଟଙ୍କା ଖାଇ ଗୋଟାଏ ଦରବୁଢ଼ୀ, କଳାହୁଡ଼ୀ ଚଣ୍ଡୀକୁ ଜୁଟାଇଲା, ତା'କୁ ମୁଁ ଥଣ୍ଡା କଲି । ମଲାଯାଏ ମନେ ରଖିବ । ଆଉ ସେ ଚଣ୍ଡୀ ନାଟୁଆ, ଯିଏ ତତେ ବାର ଅବସ୍ଥା ଦେଇଥିଲା—

— ବିମଳା ଭାଉଜଙ୍କ ପାଖରୁ ମୁଁ ସବୁ ଶୁଣିଛି ।

—ଶୁଣିଛୁ ତେବେ ? ତତେ ସେ ଏତେ ଭଲ ପାଆନ୍ତି ? ମୋ' କହିଥିବା କଥା ବି ତୋ ଆଗରେ ପ୍ରକାଶ କରି ଦେଇଛନ୍ତି ? ସେ ସୁନା ଓ ପିତଳ ଚିହ୍ନି ଜାଣନ୍ତି ଝିଅ ! ଯେତେବେଳେ ବେମାର ପଡ଼ନ୍ତି, ଖାଲି ଭାବି ହୁଅନ୍ତି । କହନ୍ତି ବି, ଏଇଥର ତ ମରିବି, ଅକର୍ମଣ୍ୟ ପିଲାଦିଓଟି କେମିତି ଚଳିବେ ?

···ମାଆ ମନ ତ ! ତମେ ଦୁଃଖ କରିବ ନାହିଁ ।

ଚଇତନ କହିଲେ, ଦୁଃଖ କାହିଁକି କରିବ ? ବେମାର ପଡ଼ି ବାରମ୍ବାର ବଞ୍ଚିଣାଲାଗି ହେଉଥିବା ଲୋକର ମନ ଦୁର୍ବଳ ହେଇପଡ଼େ । ସେ ମରଣ ଚାହେଁ ନାହିଁ ଯେ, କାଳେ ମରଣ ହେବ ବୋଲି ଆଗରୁ ଗୁନିଆ ହୋଇ ବାରକଥା ଭାବେ । ଟିକିଏ ସାନ୍ତ୍ୱନା ପାଇବା ପାଇଁ, ମନର ବଳ ଫେରି ପାଇବାକୁ ଆପଣାର ଲୋକ ଆଗରେ ଦୁଃଖ ଖୋଲି କହେ ।

···ହଁ, ଭାଇ !

—ଆଉ ମୁଁ ତତେ ଅଟକାଇବି ନାହିଁ । ତେବେ ଶୁଣ, ମୁଁ ଏଥିକି କହୁଛି, ତମର ସେ ଶିମୁଳିତଳ କଥାରେ ମୋର ଲୋଭ ନାହିଁ । ଲାଭକ୍ଷତି କଥା ମୁଁ ବିଚାରୁ ନାହିଁ । ନାଟୁଆ ଚାଲି ଯାଇଛି । ତୁ ଫେରିଆସିଛୁ । ଯେଉଁ ଝିଅଆ ତୋର ପେଟର ପିଲାକୁ ନିଜର ବୋଲି ସ୍ୱୀକାର କରୁ ନାହିଁ, ଓଲଟି ତୋର ନିର୍ମଳ ଚରିତ୍ରରେ କଳଙ୍କ ବୋଲି ପ୍ରଚାର କରିଛି—

—ଭାଇ !

ଟଗି ଦୁଇ ହାତର ପାପୁଲିରେ ମୁହଁ ପୋତାଇ କହିଁ କହିଁ ହୋଇ କାନ୍ଦି ଉଠିଲା ।

ଟିକିଏ ଥମି, ଚଇତନ ପୁଣି କହିବାକୁ ଲାଗିଲେ, କାନ୍ଦୁଛୁ କାହିଁକି ? ଯେଉଁ ଲୋକକୁ ପଠାଇଥିଲି, ସେ ନିଜେ ଦୁଃଖ କରି କହୁଥିଲା । ସେହି ମହୁଆ, ଗଞ୍ଜେଇ, ଅପଦାର୍ଥ, ଛତରଖିଆର କଥାରେ ଜାଣିବା ଶୁଣିବା ମହଲର ଲୋକେ ବିଶ୍ୱାସ କରନ୍ତି ନାହିଁ । ଓଲଟି ତୋ' ଚରିତ୍ର, ସ୍ୱଭାବ, ସହଣିପଣକୁ ସେମାନେ ଧନ୍ୟ ଧନ୍ୟ ପ୍ରଶଂସା କରନ୍ତି । ସେ ଯାହା ହେଉ, ସେଇଟା ସଙ୍ଗେ ତୋର ଆଉ କି ସମ୍ପର୍କ ? ଗାଁ ଝିଅ ତୁ, ଗାଁକୁ ଫେରି ଆସିଛୁ ।

ଟଗି ମୁହଁରୁ ହାତ କାଢ଼ି ତଳକୁ ଚାହିଁଲା । ଚଇତନ ପୁଣି କହିଲେ କାର୍ତ୍ତିକାଦ ଜେଲରୁ ଫେରନ୍ତୁ । ତାଙ୍କ ଜମି ତାଙ୍କୁ ମୁଁ ନିଶ୍ଚୟ ଫେରାଇ ଦେବି । ବିନା ପଇସାରେ ରେଜେଷ୍ଟ୍ରୀ କରିଦେବି ଗୋଟିଏ ସର୍ତ୍ତରେ । ସେ ତୋ' ପୁଅକୁ ପୋଷ୍ୟପୁତ୍ର କରିବେ । ବେଶ୍ ସେତିକି । ସେଇଠୁ, ତୁ ହେବୁ ସ୍ୱାଧୀନ । ମନ ହେଲେ ନୂଆସଂସାର କରିବୁ ।

ଟଗିର ଗୁଡ଼ିରେ ଛନକା ପଶିଲା । ମରଣକୁ ଡରି ବିମଳା ପ୍ରକାରାନ୍ତରରେ ଯାହା ଆତୁରଆ ହୋଇ କହିଥିଲେ, ତା'ର ପ୍ରତିଧ୍ୱନି ଚଇତନଙ୍କ ମୁହଁରୁ ଶୁଣିଲା ପରି ତାକୁ ଲାଗିଲା । ତାଙ୍କ ଆଗରୁ ଚାଲିଆସିବାକୁ ମନ ଛଟପଟ ହେଉଥିଲେ ବି ସେ ପାଦ ଉଠାଇ ପାରୁ ନ ଥିଲା ।

ପାଣ୍ଡିଙ୍କର କଥା ପୁଣି ତା'ର କାନରେ ବାଜିଲା, କାର୍ତ୍ତିକବାବୁ ଯେବେ ଫେରିବାର ଫେରନ୍ତୁ ଟଭି, ମୁଁ ଜାଣେ, ତୋର ଗୋଟେ ସଂସାର ଚଳାଇବାକୁ ତୁ ହଇରାଣ ହରକତ ହେଉଥିବୁ । ଏଇ ବର୍ଷଠାରୁ ତୁ ସେହି ଜମିକୁ ଦଖଲ କର । ମୁଁ ଛାଡ଼ିଦେଲି । ତୁ ନିଜେ ତାକୁ କାହାକୁ ଭାଗ ବଖରା ଦେ । ଅଚ୍ୟୁତ ବେହେରାଙ୍କୁ ଦେଇପାରୁ । ସେ କାମିକା ଲୋକ, ବିଶ୍ୱାସୀ ଲୋକ । ପରର ହାନି ଲାଭରେ ନ ଥାନ୍ତି । ସକାଳୁ ସନ୍ଧ୍ୟାଯାଏ ତ କାମରେ ଦୁଇ ପ୍ରାଣୀ ଲାଗିଥାନ୍ତି । ତୁ ରାଜି ହେଲେ ମୁଁ ସାଧା କାଗଜରେ ଲେଖିଦେବି ।

ଟଭି କହିଲା, ଆପଣ ମୋତେ ଭଲ ପାଆନ୍ତି ଭାଇ, ଆପଣଙ୍କର ଦୟା ମୁଁ ଭୁଲିପାରିବି ନାହିଁ । ଯେତିକି ଜମି ବାପାଙ୍କର ଅଛି, ସେତିକିରେ ଆମର ଚଳି ଯାଉଛି । ବୁଢ଼ୀ ଆହାର ଛାଡ଼ିଲାଣି । ଦି' ବେଳା ଦି' ମୁଠା ଭାତ ତାକୁ ବଳାଉଛି । ତିନି ବର୍ଷର ପୁଅ ଅରକ୍ଷିତାର ଗାଈ କ୍ଷୀରରେ ଚଳୁଛି । ତାକୁ ଚୂଡ଼ା, ମୁଢ଼ି, ପୁଣି ଏ ଭାତ ଖୋଇ ବଂଚୁଇଛି । ମୁଁ ଏକା ଜଣେ । ଥିଲା ଜମିର ଧାନ, ମୁଗ, ବିରି ଆମର ବର୍ଷକ ଚଳି ଆହୁରି ବଳୁଛି ।

—ଅଧିକରୁ ଅଧିକ ହେବା ଭଲ ଲୋ, ଟଭି । ତୋର ଆଉ ତୋର ପିଲାର ଭବିଷ୍ୟତ ପାଇଁ ହାତରେ କିଛି ଧନ ଥିବା ଲୋଡ଼ା ତ ।

ଟଭିର ସଂକୋଚ ଦୂରେଇ ଯାଇଥିଲା । ତାର ଅଜାଣତରେ ମୁଣ୍ଡର ଓଢ଼ଣା ବେକକୁ ଖସି ଆସିଥିଲା । ଦୁଃଖ ଜରଜର ହେଲେ ବି ଭରପୁର ମୁକୁଳା ମୁହଁଟି ସୁନ୍ଦର ଲୋଭନୀୟ ଦିଶୁଥିଲା । ସେ ଅଳପ ହସିଲା । କହିଲା, ଆପଣଙ୍କର ସ୍ନେହ ମୋ ପରିକା ଜଣେ ନିଶମାଖି ଅଭାଗୀ ଅରକ୍ଷିତର ପୁଅର ଅମୂଲ୍ୟ ସମ୍ପଦ ଭାଇ ! ସେଇ ଅଭାଗୀକୁ ବଞ୍ଚାଇ ମଣିଷ କରିବାକୁ ଲୋଡ଼ା ହେଲେ ମୁଁ ନିଜେ ଆସି ହାତ ପାତିବି । ଯାଉଛି ଭାଇ !

ଅନେକ ଖବର, ଅନେକ ଉତ୍ତେଜନାରେ ମନ ଏବଂ ଅନୁଭବକୁ ବୋଝେଇ କରି ଟଭି ସେଦିନ ପାଣ୍ଡିଙ୍କ ଘରୁ ଫେରି ଆସିଥିଲା । ମାଇ ସଞ୍ଜ ମାଡ଼ି ଆସୁଥାଏ ।

ବାଟ ଚାଲୁଚାଲୁ ପ୍ରତି ପାଦ ପକାରେ ଗୋଟିଏ ଭାବନା ତା' ମନରେ ଘାଣ୍ଟି ହେଉଥାଏ । ସତେ, ଝିଅ ଏବେ ସର ହେଲାଣି; ତଥାପି ତାର ଆଣ୍ଠୁ ଭାଙ୍ଗି ନାହିଁ, ଆ ବୋଲି କାହା ହାତରେ ଖବର ପଠାଇଥିଲେ, ସେ ଟଭି ନିଜେ ତ ଧାଇଁ ଯାଇଥାନ୍ତା ।

ଯିବ କି ?

ଯେଉଁ ପିଲାଟିକୁ ନିଜର ନୁହଁ ବୋଲି ସେ ପ୍ରଚାର କରିଛି, କିପରି ତାକୁ ଛାତିରେ ଧରି ସେ ଯିବ ? ସେମାନେ ସମସ୍ତେ ଜାଣି ଜାଣି କରି ପଚାରିବେ, ହଇଲୋ

ସଜ ସୁଲକ୍ଷଣୀ, ତାର ତ ନୁହେଁ, ଆଉ କାହାର ? ପରର ଚୂନୁଲା ତା ମୁଣ୍ଡରେ ଆସିଲେ, ସେ ମୁଣ୍ଡ ହଲାଇଦେବ ନାହିଁ… ?

କିପରି ସେ ମଣିକୁ ଦିଦି ଯିବାକୁ ସାହସ କରିବ ?

ହେ, ଜଗନ୍ନାଥେ, ଝିଅଟାକୁ ଭଲକରି ଦିଅ । ତାକୁ ଭଲ ବୁଦ୍ଧି ଦିଅ । …

ବୁଢ଼ୀଙ୍କ ପାଖରେ ଅଗଣାରେ ବସି ଅରକ୍ଷିତ ଖେଳୁଥିଲା । ସେ କାନ୍ଦି ନ ଥିଲା । ଝିଅ ତାକୁ ଟେକି ଉଠାଇ ଛାତିରେ ଜାକିଲା । ମୁହଁରେ ଚୋକ ଅଜାଡ଼ି ଦେଲା । ମୁହୂର୍ତ୍ତିକରେ ମନ ଓ ଦେହର ସବୁ ଭାବନା, ସବୁ ଉତ୍ତେଜନା ଉଭେଇ ଗଲା । ସେହି ସୁନ୍ଦର କୁଲୁକୁଲିଆ ପିଲାଟିର ଆଖିକୁ ଚାହିଁ ସେ ମନେ ମନେ ତାକୁ କହିଲା, ତୋ ପାଇଁ ମୁଁ ଯେମିତି ସତ ରେ ଧନ, ମୋ ପାଇଁ ତୁ ସେମିତି ସତ । ମୁଁ ତୋ'ର ଆଉ ତୁ ମୋର ।

ଦୁନିଆଁ ରେ କିଏ ଏହା ଅସ୍ୱୀକାର କରିପାରିବ ?

## —୧୧

ଗ୍ରୀଷ୍ମ ସଂସାରର ଜଞ୍ଜାଳରେ ଘାଣ୍ଟି ଚକଟି ହୋଇ ଦିନଗୁଡ଼ି ବିତି-ଯାଉଥାଏ । ଝିଅ ସବୁ ଅନୁଭବ କରେ । ମନରେ କିଛି ସାଇତି ରଖେ ନାହିଁ । ରଖି ପାରେ ନାହିଁ । ସତେକି ଏଇମିତି ଅନୁଭବ ତାର ଜୀବନ, ଯାହାର ଅତୀତ ନ ଥିଲା । ଆଗତକୁ ତାର ବଳ ନାହିଁ । ଚଳନ୍ତା ବର୍ତ୍ତମାନ କେବଳ ତାର ଚିନ୍ତା । ତାଆରି ସମସ୍ୟାଗୁଡ଼ିକ ସମାଧାନ କରିବା ହେଲା ତାର କର୍ତ୍ତବ୍ୟ ।

ଖରା, ବରଷା, ଶୀତ—ଗୋଟିଏ ବର୍ଷର ତିନୋଟି ଅନୁଭବ । ଛଅଟି ଋତୁର ବାରଟି ମାସର ସବୁ ଦିନର କ୍ଷଣକ୍ଷଣକ ଆନିର ଅନୁଭବ ଦେହ ଓ ମନକୁ ଅଣାଇ ଚେତନାରେ ମିଶି ଏକାକାର ହୋଇଯାଇଛି ।

ବିମଳା ପୁଣି ବେମାର ପଡ଼ିଥିଲେ । ରତନପୁର ପରି ଏତେବଡ଼ ଗାଆଁ ରେ କେତେ ଜଣାଲୋକ ରୋଗରେ ପଡ଼ି ଭଲ ହେଉଥିଲେ, କେହି କେହି ସେପୁରକୁ ଚାଲିଯାଉଥିଲେ । ଦେଖିବାକୁ ମନ ଡ଼ାକୁଥିଲେ ବି ଝିଅ ଯାଇ ପାରୁ ନ ଥିଲା ।

ବିମଳା ବି ସେପୁରକୁ ଗଲେ । ଦିଓଟି ଅକର୍ମଣ୍ୟ ପିଲାଙ୍କ ପାଇଁ ମନର ବ୍ୟାକୁଳତାକୁ ସଙ୍ଗରେ ନେଇ ସେ ଚାଲିଗଲେ । ଯିବ ଯିବ ହୋଇ ଝିଅ ତାଙ୍କୁ ଦେଖିବାକୁ ଯାଇ ପାରି ନ ଥିଲା । ସେ ଦୁଃଖ ବି ମନରେ ହଜିଲା । ମନେ ରହିଗଲା ଆଠମାସ ତଳର ଭେଟିଲା ଦୃଶ୍ୟ । ତାଙ୍କର ସ୍ନେହବୋଲା କଥା, ତାଙ୍କର ଇଙ୍ଗିତ ଅନୁନୟ ।

ଅରକ୍ଷିତକୁ ଚାରି ବର୍ଷ ଚାଲିଛି । ପିଲାଟି ବିଚକ୍ଷଣ ହୋଇଛି । ଚଞ୍ଚଳ ପ୍ରକୃତି, ବଡ଼ମଣିଷ ପରି କଥା କହୁଛି । ଥରେ ଦି'ଥର ଯାହା ଶୁଣୁଛି ମନେରଖୁଛି ।

ପଗ୍ଭର ପଗ୍ଭର ବରକ୍ତ କରୁଛ । ଟେଭର ପଛେ ପଛେ ଗୋଡ଼ାଉଛ । ନୂଆ ମାସ୍ଟର ଅଦେଖା-ଡ଼ୋରରେ ଟେଭ ପରସ୍ତ ପରସ୍ତ ଗୁଡ଼ାଇ ହେଉଛ । ତା'ର ଖେଳ-କୌତୁକ, ନସର-ପସର ଟଲଟଲଆ ଧାଆଁଣ, ଦଗ୍ରେଟି ବଚନ, ଉଜ୍ଜ୍ୱଳ ଆଖିର ଚଞ୍ଚଳ ଗ୍ଭହାଣୀ ଟେଭର ସବୁ ଦୁଃଖ ପାସୋଗ୍ଭଇ ଦଏ । ତାଆର ଅରଦୋଳରେ ସମସ୍ତ ବହଯାଏ । କାଲର ବଗ୍ଭର ମନ ଛୁଏଁ ନାହିଁ ।

ସଞ୍ଜ ଗଡ଼ଯାଇଥାଏ । ଆଲୁଅ ଜାଲ ଅଗଣାରେ ଟେଭ ଅରକ୍ଷିତକୁ ଖେଳାଉଥାଏ । ପିଣ୍ଡା ଉପରେ ବସି ଜେଜେମା ପିଲାଟିର ଖେଳ ଦେଖି ଓ କର୍‌କାର୍ ହସ ଶୁଣି ନଜେ ଦୋହଲ ଦୋହଲ ହସୁଥାନ୍ତ । ଟେଭକୁ ଥରକୁ ଥର ଚେତାଇ କହୁଥାନ୍ତ, ପିଲକୁ ଏତେ ହସାଇବା ଭଲ ନୁହେ ଲୋ, ସଞ୍ଜ ପହର । କାଲ-ବକାଲ ଘୂର ବୁଲନ୍ତ । ଭତରକୁ ଗ୍ଭଲ ଆ । ହସ ପଛେ ପଛେ କାନ୍ଦ ଗୋଡ଼ାଇଥାଏ ।

ବୁଢ଼ୀଙ୍କର କଥା ସଙ୍ଗେ ସଙ୍ଗେ କଏ ଦାଣ୍ଡରେ ଟେଭର ନାମ ଧର ଡ଼ାକଲ । ଟେଭ ଜାନପାରଲ । ସ୍ୱର ବାଣ କହଲ, ମା, ଅଚ୍ୟୁତ ମଉସା ପଗ୍ଭ ଡନ ଗ୍ଭରଦନ ହେଲ କେଉଁ ବନ୍ଧୁ ଘରକୁ ଯାଇଥିଲେ ? ସେ ଫେରଲେଣି । ଡାକୁଛନ୍ତ । ଯାଏଁ ।

କବାଟ ଖୋଲନ୍ତେ, ଅଚ୍ୟୁତ ଅଗଣାକୁ ଆସିଲେ । ଗାମୁଛାର ପୁଡାଟି ଖୋଲ, ଦଓଟି ଛଡ଼ାନଡ଼ଆ ଓ ଦଗଣ୍ଡା ପାଚଲପିଜୁଳ କାଢ଼ି ପିଣ୍ଡାରେ ରଖିଲେ । କହଲେ, ଗଛରୁ ତୋଳା ହୋଇଥିଲ । ତୋ' ମାଉସୀ କହଲେ, ନେଇଯା ଦୁଇଟା, ଟେଭ ପିଠା କରବ ।

ଅରକ୍ଷିତ ଦୁଇ ହାତରେ ଦୁଇଟି ପିଜୁଳ ଉଠାଇ ଖାଇବାକୁ ଲଗିଲ । ବୁଢୀ ବାକତକ ଅଣ୍ଟିରେ ଭରଲେ । କହଲେ, ଅବେଇଜଟା ପିଜୁଳକ ରଙ୍ଗ । ବେଶୀ ଖାଇଲେ ସର୍ଦ୍ଦି ହେବ । କୁଆଡ଼େ ଯାଇଥିଲୁ ପୁଅ ? କେବେ ଫେରଲୁ ?

—ମୋ ଶଶୁରଘର ଓଗ୍ଭଙ୍ଗ । ମଣିକୁଦକୁ ବାଟ କୋଶେ ହେବ । ଡନ ଶଳାଙ୍କ ଭତରେ ସମ୍ପତ୍ତି ବଣ୍ଟାଆବ ପାଇଁ ଝଗଡ଼ା । ସମସ୍ତେ ଗ୍ଭହିଁଲେ ମୁଁ ଯାହା କହବ ସେଇଆ ହେବ । ଗାଁ ଟାଉଟରଙ୍କ କଥା ଜାଣ ନାହିଁ ? ସେ ଡନଭାଇଙ୍କି ମତେଇ ଦେଇଥିଲେ । ମଣିକୁଦର ନବସିହ୍ନା ନାରଣ ପଣ୍ଡା ତାଙ୍କୁ କାଠିରେ ନଗ୍ଭଉଥିଲ । ଯାହା ହେଉ, ସମାନ ସମାନ ଡନ କଛ କଲ । ଧର୍ମଗୁଳା ପକାଇଲ । ମିଳାମିଶା କରାଇ ଫେରଲ । କାଲଠାରୁ ଫେରଲଣି । ଆସିବ ଆସିବ ହୋଇ ଆସି ପାର ନଥିଲ । ମଣିକୁଦ ବ ଯାଇଥିଲ ସେ !

ଟେଭ ଉଦ୍‌ବଗ୍ନ ହୋଇ ପଗ୍ଭରଲ, ସ୍ୱାଙ୍କ ଘରକୁ ଯାଇଥିଲ କ ? ଝିଅଆ ସଙ୍ଗେ ଦେଖା ହୋଇଥିଲ ମଉସା ? ସେ କେମିତ ଅଛ ଆଗ କହ, ମୋ' କଥା ନ ପଗ୍ଭରଲେ ନାହିଁ, ସ୍ୱେ ପିଲଟି କଥା ପଗ୍ଭରୁଥିଲ କ ?

ଝିଅର କୋହ ନ ଉଠୁଥିଲା । କେତେ କେତେ ପ୍ରଶ୍ନ ଛୁଞ୍ଚ ଅଗ୍ରଭଳି ତା ପଞ୍ଜରା ଯାଏ ହାରୁକାଇ ଆସୁଥିଲା । କିନ୍ତୁ, ତା'ର କଣ୍ଠ ଡେଇଁ ତୁଣ୍ଡରେ ପହଞ୍ଚିବାକୁ ବହିପ ହରଉଥିଲା ।

ବେହେରାଏ କିଛି ସମସ୍ତ ଉତ୍ତର ଦେଇ ପାରିଲେ ନାହିଁ । ଶିବଚନ୍ଦ୍ର କହିଲେ ମୋ' ସଙ୍ଗରେ ତୋ ଶଶୁରଘର ଦେଖିବାକୁ ମୋ ବଡ଼ଶଳା ବି ଯାଇଥିଲା । ଫଗୁ ଖୁଣ୍ଟିଆଙ୍କୁ ରଘୁଆ ପିଲାଦିନରୁ ଜାଣେ । ଝିଅବାବୁଙ୍କୁ ବି ଚିହ୍ନିଛି । ଭଉଁରୀକୁ ଗାଆଁରେ ଭେଟିଲା । ସେ ଚିହ୍ନିଲା । ସଙ୍ଗରେ ଗଲା ସେ ଗାଁ ଦାଣ୍ଡରେ ଠିଆହେଲା । ଖୁଣ୍ଟିଆ ଘର ଦାଣ୍ଡ ବି ମାଡ଼ିଲା ନାହିଁ । କହିଲା, ମନା କରିଛନ୍ତି ।

—କେତେବେଳେ ଯାଇଥିଲ ? ସେ ଥିଲେ ?

—ଗଲୁଁ କଅଁଳ-ଗାଧୁଆ ବେଳେ । ରଘୁଆ ବହୁତ ଡାକିଲା । କବାଟ ଧଡ଼ ଧଡ଼ କଲା । କେତେବେଳକେ ସେ କବାଟ ଖୋଲିଲେ । ରଘୁଆ ମତେ ଚିହ୍ନେଇ ଦେଲା । ନିଜର ପରିଚୟ ଦେଲା ।

—ଘର ଭିତରକୁ ଯାଇଥିଲ ? ସେ ଏକା ଥିଲେ ?

—ତାଙ୍କର ଦୁର୍ବଳ ଦେହ ଦେଖି ମୁଁ ଛାନିଆଁ ହେଲି । ତେବେ ଏତିକି, ସେ ମଦ ଖାଇ ନ ଥିଲେ । ଭିତରକୁ ଡାକିଲେ । ଗଲୁଁ । ଘରେ ଆଉ କେହି ନ ଥିଲେ । ଅଗଣାରେ ଅଳିଆ ଆବର୍ଜନା ଭରିଛି । ଚୁଆଣି ନ ହୋଇ ପଛ ଧାଉଡ଼ି କାନ୍ଥ ଖଣ୍ଡିଆ ଖାବରା ହୋଇଛି । ଗୋଷଘରଟିର ଚାଳ ଭଙ୍ଗା କାନ୍ଥ ଉପରେ ମାଡ଼ି ବସିଛି । ତୁ ଯେଉଁ ଘରେ ଶୋଉଥିଲୁ, ସେଇ ଘରର ଅବସ୍ଥା ଟିକିଏ ଭଲଥିଲା ପରି ଲାଗିଲା । ଦାଣ୍ଡ ଘରର ବି ।

— ସେ କେଉଁଠି କ'ଣ ଖାଉଛନ୍ତି ?

—କେମିତି ଜାଣିବି ? ପଚାରି ନାହିଁ । କାଶିକାଶିକା ସେ ନିସ୍ତାନ୍ତ ହେଉଛନ୍ତି ।

—ସେ କ'ଣ କହିଲେ ?

—ଖାଲି ତଡ଼ି ପକାଇଲେ । କହିଲେ ଝିଅ ତା' ଚାମୁଣ୍ଡାକୁ ଏଇଠି ଛାଡ଼ି ଗଲା । ଶିବବାବା କୈଳାସ ଚାଲିଗଲେ । ଏଥର ସେ ଚାମୁଣ୍ଡା ମତେ ଖାଇବ । କେତେଥର ତ ଦେଖିଲିଣି ।

—ସେ କ'ଣ ଗଞ୍ଜେଇ ଟାଣିଥିଲେ ?

—କେଜାଣି ମା, ହୋଇଥିବ ! ଭଲ ମଣିଷ ପରି ବସିଥିଲେ । କାଶର ଝପ୍‌ଟା ଥମିଲାରୁ କହିଲେ, ଦିନବେଳା ସେ ଚାମୁଣ୍ଡାଟା ପାଖ ପଶେ ନାହିଁ । ସଞ୍ଜ ହେଲେ କଥା ସରିଲା । ଦି' ଜଣିଆଁ ରହିଲେ ଘରରେ ବି ପାଖ ମାଡ଼େ ନାହିଁ । ଖଞ୍ଜା ବାହାରେ ବୁଲୁଥାଏ । ଉତ୍ପାତ୍ କରେ । କ'ଣ ବୁଝିଲ ?

ସେଇଠୁ ପୁଣି କାଶ । ମେଞ୍ଚା ମେଞ୍ଚା ଖଙ୍କାର ।

ପୁଣି କହିଲେ, ସଅଧ ହେଲେ ମୁଁ ଆଉ ଏକା ଏ ଘରେ ନ ରହେ । ଶିବ ଶଙ୍କରଙ୍କ ଆଶ୍ରାରେ ଯାଇ ମଠରେ ଥାଏ ।

ଏମିତ ବାଇଆଙ୍କ ପର ଗପିଲେ ।

ମୁଁ କହିଲି, ତମର ପୁଅଟିକୁ ଥରେ ଦେଖିବାକୁ ଗଲ ନାହିଁ ? ଭାରି ସୁନ୍ଦର ହୋଇଛି । ତମର ବରଗ । ଚାଲ, ଥରେ ଦେଖିବ । ଥରେ ଦେଖିଲେ କ'ଣ ତାକୁ ମୁରୁଛି ରହିପାରିବ ?

କହିଲେ, ମୋ'ର କି ପୁଅ ? ସେ ଝିଅର ପୁଅ । ମୁଁ କାହିଁକି ଯିବି ? ଝିଅ ଚାଲିଯାଇଛି । ମୋତେ ଖାଇବାକୁ ସେ ଡାଆଣୀ ତା ଗୁମୁଣ୍ଡାକୁ ଛାଡ଼ି ଯାଇଛି । ତମକୁ ଦେଖିବାକୁ ପଠାଇଛି, ମୁଁ ବଞ୍ଚିଛି କି ମରିଛି ?

କାଶିକାଶି ପୁଣି ସେ ନସ୍ୟାନ୍ତ ହେଲେ । କାଶ ଥମିବାରୁ ମୁଁ କହିଲି, ସେମିତ କହନା । ଆମ ଶୁଣିବାରେ ତମେ ତାକୁ ଚାଲିଯିବାକୁ କହିଲ । ତମେ ଖବର ପଠାଇଲେ ସେ ନିଜେ ତ ଚାଲି ଆସିବ !

ଏତକ ମୁଁ ମୋ' ମନକୁ କହିଲି ଲୋ ମା ! ତା' ଅବସ୍ଥାକୁ ଦେଖି ମତେ ବକଲ ଲଗିଲା ।

ସେ ଚଢ଼ି ଉଠିଲେ ଲୋ, କାନ୍ଥକୁ ଧରି ଠିଆହେଲେ । କହିଲେ ଅଭଦ୍ର ଭାଷାରେ, ଶଳାଏ ମତେ ବୁଦ୍ଧି ବତେଇବ ! ତା'କୁ ଚାଲିଯିବାକୁ କହିଲି ତ ଭଲ କଲି; ପୁଣି ଆସିବାକୁ କହିବ ? ଆସିବ ତ ଆଗ ତା' ଝିଲାକୁ ଗୁମଣ୍ଡା ଖାଇବ, ସେଇଠୁ ମତେ । ଆବେ ହେ, ଆଗ ମତେ ଖାଉ, ସେଇଠୁ—

ଆଉ କହିପାରିଲେ ନାହିଁ । ଧଇଁ ସଇଁ ହୋଇ ବସିପଡ଼ିଲେ । ଟିକଏ ଦମ୍ ନେଇ କହିଲେ, ତମେ ଶଳାଏ ପଳାଅ ମୋ ଆଗରୁ । ଚର ହୋଇ ଆସିଛ ନା ? ବାହାର, ବାହାର କହୁଛି । —

ତାଙ୍କର ରୂପ ଓ ଢଙ୍ଗ ଦେଖି, ଅଭଦ୍ର ଗାଳି ଶୁଣି, ରଘୁଆ ତମତମ ହେଉଥିଲା । ମୋ ହାତଧରି ଟାଣିଲା । କହିଲା, ତାଙ୍କ ବେଶର ପାଞ୍ଚଖଣ୍ଡି ଗାଁର ଲୋକ ଜାଣନ୍ତି । ଚାଲିଆସ ।

ବାଧ ହୋଇ ତାଙ୍କ ଆଗରୁ ଚାଲି ଆସିଲି ମା ! ଆଉ କଅଣ କରିଥାନ୍ତି ?

—ଭଅଁସ ବାଟରେ ବହୁତ ଗପିଲା । ସେଗୁଡ଼ା କଅଣ ଶୁଣିବୁ ମା ! ସେ ଦ' ବର୍ଷ ହେଲା ବାହା ହେଲାଣି । ଏବେ ତା'ର ପୁଅଟିଏ ହୋଇଛି । ତତେ ଖବର ଦେବାକୁ କହିଛି । କୋଉ କାନ୍ତରଟି ଘରେ କାମ କରୁଛି । ନୋହିଲେ କୁଆଡ଼େ ଆସିଥାନ୍ତା ।

—ହଁ, ହଁ; ତବେ ସେ ଆଉ ଗୋଟାଏ ଖବର ଦେବାକୁ କହୁଥିଲା । ତୋ'ର କେଉଁ ବଉଳ ଫୁଲର ଝିଅଟଲେ ପୁଅଟିଏ ହୋଇଛି । ଭଉଁରୀ ପୁଅଠୁ ସୁରଧନ ଯାନ ! ତା' ବର ଡମ୍ବରୁ କେଉଁଠି ଓଗ ଖଞ୍ଜୁ ଖଞ୍ଜୁ ଓଗ ସହିତ ତଳେ ପଡ଼ି ଅଣ୍ଟା ଆଉ ଗୋଡ଼ଟାଏ ଭାଙ୍ଗି ଦେଇ ବରଷ ହେବ ଅକର୍ମଣ୍ୟ ହୋଇଛି । ଘୂନ୍ନୁର ଘୂନ୍ନୁର ଆତମାତ ହେଉଛି ।

ଟଗ ପାଷାଣ ମୂର୍ତ୍ତିଟି ପରି ବସି ସବୁ ଶୁଣୁଥିଲା । ଦେହ-ମନ ପଥର ହୋଇ ଯାଉଥିଲା । ସବୁ ଜଣାଣ ଦେହ ସହୁଛି । ସେ ଜାଣେ, ସେ ଦୁଃଖ କଲେ ବି ପ୍ରତିକାର କରିପାରିବ ନାହିଁ ।

ତୁନି ହୋଇ ଆଖିରୁ ଲୁହ ପୋଛୁଥିଲା । ଅରକ୍ଷିତ ଆସି କୋଳକୁ ଆଉଜିଲାଣି । ପିଲାଟି ଦୁଇଟି ଖାଇସାରି ଆଉ ଦିଓଟି ନେବାକୁ ଅଳି କଲାଣି । ହାତରେ ଯେତେ ଦୂରେଇଲେ ସେ ମାନୁ ନାହିଁ । ଟଗ ତାକୁ ଠେଲି ଦେଲାରୁ ସେ କାନ୍ଦିବାକୁ ଲାଗିଲା ।

ବୁଢ଼ୀ ବିରକ୍ତ ହୋଇ କହିଲେ, ଝିଏ ତୋତେ ବିନା କାରଣରେ ଛି କରି ଘରୁ ତଡ଼ିଦେଲା, ଜାଣ ଗ୍ଲାଡ଼ପତ୍ର ଦେଲା ଲୋ ଟଗ, ତା' କଥା ଶୁଣି ମେଟର ଛୁଆକୁ ଆଡ଼େଇ ଦେଉଛୁ, ହଇଲୋ ଫୁଲେଇ ଟୋକୀ ? ଆରେ ବାବୁ, ମୋ' କୋଳକୁ ଆ !

ବୁଢ଼ୀ ଅରକ୍ଷିତର ହାତଟିଏ ଧରୁଣୁ ସେ ଅଧିକ ଗରଜି କାନ୍ଦିଲା । ଓଟାରି ହେଲା । ବୁଢ଼ୀଙ୍କର ହାତ ଝଟାଇ ସେ ଟଗର ପିଠିରେ ନାଉ ହେଲା । ତା' ବେକକୁ ତା'ର ଗ୍ଲୋଟ ଗ୍ଲୋଟ ହାତରେ ବେଢ଼ାଇ ଧରିଲା ।

ବୁଢ଼ୀ ପୁଣି କହିଲେ, ପିଲାଟା ରାହା ଧରିଲା ମ, ତାକୁ କୋଳକୁ ନେ । ଆଲୋ ହେ ଓଲମୀ, ଯାହା ଖବର ଶୁଣି ସ୍ନେହ-ସଙ୍ଗ ଦେଲଟାରେ ଆଖିରୁ ଲୁହ ଝରାଉଛୁ, ତା'ର ଭଲ ହେବ କି ମନ୍ଦ ହେବ ଟିକିଏ ବୁଝିଲୁ ? ତା' ମାଯକ ଆଇସ ଦିନକେ ସରିବ । ତା ଗୁହାଳରୁ ତତେ ସେ ମୁକାଳି ଦେଇଛି । ଏଣିକି ତୋ'ର ଯାହା ଖୁସି ତୁ କରିବୁ ।

ଟଗ ଅରକ୍ଷିତକୁ କୋଳକୁ ନେଲା । ସେ ତୁନି ହେଲାରୁ ବୁଢ଼ୀ କହିଲେ, ଶୁଣ ପୁଅ ଅଚ୍ୟୁତ, ଏହି ଘରର ସର୍ବନାଶର କାରଣ ମୁଁ ନଆଁଲାଗି । ନାତିଟିଏ ଦେଖିବାକୁ କାର୍ତ୍ତିକାକୁ ଆଉଥରେ ବାହା ହେବାକୁ ଦିନରାତି ଉଠେଇ ବସେଇ ଦେଲି ନାହିଁ । ତା'ର ଏକା 'ନା' । ସେ କହୁଥିଲା ଯେ, ଟଗର ଜ୍ଞାନ ହେଲେ ଘରଜୋଇଁଆ କରିବ । ମୁଁ କାନ୍ଦିଲି, ରୁଷିଲି, ଉପାସ ରହିଲି । ଶେଷକୁ ସେ ମାନିଲା ।

ଅଚ୍ୟୁତ ଠିଆ ହେଲେ । ଗାମୁଛା ଝାଡ଼ି କାନ୍ଧରେ ପକାଇଲେ । କହିଲେ, ସବୁ ଘଟଣା ମୁଁ ଜାଣିଛି । କାର୍ତ୍ତିକଭାଇ ମୋ' ପାଖରେ କିଛି ଗୋପ୍ୟ ରଖନ୍ତି ନାହିଁ । ତମର କି ଦୋଷ ? ବଡ଼ ଠାକୁରଙ୍କ ଆଜ୍ଞା —'କରି କରାଉଥାଏ ମୁହିଁ' । ତମେ ନିଜକୁ ଅପରାଧୀ ମଣୁଛ କାହିଁକି ? ସବୁ ସେଇ କାଳିଆ କରୁଛି···

ବୁଢ଼ୀ କହିଲେ, ହଁ ଯେ, ଆମେ ତ ମାନବା, ଯେଇ କାଳିଆ କଅଣ କରେଇବାକୁ ଚାହୁଁଛି ଜାଣିବା କପର ରେ ପୁଅ ? ଆମର ଯେତକ ବୁଦ୍ଧି ସେତକରେ ବିଚାର । ଭଲ ପାଇଁ କରୁଣ୍ଡ, ଫଳ ମନ୍ଦ ହୁଏ । ଯାହା ଘଟିଯାଏ ତା'କୁ ଫେରାଇ ହୁଏ ନାହିଁ । ତେବେ, ଭଲ ମନାସି କରୁଣ୍ଡୁ , ମନ୍ଦ ହେଲେ, ଆମର ବିଚାର ଆଉ ଶକ୍ତି ଅନୁସାରେ ତା'କୁ ପୁଣି ସୁଧାରିବା କି ନାହିଁ ? ତୁ ତ ଜାଣିବା ଲୋକ, ତୁ କହ ? ଦୁଃଖ ଘୋଟିଲା ବୋଲି କଣ ସେଥିରୁ ଉଧୁରି ସୁଖ ପାଇବାକୁ ଚେଷ୍ଟା କରିବା ନାହିଁ ?

ଅଚ୍ୟୁତ ବେହେରା ଗଳାଖଙ୍କାରି କହିଲେ, ସ୍ୱା ନା ଗୋଟାଏ କଥା ନା, କଅଣ ମାଉସୀ ? ଅଜଣା ଗୋ-ଦଣ୍ଡାରେ ଶଗଡ଼ ଚଳାଉଣ୍ଡୁ ଚକ ଗଳିଗଲେ କ'ଣ ଗାଡ଼ି ଅଚଳ ହେଲା ବୋଲି ଛାଡ଼ି ପଳାଇ ଆସିବା ? ଉପାୟ ଫାନ୍ଦ ଯେମିତି ହେଲେ ତାକୁ ଦାଲି କି କାଦୁଅରୁ ଉଠାଇ ଆଗକୁ ନେବା । ଦଣ୍ଡାବାଟ ଧରିବା । ମୁଣ୍ଡରେ ହାତ ଦେଇ ବସିଲେ—ଖାଲି କାନ୍ଦିଲେ ବୋବେଇଲେ ଦିନ ସରିବା ସାର ହେବ । ମାନ-ଅଭିମାନ, ରାଗ ରୋଷ, କପାଳ ନିନ୍ଦା ଆଖିରୁ ପଳ ପଳ ଲୁହ ନିଗିଡ଼ା ବିଗିଡ଼ାକୁ କିଣ ସଜାଡ଼ି ପାରିବ ?

—ସାର କଥା କହିଲୁ ରେ ପୁଅ । ଧଇର୍ଯ୍ୟଧରି ଆଗପଛ ବିଚାରି ଯାହାହେଲେ କରିବାକୁ ହେବ । ତେଣିକି କପାଳ । ଟଭି ଲୋ, ତୁ ଧଇର୍ଯ୍ୟ ଧର ।

ଅଚ୍ୟୁତ ବେହେରା କହିଲେ, ମୁଁ ଯାଉଛି । ଗାଈ ଦୁଇଟି ଦୁହାଁ ହେଲେ କି ନାହିଁ ଜଣା ନାହିଁ । ଡେରି ହେଲାଣି । ତମର ବୁଧେଇ ଗାଈଟି ସିନା ସୁଧାର, ସେ ଦୁଇଟା ତ ଉଦ୍ଦଣ୍ଡୀ । ବୁଧେଇକୁ ତୁ ନିଜେ ଦୁହିଁବାରେ ଅସୁବିଧା ହେଉ ନାହିଁ ତ ?

ଟଭି କହିଲା, ମୁଁ ଦୁହିଁବି ମଉସା । ତମେ ଆସିବା ଆଗରୁ ରଥିଆ ତା'କୁ ଗୋଠରୁ ଆଣି ବାନ୍ଧି ଦେଇଗଲା । ବୋବାଳି ଛାଡ଼ିଲାଣି ।

ଅଚ୍ୟୁତ ବିଦାୟ ନେଇଗଲେ ।

ରାତିରେ ଶୋଇବା ଆଗରୁ ଟଭିର ଜେଜେମା ଟଭିକୁ କହିଲେ, ସେଇଟା କଥା ତୁ ମନରୁ ପୋଛିପକା । ଯେଉଁ ଅଲକ୍ଷଣା, ଛତରା, ଲମ୍ପଟିଆ ଗଣ୍ଡୋଳଟା ତୋ'ର ସୁନା ମୁହଁରେ କଳା ବୋଳିଲା, ତତେ ବାଟପୀ କହି ମାଡ଼ମାରି ଗଳ୍ପଣା ଦେଇ ଘରୁ ତଡ଼ିଲା, ତା'ର ଭଲ ମନ୍ଦରେ ତୋ'ର କି ଥାଏ ? ତା' ପାଇଁ ତୁ କାହିଁକି ଝୁରି ହେଉଛୁ ?

ଟଭି କହିଲା, ସେ ଅରକ୍ଷିତାର ବାପଟି !

—ଆଲୋ, ମୁଁ କହୁଛି, ସେଇଟା ଅରକ୍ଷିତାର ବାପ ନୁହେଁ କି ତୁ ଅରକ୍ଷିତାର ମା ନୁହଁ । ଠାକୁରେ ସେ ବକଟକୁ ତୋ' ବାପ କାହିଁକି ପାଇଁ ତୋ' କୋଳରେ ଥୋଇଦେଇ ଯାଇଛନ୍ତି । ସେ ଫେରିଲେ ଅରକ୍ଷିତାକୁ ସେ ପୁଅ କରିବ । ଏତକ କରାଇ ତେବେ ଯାଇଁ ମରିବ ।

ଟଗି ଉତ୍ତର ଦେଲା ନାହିଁ ।

ବୁଢ଼ୀ କହିବାକୁ ଲାଗିଲେ, ଯେଉଁଦିନ ତୁ ଖୁଣ୍ଟିଆଘର ସୁନ୍ଦରୀ ଆସି ଏ ଘରେ ପାଦଦେଲୁ, ସେହିଦିନରୁ ତୁ ଏ ଘରର ଝିଅ ହେଲୁ । ତୁ ସେ କୁଳର ବୋହୂପଣରୁ କଟିଲୁ । କାହାପାଇଁ ଆଉ ସୁ ନ୍ଥାରେ ସିନ୍ଦୂର ବୋଳୁଛୁ ଲୋ ଓଲମୀ ? ତାକୁ ଏଣିକି ପୋଛିପକା ।

ଟଗି ଚମକି ଉଠିଲା । କହିଲା, ତୋ' ଗୋଡ ଧରୁଛି ମା, ସେମିତି ଅଶୁଭ କଥା ତୁଣ୍ଡକୁ ଆଣେନା ।

—ଶୁଣିଲୁ ତ ସେ ଅବେଇଜନଟାର କି ଅବସ୍ଥା ହେଲାଣି ? ଝିମୁନା ଧାନ କ'ଣ ଗଜା ହେବ ? ନିଜ ହାତରେ ସେ ତା' ଜୀବନ ନେଉଛି । ଦେଖୁନୁ, ସେ କେମିତି ପ୍ରକୃତିଛଡ଼ା ହେଲାଣି ? ତା ମତି ଭ୍ରମ ହେଲାଣି । କୋଉ ବ୍ରାହ୍ମଣୀକୁ ତୁ ସୁନ୍ଦରୀ ଆସିଛୁ ବୋଲି ନିନ୍ଦୁଛି ? ହୋଇଥିବ । ଯେଉଁଠି ଏତେ ଅନାଚାର, ସେଠି ଲକ୍ଷ୍ମୀଠାକୁରାଣୀ ରହିବେ କେମିତି ? ତୋ' ସଙ୍ଗେ ସଙ୍ଗେ ସେ ଆସିଲେ । କୋଉ ଅଲକ୍ଷଣୀ ଚଣ୍ଡୀଟା ସେ ଘରେ ରହିଲାଣି । ସେ-ଅଲକ୍ଷଣା ବୁଝିଲାଣି, ତା'କୁ ସେ ଚଣ୍ଡୀଚାମୁଣ୍ଡୀ ଖାଇବ । ସେଇଠୁ ତୁ—

—କପାଳରେ ବିଧି ଯାହା ଲେଖିଛି ଲୋ ମା ନିଶ୍ଚେ ଭୋଗତମାନ ହେବ । କେହି ତାକୁ ଅନ୍ୟଥା କରିପାରିବ ନାହିଁ । ମଣିଷ ଭାବେ ଏଇଆ କଲେ ସୁଖ ମିଳିବ । କାଲିବେଳକୁ ଆଜି କ'ଣ ହୋଇଯାଏ । ହଁ, ସେଇଆ ଯଦି ବି କରି ହୋଇଗଲା, ତା ଆଶା କ'ଣ ଫୁଲଫଳ ଧରେ, ନା ସୁଖ ମିଳେ ? କିଏ ଜାଣେ ? ତା' ଆଶା ମଉଳି ପାରେ । ଅମୃତ ନ ଫଳି ବିଷ ଫଳ ଫଳିପାରେ । ମୋ ଜୀବନରେ ସବୁ ଅନୁଭବ ହୋଇ ସାରିଛି । କାଲି କଅଣ ହେବ ମୁଁ କି ଜାଣେ ? ଆଜିଠୁଁ ଏତେ ବିଚାର ମୁଁ କରିବ ନାହିଁ ।

ବୁଢ଼ୀ ତ୍ରିଙ୍ଗିଲେ । କହିଲେ, ସତ କହିଲୁ ଲୋ ଟଗି ! କେତେ ବିଚାର ଫସର ଫାଟିଯାଏ । ବେଳ କହେ ବେଳ ଭୁଲାକୁ, ପୃଥ୍ୱୀ 'କ୍ଷଣ କ୍ଷଣକେ ଆନ' । ଆମେ ତ ଗାଈ, ଆମ ଦେକର ପଘା ଯାଇଁ ଦଇବ ହାତରେ । କେହି ଦେଖୁନାହିଁ । ସେଇଥି-ପାଇଁ ଏତେ ବିଚାରଣା । କ'ଣ କହୁଥିଲି କି—

— କଅଣ ?

—ନରୁଗୁଣ୍ଡିଆର ଭାରଯା ଘଣୀ, ଏବେ ଦିନେ ଆସି କହୁଥିଲା । ତୁ କାହା ଘରକୁ ଦି ପହରେ କି କାମରେ ଯାଇଥିଲୁ । ଚଇତନ ପାଢ଼ିଙ୍କର ସେ ହାଉଡ଼ା ପୁଅର ମରଣ କଥା ମ !

—ଶୁଣିଛି । ଗାଁ ମାଇପେ ଗପୁଥିଲେ । ଦି'ମାସ ପୂରିଗଲାଣି । ବିଚରା ଗୋବର ଖାତରେ ପଡ଼ି ଉବୁଟୁବୁ ହୋଇ ଅଧାପ୍ରାଣ ହୋଇଥିଲା । ଘଡସାରା ସେଇଠି ଛଟପଟ । ଚଇତାଭାଇ ସହରକୁ ଯାଇଥିଲେ । ରହିଗଲେ । ଘଡସାରା ଘରର କୋଠିଆ ଗାଁସାରା ବୁଲି ଯାଉଛନ୍ତି, ଗୁହାଳ କଡ଼ର ଖାତ କେହି ଦେଖୁ ନାହାନ୍ତି । ଦି ଦିନ ବଞ୍ଚିଥିଲା ।

—ହଁ ଲୋ, ମଲା ନାହିଁ ସେ ତରିଗଲା ।

—ଆହା, ବିଚରା !

—ତା' ପାଇଁ ଚଇତନର ଦିକ ମରିଲା । କଥାଟା ଅଛି, ଝିଅ ମରଣ ଆଗ ଦୁଃଖ, ପଛେ ସୁଖ । ତା' ଦେଢ଼ାହାଉଡ଼ା ପୁଅଟା ଝିଅଠାରୁ ବଳି ହଣାଉଥିଲା, ହସାଉଥିଲା । ବଞ୍ଚିଥିବା ଯାଏ ଚଇତନଆଁର ଦିକ ଲାଗିରହିଥାନ୍ତା । ଚଇତନର ଜନମ ମତେ କାଲପରି ଲାଗୁଛି । ଦି କୋଡ଼ି ପୂରି ନ ଥିବ । ମୋକାର୍ତ୍ତିକାଠଉଁ ସାତ ସାନ । ତା ମାଆକୁ ସେ ଦି'ଦିନ କଷ୍ଟ ଭୋଗେଇଥିଲା । ତୋ' ଜେଜେ ବଞ୍ଚିଥିଲେ । ଖବର ପାଇ ତାଙ୍କ ଘରକୁ ଗଲେ । ତାମ୍ବିଆରେ ଅଧତାମ୍ବିଆ ପାଣିରେ ଚିମୁଟାଏ ମନ୍ତୁରା ଲୁଣ ପକାଇ ମୋଟେ ସାତଥର ଫୁଙ୍କିଲେ । ପଦ ବୋଲୁଥିଲେ । ଯେମିତ ସେ ପାଣି ଚଇତାମାଆର ପେଟରେ ପଶିଛି, ଗୋଟାଏ ଶ୍ୱାସରେ ଚଇତା ଆସି ପଦାରେ ।

—ମୋ ଜେଜେଙ୍କର ଏତେ ଗୁଣ ଥିଲା !

—ଖାଲି ସେତିକି ? ଯେଉଁ ରୋଗରେ ମଣିଷ ଘାଣ୍ଟି ହେଉଥାଉ, ପିଣ୍ଡରେ ପ୍ରାଣ ଶୁକ ଶୁକ୍ ହେଉଥାଉ, ତାଙ୍କୁ ଖବର ଦେଲେ ସେ ଯିବେ, ନ ହେଲେ ବାଆଁରେଇ କରି ମନା କରିଦେବେ । ହଉନ ହୋଇ କଟାଳ କଲେ ଯିବେ ଯେ ଓଠ ନେଫେଡ଼ି ଟାଣିହେଲା ପରି ଯିବେ । ଆଇଷ ନ ଥିଲେ କେଉଁ ମନ୍ତୁରା ପାଣି କାମ୍ କରିବ ତୁ କହ ? ସେ ବୁଝନ୍ତି, ଚଣ୍ଡୀରୁମଣ୍ଡୀଗୁଡ଼ାକ ସବୁବେଳେ ଅଦୃଶ୍ୟ ହୋଇ ବୁଲୁଥାଆନ୍ତି । କେତେବେଳେ କାଏ ହାବୁଡ଼ିଲେ ଧିଅରେ ପଶନ୍ତି । କାବୁ କରନ୍ତି । ବଇଦର ଔଷଧ ତାଙ୍କର କଅଣ କରିପାରିବ ? ତାଙ୍କୁ ମନ୍ତ୍ରର ଲୋଡ଼ା ।

—ଚଣ୍ଡୀମୁଣ୍ଡୀ ! ତୋ'ର ବିଶ୍ୱାସ ଅଛି ?

—ଇଲୋ, ବିଶ୍ୱାସ ନ ଥିବ କାହିଁକି ! ହେଲେ, ଯିଏ କାଳିଆର ଶରଣ ପଶିଛି, ସେମାନେ ତା' ପାଖ ପଶନ୍ତି ନାହିଁ । ସେହି କାଳିଆ ଏକା ମୋର ଅଣ୍ଟା ।

—କେବେ ଦେଖିଛୁ ! ସତ କହ ମା !

—ମନ ଦୁଖୁ ଦୁଖୁ ଜୀବନ ଦିଏ । ସେମିତିଆ ଦୁଖୁଗୁଣ୍ଡିଆ ମନରେ କେତେଥର ଦେଖିଲା ପରି ମଣିଛୁ । ଭଲେ ମା, ଆଖିବୁଜି ଯେମିତି ସେଇ ଜଗା ବଳିଆଙ୍କୁ ସୁମରଣା କରଛୁ, ଦ' ଭଇ ଅସି ମୋ ମନରେ ଉଭା ହୋଇଯାନ୍ତି । ଛାତି ଧଡ଼ଧଡ଼ ଥାଏ । ଥରଥର ଗୋଡ଼ ଦମ୍ଭ ହୁଏ । ଛାନିଆଁ ଧାଇଁ ପଳାଏ । କଣ ବୁଝିଲୁ ନାହିଁକି ? 'ଡର କାହାକୁ ଭୟ କାହାକୁ, କାଳିଆ ବଳିଆ ଦୁଇ ବାହାକୁ' । ଆଖି ଖୋଲି ଭଲ କରି ଚାହିଁଲା ବେଳେ ଦେଖେ, କେହି ନାହିଁ । ବୁଦାଟାଏ, ଛାଇଟାଏ, ଜନ୍ତୁଜନ୍ତାଟାଏ, ପବନର ଶବଦ । ଏମିତି ସେମାନେ ।

—ବୁଝିଲୁ ତ ମା ? ଝିଅାର ଦୁର୍ବଳିଆ ମନରେ ସେ ଗାଆଁର କେଉଁ-ମାନେ ଛାମଣ୍ଡାର ଡର ପୂରାଇଲେ । ତାକୁ ସମଝାଇଲେ ଯେ ସେଇଟା ଜନମରୁ ମୋ ଭିତରେ ଘର କରି ରହିଛି । ସେହିଦିନରୁ ମୋ' ଅବସ୍ଥା ଦାରୁଣା-ଦକଡ଼ା ହେଲା । ଶୁଣି ଶୁଣି ମୋର ବି ସେହି ବିଶ୍ୱାସ ହୋଇଥିଲା । ଝିଅାର ମାଡ଼ ଖାଇ-ଖାଇ ମୁଁ ଗଇଆଁ ହେଲି । ଡରି ଡରି ଛାନିଆଁରେ ମିଛୁମିଛିକା ଛାମଣ୍ଡାକୁ ମୋ ଛାଶପାଖରେ ଅତି ବିକଟାଳ ରୂପରେ ଦେଖିଲା ପରି ମଣିଲି ।

ଶିବବାବା ବାବାଜୀ ପାଖରେ ଶରଣ ପଶିଲି ଲୋ ମା ! ସେଇ ଘଡିରେ ବୁଝିଲି, ବାବାଜୀଟା ଭଣ୍ଡ । ଛାମଣ୍ଡା ଫାମଣ୍ଡା ଗୋଟାଏ ମିଛ ଡର । ସେବଠାରୁ ସେଇ ଛାମଣ୍ଡାକୁ କେବେ ମୁଁ ଦେଖି ନାହିଁ । ପୁଣି ପ୍ରଚାର କଲେ, ଛାମଣ୍ଡା ମୋ'ଠୁଁ ବାହାରି ଝିଅା ପଛରେ ଗୋଡ଼ାଇଛି । ସେ ଅଲକ୍ଷଣା ବିଶ୍ୱାସ କଲା । ପର ଘରର ଘରଣୀ ପାଖରେ ଶରଣ ପଶିଲା । ରହିଲା । ମୋ' ପାଖକୁ ଆସିଲେ ଖାଲି ମାଡ଼ ମାରିଲା । ହାଙ୍କିଲା,—ତୁ ପଳା ମୋ ପାଖରୁ ।

—ଛାମଣ୍ଡା କୁଆଡ଼େ ତା'କୁ ଖାଉଛି ।

—ହାରେ ଅଲକ୍ଷଣା । ସେହି ମିଛୁମିଛିକା ଛାମଣ୍ଡା ତତେ ସହଳ ଖାଉରେ ଚୁଲିପଶା ଝିଅା···

—ସେମିତି କହନା ମା । ତୁ କଲ୍ୟାଣ କର, ସେ ଭଲ ହେଉ । ଠାକୁରେ ତାକୁ ଭଲ ବୁଦ୍ଧି ଦିଅନ୍ତୁ । ସବୁ ସମ୍ପତ୍ତି ନୂଆ ହେଲାଣି । ଶୁଣିଲୁ ତ, ଘରଟା ବି ଭାଙ୍ଗିବା ଉପରେ । ହେଲେକ ବି ଯାଉ । ସେ ବଞ୍ଚିଥାଉ । ମୂଳ ଲାଗି ପଡ଼ିବ ଯେଟ ପୋମ୍ଭୁ । ଅରକ୍ଷିତ ବାପଛେଉଣ୍ଡ ନ ହେଉ ।

—ଯେଉଁ ବାପ ପୁଅକୁ ଥରେ ଚାହିଁଲା ନାହିଁ, ସେଇଟା ଥିଲେ କେତେ, ନ ଥିଲେ କେତେ ?

ଟପ୍ ଉଠିଲି, ଅରକ୍ଷିତକୁ ତା'ର ଜେଜେମା ପାଖରେ ଠିଆ କରାଇ କହିଲି, ତୁ ଏଇଠି ଖେଳୁ ଥା । ମୁଁ ତୋ' ପାଇଁ କ୍ଷୀର ଦୁହିଁ ଆଣେ । ଡେରି ହେଲାଣି ।

ବୁଢ଼ୀ କହିଲେ, ଘଣ୍ଟିଗୁଣ୍ଡିଆନୀ ଆଉ ଯାହା ମତେ କହୁଥିଲା, ଆସିଲେ ଶୁଣିବୁ । ପିଲାଟିଦିନରୁ ଚଇତନ ତତେ ଭାରି ସୁଖ ପାଉଥିଲା । ତୋର ମଚଳ

ପାଇଁ ସେ ଏତେ କାଣ୍ଡ ଭିଆଣ କଲା ଲୋ ! କେମିତି ଆମେ ଜାଣନ୍ତୁ ? ନାଟୁଆକୁ ଡରିଲା ତ ! ତା ଝିଅଟା ବିମଳା ମଲା ଆଗରୁ ଚଇତନକୁ କଅଣ କହିଲା, ପାଖରେ ଥିବା ଲୋକେ ଶୁଣିଛନ୍ତି ।

ଟୋକା ବାଧା ଦେଇ କହିଲା, ମତେ ସେଥିରୁ କି ମିଳିବ ? ମୋର ଶୁଣିବା ଜାଣିବା ଲୋଡ଼ା ନାହିଁ ମା !

ରାଣୀ ବୁଢ଼ୀଙ୍କ ପାଖରେ ଯାହା ଗପିଥିବ ଟୋକାକୁ ଅଜଣା ନ ଥିଲା । ଗାଆଁର ମାଇପିମହଲରେ ସେତକ ପ୍ରଚାରିତ । ସେଇଥିପାଇଁ ବିମଳାଙ୍କ ମରଣ ପରେ ତାଙ୍କର ପିଲା ଦୁଇଟିଙ୍କୁ ଥରେ ଦେଖି ଆସିବାକୁ, ଚଇତନ ପାତ୍ରଙ୍କୁ ସଙ୍ଖୋଳି ତାଙ୍କର ଦୁଃଖରେ ପଦେ ସାନ୍ତ୍ୱନା ଶୁଣାଇ ଆସିବାକୁ ଟୋକା ସାହସ କରିନଥିଲା ।

ଚଇତନ ପାତ୍ର ବୁଦ୍ଧିମାନ୍ ଲୋକ । ମନରେ ଅନ୍ୟଥା ଘେନିବେ ନାହିଁ । ହାଉଡ଼ାର ଦୁଃଖଦଆ ମରଣ ପରେ ମଧ୍ୟ ଟୋକା ଯିବାକୁ ମନ କରିନାହିଁ ।

ଭାଉଜ ଲେଖାର ଜଣେ, ଗୋଟାଗ୍ରାଏଁ ଆପଣାର ହୋଇ, ପିଠି ଆଉଁସି, ବିମଳାଙ୍କର ମରଣର ମାସକ ପରେ, ଦିନେ ଟୋକାକୁ କହିଥିଲେ, ବିମଳା କେଉଁ ଆଶା ମନରେ ରଖି, ତୁଣ୍ଡରେ ପ୍ରକାଶି ଗଲେ ସେଥିକି ଚଇତନ ପାତ୍ରେ ଅମଙ୍ଗ ହେବେ ନାହିଁ । ଆଗୋ ଟୋକା ! ତମଠାରୁ ଭଲଟିଏ ତାଙ୍କୁ କେଉଁଠୁ ମିଳିବ ? ରୂପ, ଢଙ୍ଗ, ଗୁଣରେ ? ତମ ପରିକା ତଲାଖଟରୁର ଝିଅଟିଏ ଏକା ସେହି ବଡ଼ଘରର ଦାୟିତ୍ୱ ମୁଣ୍ଡାଇବାକୁ ପାରଙ୍ଗମ ।

ଟୋକା ଉତ୍ତର ଦେଇଥିଲା, ବିମଳା ଭାଉଜ ସମସ୍ତଙ୍କୁ ସ୍ନେହ କରୁଥିଲେ । ଅପାରଗ ପିଲାଦୁଇଟି ଜନ୍ମକରି, ତାଙ୍କରି ଭବିଷ୍ୟ ସବୁବେଳେ ଭାବି ଆତୁରା ହେଉଥିଲେ । ମୋ ଉପରେ ତାଙ୍କର ଦୟା ଥିଲା । ତମମାନଙ୍କର କ'ଣ ଦୟା ନାହିଁ ?

—କାହିଁକି ଟୋକା ! ଆମର କଅଣ ନାହିଁ ଯେ ପରର ଦୟାକୁ ଅନେଇ ବସିବ ?

—ସବୁ ଥାଇ ମଧ୍ୟ ମୋର କିଛି ନାହିଁ । ଠାକୁରେ ଯେଉଁ ପିଲାଟି ଦେଲେ, ସେ ତା ବାପ ମୁହଁ ଦେଖିଲା ନାହିଁ । ବାପ ଲୋଡ଼ିଲା ନାହିଁ । ସେ ମତେ ଲୋକ-ହସା କରାଇଲା । ମନକୁ ଯେତେ ବୁଝାଇଲେ, ମନ କ'ଣ ବୁଝୁଛି ? ଦେହଟା ସଦାବେଳେ ଜଳୁଛି···

ବନ ପୋଡ଼ିଲେ ସମସ୍ତେ ଜାଣନ୍ତି ଭାଉଜ, ମନ ପୋଡ଼ିଲେ ଜାଣିବ କିଏ ? ମୋ ଭିତରଟା ପୋଡ଼ାଅଙ୍ଗାର । ବିମଳା ଭାଉଜ ଜାଣନ୍ତେ କେମିତି ? ସେ

ଜାଣିଥିଲେ ଯେ ମୁଁ ହରିମାଖୀଟିଏ । କେଜାଣି କାହିଁକି ମୋ' ଉପରେ ତାଙ୍କର ବିଶ୍ୱାସ ଜନ୍ମିଥିଲା । ମରିବେ ବୋଲି ଡରୁଥିଲେ ତ, ଅଥଳ ଜଳରେ ଭାସୁଥିବା ହିଆଣ୍ଡ୍ରୀ ମୁଁ, ତାଙ୍କର ମନକୁ ଦିଶିଲି । ସେ କଅଣ କହି ଦେଇ ସେପୁରକୁ ଉଡ଼ିଗଲେ । ସେଥିକି ମୋର କି ଦୋଷ ? ଯେତେ ଝାପଟ କରୁଛ କର । ସହିବା ଛଡ଼ା ଅନ୍ୟ ଉପାୟ ନାହିଁ···

—ଆଗୋ ନାଇଁ, ଏଇଗାଁର ସୁନାଝିଅ ଝରିକୁ କିଏ ନ ଜାଣେ ? ଚାନ୍ଦରେ ସମସ୍ତେ କଳଙ୍କ ଦେଖନ୍ତି । ଝରି ଠିଁ ସେତକ କେହି ଦେଖି ନାହାନ୍ତି ।

—କାହିଁକି ଏତେ ବଢ଼ାଇ କହୁଛ ଭାଉଜ ? ଏହି ଗାଁର ଧୂଳିମାଟିରେ ମୁଁ ଲଙ୍ଗଳା ହୋଇ ଜନମିଥିଲି । ଧୂଳିରେ ଗଡ଼ି ଖେଳିଥିଲି । ସେମିତି ଲଙ୍ଗଳା ମୁକୁଳା ହୋଇ ଆତଯାତ ହେଲେ ମୋ ମନ ମତେ ଲାଜଘ କରିବ ନାହିଁ । ତିନିଓଳି ଉପାସ ଶୋଇ ମଧ୍ୟ କାହାରି ତୋରାଣି କଂସା କି ଅମୃତଭାଣ୍ଡକୁ କେବେ ଆଶା କରି ନ ଥିଲି । ଏବେ ବି କରିବି ନାହିଁ । କାହା ନିଧିସମ୍ପତ୍ତିରୁ ମତେ କି ମିଳିବ ? ହଁ, ଚଇତାଭାଇଙ୍କର ଧନ ସମ୍ପଦ ଅଛି । ପିଲା ଦୁଇଟିଙ୍କୁ ଜଗିବାକୁ ସେ ପୁଞ୍ଜାଏ ଚାକର ରଖି ପାରିବେ । ଗୁମାସ୍ତା, ପୁଝାରି—

—ଆଗୋ ଝରି ! ତାଙ୍କର ବୟସ ବି ଅଛି । ସେ ପୁରୁଷ ପିଲା ! ତାଙ୍କର ଘରଣୀ ଲୋଡ଼ା ତ ।

ଝରି ହସିଥିଲା । କହିଥିଲା, ତାଙ୍କର ଲୋଡ଼ା-ଅଲୋଡ଼ା କଥା ସେ ବିଚାରିବେ । ତାଙ୍କର କଅଣ ଲୋଡ଼ା ସେ ବିଷୟରେ ଆଉ ଯିଏ କରିବାର କରୁ । ସେଥିରେ ମୋର କି ଥାଏ ? ଧନ-ସମ୍ପଦକୁ ଯାହାର ଆଶା ସେ ବରଣମାଳା ଧରି ବସିଥାଉ ।

ମନ ଦୃଢ଼ କରି ସେ ପୁଣି ସେଇ ସ୍ନେହୀ ଭାଉଜଙ୍କୁ ସଜଳ ଆଖିରେ କହିଥିଲା, ଠାକୁରେ ମୋ'ର ଅରକ୍ଷିତର ବାପକୁ ଭଲ କରି ଦିଅନ୍ତୁ । ମୋର ଆଶା ଅଛି, ଦିନେ କେବେ ସେ ମତେ ଲୋଡ଼ିବ ଗୋ ଭାଉଜ ! ସେଦିନ ତୁମମାନଙ୍କର ପାଦର ଧୂଳି ମଥାରେ ବୋଳି ମୁଁ ଏ ଗାଁରୁ ଚାଲିଯିବ ।

ଅଚ୍ୟୁତ ବେହେରଙ୍କଠାରୁ ଝରିଆର ଅବସ୍ଥା ଓ ଚିନ୍ତା ସମ୍ବନ୍ଧରେ ଆଜି ଝରି ଯାହା ଶୁଣିଲା, ସେଥିରେ ତା'ର ଆଶାର ଢକଢକ ଆଲୁଅ ମିଞ୍ଜି ମିଞ୍ଜି ହେଲା । ଭାବିଲା, ଆଉ କ'ଣ ସେ ଆଲୁଅ ଜଳିବ ? ସେଇଟା ଲୁଖୁରା ହେଲାଣି । ତେଜକଲେ ଜଳି ଯାଉଛି । ଲିଭିବ, ଅନ୍ଧାର ହେବ । ତା' ଜୀବନ ଧନ ଅରକ୍ଷିତଟି ଭାଗ୍ୟହୀନ । ଲୋକେ ତାକୁ ଆଙ୍ଗୁଠି ଦେଖାଇ କୁହାକୁହି ହେବେ, ସେଇଟା ଅଣବାରୁଆ—

ଠାକୁରେ ଆୟୁଷ ଦେଇଥିଲେ ତା ଦୁଃଖୀରଙ୍କାଳୀ ଦିନେ ବଡ଼ ହେବ । ଜାଣିବ, ଶୁଣିବ । ସବୁ ମଣିଷପିଲା ଦିନେ ଜାଣନ୍ତ ହୁଅନ୍ତି । ଏ ଦୁନିଆ

ତାଙ୍କୁ ସବୁ ଶିଖାଏ । ଯେଉଁ ଛୁଆଟି ତା'ର ପେଟରୁ ବାହାରି, ତା'ର କ୍ଷୀର ଶୋଷି ବଢ଼ିବ, ନିଜେ ସବୁ ଦୁଃଖଯାତନା ସହି ନିନ୍ଦା-ଅପମାନକୁ ଦେହର ମଳି କରି ଯାହାକୁ ସେ ମଣିଷ କରିବ, ସିଏ ବଡ଼ ହେଲେ ତାକୁ କେଉଁ ଆଖିରେ ଦେଖିବ ?

ପଚାରିବ ନିଜକୁ ନିଜେ, କିଏ ତା'ର ବାପ ? ଯେଉଁ ଲୋକଟିର ପୁଅ ବୋଲି ନିଜକୁ ସେ ପରିଚିତ କରିବ, କାହିଁକି ସେ ବାପା ତା'ର ଜନ୍ମକଲା ମା'କୁ ଘରୁ ତଡ଼ି ଦେଇଥିଲା ? ପିଲାଟିକୁ ନିଜର ବୋଲି ମାନିଲା ନାହିଁ ? ଥରେ ଚାହିଁଦେଇ ଯିବାକୁ ବି ମନ କଲା ନାହିଁ ?

ସେହି ପୁଅ ଦିନେ ତା' ଉପରେ ଦାଉ ସାଧିବ । କଥା ଅକଥାରେ, ମନ କଥା ମନରେ କୁହୁଳାଇ, ତା' ଉପରେ ଅତ୍ୟାଚାର କରିବ । କିଏ ଜାଣେ ? ତା'ର ନିଜର ବଳ-ବିଶ୍ୱାସ ଯାଇଥିବ । ଆଶ୍ରା ଦେବାକୁ କେହି ଆଉ ନ ଥିବେ । ହେ ଠାକୁରେ, ମୋ ଭାଗ୍ୟରେ ଏତେ ଦହଗଞ୍ଜ ଲେଖି ମୋତେ ଜନ୍ମଦେଲ କାହିଁକି ?

ଆଉ କେତେ ଦୁଃଖ ଭାଗ୍ୟରେ ରଖିଛ ? ବୁଧେଇ ଲୋ, ତୁ ମୋ' ଏକୁଟିଆ ଜୀବନର ଆଶ୍ୱାସ ବିଶ୍ୱାସ । ତୋ' ଦେହରେ ତେତିଶ କୋଟି ଦେବତା ଠୁଳ । ମୋ' ମନର କଲବଲ ଭାବନା ଜାଣି ପାରୁଥିବୁ । ତୁଣ୍ଡ ଖୋଲି ସିନା ବୁଦ୍ଧି ବତାଇ ପାରିବୁ ନାହିଁ, ତୁ ଗୋମାତା ଠାକୁରାଣୀ ମୋ' ମନରେ ପ୍ରବେଶି ମତେ ଠିକଣା ବାଟ ବତାଇ ଦେ । ଝରିଆ ଏତେ ସତ ହେଲାଣି । କିଏ କ'ଣ କହିବ, କିଏ କ'ଣ ଭାବିବ, ସେସବୁ କିଛି ନ ବିଚାରି ଅରକ୍ଷିତାକୁ ଛାତିରେ ଧରି ଯିବ କି ତା' ପାଖକୁ ?

ବୁଧେଇ ତା'ର ବାଛୁରୀକୁ ଚାଟୁଥିଲା । ସେ ଅବଶିଷ୍ଟ କ୍ଷୀର ଶୋଷୁଣୁ ହେତାଣ ହୋଇ ମା'ଆର ପହ୍ଲାରେ ମୁଣ୍ଡ ପିଟୁଥିଲା । ଟଭାର ଭାବନା ଠଉର କଲାପରି ବୁଧେଇ ମୁଣ୍ଡ ଟେକି ହଲାଇଲା । କହିଲା, କି ତା'ର ନୀରବ ଠାରରେ, ସିଏ ତତେ ଜୀବନରୁ ଅଧିକ ଭଲପାଏ ସେହି ରୋଗଣୀ ଜେଜେମା'କୁ ଛାଡ଼ି, ତାକୁ ଜାଣି ଜୁଇକୁ ମୋହିଁ ଘୁଞ୍ଚିବୁ ? ଯାହା ପାଇଁ ଏତେ ଦୁଃଖ ଭୋଗିଲୁ, ନିନ୍ଦା ଅପମାନ ସହିଲୁ, ସିଏ ତୋ'ର, ଆଉ ଝରିଆର ଥିଛର ଗଣ୍ଠି, ଖୁଣ୍ଟିଆ ବଂଶର ଶେଷ ସମ୍ବଳ, ସେହି ନିଷ୍ପାପ ଶିଶୁକୁ ନେଇ ଯମ ଆଗରେ ଠିଆ କରାଇବୁ ?

ଟଭାର ଜେଜେମା ବିରକ୍ତିଆ ସ୍ୱରରେ ଡାକ ଛାଡ଼ିଲେ, ଶୋଇ ପଡ଼ିଲୁ କି ଟଭା ' ପିଲାଟା ଅଳଟ ହେଲାଣି । ତୋ' କହିକି ଯିବ ବୋଲି ଛଟପଟ ହେଉଛି । ମତେ ରାତି ବିଦାରି ପକାଉଛି ଲୋ ଟଭା ! କ'ଣ କରୁଛୁ ବା···

ଟଭା ମନରୁ ସବୁ ଭାବନା ପୋଛି କ୍ଷୀରଭର୍ତ୍ତି ଠେକି ଓ ଆଲୁଅ ଧରି ସେ ଖଞ୍ଜା ଭିତରକୁ ଆସିଲା । କହିଲା, ଦି ପହରୁ ସେ ମେଞ୍ଚାଡ଼ଖଣ୍ଡକ ବିଛୁଆଛି-ଗୁଣ ଧରିଲାଣି ।

ତା'ର କି ଦୋଷ ? ହାଇରେ ଚଗଲା—

ସମସ୍ତେ ଚଳି ଗଲ଼ା ଗ୍ଲୁଲଲ । ଧୀରେ ଧୀରେ ଝୁଷି ମନର ଉଦ୍‌ବେଗ ଉଣା ହୋଇ ନିଡଦ୍ଦନିଆ ନିସୃନ୍ଦର ତଳେ ଲୁଚ ରହିଲ । ଝିଅର ଖବର ବୁଝି ଆସିବାକୁ କାହାକୁ କେବେ ପଠାଇବ ବସ୍ତର କରୁଣୁ ସେହି ବସ୍ତର ବ ମନରେ ମିଳାଇଗଲା । ଆପେ ଆପେ ଉଡ଼ାଖବର ବ କେଉଁଠୁ ଆସି କାନରେ ବାଜିଲ ନାହିଁ ।

ନିଜକୁ ନିଜେ ସାନ୍ତ୍ୱନା ଦେଲ, ମଣିଷ କଡବ୍ୟଲଗୀ ହୁଏ, ପୁଣି ଭାଗ୍ୟ ବଳରୁ ଝାଡ଼ଝୁଡ଼ ହୋଇ ଉଠେ । ଠାକୁରେ ଝିଅକୁ ଭଲ କର ଦେବେଣି । ମଣିଷ ଚିଙ୍ଗିଲେ ଶିଖେ । ଅବାଟରୁ ବାଟକୁ ଆସେ । ଘଟିଯାଇଥିବା ଘଟଣାଗୁଡ଼ିକୁ ହେଜ ସତର୍କ ହୁଏ । ଝିଅ ସେଇଆ ହେବଣି—

ଦୁଇଟି ପିଲାର ମା ସୁନା ଦେଇର ସେ ପାଖ ପଶୁ ନ ଥିବ । ସୁନା ତା'ର ସମ୍ପତ୍ତି ଓ ଜୀବନ ଶୋଷି ଶୋଷି ସିଠା କଲା ପରେ ଆଉ ତାକୁ ପାଖ ପୂରାଉ ନ ଥିବ । ଯାଉଥିଲେ ଯାଉଥିବ ସେହି ବୁଢ଼ାବାବାଙ୍କ ପାଖକୁ । ଗଞ୍ଜେଇ-ମଦର ମନ୍ଦ ଗୁଣ ତାକୁ ଅଜଣା ନାହିଁ । ଆଉ କ'ଣ ସେହି ବିଷ ସେ ଛୁଇଁବ ?

ନା । ମେତକ ଗ୍ଲୁଡ଼ିଲେ ତା'ର ବୁଦ୍ଧିବିବେକ ଫେରି ଆସିବ । ସେ ଲୋଡ଼ିବ ଝୁଷିକୁ । ତା'ର ରକତର ପିଲା ଅରକ୍ଷିତକୁ ଦେଖିବାକୁ, ପାଖକୁ ନେଇ ଗ୍ଲୁଢରେ ଧରିବାକୁ ଉଚ୍ଛନ୍ନ ହେବ । ମାନଅଭିମାନ, ରାଗରୋଷ, ଲାଜସରମ ସବୁ ଗ୍ଲୁଡ଼ି ସେ ଧାଇଁ ଆସିବ ରତନପୁର ।

ହେ ଠାକୁରେ, ସେଇଆ କର ।

ଆଶାର ସାନ୍ତ୍ୱନା ହଲହଲ ହୁଏ । ଦୋହଲେ । ଆଶଙ୍କାର କୁହେଳି ମାଡ଼ି ମାଡ଼ି ଆସେ । ଭାବନାର ଗଣ୍ଠି ବାନ୍ଧୁଡାଏ—ଆରେ, ବସି ବସି କ'ଣ ଗୁଡ଼ାଏ ଭାବୁଛ ? ବର ରଗଡ଼ା ହୋଇ ନାହିଁ । ବାଗରେ ଗଛମୂଳରେ ମାଟି ଶୁଖି ଗଲଣି, ପାଣି ଢଳା ହେବ । ଅରକ୍ଷିତର ଉଠିବାର ବେଳ ହେଲଣି । କ'ଣ ସେ ଖାଇବ ? ଜେଜେମା'ଙ୍କୁ ଜର, ଆଉ ପାନେ ଔଷଧ ଦେବାର ବେଳ ହେଲଣି ··

ସପନ ଦେଖିଲା ପର ଅଳସ ବେଳର ଦାରଗ୍ରହିଲା ଭାବନାଗୁଡ଼ିକୁ ଝୁଷି ମନରୁ ପୋଛି କାମରେ ମନ ଦିଏ । ତଥାପି ସେଗୁଡ଼ା ଅଦିଶ-ଅଦମରର ହତାଶିଆ ନିରାଞ୍ଜନ ଫାଙ୍କରେ ରୁହାଇ ରୁହାଇ ଢେଉ ପରେ ଢେଉ ପରି ମାଡ଼ି ଆସନ୍ତି । ଗ୍ଲୁଢର ଦମ୍ଭ ଦୋହଲନ୍ତି । କାହାର ଆଗମନ, ସ୍ୱରଶବ୍ଦ, ଅଗ୍ନନିକ କେଉଁ ଡାକଆ କାମର ସୁମରଣା ଝୁଷିର ସୁଖ-ଦୁଃଖର ଅତୀତ ଓ ଆଗରେ ଜାଗ୍ରତ ସପନ ଭାଙ୍ଗେ । ସେ ଚହିଁକ ଉଠେ । ବର୍ତ୍ତମାନର 'ନ-କଲେ-ନ-ଚଳେ' ନିସ୍ୟୋଗ ଭିତରେ ନିଜକୁ ହଜାଇ ଦିଏ ।

ତା'ର ଆଖିର ଆନନ୍ଦ ଓ ମନର ଉଲ୍ଲାସ ଅରକ୍ଷିତର ଅର୍ଦ୍ଦଳରେ ଦଣ୍ଡ-ଗୁଡ଼ିକ ମୁହୂର୍ତ୍ତି ପରି କଟିବାକୁ ଲାଗିଲା । ଅରକ୍ଷିତର ଗୁଲୁଗୁଲୁ କଥା କାନରେ ସତେକି ଅମୃତ ଢ଼ାଳେ । ଦେହରେ ବାଲି ଧୂଳି ଟିକିଏ ଲଗାଇ ଦିଏ ନାହିଁ । ଗରିବର ଯେତିକି ସମ୍ବଳ ସେଇଥିରେ ତା' ପାଇଁ ସେ ଭଲଭଲିକା ପୋଷାକ କିଣି ଆଣେ ।

ଯୁଆଡ଼କୁ ବାହାରିଲେ ପିଲାଟି ସଙ୍ଗରେ ଗୋଡ଼ାଏ; ନ ନେଲେ ରକ୍ଷା ନାହିଁ । ସେ କାନ୍ଦି କାନ୍ଦି ତଳେ ଲୋଟିଯାଏ । ବୁଢ଼ୀ ବିରକ୍ତ ହୁଅନ୍ତି । କହନ୍ତି ନେଇ ଯା ସଙ୍ଗରେ, ଦେଖୁଛୁ ତ ମୋ' ଅବସ୍ଥା । ତା' ପଛରେ ଧାଇଁପାରିବି ନାହିଁ । ଅବେଇଜି ବାର ଉତ୍ପାତ କରିବ । ଅଗତ୍ୟା ଟେଣ୍ଟି ତାକୁ ସଙ୍ଗରେ ନିଏ ।

ନ-ଗ୍ରହିଲା ଲୋକେ ଧାଡ଼ିଏ ଚାହାନ୍ତି । ସ୍ୱାସ୍ଥ୍ୟ-ଭରପୁର ଗୋରା ତକ୍‌ତକ୍ ପିଲାଟି । ଭ୍ରୂଲତା ଓ ଆଖି ସାଙ୍ଗକୁ ମନାଇ ଖଣ୍ଡାଧାର ପରି ନିଖୁଣ ସୁନ୍ଦର ନାକ । ପାନ ପତରିଆ ଟିକି ମୁହଁଟିର ଓଠ ଦିଓଟି ଗୋଲାପି ରଙ୍ଗର । କଳାଭଅଁର ପରି ଆଖିର ଡୋଳା ଦୁଇଟି । ଦେଖିଲା ମଣିଷ, ସ୍ତ୍ରୀ ହେଉ କି ପୁରୁଷ ହେଉ କୋଳ କରିବାକୁ ମନ ବଳାନ୍ତି । ଟେଣ୍ଟିର କାଖରେ ସେ ଥିଲେ ଦୁଇ ହାତ ବଢ଼ାନ୍ତି । ଟେଣ୍ଟିର ସଙ୍ଗରେ ଚାଲୁଥିଲେ, ହାତ ଧରନ୍ତି···

ଅରକ୍ଷିତ କାଖରେ ଥିଲେ ପଛକୁ ମୁହଁ ବୁଲାଏ । ହାତ ଧରିଲେ କାନ୍ଧରେ ମୁହଁ ଛପାଏ । ଟେଣ୍ଟି ଯେତେ ପ୍ରକାରେ ଗେହ୍ଲେଇ ତାକୁ ଯିବାକୁ ପ୍ରବର୍ତ୍ତାଇଲେ ସେ ମାନେ ନାହିଁ ।

ଟେଣ୍ଟି କହେ, ଖରି ଲାଜକୁଳା ହୋଇଛୁ ।

କେଉଁ ସୁହାଗିନୀ କହେ, ହଁ ସ୍ୱେରମୁହାଁଟି । ଦଇବ ତା'କୁ ଝିଅଟିଏ କରି ଗଢ଼ୁଣୁ ପୁଅ କରି ଦେଇଛି । କାହା ବରଗ ହୋଇଛୁ, ହଇଲୋ ଟେଣ୍ଟି ! ତୋ' ମୁହଁପରି ଦିଶୁ ନାହିଁ ତ ? ···

ଆଉ କିଏ କହେ, ହୋଇଥିବ ତା'ର ବାପ ବରଗ । ନାହିଁକି ଟେଣ୍ଟି ! ସେଇଥି ପାଇଁ ସେ ଅଲକ୍ଷଣା ମିଣିପିଟାକୁ ଭୁଲିପାରୁନ । ଯେତେ ଦହଗଞ୍ଜ, ଯେତେ ଅତ୍ୟାଚାର ସେ କଲେ କରୁ, ମଦପାଣି ପିଇ ବାଟର ଧୂଳି-ପଙ୍କରେ ଲୋଟୁ, ତମକୁ ଘରୁ ତଡ଼ି ଅକାଳେ ଖୋଜା ଲୋଡ଼ା ନ କରୁ, ତମେ ସେଇଟାର କନ୍ଦର୍ପ ରୂପକୁ ଭଜ ହେଉଛ ।

ଆଉ ଜଣେ କହିଲା, ଟେଣ୍ଟିଙ୍କର ସେଇଟା ଓଲଟା କଥା । ବୟସ ଥିଲା ଝିଅଟି ତମେ, ରୂପଗୁଣ କାହିଁରେ ଊଣା ନୁହ, ଆଜି ହଁ କଲେ କାଲିକି ନୂଆଘର ନୂଆ ବର ପାଆନ୍ତ । ନୂଆ ଗେରସ୍ତ ତମର ଏଇ ସୁନାପ୍ରତିମା, ପ୍ରାଣରୁ ଅଧିକ ପୁଅକୁ

ଆଦର କରନ୍ତା । ତମର ମନର ଶାନ୍ତି ପାଇଁ, ଆଗ ପାଞ୍ଚମାଣ ଅଉଲ କିସମର ଜମି ତା' ନାମରେ ରେଜିଷ୍ଟ୍ରି କରି ଦିଅନ୍ତା ।

ଆରିକି ପଚାରିଲେ, କିଏ ବା ସେ, ଏଡ଼େ ବଡ଼ ଦାତାକର୍ଣ୍ଣଟା ? ଏ ଯୁଗରେ ଜନମ ହୋଇ ଯୋଜନଗନ୍ଧା ପରି ଛଡ଼ାଫୁଲଟାକୁ ଆଶା ବଳେଇଲା; ପୁଣି ତମକୁ ତା ମନ କଥା କହିଲା, ଗୋ କୁମୁଦ ?

—ଜାଣି ଜାଣି ଅଜଣା ଚାଉଳର ଭାତ ଖାଉଛ କି ସୁବାସୀଅପା ! କିଏ ନ ଜାଣେ ! ଟଭ ନିଜେ କ'ଣ ଜାଣେନି ନାହିଁ ! ସେହି ଶାନ୍ତନୁ ମହାରାଜା, ବଡ଼ ପ୍ରତାପୀ । ଏଇଠି ଅଛନ୍ତି । ସେହି ଯୋଜନଗନ୍ଧାକୁ ଝୁରି ହେଉଛନ୍ତି । କାହିଁକି କଣ ଜାଣ ନାହିଁ !

—କେମିତି ଜାଣିବି ?

—କାହିଁକି ? ମରିବା ଆଗରୁ, ତା ନାଁ କ'ଣଟି, ସେହି ଚଇତନପାହାର ଭରିଯା, ତାକୁ କିଅଣ କହି ଯାଇଥିଲା, ଶୁଣିଥିବ ତ ? ତମେ ଜାଣିଥିବ ମ ଟଭ ! ସରପଞ୍ଚ କି ପରପଞ୍ଚ । ମାଳାଧରି ତମ ନାମ ଜପ କରୁଛି ।

ଟଭ ଅବଗୁଣ ପାଇଲା ନାହିଁ । ଅଳପ ହସିଲା । କହିଲା, ବିମଳାଭଉଜ କ'ଣ କହିଥିଲେ ମୁଁ ନିଜେ ଶୁଣି ନାହିଁ ଗୋ କୁମୁଦଭଉଜ ! ତମର ପରିକା ଆଉ-ମାନେ ଅଛା ପରିହାସରେ ମତେ କହୁଛନ୍ତି । ମୁଁ କାହିଁକି ଖବର ରଖିବି, କାହା ପାଇଁ କେଉଁ ଅଲଙ୍କାର କେଉଁଠି ମାଳି ଗଢ଼ାଉଛି ! ତମେ ଶାସ୍ତ୍ରପୁରାଣ ପଢ଼ି ସବୁ ଜାଣିତ । ଭାବିଚିନ୍ତି ମନେ ଧନେ ନିଶ୍ଚେ କହିବ ।

ହେଲା ଏବେ, ଝିଅ ମତେ ତା ଘରୁ ଚିରଦିନ ପାଇଁ ତଡ଼ିଛି, ଅବା ମୁଁ ତାକୁ ତା'ର ଛୁଆକୁ ପେଟରେ ଧରି ଛାଡ଼ି ଆସିଛି । ତମେ କହିବ କି ଗୋ ଭଉଜ, କେଉଁଥିପାଇଁ ମୁଁ ଦୁଃସ୍ଥ ହେବି ? ଦେହଟାର ଉତ୍ତେଜନାର ଆନନ୍ଦ ମେଣ୍ଟଣ ପାଇଁ ! ପେଟର ଭୋକ ଅବା ମୋ'ର ଛୁଆର ଭବିଷ୍ୟତ ପାଇଁ ? ତମ ବିଚାରରେ କେଉଁଟାର ଗରଜ ମୋ'ର ଅଧିକ ବଳେଇଛି ?

—ତମେ ନିଜେ ବିଚାରୁନା ଟଭ ?

—ମୋ' କଥା ତମେ ବେଶି ଭାବୁଛ ଗୋ ଭଉଜ ! ମତେ ତମେ ବହୁତ ସୁଖ ପାଅ । ମୋ' ପାଇଁ ତମେ ବିଚାରଣା କରିବ । ପିଲାଟା ବ୍ୟସ୍ତ ହେଲାଣି । ଠିଆ ଠିଆ ବାଟରେ ଜୀବନସଉଦା ବେପାରର କି ଆଲୋଚନା କରିବ ? ଯାଉଛି ।

ଟଭ ହସି ହସି ଆଗେଇ ଗଲା । ଘର ବାହୁଡ଼ାବାଟରେ ସେ ବିଚାରୁଥିଲା, ଭଗବାନ ରାଉଙ୍କ ସ୍ତ୍ରୀ କୁମୁଦ ଭଉଜ ଛଅଟି ସନ୍ତାନର ମା । ଚାରୋଟି ଝିଅ, ଦୁଇଟି ପୁଅ । କପିଳ ଜେନାଙ୍କ ଘରଣୀ ସୁବାସୀଙ୍କର ମଧ୍ୟ ଛଅଟି । ତଫାତ ଏତିକି ଯେ ତାଙ୍କର ଚାରି ପୁଅରେ ଦୁଇ ଝିଅ । ଦୁହେଁ ସମବୟସୀ ପୁଣି ଏକା ତିଥିରେ ବାହା । ବାଦରୁଦିଆ ହୋଇ ସର୍ଜନା କରୁଛନ୍ତି । କାହାକୁ କିଏ ଟପିବ କେଜାଣି ?

କୁମୁଦ ଶ୍ୟାମଳୀ, ପାତଳୀ । ଅଳପ ଉଚ୍ଚ ହେଲେ ବି ଟିକିଏ ଡେଙ୍ଗାଳିଆ ଦିଶନ୍ତି । ସୁବାସୀ ଗୌରୀ, ମୋଟା, ସାଧାରଣ ଉଚ୍ଚ । ନିଖୁଣ ମୁହଁ ।

ଖୁସିବାସିଆ 'ଗୃହିଣୀଧରର ବୋହୂ' ଦିଓଟି । ଅଭାବ ଅସୁବିଧା ସତ୍ତ୍ୱେ ସେ ଦିହେଁ ସବୁବେଳେ ଖୁସିମିଜାସିଆ । ଦୁହିଁଙ୍କର ଅଭେଦ୍ୟ ପୀରତି । ଟିଆଠାରୁ ଦଶ-ବାର ବର୍ଷ ବଡ଼ ହେବେ ସେମାନେ ।

ଭଗବାନ ଗିରି ଏ ଚଇତନ ପାଣ୍ଡଙ୍କର ବିଶ୍ୱାସୀ ଲୋକ । ପାଣ୍ଡେ କ'ଣ ତାଙ୍କ ମନର କଥା ଗିରିଏଙ୍କ ଆଗରେ ପ୍ରକାଶ କରୁଥିଲେ, ଅବା ଗିରିଏ ପାଣ୍ଡଙ୍କୁ ଏପରି ପ୍ରସ୍ତାବ ଦେଇଥିଲେ ? କୁମୁଦ ଭାଉଜ ସେ ବିଷୟ କହିଲେ ନାହିଁ । କିଏ ଜାଣେ, ମନରୁ ଗଢ଼ି କେବଳ ତା ଦେହରେ ନିଆଁ ହୁଲା ଗେଞ୍ଜିବାକୁ ଅଟ୍ଟାରେ ସେ ତାକୁ ଚେଙ୍କି ଦେଲେ ? ସତ ବି ହୋଇପାରେ ।

ଟିଆ ପିଲାବେଳର କେତେ ଘଟଣା ମନେ ପକାଏ । ଚଇତନ ପାଣ୍ଡେ, ଯିଏ ତାର ଗାଁ ଲେଖାରେ ଦଇତା ଭାଇ, ତାକୁ କେତେ ସ୍ନେହ କରୁଥିଲେ । ଅତି ପିଲାବେଳେ ଆଦର କରି କୋଳେଇ କାଖେଇ ଗେଲ କରୁଥିଲେ । ସେ ବଡ଼ ହେଲାରୁ ଧୀରେ ଧୀରେ ତା'ର ଲାଜ ସରମ ଘୋଟି ଆସିଲା । ତା'ର ଦୁଃଖରେ କେବେ ସେ ଦୁଃଖିତ ହୋଇ ତାର ପିଠି ଆପଡ଼ି ଦେଉଥିଲେ । ଅଳିଆ କେଶ ଆଙ୍ଗୁଠିରେ ସଜାଡ଼ି ଦେଉଥିଲେ । ନାଟୁଆକୁ ନିନ୍ଦ ଟିଆର ବାପାଙ୍କର ମାଇପ୍ରଗିରିକୁ ନିନ୍ଦୁଥିଲେ । ତା'ର ହାତ ଧରି ଘରକୁ ନେଇ ବଡ଼ ମା'ଙ୍କ ଆଗରେ ଠିଆ କରାଉଥିଲେ । ···

ତାଙ୍କର କଥା ଏବଯାଏ ମନେ ଅଛି । ସେ ତାଙ୍କ ବୋଉଙ୍କୁ କହୁଥିଲେ, ଝିଅ ପାଇଁ ଝୁରି ହେଉଥିଲୁ, ତୋ ଘରେ ରଜ, ଖୁଦୁରୁକୁଣୀ, କୁଆଁରପୁନେଇଁ ହେଉନାହିଁ ବୋଲି । ନେ ଏବେ ଓ୍ୱାରସୀ ଝିଅଟାକୁ ।

—ସ୍ୱେତ କାର୍ତ୍ତିକାର ଝିଅ ପରି ଦିଶୁଛି ରେ ପୁଅ ?

—ତାଙ୍କରି ଝିଅ ସେ ଦିନେ ଥିଲା । ସେହି ରଣଚଣ୍ଡୀ ନାଟୁଆକୁ କେଉଁ ଅଜଣା ମଶାଣିରୁ ଆଣିଲା ଦିନରୁ କାର୍ତ୍ତିକା'ହି ତା' ଝିଅକୁ ଛାଡ଼ି ଦେଇଛି । ଦେଖିଲୁ ତା ପିଠି । କେତେ ନୋଳା ବସିଥିବ ।

—କାର୍ତ୍ତିକା ପାଞ୍ଚଣରେ ମାରେ ?

— କେଜାଣି ? ସେ, ନୋହିଲେ ସେ ରାକ୍ଷସୀ ।

ବଡ଼ମା ପଚାରନ୍ତି, କିଏ ମାରିଛି ଲୋ ଟିଆ ! ତୋ ବାପ, ନା ସେ ନାଟୁଆ ?

ଟିଆ କାନ୍ଦି ଉଠେ । ଜବାବ ଦିଏ ନାହିଁ । ବଡ଼ମା ତାର ହାତ ଧରି ପାଖକୁ ନିଅନ୍ତି । ତା ଦେହରୁ ଅଣ-ଓସାରିଆ ମସିଆ ଲୁଗାଟି ମୁକାଇ ପିଠି ଦେଖି କହନ୍ତି, ଆରେ ପୁଅ, ନିଆଁ ଲଗୀ ତ ଖଣ୍ଡିଆ ଗୁଞ୍ଜୁଣିରେ ପାହାର ଦେଇଛି ।

—କାର୍ତ୍ତିକାବାବୁଙ୍କୁ କହି ସେ ଯୋଗୀମାନଙ୍କୁ ନିସ୍ତାର ଛଡ଼ାଇଦେବ କି ବୋଉ ?

—ସେ କାହିଁକି ମୋ କଥା ଶୁଣିବେ ?

—ଅନେକ ଦିନରୁ ଗୋଟାଏ କୂଟବୁଦ୍ଧି ମୋ ମନରେ ଖେଳୁଛି । କେଉଁ ଦିନରୁ ଜାଣୁ ? ଯେଉଁ ଦିନ କାର୍ତ୍ତିକାବାବୁ ସାମନାରେ, ଭଗବାନ ରାଉ, କଣ୍ଡୁରା ଜେନା ଓ ଅନ୍ୟମାନେ ବି ପାଖରେ ଥିଲେ ଯେ, ସେମାନେ ଶୁଣିଛନ୍ତି, ନାଟୁଆ ମୋର ସପ୍ତପୁରୁଷଙ୍କୁ ଅଭଦ୍ର ଭାଷାରେ ଗାଳି ଦେଇଥିଲା । କଥା କ'ଣ ନା, ଆମର ବଳଦ ଦି' ହଳ ତାଙ୍କ ଶିମୂଳତଳ କିଆରିରେ ପଶି କେଇମୁଠା ଧାନ ଖାଇଦେଲେ । ମୁଁ କ୍ଷତିପୂରଣ ଦେବାକୁ କହିଲି, ତଥାପି ସେ ରାହାବାଳୀ ଭୁଣ୍ଡେଇର ପାଟି ବନ୍ଦ ହେଲା ନାହିଁ । ଘରୁର ଟଙ୍କାକୁ, ସେ ଶୁଣିଛି । ଗଛକୁ ଆଉଜି ସେ ପିଲାଟା ଭୟରେ ଥରୁଥାଏ । ମୁଁ ମରିଗଲି । କାର୍ତ୍ତିକାବାବୁଙ୍କ ପାଖରେ ଗୁହାରି କଲି । ସେ ପାଟି ଖୋଲିଲେ ନାହିଁ । ଅତି ଦୁଃଖରେ ଫେରି ଆସିଲି ।

—ତୁ ସିନା ଘଟଣାଟି ମୋତେ, ଆଉ ତୋ' ବାପାଙ୍କୁ ଲୁଚାଇଲୁରେ ପୁଅ, ପଚାରିଲାରୁ ଏଣୁ ତେଣୁ କହି ଭୁଲାଇ ଦେଲୁ, ହସି ହସି ଗଡ଼ିଗଲୁ, ଆମେ ଅନ୍ୟମାନଙ୍କ ପାଖରୁ ଶୁଣିଥିଲୁ । ତୋ' ବାପା ଯଦି ସତ କଥା ଜାଣିଥାନ୍ତେ, ସେଇ ଡାଆଣୀ, ଆଉ କାର୍ତ୍ତିକ ଏ ଗାଆଁ ଛାଡ଼ି ଚାଲିଯିବାକୁ ବାଧ୍ୟ ହୋଇଥାନ୍ତେ । ଜାଣିଛୁଟି ତାଙ୍କର ରାଗ !

—ସେଥିପାଇଁ ମୁଁ ଅନ୍ୟ ଉପାୟ ପାଞ୍ଚି ରଖିଛି । ତତେ ମୋ' ରାଣ, ତୁ ବାପାଙ୍କୁ କିଛି କହିବୁ ନାହିଁ । କି ଉପାୟ ମୁଁ ଫାନ୍ଦିଛି ସେତିକି ମତେ ପଚାରିବୁ ନାହିଁ । ସେମାନେ ଏଇ ଗାଆଁରେ ରହନ୍ତୁ, ଭଲରେ ରହନ୍ତୁ । କିନ୍ତୁ ମୁହଁ ଲୁଚେଇବା ପାଇଁ ଚିରଦିନ ଅନୁତାପ କରନ୍ତୁ । କାର୍ତ୍ତିକାବାବୁର ଚୁଟି ମୁଁ ହାତରେ ଧରିଛି । ସେ ନାଟୁଆ ଅତି ଉଦ୍‌ବାର୍ମି ହେଲେ, ଏ ପିଲାଟା ଉପରେ ବେଶି ଅତ୍ୟାଚାର କଲେ, କାର୍ତ୍ତିକାବାବୁ ଯଦି ତା'ର ପ୍ରତିକାର ନ କରନ୍ତି, ମୁଁ ତାଙ୍କର ଚୁଟି ଧରି ଟାଣିବି । ଭାବୁଛି, କାର୍ତ୍ତିକାବାବୁଙ୍କୁ କହିବି । ତାଙ୍କୁ ଆଗରୁ ସାବଧାନ କରାଇବି । ଦେଖିବି, ସେ ନାଟୁଆକୁ ଶାସନ କରୁଛନ୍ତି, କି ନ କରୁଛନ୍ତି ।

—ଆରେ ପୁଅ, ଏତେ ବଡ଼ ଭୁଲ କାମ ତୁ କରିବୁ ନାହିଁରେ । ଯାହାକୁ ଏତେ ଭଲ ପାଉଛୁ ସେଇ ଟୋକୀର ଅମଙ୍ଗଳ ତୁ କରିବୁ । ନାଟୁଆ ହାତରେ ନ ମାରି ପିଲାଟାକୁ ଭିତରେ ମାରିବ । କିଏ ଜାଣେ, ଏଡ଼େ ସୁନ୍ଦର ଝିଅଟିକୁ କେବେ ଜହର ଖୋଇ ମାରିଦେବ ।

ଚଇତନ ଭାଇ କ'ଣ ଭାବିଲେ । କହିଲେ, ତୁ ଯାହା କହିଲୁ ସେଇଟା ଠିକ୍ ବୋଉ ! ସିଏ ଗୋଟାକ ପରେ ଗୋଟାଏ ଗେରସ୍ତର ଘର ଛାଡ଼ି ଆସିଛି, ତା ମୁଣ୍ଡ ଭିତରେ ନିଶ୍ଚୟ ଗୋଟାଏ ଦୁଷ୍ଟ ଚାମଣ୍ଡା ବସାବାନ୍ଧି ରହିଛି । କିଏ ଜାଣେ କେତେ-

ବେଳେ ସେ କଣ କରିବ ? କାର୍ତ୍ତିକାଦ ପ୍ରାଣ ଭୟରେ ହୁଏତ ତାଙ୍କୁ କରପଡ଼ ଯୋଡ଼ି ରହିଛନ୍ତି । ଶୁଣିଲି, ନାଟୁଆ କୁଆଡ଼େ ତା'ର ଦ୍ୱିତୀୟ ଶେରସ୍ତକୁ ଜହର ଦେଇ ମାରିଥିଲା ।

—ସତେକି ପୁଅ ?

—କେଜାଣି ? ପାଣୁଆଁ ନାହାକ କୁଆଡ଼େ ସବୁ ଖବର ଯୋଗାଡ଼ କରିଥିଲା । ଟଙ୍କା ଲୋଭରେ କାର୍ତ୍ତିକାଦଙ୍କ ପରି ଭଲ ମଣିଷର ମୁଣ୍ଡରେ ଆଣି ତାକୁ ବସାଇଲା । ମୁଁ ତ ବୁଝୁଛି, ଟଙ୍କା ପଇଁ ଗୋଟିଏ ନିରୀହ ଝିଅର ସର୍ବନାଶ କରିଛି ସେହି ଅର୍ଥଲୋଭୀ ପାଣୁଆଁ । ଦିନେ ତାକୁ ମୁଁ ଥଣ୍ଡା କରିବ ରହ—

ସେଇଟା ପକ୍କା ବଦ୍‌ମାସ । ଯାହା ହେବାର ତ ହୋଇ ସାରିଛି, ଝିଅଟି ବାପଘରେ ଦୁଃଖ ସହୁଛି, ଚକାଡୋଳା ଦୟା କଲେ ବର୍ଷେ ପାଞ୍ଚଟା ଭିତରେ ଯେଉଁଠି ହେଲେ ଶାଶୁ ଘରକୁ ଯିବ । ଦେଖିବୁ ରହ, ସେ କେଡ଼େ ସୁଖରେ ରହିବ । ସୁଦର୍ଶନ ଚକ୍ର ବୁଲୁଛିରେ ପୁଅ ! ଦୁଃଖ ପରେ ସୁଖ, ସୁଖ ପରେ ଦୁଃଖ ସଭିଙ୍କ ଉପରେ ବର୍ତ୍ତି ଯାଉଛି । ଖାଲି ଗୁଡ଼ାଏ ଧନ ଦଉଲତ ଥିଲେ ମଣିଷ କଣ ସୁଖୀ ହୁଏ କି ପୁଅ ? ନଥିଲା ଲୋକ ଯେ ଏକାଥରେ ଦୁଃଖୀ, ଏପରି ବିଚାର ଠିକ୍ ନୁହେଁ । କିଏ କେଉଁଥିରେ ସୁଖୀ, ଅବା ଦୁଃଖୀ, ସେହି କରତାଙ୍କ ଛଡ଼ା କିଏ ଜାଣେ ? ସେହି ତ କରେ, ସେହି କରାଏ । ଏଥିରେ ବିଶ୍ୱାସ ରଖିଥିବ ।

—ହଁ, ବୋଉ ! ଏମିତ କେତେ ମନବୋଧିଆ କଥା ଲୋକେ ରଚନା କରିଛନ୍ତି । ସମସ୍ତେ ସେହି ଗୋଟିଏ ରାହାର ଉପଲକ୍ଷ୍ୟ ଦିଅନ୍ତି—'କରି କରାଉଥାଏ ମୁହିଁ' ଠାକୁରେ କୁଆଡ଼େ ଏକଥା କହିଛନ୍ତି । ଏଇ କଥାକୁ ଜପିଲେ, କାହାର ଦୁଃଖ ପାଇଁ, ସେ ଯେତେ ବଡ଼ ଦୁଃଖ ହେଉ, ଅନ୍ୟର ଦୋଷ ଦେଇ ହେବ ନାହିଁ । ଯେଉଁ ଝିଅଟିକୁ ଏତେ ସ୍ନେହରେ, କି ଦୟା ପାଇ, କୋଡ଼କୁ ଆଉଜାଇ ତା ଅଳିଆ କେଶ ସଜାଡ଼ୁଛୁ, ନାଟୁଆ ତା'କୁ କେଉଁ ନରକକୁ ଠେଲିବ କିଏ ଜାଣେ ? ସେତେବେଳେ ବି ଠାକୁରଙ୍କ କଥାର ଉପଲକ୍ଷ୍ୟ ଦିଆଯାଇ ପାରିବ ? ସେହି ପଦକ ବୋଲି ସମସ୍ତେ ନିଶ୍ଚିନ୍ତ ରହିବ ?

ଝିଅର ବଡ଼ମାଙ୍କର ହାତ ଝିଅର କେଶ ଉପରେ ଅଟକିଗଲା । ସେ ଚଇତନ ଭାଇଙ୍କ ମୁହଁକୁ ଅନାଇଁଲେ । ଦୀର୍ଘଶ୍ୱାସ ଛାଡ଼ି କହିଲେ, ଏଇ ଝିଅଟି ଯଦି ଦଶ ବର୍ଷ ଆଗରୁ ଜନମି ଥାଆନ୍ତା, ମୁଁ ଧନ ଦରବ କିଛି ଖୋଜନ୍ତି ନାହିଁ । କାର୍ତ୍ତିକ ମୋ' ଆଶା ନ ମେଣ୍ଟାଇ ଯାଆନ୍ତେ କୁଆଡ଼େ ?

ଚଇତନ ପାଣ୍ଡେ ତାଙ୍କ ବୋଉଙ୍କ ଆଗରୁ ଧୀରେ ଧୀରେ ଖସି ଚାଲି ଯାଇଥିଲେ । ତାଙ୍କ ବୋଉ ଝିଅର ମୁଣ୍ଡ ବାନ୍ଧିଦେଲେ । ଆଦର ଯତ୍ନରେ ତାକୁ ଖୋଇ ଦେଇ ନାଟୁଆର ଢଙ୍ଗ ଓ ବ୍ୟବହାର ସମ୍ବନ୍ଧରେ କେତେ କଥା ପଚାରି ବୁଝିଲେ ।

ଦଶ ବର୍ଷ ପୂରି ଏଗାର ଚାଲିଥିବା ନିର୍ମଳା ଝିଅଟି ମନ ଖୋଲି ତାର ସବୁ ଦୁଃଖ ବର୍ଣ୍ଣନା କରିଥିଲା । ବିଦାୟ ନେଇ ଆସିଲା ବେଳକୁ ସେହି ବଡ଼ମା କହିଲେ, ନାଟୁଆ ତୋତେ ପଚାରିଲେ ତୁ ମୋ' ନାଁ କହିବୁ । ତତେ ଯଦି ସେ ମାରେ, ନିଶ୍ଚେ ଆସି ମତେ ଜଣାଇବୁ ମା, ପରି ମଣିବୁ ନାହିଁ । ମୁଁ ତା'କୁ ଏମିତି ଶାସନ କରିବି ତୁ ଫେର୍ ଦେଖିବୁ, ମଲାଯାଏ ସେ ମନେ ରଖିଥିବ ।...

ନାଟୁଆ କିଛି ପଚାରିବା ଆଗରୁ ଝିଅର ଜେଜେମା ତାକୁ ସବୁ ପଚାରି ବୁଝିଥିଲେ । ସେହି ହେଲେ ତା'ର ସେ ଦିନର ରକ୍ଷାକବଚ । ଏବଯାଏ ଦୁଃଖିନୀ ଝିଅ ସେ କାଳର ମଣିଷ, ଘଟଣା ଓ ବଚନିକା ଭୁଲି ପାରିନାହିଁ ।

ଚଇତନ ପାତ୍ର ଓ ତାଙ୍କ ବୋଉଙ୍କ ଭିତରେ ସେଦିନର କଥୋପକଥନର ମର୍ମ ବୟସ ବଢ଼ିବା ସଙ୍ଗେ ଝିଅ ଯେତିକି ଅଧିକରୁ ଅଧିକ ଅବଗତ ହେଲା, ତା'କୁ ଲାଜସରମ ସେତିକି ଘୋଟିଆସିଲା । ସେ ତାଙ୍କ ଘରକୁ ଯିବାକୁ ସଙ୍କୁଚିତ ହେଲା । ମାତ୍ର ଗୋଟିଏ ବର୍ଷ ପରେ ବିମଳା ବୋଉ ହୋଇ ଆସିଲେ ।

ଆହା, ସେ ଆଜି ସ୍ୱର୍ଗପୁରରେ । ଚଇତନ ପାତ୍ର ସତେ କ'ଣ ତାଙ୍କର ସେକାଳର ସ୍ନେହକୁ ଜୀବନ ଦେଇଛନ୍ତି ? ସେ ହୁଏତ ମଣିଛନ୍ତି, ଗେରସ୍ତର ସବୁ ଦୁର୍ଗୁଣର ପରିଚୟ ପାଇ, ତା'ର ଅତ୍ୟାଚାର ଅଙ୍ଗେ ନିଭାଇ, କ୍ଷୋଭକୁ ତଡ଼ାଖାଇ ପାଞ୍ଚବର୍ଷକାଳ ଅଲଗା ରହିଥିବା ଦୁଃଖିନୀ ଝିଅ ତା'ର ସେ କାଳର ସ୍ୱାମୀ ଓ ଶଶୁର ଘର ସଙ୍ଗେ ସମ୍ପର୍କ ତୁଟାଇ ସାରିଛି । ତା'ର ମମତା ମରିଛି । ନୂଆ ସଂସାର ପାତି ହତଭାଗ୍ୟ ପିଲାଟିର ଟଳଟଳ ଅନିଶ୍ଚିତ ଭବିଷ୍ୟକୁ ଦୃଢ଼ ଓ ନିଶ୍ଚିତ କରିବାକୁ ଝିଅ ଅରାଜି ହେବ ନାହିଁ । ମଝି ଦରିଆରେ ଉବୁଟୁବୁ ହେଉଥିବା ଝିଅ କୂଳରେ ଲାଗିବ ।

ଝିଅ ଭାବେ, ସେ ନିଜେ କ'ଣ ଚାହେଁ ନିଜେ ସ୍ଥିର କରି ପାରୁ ନାହିଁ ? ତା'ର ମନର ଦୋହଲପଣ ନିଜକୁ ନିଜେ ଦେଖି ପରଖିବାକୁ କୁତୂହଳୀ କରେ । ଛନଛନ ଯୌବନକୁ ଗେରସ୍ତ ବୋଲାଉଥିବା ଗୋଟାଏ ରାକ୍ଷସ ଉପ୍ରୋଧ ନ ରଖି ଲୁଟି ନେଇଛି । ଯାହାକୁ ସେ ଦୁତିଅ ଗେରସ୍ତ କରିବ, ତାକୁ ସେ କ'ଣ ଭେଟି ଦେଇ ପାରିବ ? ସ୍ନେହ, ଭକ୍ତି, ଆନୁଗତ୍ୟ, ବିଶ୍ୱାସ ଓ କର୍ମନିପୁଣତାରେ ଧନ-ସମ୍ପଦ ଥିବା ଜଣେ ଯୁବକର ମନକୁ ସେ କ'ଣ ଆପଣାର କରିପାରିବ ? ଚଇତନ ପାତ୍ର ତା'ଠାରୁ ଦଶ ବାର ବର୍ଷ ବଡ଼ । କିନ୍ତୁ ସେ ପୁରୁଷ-ପିଲା । ସ୍ତ୍ରୀମାନଙ୍କ ପରି ସେମାନଙ୍କର ଦେହ ଓ ମନକୁ ବୟସ ଶୀଘ୍ର ବୁଢ଼ା କରିଦିଏ ନାହିଁ ।

ନିଜକୁ ନିଜେ ଝିଅ ଆକଟ କରେ । ଛି ଛି, କେଡ଼େ ଅବାନ୍ତର ଅଲାଜୁକ ଚିନ୍ତା ସେ ମନରେ ଖେଳାଉଛି । ଆଗତ ବଢେଇ ପାଇଁ ବେସର ବାଟୁଛି । ଚଇତନ

ପାଣେ ଆକାଶ କଇଁଆ । ସେ ଝିଅ କେଉଁ ମଣିଷରେ ଗଣତ ? ଘର ଚଳିବାର ମୀନ । ତୁଚ୍ଛା ନବକଳଆ ଉପନ୍ୟାସକୁ ଏତେ ବଷ୍ଟର ?. ତା'ଠାରୁ ବଳି ବଡ଼ ନବୁଁଦ୍ଧିଆ, ଅଲଜୁକୀ ଆଉ କଏ ଅଛି ?

ସେହିସବୁ ନବଳ-ନଭେଲର ଅଦେଖା ପ୍ରଭାବ ଝିଅର ମନରେ ଯେଉଁ ଉତ୍ତେଜନା ସୃଷ୍ଟି କଲା, ସେଥିରେ ତାର ସ୍ୱଭାବପ୍ରକୃତି ଓ ଚଳଣିଢ଼ଙ୍ଗ ଧୀରେ ଧୀରେ ବଦଳିବାକୁ ଲାଗିଲା । ବାହାରର ମଣିଷେ କେହି ଲକ୍ଷ୍ୟ କରନ୍ତୁ ବା ନାହିଁ, ତା'ର ଶ୍ରେଗଣୀ ଜେଜେମା ଯେତକ ବୁଝି ପାରୁଥିଲେ । ଖୁସି ହେଉଥିଲେ । ମନେ କରୁଥିଲେ, ଝିଅ ନୂଆ ଦେହଧର ପୁଣି ଯେପରି ଦସ୍ତପରେ ଗୋଟିଏ ଯୁଗ ପଛକୁ ଫେରି ଆସିଛି ।

ବାପ କାର୍ତ୍ତିକର ଗେହ୍ଲା ଝିଅ, ଆଖିର ପିତୁଳା, ମା-ଛେଉଣ୍ଡ ଝିଅଟି ସେ, ତା'ର ଜେଜେମା'ଙ୍କର ଗେଲବସରର ନାତୁଣୀ । ହସୁଛି, ଖେଳୁଛି, ଜୀବନ୍ତ-କଣ୍ଢେଇଟିକୁ ସଜବାଜ କରି ନଚାଉଛି । ତା'କୁ ଧରି ନାଚ କରୁଛି । ନିଜେ ଗୀତ ବୋଲି ତା'କୁ ଦୋଳାଉଛି । ସେହି କଣ୍ଢେଇଟି ସଙ୍ଗେ କଳିଆ କରୁଛି । ଖୁରିଖାଲବ ଲଗାଉଛି ଆପଣାର ଟିକି ଭଉଣୀ ପରି । ଜେଜେମା' ପାଖରେ ଦୁହିଁଙ୍କର ଗୁହାରି ।

ବୁଢ଼ୀ ଦେଖନ୍ତି—ଯେଉଁ ନାତୁଣୀଟି ବୋଲି ନ ମାନି କୂଅ ମୂଳରେ ଲୁଖୁରୁ ଦେହରେ ଭୁସ୍ ଭୁସ୍ କରି ଦ' ଘର ଲୋଟା ପାଣି ଅକାଡ଼ି ହୋଇପଡ଼େ, ଯାହାର ବେକରେ ଆଣ୍ଠୁଏ ମଳି ବସିଥାଏ, ସେ ଏବେ ବାସନା ସାବୁନ ଦୁଇଥର ବୋଳି ହେଉଛି । ଦେହକୁ ରଗଡ଼ି ରଗଡ଼ି ପରିଷ୍କାର କରୁଛି । ଜାଣି ତ ଅରକ୍ଷିତକୁ । ଲୁଖୁରୁ କେଶ ଅଠାଳିଆ ହେଉଥିଲା । କୁଣ୍ଡାଇ ଦେବାକୁ ପାଖକୁ ଡାକିଲେ ବେଳ ନାହିଁ କହି ସିଏ କରଛଡ଼ା ଦେଉଥିଲା, ସେ ନିଜେ କେଶକୁ ତେଲ ଜୁଡ଼ୁ ବୁଡ଼ୁ କରି ପନ୍ଦରେ କୁଣ୍ଡାଉଛି । ଆଖି ଯୋଡ଼ିକ ଲୁଖୁରୁ ରଖୁ ନାହିଁ । କଜଳ ମଣ୍ଡୁଛି । ସୂନ୍ଥାର ସିନ୍ଦୂର ଅଛି କି ନ ଅଛି ଜଣା ପଡ଼ୁନାହିଁ । କପାଳ ଉପରେ ଟିପ ପରିମାଣ ଝୋପାଟି କମି କମି ଖଡ଼ିକା ଅଗପରି ହେଲାଣି । ଦେହରେ ଜାମା ।

ଝିଅ ଅଭିଆଡ଼ୀ ପରି ପରତେ ହେଉଛି । ଖୁସିବାସିଆ ଚାଷୀ ଘରର ରାଜା-ଝିଅ । କଥାକଥାକେ ହସ । ତଥାପି କେଉଁ କାମରେ ହେଳା ନାହିଁ । ଦେହରେ ଅଳସ ଟିକିଏ ଦେଖିବ ନାହିଁ । ଶାଶୁଘରର ଗୁଡ଼ି ଆସିଲା ବେଳର ଗଣ୍ଡି ଝଡ଼ି ଗଲାଣି । ଅଧିକରେ ଅଛି । ସେଇଥିପାଇଁ ହେବ ପରା, ଅଧିକ ଚଞ୍ଚଳ, ବେଶୀ କାମିକା ହୋଇଛି ।

ବୁଢ଼ୀ ବିସ୍ମରନ୍ତି ଭଲ ହୋଇଛି । ମଣିକୁଦର ଜୀବନ ଓ ଚଳନ ସପନ ଦେଖି ଭୁଲିଗଲା ପରି ଝିଅ ଭୁଲି ସାରିଲଣି । ଗାଆଁର ଆଉ ପାଞ୍ଚଟା ଝିଅବୋହୂଙ୍କ ସଙ୍ଗେ ମିଶୁଛି । କେଉଁମାନେ ବେଳେବେଳେ ଆସି ଖୁସିଗପ କରୁଛନ୍ତି । ହସିହସି ଲେଟି ଯାଉଛନ୍ତି ।

ଗ୍ରେଟ ଗ୍ରେଟ ପିଲାଏ ଆସିଲେ, ଅନ୍ୟ କେଉଁ ଟୋଲ ମାଇପିଙ୍କ ପରି ଟେଞ୍ଚି ନାକ ଟେକେ ନାହିଁ । ଆଦର ସ୍ନେହ କରେ । ଅସଜଡ଼ା କେଶ ସଜାଡ଼ିଦିଏ । ନିଜ ଗଛରୁ ପିଜୁଳି ତୋଳି ସେମାନଙ୍କୁ ଦିଏ । କେବେ କେବେ ପାଚିଲା କଦଳୀ ଖୁଆଏ । ସେମାନେ ଅରକ୍ଷିତର ସାଙ୍ଗସାଥୀ । ପରପିଲା ନିଜ ପିଲାର ଭେଦ ସେ ଦେଖେ ନାହିଁ । ସେମାନଙ୍କ ମା'ମାନେ ଆସନ୍ତି । ସ୍ନେହଶୀଳା ଟେଞ୍ଚିର ଗୁଣ ପ୍ରଶଂସନ୍ତି । ଟେଞ୍ଚିର ଶୁଭ ମନାସନ୍ତି । ତା'ର ଚଳଣି ଓ ରୂପ ଢଙ୍ଗର ପରିବର୍ତ୍ତନ ସେମାନଙ୍କ ଆଖିରେ ପଡ଼େ ।

ସାଧାରଣ ମଣିଷର କୁତୂହଳୀ ପର-ଛିଦ୍ରାନ୍ୱେଷୀ ମନରେ କେତେ ଜାତିର ସମ୍ଭାବନା ପ୍ରଶ୍ନିଳ ହୁଏ । ପଡ଼ିଶାଚାକ ଟେଞ୍ଚି ତ ସଦାବେଳେ କିଛି କାମରେ ଲାଗିଥାଏ, ଆଉ ସେହି କାମର ଫାଙ୍କରେ ଗଲା-ଆଇଲାଙ୍କୁ ନିଜର ହସହସ ସ୍ନେହଭରା ବ୍ୟବହାରରେ କଣି ଆପଣାର କରେ । କ'ଣ ପଦେ ଶ୍ଳେଷବାକ୍ୟରେ ପଚାରିବାକୁ ତାଙ୍କ ଜିଭ ଓଲଟେ ନାହିଁ । ଯେଉଁ ସମ୍ଭାବନାଟି ମନରେ ଘୋରିଡେଇ ହୁଏ, ତୁଣ୍ଡରୁ ଖସାଇବାକୁ ତାଙ୍କୁ ସଙ୍କୋଚ ଲାଗେ ।

ନିଜ ମନ ନିଜକୁ ଝିଙ୍ଗାସି ଆକଟେ—ଏ ଝିଅକୁ ଦେଖିଲେ, ତା' ସ୍ୱଭାବ-ପ୍ରକୃତି ଚିହ୍ନିଲେ, କିଏ ସେ କଣି ନ ହେବ ଯେ । ମଲାଆଗରୁ ବମଲା କ'ଣ କହି-ଗଲେ ବୋଲି ତେଲ ଘଡ଼ିରେ ମାଛି ପଡ଼ିବାର ମଣିବ ? ସଜ-ମାଛରେ ପୋକ ପଡ଼ିବାର ସନ୍ଦେହ କରିବ ?

କେହି କେବେ ଟେଞ୍ଚିକୁ ପାଣ୍ଡିଙ୍କ ଘରଆଡ଼େ ଯିବାର ଦେଖି ନାହିଁ । ଯେଉଁ କାର୍ତ୍ତିକା ମହାନ୍ତିଙ୍କୁ ଜେଲ ଦେଇ ତା ଜମିକୁ ପାଣ୍ଡେ ଦଖଲ କରିଛନ୍ତି, ତା' ଝିଅଟା ଘରିତା ଛାଡ଼ି ଆସିଛି, ଘରେ ଏକା ଅଛି ଜାଣି ସେ ଏ ସାହିର ବାଟ ମାଡ଼ନ୍ତି ନାହିଁ । ଚଇତନ ପାଣ୍ଡେ ଯେତେ କୁକର୍ମୀ ଅର୍ଥଲୋଭୀ ହେଉନ୍ତୁ ପଛେ ତାଙ୍କ ଚରିତ୍ରସ୍ୱଭାବରେ କାଳି ବୋଳିବ, ଏପରି ଲୋକ କେହି ନାହିଁ ।

ହଁ, ଆଉ ପିଲାଙ୍କ ସଙ୍ଗରେ ପାଣ୍ଡିଙ୍କର ଗ୍ରେଟାପୁଅଟି ଏବେ ତା'ର ଚକଲଗା ଗ୍ରେଟ କାଠଗାଡ଼ିରେ ହାତକୁ ତଳେ ଆଣ୍ଠୁଲାଇ ଗାଡ଼ି ଗଡ଼ାଇ ଆସେ । ତା'କୁ ଜଗିବାକୁ ରଖା ହୋଇଥିବା ଚାକରଟୋକା ତା' ପଛରେ ଧାଇଁଥାଏ । କେଉଁ ପିଲାରେ ଲେଖା ବୋଲି ଗ୍ରେଟାକୁ ଡାକନ୍ତି ଅଲେଖା ।

ତା'କୁ ବି ଟେଞ୍ଚି ସ୍ନେହ କରେ । ଆଉଁସି ଦିଏ । ଅନ୍ୟ ପିଲାଙ୍କ ପରି ତା'ର ମୁଣ୍ଡ କୁଣ୍ଡାଇଦିଏ । ଆଖିରେ କଜଳ ଲଗାଏ । ଫଳ ଦିଏ । ପଦେ ଖାଲି କହେ, ଆହା, ହତଭାଗ୍ୟଟି !

ସେଥିରୁ କଦର୍ଥ କାଢ଼ିବ କିଏ ? ଟେଞ୍ଚି ତ ସବୁ ପିଲାଙ୍କୁ ସ୍ନେହ କରେ । ପାଞ୍ଚ ପୁରି ଛଅ ଚାଲୁଥିବା ଗ୍ରେଟାପିଲା ଅଲେଖକୁ କାଖ କରି ଟେଞ୍ଚି ତା' ବାରିରେ ବୁଲାଏ ।

ଆଦର କରି ତା'ର ସୁନ୍ଦର ମୁହଁରେ ଗେଲ କରେ । ତା'କୁ ପୁଣି ସେମିତ କାଖ କରି ଦାଣ୍ଡକୁ ଆଣେ । ତା'ର କାଠଗାଡ଼ିରେ ବସାଇ ଗ୍ଭକର ଜମା ଘୁଞ୍ଚିବଦଏ । ଏଥିରୁ ଝୋର ଉଦାର ମନର ପରଚେ ମିଳେ ସିନା !

ଅଲେଖ ବାରମ୍ବାର ଆସେ । ଅରକ୍ଷିତ ସଙ୍ଗେ ଖେଳେ । ଜେଜେମା ଅଗଣାରେ ଜଗି ବସିଥାନ୍ତି । ଝୋ ନିଜ କାମରେ ଲଗିଥାଏ । ଭୁଲରେ କେବେ ଅଲେଖକୁ ତାଙ୍କର ଘରଖବର ପଚ୍ଚରେ ନାହିଁ । ଜେଜେମା ଏଣୁ ତେଣୁ ପଚ୍ଚରିଲେ, ତା'ର କାନରେ ପଡ଼ିଲେ, ସବୁ କାମ ଛାଡ଼ି ସେ ଅସ୍ତବ୍ୟସ୍ତ ହୋଇ ପାଖକୁ ଧାଇଁ ଆସେ । ବୁଢ଼ୀଙ୍କର କାନ ପାଖରେ ଗୁଣୁଗୁଣୁ କହେ, ମା, ପିଲାଟିକୁ ତୁ ତାଙ୍କ ଘରକଥା କେବେ କିଛି ପଚ୍ଚରିବୁ ନାହିଁ । ପିଲାଏ ସ୍ନେହରଙ୍କୁଣୀ । ଖେଳିବାକୁ ଆସିଛି । ସେ ଖେଳୁ, ଫେରି ଯାଉ ।

—ଆଲେ, ତା' ମନକୁ ସେ କେତେ କଅଣ ଗପୁଛି ମ, ଖୁଣରେ ଗୁଣ ଲୋ ! ବାରି ଗ୍ଭଲଖ ।

—ଜାଣିଛୁ ଟି ? ପରଘରର ହାନିଲାଭ ଖବର ଆମର ଶୁଣିବା, ଜାଣିବା ଦରକାର ନାହିଁ । ସେ କହିବାକୁ ବସିଲେ ତାକୁ ବାଆଁରେଇ ତା' ମନ ଖେଳଆଡ଼କୁ ଅଡ଼େଇ ନେବୁ ।

ବୁଢ଼ୀ ଝୋର ଉପଦେଶ ମାନନ୍ତି ।

ଆଜି ଶିବ-ଚତୁର୍ଦ୍ଦଶୀ । ଜାଗର ।

ଅରକ୍ଷିତର ଜନ୍ମଦିନ । ତା' ପାଇଁ ନୂଆ ଜାମା ନୂଆ ଅଧାପ୍ୟାଣ୍ଟ ଝୋ କଣେଇଁ ଆଣିଛି । ଆଜିଠାରୁ ତାକୁ ପାଞ୍ଚ ବର୍ଷ ଗ୍ଭଲିବ । ରାତ ଅଧଯାଏ କାଲି ସେ ବରି ଗ୍ଭଉଳ ବାଟି ରଖିଥିଲା । ନିତ୍ୟକର୍ମ ସାରି ପିଠା କରିବ—ବୁନ୍ଦାଚକୁଳି, ସରୁଚକୁଳି, ଦୁଗ୍ଧପତର, ବରିବରା, କାକରା, କ୍ଷୀରି । ଠାକୁରଙ୍କ ପାଖରେ ପାଣି ଛଡ଼ାଇ ପୁଅକୁ ଖୋଇବ । ପାଖପଡ଼ିଶା ଘରର ପିଲାମାନଙ୍କୁ ଡାକି ଖାଇବାକୁ ଦେବ ।

ଝୋର ମନ ହେଲା ଚଇତନ ପାଣ୍ଡଙ୍କ ପୁଅକୁ ଡାକିବ । ସେ କାହା ହାତରେ ଖବର ପଠାଇବ । କିନ୍ତୁ, ଭରସି ପାରିଲା ନାହିଁ । ଗାଆଁରେ ଯେତେ ସ୍ରେଟ ସ୍ରେଟ ପିଲା ଅଛନ୍ତି, ସମସ୍ତଙ୍କୁ ଡାକିବାକୁ ତା'ର ତର ନାହିଁ । ବଳ କି ସମ୍ବଳ ନାହିଁ । ଦୂରସାହିର ଗୋଟିଏ ପିଲାକୁ ଡାକିଲେ କଥାଟା ସୁନ୍ଦର ହେବ ନାହିଁ । କିଏ କେତେ କ'ଣ ଭାବିବେ । ହୁଏ ତ ଲୋକେ ପଦେ ଛଳେଇ କହିଦେବେ । ନ ଡାକିବା ଭଲ । ···

ଦଇବଯୋଗ । ଝିଅର ମନକଥା ମନରେ ମିଳାଇବା ଆଗରୁ ଦାଣ୍ଡ କବାଟ ବାଡ଼େଇ କିଏ ଡ଼ାକ ଛାଡ଼ିଲା, ଆଇ, ଆଇ— । ମାଇଚିଆ ସ୍ୱରରୁ ଝିଅ ବାରିଲା । ବୁଝିଲା ମଧୁଆ ଡ଼ାକୁଛି, ଚଇତନ ପାଣଙ୍କ ଘୃକର ଟୋକା । ସତର ଅଠର ବର୍ଷର ଗୋଲଗାଲିଆ ବଳିଷ୍ଠ କମାର ପିଲାଟି । ତମ୍ବାଳିଆ ରଙ୍ଗ । ବେଢ଼ାଳିଆ ଢଙ୍ଗ । ମାଇଚିଆ ସ୍ୱର । ପିଲାଦିନରୁ ବାପ ଓ ମାଆଙ୍କୁ ହରାଇ ଗରିବ ପିଲାଟି ମାଉସୀ ଘରେ ଆଶ୍ରା ନେଇଛି । କୁଳବେଉସା ଛାଡ଼ି ପରଘରେ ଘୃକରି କରିଛି । ତାଆରି ପାନି ପରି ଶୁଭୁଛି ।

କାହିଁକି ଆସିଛି, ଏକା ଆସିଛି କି ସଙ୍ଗରେ ଅଲେଖାକୁ ଆଣିଛି, ଏହିପରି ବିସ୍ମୃତି ଝିଅ ଦାଣ୍ଡ କବାଟ ଖୋଲିଲା । ଦେଖିଲା, ଅଲେଖା ବି ଆସିଛି । ତା' ଚକ ଗାଡ଼ିରୁ ଓହ୍ଲାଇ ସେ ମଧ୍ୟ ଆସି କବାଟ ପାଖରେ ବସିଛି । ଆଗ ସେଇ କହିଲା, ଆଜି ଅରକ୍ଷିତର ଜନମ ଦିନ ମାଉସୀ ? ସେ କାଇଁ ?

ଜୀବନ ନ ଥିଲା ପିଣ୍ଡଟି ପରି ଝିଅ କ୍ଷଣେ ଥକ୍‌କା ହୋଇ ଠିଆ ହେଲା । ସତେ କି ସେ ତା'ର ଦେଖିବା, କହିବା, ବୁଝିବାର ଜ୍ଞାନ ସହସା ହଜାଇ ବସିଲା । ମଧୁଆ କହିଲା, ନିଅ, ବାବୁ କଅଣ ପଠେଇଛନ୍ତି, ତମ ପୁଅ ପେଇଁକି ।

ଅରକ୍ଷିତ ତା'ର ନୂଆ ଜାମା ପିନ୍ଧି ମୁଣ୍ଡରେ ଚନ୍ଦନ ପାଟୀ ଓ ଆଖିରେ କଜଳ ଲଗାଇ ଧାଇଁ ଆସିଥିଲା । ପାଟି କରି ଅଲେଖକୁ ଜଣାଇଁ ଦେଇଥିଲା, ମୋ' ଜାମା ଦେଖ୍ । ଆମର ଭଉଣି ପିଠା ହେଇଛି । ତୁ ବି ଖାଇବୁ ଅଲେଖା ।

ମଧୁଆ ପୁଡ଼ାଟିଏ ବଢ଼ାଇଦେଲା । ସେଇଟି ଖବର କାଗଜରେ ଗୁଡ଼ା ହୋଇଥିଲା । ଝିଅ ହାତରେ ଧରି ନିର୍ବାକ୍ ହୋଇ ଭାବିବାକୁ ଲାଗିଲା, ଏ ଗାଆଁରେ ଅରକ୍ଷିତର ଡଜନେଟି ଜନ୍ମ ଦିନ ଆଗରୁ ହୋଇସାରିଛି । ଚଇତନ ପାଣେ କେବେ କିଛି ପଠାଇ ନାହାନ୍ତି । କାହିଁକି ପଠାନ୍ତେ ? ସେ ତାର ସ-ଗୋତ୍ର ଭାଇ ନୁହନ୍ତି । ଗାଆଁ ଭାଇ । ଖାଲି ଏକା ଜାତି ।

ସବୁ ଜାତିର କୁଟୁମ୍ବ କାଳକାଳରୁ ଏ ଗାଆଁରେ ଘରକରି ରହିଛନ୍ତି । କିଏ ଥିଲାର, କିଏ ଖୁସିବାସିଆ, କିଏ ମୂଲିଆ, ଗରିବ । ପଡ଼-ଅପଡ଼ ସଙ୍ଗକୁ ସ୍ନେହ-ଶରଧା, ରାଗଦ୍ୱେଷ କରି ରହିଥାଏ । ଜାତିଗୋତ୍ର ଭୁଲି କିଏ କାହାକୁ କେଉଁ ସମ୍ବନ୍ଧ ପାତି ଡ଼ାକେ । ସେହି ସମ୍ବନ୍ଧ ଆଗକା କେଉଁ ପିଢ଼ିରୁ ଲମ୍ବି ଆସିଥାଏ । ଅବା, ନୂଆ ହୋଇଥିଲେ ତଳପିଢ଼ିକୁ ଲମ୍ବିଯାଏ । ପାଣଘର ସଙ୍ଗେ ସମ୍ବନ୍ଧ ସେହି ପ୍ରକାରର । ବିମଳାଙ୍କର ସ୍ୱର୍ଗବାସର ବର୍ଷ ପୂରି ନାହିଁ । ଚଇତନ ପାଣେ କାହିଁକି ଆଜି କ'ଣ ପଠାଇ ଦେଇଛନ୍ତି ?

ଖୋଲି ଦେଖିବାକୁ ଈଶ୍ୱର ସାହସ ହେଲା ନାହିଁ । ଭାବିଲା, ଅରକ୍ଷିତର ଜନ୍ମଦିନ ବୋଲି ସେ ଜାଣନ୍ତି । ଅଲେଖ ଶୁଣି ଯାଇଥିବ । କହିଥିବ । କେଜାଣି, ଚଇତନପାଣ୍ଡେ ନିଜେ ଜାଣିଥିବେ ।

ଅଳେଖ ଘୁମୁରି ଘୁମୁରି ଅରକ୍ଷିତ ସଙ୍ଗରେ ଅଗଣାକୁ ଚାଲିଯାଇଥିଲା । ଈଶ୍ୱ ସେମାନଙ୍କୁ ଚାହିଁ, ପୁଡ଼ାକୁ କାନି ତଳେ ଲୁଚାଇ ଅଗଣାକୁ ଚାଲିଆସିଲା । କେଜେମା ଆଗରେ ପ୍ରକାଶ କରିବାକୁ ସେ ସଙ୍କୁଚିତ ହେଉଥିଲା । କ'ଣ ସେ ଭାବିବ, କ'ଣ କହିବ, କିଏ ଜାଣେ ? ମନ ଝୁସିରେ, କଥା ନହସରେ ସେ ଆଉ କାହା ଆଗରେ ଗପିଦେବ । ବଢ଼ିପାଣି ପରି, ଉଣ୍ଡାଇବ ସହସ୍ରକୋଶ ମାଡ଼ିଯିବ । ଦେଖିଲାପରି ସବୁ କଥାରେ ଲଥା ଲଗାଇ ଅଘରଦୁଆରୀ ତା' ନାଁରେ ଅସନା ଅସମ୍ଭବ କଥା ଗପିବେ ।

ଈଶ୍ୱ ତରତର ହୋଇ ତା' ରହିଲା ବଖରାକୁ ଆସିଲା । ପୁଡ଼ାକୁ କାଠ-ବାକ୍ସ ଭିତରେ ଲୁଚାଇଦେଲା । ଆଶ୍ୱସ୍ତ ହେଲା । ଖରା ଟାଣ ହେଉଛି । ସାହି-ପିଲାଙ୍କୁ ଡାକିବ । ଅରକ୍ଷିତକୁ ବନ୍ଦାପନା କରିବ । ସେଇଠୁ ସମସ୍ତଙ୍କୁ ଖାଇବାକୁ ଦେବ । ଅଳେଖକୁ ତାଙ୍କ ଘରକୁ ପଠାଇଲା ପରେ ଆଉ ଯାହା କରିବ ।

ମହେଶ୍ୱର ମହାଦେବଙ୍କର ଆଜି ଜାଗର ଯାତ । ଲୋକେ କହନ୍ତି ସେ କୁଆଡ଼େ ପ୍ରତ୍ୟକ୍ଷ ଦେବତା । 'ଡାକିଲେ ଜବାବ ଦିଅନ୍ତି । ଭକ୍ତିରେ ପୂଜାକରି ଯାହା ମନାସିଲେ ସେ ବର ଦିଅନ୍ତି । ଦୁଃଖ ହରନ୍ତି । ଗାଁ-ଗହ୍ୱର-ପାରି ଗ୍ରେଟ ବଣ ଭିତରେ ତାଙ୍କର ପୁରୁଣା ମନ୍ଦିର । କେଉଁ କାଳର କେଜାଣି, ଫାଟି ଆଁ କଲାଣି । ବେଢ଼ା କେବଠୁ ଭାଙ୍ଗିଛି । ମାଙ୍କଡ଼ା ପଥରଗୁଡ଼ାକ ଅଜାଡ଼ି ହୋଇ ତଳେ ପଡ଼ିଛି । ପଥରବନ୍ଧା ଗ୍ରେଟପୋଖରୀର ଆଣ୍ଠିଗୁଡ଼ିକ ଭୁଷୁଡ଼ି ପଡ଼ିଛି । ପଲ ପଲ ସାପ ବସା କରିଛନ୍ତି ।

ଆଜି ସବୁ ସଫା ସୁତୁରା କରା ହୋଇଥିବ । ଆଖପାଖର ତିନି ଚାରିଖଣ୍ଡି ଗ୍ରାମର ଲୋକେ ପୂଜା କରିବାକୁ ଆସିଥିବେ । କେତେ ମାଇପେ ମରଦେ ରାତିସାରା ଉଜାଗର ରହିବେ । କେହି କେହି ତାଙ୍କ ପିଲାଙ୍କ ମୁଣ୍ଡ ଉପରେ ରାତିସାରା ଘିଅଦୀପ ଜଳାଇବେ ।

ଈଶ୍ୱର ବୋଉ ବଞ୍ଚିଥିଲାବେଳେ ତାଙ୍କ ସଙ୍ଗରେ ଏଇ ଜାଗର-ରାତି କେତେ ଥର ସେ କଟାଇଛି । ଏବଯାଏ ଆଉ ସେ ଯାଇ ନାହିଁ । ଭାବୁଛି, ସଞ୍ଜ ଆଗରୁ ଅରକ୍ଷିତକୁ ନେଇ ସେ ଦର୍ଶନ କରି ଆସିବ । ତା'ର ଦୀର୍ଘାୟୁ କାମନା କରି ପାଣିଲାଗି କରାଇବ । ଈଶ୍ୱରଆର ମଙ୍ଗଳ କରିବାକୁ ବି ସେ ଗୁହାରି କରିବ ।

ଆହା, ନିଜର ଦୁର୍ବୁଦ୍ଧି ପାଇଁ କି ସରି ସେ ହେଲାଣି ଠାକୁରେ ! ତାକୁ ବଞ୍ଚାଇ ରଖନ୍ତୁ । ସବୁ ପଛେ ଯାଉ, ହାଡ଼ମାଳଆ ଦେହରେ ତା'ର ଜୀବନ ଥାଉ ।

ଧନସମ୍ପଦ ସବୁ ଶେଷ ହେଲେ କେହି ତା'ର ପାଖ ପଶିବେ ନାହିଁ । କେହି ତାକୁ ପାଖ ପୂରାଇବେ ନାହିଁ । ପେଟ ଜଳିଲେ, ମେ ସାଙ୍ଗସାଥୀଙ୍କ ପାଖରେ ହାତ ପାତି ନିରାଶ ହେଲେ ସେ ମଣିଷ ଚହଲିବ । ଅଭାବରେ ପଡ଼ିଲେ ପ୍ରାଣ ବଞ୍ଚାଇବାକୁ ସେ କ'ଣ ମୂଲ ନ ଲାଗିବ ?

ସେଇଆ କର ଠାକୁରେ, ତାକୁ ବଞ୍ଚାଇ ରଖ । ନିଆଁଲଗା ରୋଗଟା ତାର ଭଲ ହୋଇଯାଉ । ପେଟ ପାଇଁ ଖୁଣ୍ଟିଆଘରର ପୁଅ ପରଦୁଆରେ ମୂଲ ଲାଗି, କେଜାଣି ନିଜର ଭୂଇଁ ପରଙ୍କୁ ଦେଲା ପରେ, ସେହି ଭୂମି ଉପରେ କପାଳର ଝାଳ, ଆଖିରୁ ପାଣିଫୋଟା ନିହୁରି ଲୁହ ଗଡ଼ାଇଲେ ତା'ର ବଦଖୋଇ ସେହି ଲୁହରେ ଧୋଇ ହୋଇଯିବ । ସେ ନୂଆ ମଣିଷ ହେବ । ତା'ର ମନେପଡ଼ିବ ଘରର ଯିଏ ଘରଣୀ ଥିଲା, ଆଉ ତା' ଗର୍ଭରେ ସମ୍ଭିଥିଲା ଯେଉଁ ସନ୍ତାନ । ...

ଠିଆ ଠିଆ ମେ କ'ଣ ଗୁଡ଼ାଏ ଭାବୁଛୁ ? ଚେଇଁ ଚେଇଁ କି ସପନ ସେ ଦେଖୁଛୁ ? କି' ଲାଭ ମିଳିବ ଅତୀତ ଆଡ଼କୁ ମନକୁ ଅଡ଼େଇ ? ତା'ର ପଦା ଝରଆ ଖୋଲି ଦେଇଛୁ । ଜାଣି, ପାଞ୍ଚଣ ପାହାରରେ ନିହୁଲୁହାଣ କରି ବଦା କରିଛୁ । ମଲାହଜିଲା ଖୋଜ ନାହିଁ । ଓଲଟି ଓଲେଇଟା ବୋଲି ନିନ୍ଦା ରଟାଇଛୁ । ତା'କୁ କରିଛୁ ଭୁକୁଣାରଅ, ଅଣବାହୁଡ଼ା । ସେଇଥିପାଇଁ ସୁ ଛାରେ ଯେଉଁ ରଙ୍ଗ-ପତାକା ସବୁ ଝଁଡ଼ଦଡାଏ ମହି ସେ ଅତି ଯତ୍ନରେ ବାନ୍ଧି ରଖିଥିଲା, ସେମାନ କ ମେ ଖୋଲି-ଦେଇଛୁ ।

ସେ ହୋଇଛୁ ବାପଘରେ ଝିଅ । ସେ କୁନ୍ତୀ ।

ସୁନା ଦେଈ ଦିନେ ପଚାରିଥିଲା, ଦାନକର୍ଣ୍ଣ ପରା କୁନ୍ତୀଙ୍କ ପୁଅ, କହିଲୁ ବଉଳ, ସେ କେମିତି ଜନମିଲେ ? ଶୁଣିଲାଘଟଣା ଟଭା ବଖାଣିଥିଲା । ସେ କହିଲା, ହଇଲେ ବଉଳ, କାନ ବାଟେ କଏ ଜନମ ହୋଇପାରେ ଯେ ସେ ଜନମ ହେଲେ ବୋଲି ତାଙ୍କ ନାଁ କର୍ଣ୍ଣ ହେଲା ? ତୁ ଭାରି ଓଲମୀଟା । ଆଲୋ, ବାପଘରେ ଅଭିଆଡ଼ୀ ଝିଅ କୁନ୍ତୀ । କନ୍ୟା ବୟସରେ ତାଙ୍କର ପିଲାଟି ଜନମିଲା ବୋଲି ତାକୁ କହିଲେ କାନୀନ । ଲୋକେ ଭାବୁଛନ୍ତି, କାନରୁ ଜନମ, ତେଣୁ ତାଙ୍କ ନା କର୍ଣ୍ଣ ।

ଅରକ୍ଷିତ ତା'ର ଜାଣ କର୍ଣ୍ଣଙ୍କ ପରି ପୁଅଟି, ତାର ଝରଆଘର ଓ ଘପାରର ସପନ ପରି କଟିଛୁ । ହେଲେ, ଅରକ୍ଷିତ ତାର ସତ୍ୟ । ଆଜି ତାର ଜନ୍ମଦିନ । ହେଇଟି, ସେ ଅଲେଖ ସଙ୍ଗରେ ଖେଳୁଛୁ । କାହିଁକି ସେ ଅନର୍ଥକ ଏଣୁ ତେଣୁ ଭାବି ବେଳ ବିତାଉଛୁ ? ଜେଜେମା ରଡ଼ି ଛାଡ଼ିଲେଣି ।

—ଘରଟା ଭିତରେ ପଶି ଏତେବେଳଯାଏ କ'ଣ କରୁଛୁ ଲୋ ଟଭା ! କାହିଁକି ବେଳ ସାରୁଛୁ ? ପିଲାକୁ ବନ୍ଧାପନା କରିଦେ । ଯିବୁ ପରା ସର୍ବେଶ୍ୱରଙ୍କ ମନ୍ଦିରକୁ ?

ଟଭା ଉତ୍ତର ଦେଲା, ଯାଉଛୁ । ସଜାଡୁ ଥିଲି ।

ସବୁ କାମ ସରିଲା । ଅଲେଖକୁ ଖୋଇ ପେଇ ଝଙ୍କି ମଧୁଆ ଜମା ଛାଡ଼ିଲା । ପଡ଼ୋଶୀ ଘରର ପିଲାମାନେ ଯିଏ ଯାହାର ଘରକୁ ଫେରିଲେ ।

ଜେଜେମାଙ୍କ ପାଖରେ ବସି ଝଙ୍କି ନିଜେ ଖାଉଥିଲା । ବୁଢ଼ୀଙ୍କୁ ବଳାଇ ବଳାଇ ଖୋଉଥିଲା ।

ଭାବୁଥିଲା, ସୂର୍ଯ୍ୟ ମୁଣ୍ଡ ଉପରକୁ ଆସିଲେଣି, ବେଳ ଗଡ଼ିଲେ ସେ ସହଳ ସହଳ ମନ୍ଦିରକୁ ଯାଇ ସଞ୍ଜ ଆଗରୁ ଫେରି ଆସିବ । ରାତି ହେବାଯାଏ ପିଲାକୁ ଧରି ରହିବ ନାହିଁ

ଚଇତନ ପାଇଁ ପୁଡ଼ାରେ ବାନ୍ଧି କ'ଣ ପଠାଇଛନ୍ତି ଦେଖିବାକୁ ମନ ଛନ ଛନ ହେଉଥାଏ । ଜେଜେମା'ଙ୍କ ପାଖରୁ ଲୁଚାଇ ରଖିଥିବାରୁ ନିଜକୁ ସେ ଦୋଷୀ ମଣୁଥାଏ । ଯେଉଁ ବୈରାଗୀ ବୁଢ଼ୀଟି ଛଡ଼ା ଏ ଦୁନିଆରେ ତାର ଶୁଭ ମନାସିବାକୁ ଆଉ କିଏ ବା ଅଛି ?

ଝଙ୍କି କହିଲା, ମା, ଚଇତା'ର ଅରକ୍ଷିତ ପାଇଁ ଜାମା-ପେଣ୍ଟ ଗୋଟିଏ କାଗଜ ପୁଡ଼ାରେ ପଠାଇ ଦେଇଛନ୍ତି । ମୋ ଦେହ ଥରଉଠିଲା ଲୋ ! ତା'କୁ ନ ଖୋଲି ମୁଁ ସେମିତି ରଖିଦେଇଛି ।

—ମୁଁ ଜାଣିଛି ଲୋ ଝଙ୍କି ! ମଧୁଆ କହୁଥିଲା । ସ୍ନେହରେ ପଠାଇଛି, ପୁଅକୁ ପିନ୍ଧାଇ ଦେଲୁ ନାହିଁ ? ଡର କାହାକୁ ବା ?

—ମଧୁଆ କହୁଥିଲା ? ଗାଁରେ ଗପିବ ।

—ଗପିଲେ ଗପୁ । ହଁ, ଝରସତ୍ତା ମାଇପେ ଟାହିଲି ଟାପରା କରିବେ । ତୁଣ୍ଡ ସୁଖ ପାଇବେ । ତୋ'ର କି ଯାଏ ? ସମାଜ ଉପରେ ଅଭିମାନ କରି, କିଏ କ'ଣ କହିବ ସେଥିକୁ ଡରି ହରି ବେଳ ବିତାଇଲେ ବୟସ ଗଡ଼ିବ, ଜୀବନ ସରିବ । ହସିଦେଇ ନିଜ ମନ ନିଜେ ବୁଝାଇବା ଭଲ । ପୁଅକୁ ସେ ଜାମା ପିନ୍ଧାଇ ଦେଉନୁ ? ଚଇତନର ମନ କାହିଁକି ଊଣା କରିବୁ ?

ଝଙ୍କି ତୁନି ରହିଲା ।

ବୁଢ଼ୀ କହିଲେ, କ'ଣ ପୁଣି ଭାବୁଛୁ ? ଯମପୁର ସଙ୍ଗେ ସମାନ ସେହି ମଣିକୁଦ ଗାଁରୁ ପାଞ୍ଚ ବର୍ଷ ହେଲା ଫେରି ଆଇଲୁଣି । ତୋ'ର ଆଉ ତୋ ପେଟରୁ ଜନମ ପିଲାଟିର ଖବର ଅନ୍ତର କେହି ବୁଝିଲେ ନାହିଁ । ତତେ ଦେଖିଲେ କିଏ କହିବ, ତୁ ଗୋଟାଏ ସଂସାର କରିଥିଲୁ ? ସେଇଟା ଗୋଟାଏ ମିଛିମିଛିକା ଘରକରଣା ଖେଳ । ପିଲାଏ ଯେମିତି ଖେଳନ୍ତି । ଅରକ୍ଷିତ ସେ ତୋ' ଆଶାର

ଫଳ । ପାର୍ବତୀ ଠାକୁରାଣୀଙ୍କ ଦେହର ମଳରେ ଗଢ଼ା କରିହୋଇଥିବା ପରି । ଶିବଶଙ୍କର ଦୟାକରି ତାକୁ ଜୀବନ୍ୟାସ ଦେଇଛନ୍ତି । ନିଜକୁ ଆଉ ଦୁଃଖ ଦେବନି ମା !

ଟୋଣ୍ଟା ଲଜେଇ ହସିଲା । ଆଚମନ ପାଇଁ ଉଠି ଆସିଲା । ଭାବିଲା, ତା'ର ଜେଜେମା କିଛି ନ ଜାଣି ଯାହା କହିଲେ ସେଇଆ ଯଥାର୍ଥ । ତା' ଅରକ୍ଷିତ, କିଏ ଜାଣେ, ସେଇଆ ହୋଇଥିବ । ଶିବବାବା ଚୋର, ଡ଼କେଇତ, ଠକ, ଲମ୍ପଟ ଯାହା ହୋଇଥାଉନ୍ତୁ, ଷୋଳ କଳାରେ ସେ ଶିବଙ୍କ ଅବତାର, ଏହା ସେ ଘେନିଥିଲା । ନିଜକୁ ମଣିଥିଲା ଶଙ୍କରଦୁର୍ଗା । ସେ ହୋଇଥିଲା ପାର୍ବତୀ—

ସପନ ପରି ଲାଗୁଛି । ସପନ-ଦେଶରେ ଆଲୁଅ-ଅନ୍ଧାରର ମିଶାମିଶି କେଉଁ ଅଜଣା ଥାନରେ ଭେଟ । ମିଳନର ନିଜଭୁଲା ମୂର୍ଚ୍ଛାଳିଆ ନାଟ । ସୁମରଣରେ ଗୁଳିଆ, ଝାପସା, ତୋଫାନିଆ ଲହଡ଼ିର ଉହ୍ଲାଇ ଉହ୍ଲାଇ ତାଣ୍ଡବ ନାଟ । ତା'ର ମୁଗଧ-ମେଦିନୀ ଥରହର କମ୍ପୁଥିଲା । ସୁମେରୁ କୁମେରୁ ସତେକି ଚୂନା ହୋଇଯିବ । ଏପରି ସେ ମଣିଥିଲା । ବେଳାଭୂଇଁର ନିଘଞ୍ଚ ଅରଣ୍ୟଘେରା ଉପତ୍ୟକା ଜଳାର୍ଣ୍ଣବ ହେଲାରୁ ସେ ଅଛି କି ନ ଅଛି ଜାଣିଲା ନାହିଁ । ମେ କେଉଁ ମିଟିମିଟି ତାରା ମହଲରେ ମହାଶୂନ୍ୟରେ ଭ୍ରମୁଥିଲା ।

ଅରକ୍ଷିତ ତା'ର ଶିବଅଂଶୀ । ହେଇଟି, ସେ ନିଶ୍ଚିନ୍ତରେ ଶୋଇଛି । ସେହି ନାକ, ସେମିତି ଭ୍ରୂଲତା, ଚବୁକ, ମୁହଁର ଢ଼ଙ୍ଗ । ଝିଅଆର ସେ କଅଣ କି ? ଟୋଗଣା, ହାଡ଼ମାଲିଆ ଝିଅଆର ଆହ୍ଲାଦ ତା'କୁ କେବଳ ଜୀବନର ସେହି ଝାପ୍ସା ଗୁଳିଆ, ଅଭୁଲା ସପନରେ ବୁଡ଼ାଉଛି । ଶିବଶଙ୍କରଙ୍କର ସୁମରଣା ପୁଣି ପୁଣି ମନକୁ ଆସି ଅପୂରଣ ଅଶାନ୍ତ ଆଶାକୁ ସାନ୍ତ୍ୱନା ଦେଉଛି । ସେହି ସ୍ମରଣ ଟୋଗଣା ଦେହର ଗତ ଜୀବନର ଦୁର୍ଦ୍ଦାନ୍ତ, ଅରଣା, ଓଣେଇଣ ବର୍ଷର ବଳିଷ୍ଠ ତରୁଣ ଝିଅଆର ରୂପ ଓ ଢ଼ଙ୍ଗକୁ ଝୁରଉଛି । ସେତିକି ।

ବାକ୍ସରୁ କାଢ଼ି ଟୋଣ୍ଟା କାଗଜ ପୁଡ଼ାଟି ଆଣିଲା । ଜେଜେମା ସତେ କି ତାକୁ ସେଇଥିପାଇଁ ପିଣ୍ଡାରେ ଅପେକ୍ଷା କରି ବସିଥିଲେ । ତାଙ୍କରି ଆଗରେ ବସି ଟୋଣ୍ଟା ସେହି ଗ୍ରେଟ ପୁଡ଼ାଟି ଖୋଲିଲା । ତା' ଭିତରେ ଥିଲା ଡ଼ୋରିଆ କନାର ଗ୍ରେଟ ଅଧା-ପ୍ୟାଣ୍ଟ୍ ଖଣ୍ଡେ, ଆଉ ଚିଟକନାର ଜାମା । ଦୁଇଟିଯାକ ଦାମିକା, ସୁନ୍ଦର । ଯେପରି ପ୍ୟାଣ୍ଟ୍ ଜାମା ଅଲେଖ ପିନ୍ଧି ଆସିଥିଲା, ଅବିକଳ ସେହିପରି । ଟୋଣ୍ଟା ସେତିକି ତା'ର ଜେଜେମାଙ୍କ କୋଳ ଉପରେ ରଖିଲା ।

ବୁଢ଼ୀ ଖୁସି ହୋଇ କହିଲେ, ଚଇତନ ତତେ ପିଲାଟି ଦିନରୁ ସ୍ନେହ କରେ । ମୁଁ ଅନ୍ୟଙ୍କ ମୁହଁରୁ ଶୁଣି ଜାଣିଲିଣି ଲୋ ଟୋଣ୍ଟା, ସେ ଯାହା କରୁଛି, ଯିଏ ଯାହା କହୁ, ତୋ'ର ଭଲ ପାଇଁ କରୁଛି । ଖାଲି ସେତିକି ନୁହେଁ ଲୋ ବାଇଆଣୀ, ଏବେ ମୋ ମନ ମତେ ବୁଝାଇ ଦେଉଛି, ସେଇ ତୋ ବାପର ଜୀବନ ରଖିଛି ।

—କେମିତି ଲୋ ମା ?

—ଜାଲ୍ କାଗଜକୁ ସତ ଫଳାଇ ସେ ଯଦି ଜମିଖଣ୍ଡି ମାତ୍ର ବସି ନ ଥାନ୍ତା, ଫଉଜଦାରୀ ହୋଇଥାନ୍ତା କାହିଁକି, ତୋ' ବାପା ଜେହେଲ ଖଟନ୍ତା ବା କାହିଁକି ? ପ୍ରାଣ-ବିକଳରେ ନାଟୁରୀ ପଳାଇ ନ ଥାନ୍ତା । ଗୁଣ୍ଡୁଚିମୂଷା ପରି ହାଉଳେ ହାଉଳେ ନାଟୁରୀ ଏ ଘରୁ ସବୁ ନେଇ ତା'ର ଆଗ ଗେରସ୍ତର ପୁଅର ଘରେ ପୂରାଇଥା'ନ୍ତା ।

—ତୁ କେମିତି ଜାଣିଲୁ ମା ?

—ଦେଖିଲି, ଥରେ ନୁହେଁ, କେତେ ଥର । । କେମିତି ମୁଁ ଜାଣନ୍ତି ଯେ ସେହି ଭେଣ୍ଡା ଟୋକାଟା ଯିଏ ଆସି ବଇଦ ହୋଇ ମୋ' ନାଡ଼ି ଚିପେ, ଔଷଧ ଦିଏ ସେଇଟା ତା' ପେଟର ପିଲା ?

—ଏଁ, ଏଁ ··· ।

—ହଁ ଲୋ । ସତେଇଶ-ଅଠେଇଶ ବର୍ଷର ବଳୁଆ ଶାବନା ଟୋକା । ମୁଣ୍ଡରେ ବାବୁରୀବାଳ । ନିଶ ଦାଢ଼ି ନ ଥାଏ । ଚଲା ଆଖି । ମୁହଁ ଯେ ନାଟୁରୀ ବରଗ । ଧୋତି, ଜାମା, ଚଦର ପହରଣ । ବଡ଼ କନାଥଳିଟିଏ ବେକରୁ ଲମ୍ବାଇ ଥାଏ । ତାଆରି ଭିତରେ ଔଷଧ ବଟୁଆ ରଖେ । ନାଟୁରୀ ତାକୁ କବିରାଜ ବୋଲି ଡାକେ ।

—କେବେ ମତେ କହିନୁ ତ ?

—କାହିଁକି କହନ୍ତି ? ଭାବିଥିଲି ସେ ସତେ ଜଣେ କବିରାଜ । ଯାହା କହୁ, ସେ ଅମୃତହାତିଆଟିଏ । ତା ଔଷଧ ଭଲ କାମ କରେ । ନାଟୁରୀ ତାକୁ ଖୁଆଇ ପିଆଇ, ଯାହା ମଗୁଥାଏ ତାକୁ ଦେଇ ବିଦା କରେ ।

—ତୁ ଦେଖିଛୁ ?

—ନା, ଦେଖି ନାହିଁ । ଅନୁମାନ କରୁଛି । ନୋହିଲେ କବିରାଜଟି ସଙ୍ଗେ ଏତେ ଫୁସ୍ ଫୁସ୍ ଗପ କାହିଁକି କରନ୍ତା ? ତୋ' ବାପ ପହଞ୍ଚିଲେ ଭୂଞ୍ଭାମି କାହିଁକି ? ଦି ଘଡ଼ିର ଘଡ଼ିରୁ ସେ କେବେ ଅଧିକ ରହେନାହିଁ । ତୋ' ବାପକୁ ବି ସେ ମୋଦକ ଖାଇବାକୁ ଦିଏ ଯେ ।

—ସେ କବିରାଜ ହୋଇଥିବ ମ !

—ହଁ ଯେ, ନାଟୁରୀ ପଳାଇଲା ଦିନୁ କାହିଁକି ଆଉ ତା'ର ଦେଖା ଦର୍ଶନ ନାହିଁ ? ନାଟୁରୀର ପ୍ରକୃତି-ସ୍ୱଭାବ ସରଳ । ସେ ଜାଣିଲା, ସେ ଆଉ ମା' ନ ହୁଏ । ଆମର ଏହି ସଂସାରରେ ତାର ଆଉ କି ମାୟା ? ତୋ ବାପ କାହିଁକାଠେଇଁ କି ଲୋଭ ? କବିରାଜ ଟୋକାର ମୁହଁଟାକୁ କିଏ ବଦଳାଇ ପାରିବ ? ନାଟୁରୀ ତ ଅବିକଳ ! ଆଗ ସେ ତା' ପୁଅର ସଙ୍ଗରେ ମୋର ପୁଅକୁ ବିପଲଡ଼ୁ ଖୋଇଥାନ୍ତା । ସେଇଠୁ ମତେ । ସେ ଏ ଘରର ସର୍ବେସର୍ବା ହୋଇଥାନ୍ତା । ସବୁ ବିଷୟସମ୍ପତ୍ତି ତା ପୁଅକୁ ଦେଇ ନିଜେ ଉଡ଼ି ଯାଇଥାନ୍ତା । କ'ଣ ଔଷଧ ଖୋଇ, ଅବା କମିଆଁ

କରେଇ, ମୋ ପୁଅକୁ ସେ ତା' ପୋଷା କୁକୁର କରେଇ ସାରଥିଲା । କାଠିରେ ନଚ୍ଚଉଥିଲା । ଉଠ୍ କହିଲେ ଉଠେ, ବସ୍ କହିଲେ ବସେ । ଧାଁ କହିଲେ କାର୍ତ୍ତିକ ଧାଏଁ । ଦେଖ୍, ଏବେ ସେହି ଅଲକ୍ଷଣୀ ପାଇଁ କାର୍ତ୍ତିକ ଜେହେଲ ଖଟୁଚି ।...

ସତ ହେଉ, ଅବା ବୁଢ଼ୀଙ୍କର ନାତୁଣୀ ଉପରେ ଅବିଶ୍ୱାସ ଓ କ୍ରୋଧ ପାଇଁ କେବଳ ଅନୁମାନ ହେଉ, ତାଙ୍କର ଛଟପଟ ଭାବନାର ସ୍ୱରୂପର ଚିତ୍ର ଟଗ୍ର ତା'ର ମନରେ ଆଙ୍କୁଥିଲା । ବିମଳା ଓ ଚଇତନପାଙ୍କେ ଦିନେ ତା ମନରେ ଯେଉଁ ଧାରଣା ଦେଇ ପାଇଙ୍କର ଅନ୍ୟାୟ କାମକୁ ଟଗ୍ରର ହିତ ପାଇଁ କରାଯାଇଚି ବୋଲି ବୁଝାଇବାକୁ ଚେଷ୍ଟା କରିଥିଲେ, ତା'ର ସଙ୍ଗେ ସେହି ଚିତ୍ରକୁ ମିଳାଉଥିଲେ । ତାର ମୁହଁରୁ କଥା ବାହାରୁ ନ ଥିଲା ।

ବୁଢ଼ୀ ସୁନ୍ଦର ଜାମାଟିକୁ ଫିଟାଇ ଦେଖୁଥିଲେ । ସେ କହି ଉଠିଲେ, ଇଲୋ ଝିଅ ଦେଖିଲୁଣି, ଏ ଟିକି ପୁଡ଼ାଟି ପୁଣି କ'ଣ ? ନାଲିସୂତା ଗୁଡ଼ାଇ ଚଇତନ ବାନ୍ଧି ଦେଇଚି । ନେ, ଖୋଲ । ଓଜନଆଁ ଲାଗୁଚି ।

ଟଗ୍ର ଖୋଲିଲା ।

ପୁଡ଼ା ଭିତରେ ସୁନାର ହାରଟିଏ ଚକ୍ ଚକ୍ କରୁଚି । ଗ୍ରେଟ ଗ୍ରେଟ ସୁନାଶଙ୍ଖର ମାଳ । ତହିଁରେ ଝୁଲୁଚି ଅଧା-ଚନ୍ଦ୍ରର ବାଙ୍କୁଲା ପଦକ । ତା' ପେଟରେ ତ'ରା । ତା' ମଝିରେ ଝଟକିଲା ଧୋବଲା ପଥର । ଟଗ୍ରର ହାତ ଥରୁଥିଲା ।

ହାରଟି ସେ ବୁଢ଼ୀଙ୍କ କୋଳରେ ପକାଇଲା । ଯେଉଁ ଗ୍ରେଟ କାଗଜଖଣ୍ଡିକ ତଳେ ଖସି ପଡ଼ିଥିଲା, ତାକୁ ସେ ହାଉଲେ ଉଠାଇ ଖୋଲିଲା । କ'ଣ ସବୁ ଲେଖା ହୋଇଚି । ଚଠି ପରି ଦିଶୁ ନାହିଁ । କେଇ ଧାଡ଼ି ଲେଖା ।

ଟଗ୍ର ମନେ ମନେ ପଢ଼ିଲା—

—ବିମଳାଙ୍କ ସଙ୍ଗେ ଆଉ ତୋ'ର ଦେଖା ହେଲାନାହିଁ । ସେ ଦୁଃଖ କରୁଥିଲେ । ତୋ' ପୁଅକୁ ସେ ଏଇଟି ଦେବାକୁ ଭୁଲିଯାଇଥିଲେ । ତା'ର ପାଇଁ, ତାଙ୍କର ବିଭାଘରେ ଢିଆରି । ଦେଖି ଖୁସି ହୋଇଥିଲେ । ଦେଇପାରି ନ ଥିଲେ । ଏତେ ଜଲଦି ମରିଯିବେ ବୋଲି ଆଶା କରି ନ ଥିଲେ । ତେବେ, ଭାବୁଥିଲେ, ସେ ଆଉ ବଞ୍ଚିବେ ନାହିଁ । ସେ ଯିବାଆଗରୁ ତୋତେ ସୁମରଣା କରିଥିଲେ । ଏଇଟି ମୁଁ ପାଖରେ ରଖିଥିଲି । ବେଳେ ବେଳେ ମନେ ପଡ଼ୁଥିଲା, ପୁଣି ଭୁଲି ଯାଉଥିଲି । ଆଜି ତୋ' ପୁଅର ଜନ୍ମଦିନ । ଅଲେଖ ମନେ ପକାଇଦେଲା । ତା' ବୋଉର ଇଚ୍ଛା ପୂରଣ କରିବାକୁ ପଠାଇଲି ।

ଅକ୍ଷର ଚନ୍ଦ୍ରିଚନ୍ଦ୍ରି ଟଗ୍ର ପଢ଼ୁଥିଲା । ଆଖିରୁ ଲୁହ ଝରିପଡ଼ୁଥିଲା । ଆଉ ପଢ଼ିବା ସମ୍ଭବ ହେଲାନାହିଁ । ଲେଖାର ପଛରେ ବିମଳାଙ୍କର ସ୍ନିଗ୍ଧମୂର୍ତ୍ତି ସତେକି ଠିଆ ହୋଇଥିଲା । ସେ ବି କାନ୍ଦୁଥିଲେ, ଅଭିମାନ କରି କହୁଥିଲେ, ମନର

ଆଶା ମୁକ୍ତାଜାଲି ବୋଲି ଅଇଁଗୁଣ ପାଇଛ କି ଟେଶ ? ସେଇଥି ମକାଶେ ପାଖରେ ଥାଇ ମଧ୍ୟ ମୁହଁଛପା ଦେଇ ରହିଲ ? ଦେଖିଲ ତ, ଜାଣିଲ ତ, ମୋ' ଭୟ ସତ କି ମିଛ ? ହାଉଡ଼ାଟି କି କଳବଳ ହୋଇ ମଲା ! ଗ୍ରେଟା ଅଲେଖାଟି—

ବୁଢ଼ୀ କାକୁସ୍ଥ ହୋଇ ଟେଶର ଧାଇଁଲା-ମନକୁ ଓଟାର ଆକଟି କହିଲେ, କଥା ନାହିଁ ଭାଷା ନାହିଁ, ଆଜପରି ଦିନେ ଆଖିରୁ ଲୁହ ଗଡ଼ାଉଛୁ କାହିଁକି ଲୋ ? କିଏ ଚିଠି ଦେଇଛି କି ? ଅଶୁଭ ଖବର ମଣିକୁଦରୁ ମିଳିଛି ?

—ସେମିତି କହନା ମା ! ମୋ' ଅରକ୍ଷିତର ଆଜି ଜନ୍ମଦିନ । ମଣିକୁଦଆ ଭଲରେ ଥାଉନ୍ତୁ । ଆମେ କାହିଁକି କାହାର ଅଶୁଭ ମନାସିବା ! କେଉଁଠୁ ଚିଠି ଆସି ନାହିଁ । ବିମଳା ଭାଉଜ ମୋର ମନେପଡ଼ିଲେ ସେ—

—ଭଲ ଝିଅଟିଏ ସେ ଥିଲା । ରତନପୁରର ବୋହୂଯାକରେ ସେ ରତନଟିଏ । ହେଲେ, ହୀନକପାଳୀ । ନାହିଁଲେ, ସ୍ୱାନକପାଳୀ କାହିଁକି କହିବା ! ପୁଅ-ପଠ ଛାଡ଼ି ଅହିଅବ୍ରଣୀ ହୋଇ ଚାଲିଗଲା ତ ! ତତେ ସେ ତା' ସାନ ଭଉଣୀଠୁ ଅଧିକ ସ୍ନେହ କରୁଥିଲା । ମରିବା ଆଗରୁ ଯାହା ସେ ଡାକ ବଜାଇ କହିଗଲା—

—ଭୁଲିନ ହ ମା ! —

—ତା ମନର ଇଚ୍ଛା ସେ କହିଗଲା ତ ! ତେଣିକି ତା'ର ମନକଥା କିଏ ରଖିବ ବା ନ ରଖିବ ସେ ଦେଖିବ ନାହିଁ, ଜାଣିବ ନାହିଁ । ଏବେ ତୁ ଦେଖ, କି ସୁନ୍ଦର ହାର ଚଇତନ ତୋ' ପାଇଁ ପଠାଇଛି । ତୋ ବେକର କାଚ ମାଳଟା, ଆ ମୁଁ ଖୋଲି ଦେବି । ଆଜପରି ଭଲ ଦିନରେ ତୋ ବେକରେ ଏଇଟି ପିନ୍ଧାଇ ଦେବି ।

ସତ କଥାଟି କହିବାକୁ ଟେଶର ମନ ଛଟପଟ ହେଉଥିଲା, କିନ୍ତୁ ସେ ମୁହଁ ଖୋଲିଲା ନାହିଁ । ବିଚାରିଲା, ଯେଉଁ ହାରଟି ଚଇତନ ପଠାଇଛନ୍ତି, ସେଇଟି ଅରକ୍ଷିତର ପେଟ ସରିକି ହେବ । ବୋଧହୁଏ ଜେଜେମା ଯାହା କହିଲେ, ତାହାହିଁ ସତ ।—

ବୁଢ଼ୀ ପଚାରିଲେ, ତୁ କ'ଣ ଏତେ ଭାବୁଛୁ ? ଯେଉଁ ଫଯାରଟା ତୋ'ର ପୋଡ଼ି କଳି ପାଉଁଶ ହେଲା, ଯେଉଁଟା ଏବେ ସାତ ସପନ, ତା'କୁ ଝୁରି ହୋଇ ବଳବୟସ ସାରିବା ତୋ'ର ଓଲମୀପଣିଆଁ । —

ଟେଶ କହିଲା, ଜିନିଷ ସେ ଦେଇ ସାରିଛନ୍ତି ! କେହି ଫେରାଇ ଦେଉନାହିଁ । ତୋ ପାଖରେ ଥାଉ । ବାପା ଫେରନ୍ତୁ । ସେ ପାଣ୍ଡିଙ୍କ ତାଙ୍କର ଶତ୍ରୁ ମଣିଛନ୍ତି । ସବୁ କଥା ସେ ବୁଝନ୍ତୁ । ତାଙ୍କର ଯଦି ମନ ମାନିବ, ଯେଉଁ ଦୁଃଖ ସେ ସହି ଫେରିବେ, ସେତିକି ମନରୁ ପୋଛି ପାରିବେ, ସେ ଯଦି ରାଜି ହେବେ, ତୋ' ହାତରେ ତୁ ମତେ ପିନ୍ଧାଇଦେବୁ ଲୋ ମା ! ସେ ନ ଫେରିବାଯାଏ ସ୍ୱା'କୁ

ପିନ୍ଧିଲେ ତାଙ୍କର ଅପମାନ ହେବ । ମୋ' ବେକରେ ଏଇଟା ସାପ ପରି ଝୁଲୁଥିବ । ପ୍ରତି ମୁହୂର୍ତ୍ତରେ ମତେ ଷ୍ଟେଟ ମାରୁଥିବ । —

—ହଇଲେ, ମୋ' ପୁଅ କ'ଣ ମୋ କଥାରୁ ବାହାର ହେବ ? ସେମିତିକା ପିଲା ସେ ନୁହ । ତୋ'ର ଫୁଙ୍ଗୁଳା ବେକରେ କାଚମାଳି ଦେଖିଲେ ମୋ'ର ଦୁଃଖ ହେଉଛି । ଚଣ୍ଡାଳୁଣୀ ନାଟୁଆର ହାବୁଡରୁ ଯେଉଁ ଟିକିକ ସୁନା, ଆଉ ରୁମ୍ପା ଲୁଗ୍ଗଇ କାନ୍ଥରେ ପୋତି ରଖିଥିଲି, ସେତିକରେ ଅରକ୍ଷିତାର ହରଡ଼ଫାଳିଆ ମାଳ, ତୋ କାନର ଫାଶିଆ ଅଳୁଡି ହାତରେ କରାଇ ଆଣିଲି । ଢ' ଢ' ପଟ ଗ୍ରଶପଟ ରୂପାକାଠି ତୋ' ପାଇଁ କରାଇଲି । ସେତିକି । ଆଉ ମୋ' ପାଖରେ ନାହିଁ ଯେ ତୋ' ପାଇଁକି ଗଢ଼ାଇଦେବ । —

— ନହେଲେ ନାହିଁ । ଠାକୁରାଣୀ ପରି ଦୟାର ଅବତାର ମୋ'ର ଶାଶୁ, ମୋ' ପାଇଁ ଯେଉଁ ହାରଟି ଗଢ଼ାଇ ଦେଇଥିଲେ ତା' ତୁଳନାରେ ଏଇଟା କିଛି ନୁହ । ସେଇଟା ତ ଗଲା—

— ନେଇଥିବ ସେହି ଅଲକ୍ଷଣା ଗଞ୍ଜଡ଼ଟା, ଅରକ୍ଷିତାର ବାପ ! ସପନର ଦୁଃଖ ମନେ ପକାଇ ଚେଇଁଲା ବେଳେ ଛଟପଟ ହେବା ଭଲ ନୁହେ । ରହ—

ବୁଢ଼ୀ ବସିଲାଠାରୁ ଉଠିଲେ । ଉହୁଁକ ଆସି, ଟଗର ବେକରୁ ଲୁଗାକାନି ଓଟାରିଲେ । ଥରିଲା ହାତରେ ତା' ବେକରେ ହାରଟି ଝୁଲାଇ ଦେଲେ ।—

ଟଗ୍ର ବାଧା ଦେଲା ନାହିଁ । ହାରର ଦୁଇ ମୁହଁ ଯୋଡ଼ି ଫାଶିଆକୁ ସେ ନିଜ ହାତରେ ଚିପିଲା । ସଜାଡ଼ି ଦେଲା । ପଦକଟି ଗ୍ରୁଡର ମଝିକୁ ଓଟାରି ଆଣିଲା । ସେ ଅଧା-ଫୁଙ୍ଗୁଳା ହୋଇଥିଲା ।

ବୁଢ଼ୀ ତା'ର ଆଗରେ ବସିଲେ । ପେଜୁଆ ଆଖିରେ ଟଗର ମୁହଁକୁ ଦେଖିବାକୁ ଗ୍ରହିଁଲେ । ପାକୁଆ ପାଟିର ଦବଲା ଶୁଖିଲା ଓଠ ହରଷରେ ହସହସ ହେଉଥାଏ । ନିରକ୍ତିଆ ହାତ ପାପୁଲିରେ ଟଗର ଆଖି କୋଣରେ ଲାଗି ରହିଥିବା ଲୁହର ଦାଗକୁ ସେ ପୋଛି ଦେଲେ । ଚିବୁକରେ ହାତ ଥାପି ଚକଣିଆ ରୁଚିର ମୁହଁକୁ ଟେକି ଗ୍ରହିଁଲେ । ମନ ଉଲ୍ଲାସରେ କହିଲେ, ଠାକୁରେ ଚଇତନକୁ କୋଟି-ପରମାୟୁ ଦିଅନ୍ତୁ । ତାଆରି ପାଇଁ ତତେ ଆଜି ମୁଁ ନୂଆ ରୂପରେ ଦେଖୁଛି । ଗତ ଜୀବନକୁ ପଛକୁ ଫୋପାଡ଼ି ଦେ । ମୁହଁ ଫେରାଇ ତେଣିକି ଗ୍ରହିଁବୁ ନାହିଁ ।

—ମା, ସେମାନେ ପଗ୍ଚରିଲେ—

—କହିବୁ, ତୋ' ଜେଜେମା ତତେ ନାଇଦେଇଛି । ମିଛ କହିବୁ କାହିଁକି ? ମୋ'ର ମାଲ ସିନା । ନୁହେ କି ? ରୁ ବଗ୍ଚର କର । ଚଇତନ ସ୍ୱୀକାର କରିଛି ଯେ ଅନ୍ୟାୟରେ ଆମ ସୁନା-ଫଳିଲା-ଜମିକୁ ସେ ମାଡ଼ିବସିଥିଲା । କୋଟ-କଚେରୀରେ ଷଡ଼ଯନ୍ତ୍ର କରି ଜିତିଲେ ଜିତୁ । ତା' ମନ ତାକୁ ଦୋଷ ଦେଉଥିଲା ।···

କାଳିଆ-ବଳିଆଙ୍କର ଗୁଣ ଆଖି ଗୁଣ ଦୁଆରୁ, କହ ଏ ଦାଗରୁ ସବୁ ଦେଖୁଛୁ ନା ନାହିଁ, ତୁ କହ । ସେ ଆଖି ଭିତର ବାହାର ସବୁ ଦେଖେ । ଖଣ ଖଣକେ ଚେତାଇ ଦେଉଥାଏ । ଶୁଣ ବା ନ ଶୁଣ ତାଙ୍କର କ ଯାଏ ? ଜଇତନ କଳାକର୍ମର ପାପ ହେଉଛୁ । ଫଳ ଭୋଗିଲାରୁ ଠାକୁରଦୁହଙ୍କ ଚେତାବନୀ ଶୁଣିଛୁ । ଭୂମି ସହିତ ପାଞ୍ଚ-ବର୍ଷର ଫସଲ ପାଉଣା ଫେରାଇ ଦେବାକୁ ବସିଥିଲା । ତୁ ମନା କଲାରୁ ସିନା-ସେ ଅଟକିଲା !

—ମୁଁ ମନା କଲି କାହିଁକି ତୁ ଜାଣୁ ନା ?

—ଜାଣେ । ତୁ ଏବେ କହ, ଆମ ନ୍ୟାଯ୍ୟ-ପାଉଣାର କେତେ ଭାଗରୁ ଭାଗେ ଏଇ ହାର ଟିକିକ ହେବ ? ସେ ଦେଇଛୁ, ଏଇଟା ତାର ଭଲପଣ । କିନ୍ତୁ ତା'ର ଦାନ ନୁହେ । ସେ ତୋ' ବାପର । ସେ ମୋ'ର । ତୋ'ର ମାଗିଆଣିଲା ଚିଜ ନୁହେ । ମନ ଖୁସିରେ ଯା' ଟିକିଏ ଶୋଇପଡ଼ । ସକାଳ ସକାଳ ଗଲେ, ସଞ୍ଜ-ସୁଦ୍ଧା ଶିବ ମନ୍ଦିରରୁ ଫେରିଆସିବୁ ।

ବୁଢ଼ୀ ଟଗର ମୁଣ୍ଡ ଆଉଁସି ଦେଲେ ।

—୧୨

ସର୍ବେଶ୍ୱର ମହାଦେବଙ୍କ ମନ୍ଦିରରେ ଭିଡ଼ ଜମିଥିଲା । କେତେ ଗାଁଆର କେତେ ସ୍ତ୍ରୀ-ପୁରୁଷ, ସାନ ବଡ଼ ପୁଅଝିଅ ମନ୍ଦିରରେ ଶ୍ରେଣୀବଦ୍ଧ ଦ୍ୱାରବାଟେ ଭିତରକୁ ପଶୁଥିଲେ, ପୁଣି ଭିତରୁ ବାହାରୁଥିଲେ ।

ଗଛର ବାଲି ମଝିରେ ପଡ଼ିଥିବା ଉଚ୍ଚ ହିଡ଼ ବାଟରେ ପିଲାକୁ କାଖେଇ ଚାଲି ଚାଲି ଯିବାରେ ଟଗର ଥକି ଯାଇଥିଲା । ଅଙ୍କା-ବଙ୍କା ହିଡ଼ । ଚାଲି ବାଟର କଡ଼େ କଡ଼େ ଠାଏଠାଏ ଗଇଣ, କୋଇଲଖିଆ, ଛୋଟ ଛୋଟ କାନକୋଲି ବୁଦା । କଣ୍ଟାକୋଳିଆ ଗଛ । କିଏ ଜାଣେ ହିଡ଼ର ଦୁଇ କଡ଼ରେ ଯେଉଁ ମୂଷା ଗାତ ଅଛି, କାହିଁରେ କି ଜନ୍ତୁ ଲୁଚି ରହିଛି । ଆପଦ ବିପଦ ଅଜାଣତରେ ନିହମାକେ ଆସେ । ଦଇବୀ ଯୋଗର କଥା । ଆଗରେ ପଛରେ ଧାଡ଼ିବାନ୍ଧି, ପାଟିତୁଣ୍ଡ କରି ଯାଉଥିବା ଆସୁଥିବା ଲୋକଙ୍କ ସଙ୍ଗରେ ଅରକ୍ଷିତ ବୟସର ପିଲାଟିମାନେ କେହି କେହି ଚାଲୁଥିଲେ । ସେମାନଙ୍କୁ ଦେଖି ନିଜେ ଚାଲି ଚାଲି ଯିବାକୁ ଅରକ୍ଷିତ ଅଜଟ ହେଲା । କେତେଥର କାଖରୁ ଓହ୍ଲାଇ ସେ ବୋଲ ନ ମାନି ଆଗକୁ ଧାଇଁଲା । ପଛରେ ଧାଇଁ ଟଗର ତା'ର ହାତଧରି ପୁଣି କାଖକୁ ଉଠାଉଥିଲା ।

କ୍ଳାନ୍ତ ହୋଇ ଟଗର ମନ୍ଦିର କଡ଼ରେ ପଡ଼ିଥିବା ଖଣ୍ଡେ ପଥର ଉପରେ ବସିଲା । ଅରକ୍ଷିତ ଏଣେ ତେଣେ ଧାଉଁଥାଏ । ପସରା ମେଲାଇ ବସିଥିବା ଗୁଡ଼ିଆ

ଦୋକାନଗୁଡ଼ିକ ଆଗରେ ଠିଆ ହୁଏ । ଫେର ଆସି କ'ଣ କିଣି ଖାଇବାକୁ ଜିଦ ଧରେ । ଝିଅ ବୁଝାଇ କହେ, ଫେରିଲା ବେଳକୁ କିଣି ନେବା, ଘରେ ଖାଇବୁ । ଅରକ୍ଷିତ ଝିଙ୍କ ଧରେ ।

ଗଳ୍ପଆଇଲା ଲୋକେ ପିଲାକୁ ଦେଖି ଚାହିଁ ରହନ୍ତି । ଯେଉଠୁ ତା'ର ମା'କୁ । ଜଣା ମାଇପେ ମୁହଁକୁ ଦେହକୁ, ପୁଣି ତା ହୁଟ ଶାଢ଼ିକୁ ଚାହିଁ ଆଗ୍ରହରେ ପଚାରନ୍ତି, କେତେବେଳୁ ଆଇଲଣି ମ, ବସିଛ କାହା ଅପେକ୍ଷାରେ ? ଦର୍ଶନ କର ଫେର ନାହିଁ ତ । ପୁଅକୁ ଚନ୍ଦନ-ପାଟୀ ନାଇ ଦେଇଛ ଯେ··· ?

—ଆଜି ତା'ର ଜନ୍ମଦିନ ।

—ସତେ ? ଶିବଅଂଶୀ ପିଲା । ସେଇଥିପାଇଁ ସେ କାର୍ତ୍ତିକ ପରିକା ସୁନ୍ଦର-ଟିଏ ହୋଇଛି । ଶିବ-ସର୍ବେଶ୍ୱର ତା'କୁ ଦୀର୍ଘାୟୁ କରନ୍ତୁ ।

ସୂର୍ଯ୍ୟ ଦେବତା କେତେ ତଳକୁ ଖସିଗଲେଣି ।

ମଠ କରିବା ଉଚିତ ନୁହେଁ । କିଏ କେତେ କ'ଣ ପଚାରୁଛନ୍ତି । ପିଲାଟା ଉପରେ ଆଖି ଦେଉଛନ୍ତି । ସେ ବି ଉଛନ୍ନ ହେଲଣି । ଲୋକଭିଡ଼ କମିବାକୁ ଅପେକ୍ଷା କରିବା ଉଚିତ ନୁହେ । ଏଇଆ ଭାବି ଝିଅ ଉଠିଲା । ପାଚିଲା କଦଳୀ, ନଡ଼ିଆ, ଉଖୁଡ଼ା, ଲଡ଼ୁ କିଣି ତାଳପତ୍ରରେ ବୁଣା ପାଚିଆରେ ଭରିଲା । ଫୁଲମାଳ, ବେଲପତ୍ର ଓ ଘିଅଦୀପ ଖରିଦ କରି ଭୋଗପାଚିଆ ଉପରେ ଥୋଇଲା । ଅରକ୍ଷିତର ହାତଟିଏ ଧରି ମାଇପି ଧାଡ଼ିର ପଛେ ପଛେ ସେ ମନ୍ଦିରଆଡ଼କୁ ଚାଲିଲା ।

ସମସ୍ତଙ୍କ ସଙ୍ଗେ ସେ ବି ଦୀପ ଜଳାଇଲା । ନିଜେ ଓଳଗି ହୋଇ ପୁଅକୁ ଓଳଗି କରାଇଲା । ପୂଜା ସାମଗ୍ରୀ ପଣ୍ଡାଙ୍କୁ ଦେଇ ପାଣିଲାଗି କରାଇଲା । ମଙ୍ଗଳ କରିବାକୁ ଗୋଟି ଗୋଟି କରି ସେ ନାମ ଉଚ୍ଚାରି ସର୍ବେଶ୍ୱର ମହାଦେବଙ୍କର ସେବାକାରୀ ସେପାଙ୍କୁ ଜଣାଇଲା । ଶିବଲିଙ୍ଗ ଉପରେ ପାଣି ଢାଳି, ସେପା ନାମ କହି, ତାଙ୍କୁ ଦୀର୍ଘାୟୁ, ନିରୋଗ, ବିଭବଶାଳୀ କରିବାକୁ ଶିବଶମ୍ଭୁଙ୍କୁ ଜଣାଣ କରୁଥିଲେ ।

ଝିଅ କହିଲା, ଇଏ ମୋ' ପୁଅ ଅରକ୍ଷିତ । ଆଜି ତା'ର ଜନ୍ମଦିନ ।

ସେପା ମୁଣ୍ଡ ଉଠାଇ ଚାହିଁଲେ । ସ୍ୱଳ୍ପ-ଆଲୁଅରେ ମନ୍ଦିରଭିତର ଅସ୍ପଷ୍ଟ ଦିଶୁଥିଲା । ଖୁନ୍ଦାଖୁନ୍ଦି ଲୋକ । ଗୋଟିଏ ପାଖରେ ସ୍ତ୍ରୀଲୋକମାନେ । ଆରପାଖରେ ପୁରୁଷ ଲୋକ । ଛୋଟ ଛୋଟ ପିଲାଙ୍କର କାନ୍ଦଣାର ମିଶାମିଶି ଶବ୍ଦରେ କାନ ବଧିର ହେଉଥାଏ । ଦେହରୁ ଗମ୍ ଗମ୍ ଝାଳ ନିଗିଡ଼ି ପଡ଼ୁଥାଏ । ଦେହର ବସନ ଓଦା ହେଉଥାଏ ।

ସେପା କହିଲେ, ତମେ ଭାଗ୍ୟବତୀ ମା ! ଶିବଅଂଶୀ ପିଲା ଜନ୍ମ କରିଛ । ଟିକିଏ ଆଗକୁ ଆସ । ପିଲାକୁ କାଖ କରିଛ । ଓହ୍ଲାଇ ଦିଅ । ସେ ଓଳଗି ହେଉ । କେତେ ବର୍ଷ ତା'କୁ ଚାଲିଲା ? ସେତିକିଥର ଶିବଙ୍କ ମୁଣ୍ଡରେ ପାଣି ଢାଳିବି ।

ଟେଗ୍ ଆଗେଇଲା । ଅରକ୍ଷିତକୁ ଜୁହାର କରାଇ କହିଲା, ଆଜିଠାରୁ ତା'କୁ ପାଞ୍ଚ ବର୍ଷ ପୂରିଲା ।

ଖେପା ଥରକୁଥର ପାଣି ଢାଳିଲେ । ବଡ଼ ପାଟିକରି ଜଣାଇଁ ଦେଲେ ହେ ଶିବ, ହେ ଶମ୍ଭୋ, ହେ ମହାଦେବ, ତମରି ଜଳାରେ ଜନମ ଦେଇଛି କାର୍ତ୍ତିକ ପରିକା ପୁଅ । ତା'କୁ ଜଗତ୍‌ଜିତା କର । ଦୀର୍ଘ ଜୀବନ ଦିଅ । ଧନ, ମାନ, ବୁଦ୍ଧି ବିଦ୍ୟାରେ ସେ ପାରଙ୍ଗମ ହେଉ । ତମ ନାମର ଟେକ ରଖୁ ।

ଟେଗିକୁ ଚାହିଁ ଖେପା କହିଲେ, ଆଜି ତମ ପୁଅର ଜନ୍ମଦିନ ପାଇଁ ଏ ବୁଢ଼ା-ଖେପାର ପାଞ୍ଚଟଙ୍କା ପାଉଣା ମା ! ତମେ ଭାଗ୍ୟବତୀ । ଦୁର୍ଗାପରି ଦିଶୁଛ । କ' ଅଭାବ ତମର ଅଛି ? ଆଉ କାହା ନାମ କହ ।

ଟେଗିର ମୁଣ୍ଡରେ ବସନ ନ ଥିଲା । ଦେହର ଉନ୍ମତ୍ତ ବସନ ଉପରେ ନୂଆ ହାରଟି ଝୁଲୁଥିଲା । ସେ ଏକଲୟରେ ଶିବଲିଙ୍ଗକୁ ଅନାଇଁ ରହିଥିଲା । ଦେଖୁଥିଲା ଆଉ ଗୋଟିଏ ମୂର୍ତ୍ତି । ଶିବଶଙ୍କର ! ଚଳନ୍ତ ଦେବତା, ଯିଏ ତା'ର ଶରୀରକୁ ଆହ୍ଲାଦ କରିଥିଲେ । କେଉଁ କୈଳାସପୁରକୁ ଶୂନ୍ୟେ ଶୂନ୍ୟେ ଉଡ଼ାଇ ନେଇଥିଲେ ।

ଖେପା କହିଲେ, ଚୁପି ରହିଲ କାହିଁକି ମା ? ଆଉ କାହା ନାମ ଜଲଦି କହ ।

—ମୋ' ବାପା କାର୍ତ୍ତିକ ।

—ଆଉ ?

—ମୋ ଜେଜେମା, ତା' ନାଁ ଜାଣି ନାହିଁ ।

—ହଉ ଚଳିବ, ତମ ନାଁ ?

—ଟେଗି !

—ପାଣି ଢଳା ହେଲା । ପିଲାର ବାପ ? ସେ କ'ଣ ଆସି ନାହାନ୍ତି ? କହିରେ ପୁଅ, ତୋ' ବାପାଙ୍କ ନାମ କଅଣ ? ପିଲା ଶିଖି ନାହିଁ ? ଆଉ କିଏ କହି ପାରିବେ ?

ପଛରୁ ଜଣେ ଦି'ଜଣ ମାଇପେ ଖିଁ—ଖିଁ ହୋଇ ହସିଉଠିଲେ । କିଏ ଜଣେ କହିଲା, ମାଆକୁ ଅଜଣା, ପୁଅ କେମିତି ଜାଣିବ ?

ଦୁଃଖରେ, ଲାଜରେ ଟେଗି ମରିଥିଲା ସତେକି ତା' ପାଦ ତଳେ ବସୁନ୍ଧରା ଟଳ ଟଳ ହୋଇ ଥରୁଛି । ଭାବୁଥିଲା, ଫାଟି ଯାଆନ୍ତା କି, ସେ ସୀତାଠାକୁରାଣୀଙ୍କ ପରି ପାତାଳକୁ, ବାସୁକିପୁରକୁ ପଶି ଯା'ନ୍ତା । ଚିରଦିନ ପାଇଁ ମୁହଁଛପା ଦେଇ ରହନ୍ତା ।

ମନ୍ଦିର ଭିତରେ ପିଲାଙ୍କ କାନ୍ଦଣା ଓ କଥାଭାଷାର ମିଶାମିଶି ଘୋଘୋ ଶବ୍ଦକୁ ବୁଡ଼ାଇ, ପୁରୁଷମାନଙ୍କ ମଝିରୁ ଗର୍ଜି ଉଠିଲା ଜଣେ କିଏ, ହଇହୋ ଖେପାଏ, ଚହ୍ନିଲ ନାହିଁ କାହାଘର ବୋହୂ ? ତମେ କେଉଁ ଗାଆଁର ?

ଲୋକଙ୍କ ଦୁଇଆଡ଼କୁ ଆଡ଼ୁଇଲାଇ ସେହି ବଳିଷ୍ଠ ପୁରୁଷ ଆଗକୁ ଆସିଲେ । କହିଲେ, ସେ ମଣିକୁଦର ଫଗୁମଣି ଖୁଣ୍ଟିଆଙ୍କ ବୋହୂ, ଯାହାଙ୍କ ନାଁରେ ଗର୍ଭିଣୀ ଗାଈ ବାଛି ଛାଡ଼େ । ସେ ସ୍ୱର୍ଗବାସୀ ହେଲେଣି । ତାଙ୍କର ସ୍ୱାମୀଙ୍କ ନାମ ଟଗରମଣି ଖୁଣ୍ଟିଆ । ଡାକ ନାମ ଟଣବାବୁ । ତାଙ୍କ ନାମରେ ପାଣିଲାଗି କର । ସେ ବେମାର ଅଛନ୍ତି । ଆରୋଗ୍ୟ ହୁଅନ୍ତୁ । ଠାକୁରଙ୍କୁ ଏହା ଜଣାଣ କର ।

ଟଗର ଚମକି ଚାହିଁଲା । ଯାହାଙ୍କର ସ୍ୱର ସେ ବାରିପାରିଥିଲା, ସେହି ଚଇତନ ପାଣ୍ଡେ ଶିବଲିଙ୍ଗର ବେଢା ଆରପାଖେ ତା'ର ଆଡ଼କୁ ମୁହଁକରି ଠିଆ ହୋଇଛନ୍ତି । ବେଢ଼ାର ଚଉଡ଼ା ଫନ୍ଦ ଉପରେ ଜଳୁଥିବା ଅସଂଖ୍ୟ ଘିଅଦୀପର ଥରିଲା ଶିଖା ଓ ଦୁଇଟି ଉଚ୍ଚ ପିଲସଜ ଉପରେ ଜଳୁଥିବା ବଡ଼ ବଡ଼ ପିତ୍ତଳ ଦୀପର ଉଜ୍ଜଳ ଆଲୁଅରେ ତାଙ୍କର ମୁହଁ ହସହସ, ପ୍ରଫୁଲ୍ଲ ଦିଶୁଥିଲା । ସେ ତାକୁ ହିଁ ଚାହିଁଥିଲେ ।

ଟଗରର ଆଖିରେ ତାଙ୍କ ଆଖି ମିଳିତ ହେଲା । ଟଗର ଦୃଷ୍ଟି ନୁଆଁଇଲା ।

ସେପା ଟଗରମଣିଙ୍କ ନାମରେ ଶିବଲିଙ୍ଗ ଉପରେ ବାରମ୍ବାର ପାଣି ଢାଳି, ଶିବଙ୍କୁ ତାଙ୍କର ଆରୋଗ୍ୟ ହେବାପାଇଁ ନିବେଦନ କଲେ । ଟଗର କାନିରୁ ଖୋଲି ଟଙ୍କାଟିଏ ବଢାଇ ଦେଲା । ତା'ର ପ୍ରସାଦ, ବେଲପତ୍ର ଓ ଫାଳେ ନଡ଼ିଆ ନେଇ ସେହି କାନିରେ ବାନ୍ଧିଲା । ଅରକ୍ଷିତର ହାତ ଧରି ସେ ପଛେଇ ଆସିଲା । ଅନ୍ୟ-ମାନଙ୍କ ପଛରୁ ସେ ପୁଣି ଚାହିଁଲା ସେହି ଉଦାର ବ୍ୟକ୍ତିଙ୍କୁ, ଯିଏ ଏତେ ଲୋକଙ୍କ ଆଗରେ ତା'ର ମାନମହତ ଓ ଟେକ ରଖିଲେ । ତାକୁ ଲାଜ ଓ ସଙ୍କୋଚରୁ ଉଦ୍ଧାର କଲେ । କିନ୍ତୁ, ମନରେ ଗୋଟିଏ ପ୍ରଶ୍ନ ହଲ ହଲ ହେଲା । ସେ ପ୍ରଶ୍ନ ମନର ଗହନ ଅନ୍ଧାରରେ ଉତ୍ତରକୁ ଅଣ୍ଡାଳି ହେଉଥିଲା । ···

ଟଗର ଦୃଷ୍ଟିରେ ପଡ଼ିଲା, ମଧୁଆର କାଖରୁ ଚଇତନ ପାଣ୍ଡଙ୍କ ହାତ ଧରି ଅଲେଖ ଓହ୍ଲାଉଛି । ଶୁଣିଲା, ସେପାଏ ତାଆରି ନାମରେ ପାଣିଲାଗି କରୁଛନ୍ତି ।

ସେ ତା'ର ପୁଅକୁ କାଖ କରି ଧୀରେ ଧୀରେ ମନ୍ଦିର ଭିତରୁ ପଦାକୁ ବାହାରିଲା । ତା' ଛାତି ଭିତରୁ କାନ୍ଦକାନ୍ଦର କୋହ ଉଠୁଥିଲା । ମୁଣ୍ଡ ଭ୍ରମୁଥିଲା । ଉଦ୍‌ବେଗର ତୁହାଇ ତୋଫାନ ସାରା ଶରୀରକୁ ଥରାଉଥିଲା । 'କାହିଁକି-କାହିଁକି'ର କେତେ ପ୍ରହେଳି ଅନେକ ଅବ୍ୟକ୍ତ ଆଶାର ଉପାଦାନରେ ଗଢ଼ା, ସପନର ବହୁ ରଙ୍ଗରେ ରଞ୍ଜିତ, ତା'ର କଳ୍ପନାର ନୂଆଘରଟିର ମୂଳଦୁଆକୁ ଦୋହଲାଉଥିଲା । ମନ୍ଦିରବେଢ଼ା ଭିତରର ସବୁ କୋଳାହଳ ସତେକି ତା'ପାଇଁ ଥମି ଯାଇଥିଲା; ସ୍ଥାନ ହୋଇଥିଲା ନିକାଞ୍ଚନ, ନିଶବ୍ଦ ··

ଅରକ୍ଷିତକୁ କାଖରୁ ଓହ୍ଲାଇ, ତା' ହାତଧରି ଟେଲଟେଲ ହୋଇ ଟେଭି ମନ୍ଦିରପୀଠର ଭୁଷୁଡ଼ା ପାହାଚ ଓହ୍ଲାଇ ଆସିଲା ।

ସୂର୍ଯ୍ୟ ଅସ୍ତ ହୋଇଥିଲେ । ପଶ୍ଚିମ ଆକାଶରେ ଦୂରର ଗଛ ଗହଳ ଉପରେ ଡେରଛା ରଙ୍ଗର ଲୋହିତ ଲେପନ ତଥାପି ଲିଭି ନ ଥିଲା । ଟେଭି ଥକାଲାଆଖିରେ ଚାହିଁ ଦୃଷ୍ଟି ଫେରାଇଲା ।

ପୀଠ ତଳର ସେହି ଗ୍ରେଟ ଖୋଲା ଜାଗାରେ ଠାଏ ଠାଏ କେତେ ଜଣ ବସି ଥକା ମାରୁଥିଲେ । ଜାଗାଟି ପରିଷ୍କାର କରା ହୋଇଥିଲା । ବାଟକଡ଼ରୁ ଅଳପ ଦୂରରେ କେଉଁ କାଳର ପୁରୁଣା ଆମ୍ବଗଛଟିଏ । କୁଣ୍ଢେ ମୋଟ । ଗଣ୍ଡିଟି ପୋଲା । ସେଥିରେ ବଡ଼ ବଡ଼ ଗାଡ଼ ।

ଘନେ ଗଛଟି ଅତି ଉଚ ଓ ଝଙ୍କାଳିଆ ଥିଲା । ଡାଳଗୁଡ଼ିକ କ୍ରମେ ତୋଫାନରେ ଭାଙ୍ଗି ରୁକ ତା'କୁ ହତଶ୍ରୀ କରିଛି । ତଥାପି, କେତେ ପୁରୁଷ ଉଚ୍ଚରେ କେଇଟି ଡାଳ ଏବଯାଏ ବିଭିନ୍ନ ଦିଗକୁ ଲମ୍ବିଛି । ସେହିସବୁ ଡାଳରେ ବଉଳ ଖୁନ୍ଦି ହୋଇଛି । ଠାଏ ଠାଏ ପେନ୍ଥା ପେନ୍ଥା ଆମ୍ବ କଷି ।

ଏବଯାଏ ଗଛ ଫଳୁଛି । ବୟସର ଆକ୍ରମଣ, ପୁଣି ବାହାର ଦୁନିଆର ଝଡ଼ଝଞ୍ଜାର ଅତ୍ୟାଚାର ତାକୁ ପଲ୍ଲବ, ବଉଳ, କଷି ଧରିବାରେ ବାଧାଦେଇ ପାରୁ-ନାହିଁ । ମଳୟ ତାକୁ ଆମୋଦିତ କରୁଛି, ଉତ୍ତେଜିତ କରୁଛି । ପ୍ରକୃତି ତା'କୁ ଫୁଲଫଳରେ ମଣ୍ଡିତ କରୁଛି । ଗର୍ବିତ କରୁଛି ।

ଟେଭି ଚାହିଁଚାହିଁ ଭାବୁଥିଲା—

ଅରକ୍ଷିତର ଡାକ ଶୁଣି ସେ ତା' ଆଡ଼କୁ ଦୃଷ୍ଟି ଫେରାଇଲା । ପିଲାଟି ଆମ୍ବଗଛ ମୂଳରେ ପଡ଼ିଥିବା କେତେଖଣ୍ଡି ମାଙ୍କଡ଼ାପଥର ଉପରେ ଗୋଟିକରୁ ଆରଟି ଉପରକୁ ଡେଉଁଥିଲା । ଟେଭି ତା' ପାଖକୁ ଯାଇ ଅଟକିଲା, ପଡ଼ିବୁରେ ପୁଅ ! ଗୋଡ଼ହାତ ଖଣ୍ଡିଆ କରିବୁ । ଡେରି ହେବ, ଆ ।

ଅରକ୍ଷିତ ଅଡ଼ିଲା । କହିଲା, ମତେ ତୁ ଲଡ଼ୁ ଦେ—

—ତୋ'ର ପାଇଁ ତ ରଖିଛୁରେ ପୁଅ, ଆଉ କିଏ ଖାଇବ ? ଏଠିଟାରେ ଖାଇବୁ କାହିଁକି ? ଚୁ, ଚାଲ୍; ଘରେ ଦେବି ।

—ସେମାନେ ଖାଉଛନ୍ତି, ମୁଁ ବି ଖାଇବି ।

ଟେଭି ଜାଣେ, ତାର ଜେଜେମା ପିଲାଟାକୁ ସଦାବେଳେ ଏଣୁ ତେଣୁ ଖୁଆଇ ଟେକିଲା କରିଛନ୍ତି । ତା'ର ଜିଦ ବଢ଼ାଇଛନ୍ତି । ପାଖରେ ଠାଏ ଠାଏ ବସିଥିବା ଅନ୍ୟ ମାଆମାନେ ତାଙ୍କ ସଙ୍ଗରେ ଆସିଥିବା ପିଲାଙ୍କ ହାତରେ କ'ଣ ସବୁ ଦେଉଛନ୍ତି । ସେମାନେ ଖାଉଛନ୍ତି । ତାଙ୍କୁ ଦେଖି ଅରକ୍ଷିତ ଝୁଙ୍କ ଧରିଛି, ନ ଦେଲେ ସେ ଆସିବ ନାହିଁ । ବାଧ୍ୟ ହୋଇ ଟେଭି ଗଛମୂଳକୁ ଗଲା ।

ଖଣ୍ଡିଏ ପଥର ଉପରେ ବସି ଭୋଗପୁଡ଼ା କାନରୁ ଫିଟାଇଲା । ଅରକ୍ଷିତକୁ ପାଖକୁ ଡ଼ାକିଲା । ଦୁଇ ହାତରେ ଦୁଇଟି ଲଡ଼ୁ ଧରି ଅରକ୍ଷିତ ଖାଇବାକୁ ଲାଗିଲା । ସେମାନଙ୍କୁ ଦେଖି ପାଖରେ ପାଟିତୁଣ୍ଡ କରି ଏପାଖ ସେପାଖ ହେଉଥିବା କେତୋଟି ଛୋଟ ଛୋଟ ପିଲା ନିକଟେଇ ଆସିଲେ । ଆଶା-ମୁଖରେ ଚାହିଁ ଠିଆ ହେଲେ । ସେମାନଙ୍କର ମାଆ, ବା ଆଉ କେଉଁମାନେ ଆକଟିଲା ଡ଼ାକ ଛାଡ଼ିଲେ । କେଉଁ ଗାଆଁର କିଏ, ଅଚିହ୍ନା ।

ଟିଖି ପଚାରିଲା ଅରକ୍ଷିତକୁ, ଦେବା କିରେ ମୁଁଅ ସେମାନଙ୍କୁ ? ଭାରି ଖୁସି ହେବେ । ଆମ ଘରେ ଆଜି କେତେ ପିଠା, କେତେ ମିଠା ଅଛି । ଘରେ ପହଞ୍ଚିଲେ ତୁ ମନଇଚ୍ଛା ଖାଇବୁ । ଦେବା ?

ଅରକ୍ଷିତ ମୁଣ୍ଡ ହଲାଇ 'ହଁ' ଭରିଲା । ତା' ହାତକୁ ପାଚିଲା କଦଳୀଟିଏ ବଢ଼ାଇ ଦେଇ ବାକି ପ୍ରସାଦ ଟିଖି ପିଲାମାନଙ୍କୁ ବାଣ୍ଟିବାକୁ ଲାଗିଲା । ପାଇବା ଆଶାରେ ଛୋଟ ବଡ଼ ଅନ୍ୟ ପିଲାମାନେ ପାଖକୁ ଆସି ହାତ ପାତିଲେ । କେବଳ ନଡ଼ିଆ ଫାଳକ ରଖି ବାକି ପ୍ରସାଦ ଟିଖି ପିଲାଙ୍କ ମଧ୍ୟରେ ବାଣ୍ଟିଦେଲା । ମନରେ ତା'ର ଆନନ୍ଦ ଯେ ପୁଅର ଜନ୍ମଦିନରେ ଯେତିକି ପାଖରେ ଥିଲା ସେତିକିରେ ସେ ବାଲଲୀଳା କରାଇ ପାରିଲା । ଅରକ୍ଷିତକୁ କହିଲା, ତୁ ଏଥର ଆଗେ ଆଗେ ଲୋକଙ୍କ ପଛରେ ଚାଲ । ମୁଁ ତୋ ପଛେ ପଛେ ଯିବ । ତୁ ଥକିଗଲେ ତତେ କାଖ କରିବ ।

ତା'ର ହାତ ଧରି ଗଛତଳକୁ ଚାଲିବା ବେଳକୁ ମୁହାଁଉଣ୍ଡି ଟିଖିର ଦୃଷ୍ଟିରେ ପଡ଼ିଲେ ଚଇତନ ପାହେ । ମହାଦେବଙ୍କ ପୀଠରୁ ତଳକୁ ଆସିଥିବା ଭୁଷୁଡ଼ା-ପାହାଚର ଶେଷପଥର ଉପରେ ଠିଆ ହୋଇ ସେ ତାଆର ଆଡ଼କୁ ଚାହିଁ ରହିଥିଲେ । ବୋଧହୁଏ ସେ ମଧୁଆକୁ ଅପେକ୍ଷା କରିଥିଲେ, କିନ୍ତୁ ଆଖି ବୁଲାଉଣୁ ଟିଖି ଦେଖିଲା, ମଧୁଆ ଗୋଟିଏ କାନ୍ଧରେ ଅଲେଖକୁ ବସାଇ, ଆର କାନ୍ଧରୁ ଯାଉଁଳି ଝୁଲାଇ ହିଡ ବାଟରେ ଅଳ୍ପ ଦୂରରେ ଆଗେଇ ଚାଲିଛି । ଅଲେଖ ପଛକୁ ଚାହିଁଛି ।

ଚଇତନ ପାଖେଇ ଆସିଲେ । ଟିଖି ମୁଣ୍ଡଉପରକୁ ଓଢ଼ଣା ଟେକିଲା । ଦୃଷ୍ଟି ଅଳପ ତଳେଇ ଛାତିର ବସନ ଉପରେ ଝଟକୁଥିବା ନୂଆ ହାରଟିର ଅଂଶ ଓ ତହିଁରେ ଓହଳିଥିବା ପଦକକୁ ଚାହିଁ ଲାଜେଇ ଉଠିଲା । ଘୋଡ଼ାଇବାର ଉପାୟ ନ ଥିଲା । ଅରକ୍ଷିତ ତା'ର ଗୋଟିଏ ହାତ ଧରିଥିଲା । ଆର ହାତରେ ଥିଲା ମହାଦେବଙ୍କର ଧଣ୍ଡା, ବେଲପତ୍ର, ଟିକିଏ ପ୍ରସାଦ ଓ ଫାଳେ ନଡ଼ିଆ-ଭରି ବରଡ଼ା ପତ୍ରର ପୁଡ଼ା ।

ଚଇତନ ଥରେ ଆଖି ବୁଲାଇ ହସହସ ହେଲେ । କହିଲେ, ମୁଁ ଠିଆ ହୋଇ ତତେ ଦେଖୁଥିଲି ଟିଖି ! ଭାରି ଖୁସି ହେଲି । ପୁଅର ଜନ୍ମଦିନରେ ତୁ ବାଲଲୀଳା କରୁଥିଲୁ । ସବୁ ପ୍ରସାଦ ତାଙ୍କୁ ବାଣ୍ଟି ଦେଲୁ । ବାଃ···

ନିଜର ପ୍ରଶଂସା ଶୁଣି ସେ ଅଧିକ ଲାଜେଇଗଲା । କି ଉତ୍ତର ଦେବ ସ୍ଥିର କରିପାରୁ ନ ଥିଲା ।

ବହୁଦିନ ପରେ ଆଜି ପୁଣି ତାଙ୍କ ସଙ୍ଗେ ମୁହାଁମୁହିଁ ଦେଖା । ଧୋବଲୁଗା ପିନ୍ଧିଛନ୍ତି । ସେମିତି ଧୋବଲା ପୁରାହାତ କାମା । ତେଙ୍ଗା ଦିଶୁଛନ୍ତି । ଲମ୍ବାଳିଆ ମୁହଁର ନାକଟି ବେଶୀ ଲମ୍ବାଳିଆ ଦିଶୁଛି । ମୁ ୍ଣ୍ଡର ଲମ୍ବା କେଶ ଅସଜଡ଼ା । ସ୍ତ୍ରେଟ୍ କଣ । ଗୋରା ମୁହଁ ମଳିନ ଦିଶୁଛି । ସ୍ୱାସ୍ଥ୍ୟ ଭାଙ୍ଗିଲା ପରି ଜଣାଯାଉଛି । ଆଖିରେ ମଖା ଅନାଥକ ଭାବ । ତାଙ୍କ ଜୀବନ ଉପରେ ବିପଦର ଯେଉଁ ଝଡ଼ ବହିଗଲା ହୁଏତ ତା'ର ପ୍ରଭାବ ।

ଦୂରରୁ କେତେଥର ଟେଭି ତାଙ୍କୁ ଅଦୃଶ୍ୟ ଦେଖିଥିଲା, କିନ୍ତୁ ଅପବାଦର ଅନର୍ଥକ ଡରରେ ସେ ନଦେଖିଲା ଭଳିରେ ଦୃଷ୍ଟି ଫେରାଇ କାମର ବାହାନାରେ ଅନ୍ୟବାଟ ଧରିଥିଲା ।

ଟେଭି କହିଲା, ପିଲାଗୁଡ଼ିକ ବୋଚ୍ଛିଗଲେ ସେ···

—ରୁ ଭଲ କଲୁ ! ତେବେ, ଯେଉଁ ସ୍ଥାନରେ ବସିଥିଲୁ, ସେଇଟା ନିରାପଦ ନୁହେଁ । ଗଛର ପଛଆଡ଼େ ଯେଉଁ ହୁଙ୍କା ଅଛି ତା ମୂଳରେ ବହୁତ ଗାତ । ସେଥିରେ ସାପ ସଳବଳ । ବେଳେ ବେଳେ ଦୁର୍ଘଟନା ଘଟିବାର ଖବର ମିଳୁଛି । ଜାଣୁ ନାହିଁ ?

—ନା । ଲଡ଼ୁ ଖାଇବାକୁ ଜିଦ୍ ଧରି ଅରକ୍ଷିତ ଅଜଟ ହୋଇ ସେଠିକି ପଳାଇଲା ।

—ଦେଖିଛି । ହଉ ଚାଲ୍ । ଆଗରେ ଚାଲ । ସଞ୍ଜ ବୁଡ଼ି ଆସୁଛି । ପିଲାଟି ସଙ୍ଗରେ ଅଛି । ଗହୀର ବାଟ । କଣ୍ଟାଝଣ୍ଟା ବାଟ କଡ଼ରେ ଅଛି···

ଆଗେ ଆଗେ ଅରକ୍ଷିତକୁ ଚଲାଇ ଟେଭି ପଛରେ ଚାଲିଲା । ତା' ପଛେ ପଛେ ଚଇତନ ପାଣ୍ଡ । ଟେଭିର ଗୋଡ଼ ଛନ୍ଦିବାନ୍ଧି ହେଉଥାଏ । କିଏ ଯେପରି ପଛରୁ ତା'କୁ ଓଟାରି ଧରୁଥାଏ । ମଧୁଆର କାନ୍ଧ ଉପରେ ଥାଇ ଅଲେଖ ଅରକ୍ଷିତର ନାଁ ଧରି ରଡ଼ି ଛାଡ଼ୁଥାଏ । ବେଳେବେଳେ ମାଉସୀ, ମାଉସୀ ହୋଇ ଟେଭିକୁ ବି ଡାକୁଥାଏ···

ଦୁହେଁ ଚୁମିଚାମି ଚାଲିଥାନ୍ତି । ଖଣ୍ଡେଦୂର ଯାଇ ଅରକ୍ଷିତ ଅଡ଼ି ଠିଆ ହେଲା । ସେ ଥକି ପଡ଼ିଥିଲା । କାଖ ହେବାକୁ ଜିଦ୍ ଧରିଲା । ଟେଭି ନିଜେ ବି ଅନୁଭବ କରୁଥିଲା ଯେ ପିଲାଟିକୁ ଚଲାଇ ଚଲାଇ ସେ କଷ୍ଟ ଦେବ ନାହିଁ । ଏତେ ଲୋକ ଆଗରେ ପଛରେ ଥିଲେ ବି ଛୁଇଁରେ ଛନେକା, କାଳେ କେଉଁଠି କଅଣ ବାହାର ପଡ଼ିବ !

ଟେଭି ଅଟକିଲା । କଡ଼େଇ ଗଲା । ଚଇତନ ପାଣ୍ଡ ପାଖକୁ ଆସିଲେ । ଅତନ୍ମନ କରି ଆଗେଇଲେ ନାହିଁ । କହିଲେ, ପିଲାଟି ଆଉ ଚାଲିପାରିବ ନାହିଁ ।

ଟଗ୍ରି କହିଲା, ମୁଁ କାଖେଇ ନେବ ।

—ତୁ ନିଜେ ତ ଚାଲି ପାରୁନୁ ପରି ଲାଗୁଛୁ । ଆ'ରେ ଅରକ୍ଷିତ ! ମୁଁ ତତେ କାଖେଇ ନେବି ।

—ତମେ ! ନାଇଁ ନାଇଁ···

—ଅରକ୍ଷିତ ସୁନା ପିଲାଟା ! ଆରେ, ସେ ମତେ ଫୁଲପରି ଲାଗିବ ।

କାହା କଥା ! ଗାଁର ଗଣ୍ୟମାନ୍ୟ ଲୋକ, ଅତି ପ୍ରତାପୀ ସରପଞ୍ଚ । ତାଙ୍କୁ ରଗାଇଲେ, ଅପମାନ ଦେଲେ ରକ୍ଷାରକ୍ଷଣ ରହିବନାହିଁ । ସେ ଯେତିକ ଭଲ ସେତିକ ମନ୍ଦ ବୋଲି ଜାଣି ଲୋକେ ସାବଧାନ ହୁଅନ୍ତି । ସେ ଜଣେ ନଅଣ୍ଣି ମୂଲିଆଣୀ ପୁଅକୁ ଦୁଇ ହାତରେ ଟେକି କାଖ ନ କରି, ହାତର ବାହୁ ଉପରେ ବସାଇଲେ—

ଅରକ୍ଷିତ ଭନ୍ତ୍ରମୋନ୍ତ୍ର ହେଲା । ଚଇତନ ତା'କୁ ଗେଲ କରି କହିଲେ, ସେମିତି ହ' ନା । ଦେଖ, ଅନ୍ଧାର ମାଡ଼ି ଅଇଲାଣି । ବାଟରେ ସାପ, ବିଛା, କଣ୍ଟାଥିବ··

—ମୁଁ ବୋଉ ପାଖକୁ ଯିବ ।

—ତୋ' ବୋଉ ତ ପଛେ ପଛେ ଆସୁଛି, ସେ ହାଲିଆ ହୋଇ ପଡ଼ିଲାଣି । ଶୁଣ, ଗଞ୍ଜାର ବାଟ ଅଲପ ଅଛି, ପାରି ହେଲେ ଯିବୁ ।

ଅରକ୍ଷିତ କଟାଳ କଲାନାହିଁ । ପାଣେ ତା'କୁ କ'ଣ ସବୁ ମନଖୁସିଆ କଥା କହୁଥିଲେ । ହସାଉଥିଲେ । ଆଗେ ଆଗେ ଚାଲୁଥିଲେ । ଟଗ୍ରିର କାନରେ ବାଜୁଥିଲା, କିନ୍ତୁ ସେ ଶୁଣୁ ନ ଥିଲା । ତା'ର ଗୋଡ଼ ଅରଅର ହେଉଥିଲା । ପତେକ ସେ ନିଜେ ଚାଲୁ ନ ଥିଲା, କିଏ ତା'କୁ ଓଟାରି ଓଟାରି ଆଗକୁ ଟାଣି ନେଉଥିଲା । ତା'ର ଚେତନା, ଅନ୍ତରରେ ହଜି ମନର ସାତ ପରସ୍ତ ଅନ୍ଧାରତଳେ କେଉଁଠି ଛପି ଯାଇଥିବା ଅନୁଭୂତିକୁ ଆଖି ଆଗରେ ଆଣି ଉଜ୍ଜ୍ୱଳ କରୁଉଥିଲା···

ପାଞ୍ଚ ବର୍ଷର ଝିଅଟିଏ ! ତା' ବୋଉ ତାକୁ କଲା ନାଇ ଦେଇଥାଏ । ମୁଣ୍ଡରେ ତେଲ ବୋଳି କେଶ କୁଣ୍ଡାଇ ଦେଇଥାଏ । ଗ୍ଲେଟ ରଙ୍ଗ ଶାଢ଼ୀ ପିନ୍ଧାଇ ସାଧବ ଘରର ଝିଅ ବୋହୂଟି ପରି ସଜାଇଥାଏ । ହାତରେ ରଙ୍ଗ କାଚ । ବେକରେ ମଦକଲଗା ହାର । ପାଦରେ ଝୁମୁଝୁମୁ ନୂପୁର । ଖୁବ ଲାଜକୁଳୀ । ବାପ ଛଡ଼ା କାହା ପାଖକୁ ଯାଏ ନାହିଁ । ଡାକଲେ, ହାତ ବଢ଼ାଇଲେ, ବୋଉର କାନି ତଳେ ଲୁଚେ ।

ସତର ଅଠର ବର୍ଷର ଗୋରା ତକତକ ସୁନ୍ଦର ପୁଅଟିଏ । ତା'ର ଲମ୍ବ ନାକ । ତାକୁ ଦେଖିଲେ ଝିଅ ଝିଅଟି କାନିତଳେ ଲୁଚେ ନାହିଁ । ବୋଉ ପଛକୁ ଚାଲିଯାଏ । ପୁଅଟି ତା'ର ହାତ ଧରି ଟାଣେ । ହସିହସି ଗେଲେଇ ଡାକେ ।

ଲାଜେଇ ଲାଜେଇ ଝିଅଟି ପାଖକୁ ଯାଉଣୁ ଟେକାଟି ତାକୁ ଦୁଇ ହାତରେ ଶୂନ୍ୟେ ଶୂନ୍ୟେ ଟେକିନଏ । ଦୁଇ ବାହୁ ଉପରେ ବସାଇ ଗେଲ କରେ । କପାଳ ଉପରେ ନାକ ଘଷେ । ଝିଅଟି କଣକଣ ହସିହସି ନମ୍ବାନ୍ତ ହୁଏ ।

—ଏଇଟାକୁ ନେଇଯାଉଛୁ ଖୁଡ଼ୀ ! ବୋଉକୁ ଦେବ । ସେ ଖୋଜୁଥିଲା । ତାର ଏମିତକା ଝିଅଟିଏ ଲୋଡ଼ା ।

—ନେଉ ନ, ମୁଁ କ'ଣ ଅପାଙ୍କ ସେନେହ ଉଣା କରିବ ?

ଗ୍ରୀବରେ ଧରି ହସାଇ ହସାଇ ଚଇତା'ଇ ତାକୁ ଘରକୁ ନିଅନ୍ତି । କହନ୍ତି, କି ସୁନା ମିଳି ଟେଭ ' ଆମ ଘରେ ମୋ' ବୋଉ ସଙ୍ଗେ ଖେଳିବୁ । ତା' ପାଖେ ରହିବୁନି ? ଟେଭ ମୁହଁ ନ ଖୋଲି, ମୁଣ୍ଡ ହଲାଇ ହଁ ଭରେ । ଘଡ଼ିଏ ଦି' ଘଡ଼ି ନ ବିତୁଣୁ ମୁଣ୍ଡରେ ହାତେ ଓଢ଼ଣା ପକାଇ ଟେଭର ବୋଉ ପାଣଙ୍କ ଘରେ ପହଞ୍ଚନ୍ତି ।

—ନିଲୋ, କୁଆଡ଼େ ?

—ମଙ୍ଗରେ ନ ବସିଲେ, ତା' ବାପା କ'ଣ ଖାଇବେ ?

ଚଇତା'ଇ ନ ଥାନ୍ତି । ବଡ଼ମା' ହସନ୍ତି । କହନ୍ତି, ମୁଁ ଜାଣିଛୁ ଟେଭ ତୋ ଆଖିର ଆଲୁଅ, କାର୍ତ୍ତିକଙ୍କର ପାଣ । କେମିତ ଅଟକାଇବ ?

କେତେଥର ଘଟିଛି । ଅସ୍ପଷ୍ଟ ହେଲେ ବି ଆଖି ତଳେ ସ୍ମରଣରେ ଲାଖି ରହିଛି ଦୃଶ୍ୟ ଓ ଶବଦ ।

ଚଇତନଙ୍କର ଦାହ୍ମ ଉପରେ ଅରକ୍ଷିତ, ଟେଭର ମନେ ପକାଉଛି । ସେମାନଙ୍କର ଜୀବନ ଉପରେ ଦୁଇଟି ଯୁଗର ଧୂମାଳ ବହିଯାଇଛି । ତଥାପି, ସ୍ମୃତିଗୁଡ଼ିକୁ ଘୋଡ଼ାଇ ପାରିନାହିଁ । କାହିଁକି କରିପାରି ନାହିଁ···

ହୁଡ଼ବାଟ ସରି ଆସୁଥାଏ । ପାତଳ ଅନ୍ଧାର ଘୋଟି ଆସୁଥାଏ । ଟେଭର ପତୁଆ ଭାବନା ତାର ଅଜାଣତରେ ଗତି ମନ୍ଥର କରୁଥାଏ । ତା' ପଛେ ପଛେ ଆସୁଥିବା କିଏ କେତେ ତାକୁ ପଛରେ ପକାଇ ଆଗେଇ ଯାଉଥିଲେ । ଆଗରେ ଅନ୍ଧାର ଓ ଗହଳ ସେପାଖେ ଚଇତନ ପାଣେ ଛପି ଯାଇଥାନ୍ତି ।

ଟେଭ ମନ୍ଥଳ ମନ୍ଥଳ ପାଦ ପକାଇଲା । ଦେଖିଲା, ଅଳ୍ପ ଦୂରରେ ଯେଉଁଠି ହାଡ଼ ବେଣ୍ଟି ଦାଣ୍ଡ଼, ସେଇଠି ପାଣେ ଠିଆ ହୋଇଛନ୍ତି । ତାଙ୍କର ହାତ ଧରି ଠିଆ ହୋଇଛି ଅରକ୍ଷିତ ।

ପାଣେ କହିଲେ, ତୁ ପଛରେ ପଡ଼ିଗଲୁ । ହେଇଟି ଦେଖ୍, ଅରକ୍ଷିତକୁ ମୁଁ ମନାଇଁ ପାରିଲିନି । ସେ ମୋ ପାଖ ଛାଡ଼ୁ ନାହିଁ ।

ଝିଙ୍କି କହିଲା, ସେ ସ୍ନେହ ରଙ୍କୁଣା । ଅଲେଖ କୁଆଡ଼େ ଗଲା । ମଧୁଆ କ’ଣ ତାକୁ ନେଇଗଲା ?

— ସେ ଅପେକ୍ଷା କରିଥିଲା । ଅଲେଖ ତମ ଘରକୁ ଯାଇ ଅରକ୍ଷିତ ସଙ୍ଗେ ଖେଳିବାକୁ ମନ କରିଥିଲା । ସେ ହତଭାଗ୍ୟଟି ବି ସ୍ନେହ-ରଙ୍କୁଣା ଯେ !

—ହଁ, ସବୁ ପିଲା ସେଇଆ ।

—ବେଶୀ ତ ମା-ନ-ଥିଲା ପିଲା । ଝିଙ୍କିମାଉସୀ ତା’କୁ କେମିତି କାଖ କରେ, କୋଳ କରେ, ସଜାଇ ଦିଏ, ନିଜ ହାତରେ ଖୋଇପେଇ ଦିଏ, ଠିକ ନିଖି କରି ସେ ଅକର୍ମଣ୍ୟ ପିଲାଟି ମୋ’ ଆଗରେ ଗପେ । ଖୁସି ହୁଏ । ମୁଁ ଭାବେ, ତୋ’ ପାଖରେ ଥିବାଯାଏ ସେ ତା ବୋଉର ଅଭାବ ଭୁଲିଯାଏ···

ଝିଙ୍କି ନିରୁତ୍ତର ରହିଲା ।

ଚଇତନ ପାଦେ ତା’ର ଉତ୍ତରକୁ ଅଲପ ଅପେକ୍ଷା କରି ପୁଣି କହିଲେ, ଘୋଡର ଅନ୍ଧାର ମାଡ଼ି ଆସୁଛି ଝିଙ୍କି ! ଆଗରେ ସେଇ ଅମୃତୋଟା ତଳେ ଅନ୍ଧାର ଟିକିଏ ଘନ ହେବଣି । ତୁ ଆଗରେ ଚାଲ । ମୁଁ ତମ ଘର ପାଖରେ ଅରକ୍ଷିତକୁ ଛାଡ଼ି ଦେଇଯିବି ।

ଝିଙ୍କି ଆଗେଇ ଚାଲିଲା । ପଛେ ପଛେ ଚଇତନ । ତାଙ୍କ ପାଖେ ପାଖେ ଅରକ୍ଷିତ । ସେ କାଖ ହେବାକୁ ମନା କଲା । ତଥାପି, ଅନ୍ଧାରିଆ ତୋଟା ଭିତରେ ଚଇତନ ତାକୁ ଉଠାଇ ଛାତିରେ ଧରିଲେ ।

ଏତେ ସ୍ନେହ, ଏତେ ଆପଣାପଣିଆଁର ଅର୍ଥ ଝିଙ୍କି ବୁଝିପାରିଥିଲା । ଭାବୁଥିଲା, ତାଙ୍କର ମନର କଥା ଖୋଲି କହିବାକୁ ସେ ସଙ୍କୋଚ ବୋଧ କରୁଥିବେ । ଭରସୁ ନ ଥିବେ । ହୁଏତ କହିବେ । କିନ୍ତୁ କ’ଣ କହିବେ । ମହାଦେବଙ୍କ ମନ୍ଦିର ଭିତରେ ଝିଅଆର ପାର୍ଥାମ୍ବୁ ଠାକୁରଙ୍କୁ ଜଣାଇବାକୁ ଭୋପାଙ୍କୁ ବତାଇଲେ କି ଉଦ୍ଦେଶ୍ୟରେ କପରି ସେ ବୁଝିବ ? ଯିଏ ତା’କୁ ଚରିବାନ ପାଇଁ ବଦାସ୍ତ କରି ଦେଇଛି, ତା’ର ଭଲ ମନ୍ଦରେ ଝିଙ୍କିର କି ଥାଏ ?

ତୋଟା ପାରି ହୋଇ ସେମାନେ ଗ୍ରାମରେ ମିଳିଲେ । ସଞ୍ଜ ଅନ୍ଧାର ଘୋଟି ଯାଉଥାଏ । ଅରକ୍ଷିତ ପୁଣି ତଳକୁ ଓହ୍ଲାଇଲା । ଝିଙ୍କିର ହାତଧରି ଚାଲିଲା । ଚଇତନ କହିଲେ, ଏଇଠୁ ମୁଁ ବାଟ ଭାଙ୍ଗିଯିବି ।

ଝିଙ୍କି ଅଟକିଲା । କହିଲା, ଆମଘର ବେଶୀ ବାଟ ନୁହେଁ । ସେଠି ତ କଣ୍ଟା ପଡ଼ି ନାହିଁ ।

ଚଇତନ କହିଲେ, ସତ ଯେ, ତୁ ଜାଣିଥିବୁ, ବିମଳା ମରିବା ଆଗରୁ କ’ଣ କହି ଯାଇଥିଲେ ? ତାଙ୍କ ପାଖରେ କେତେ ଗାଁ ମାଇପେ ଥିଲେ । ସେମାନେ ଗାଆଁରେ ପ୍ରଚାର କରିଛନ୍ତି । ତୁ ଶୁଣିନୁ ?

ଝୁଣ୍ଟି କହିଲା, ସେମାନେ କେତେ ପରିହାସ କରି ମତେ କହୁଥିଲେ । ବିମଳା-ଭାଉଜ ତମଠୁଁ ବଳି ମତେ ଅଧିକ ସ୍ନେହ କରୁଥିଲେ । ମୋ' ସ୍ଵାମୀମାନଙ୍କଆ କଳବଳ ଜୀବନ ପାଇଁ ସେ ଦୁଃଖ କରୁଥିଲେ । କେମିତି ମୁଁ ସୁଖରେ ରହିବି ସେହିକଥା ସେ ଭାବୁଥିଲେ । ବୋଧହୁଏ ସେଇଥିପାଇଁ—

ଝୁଣ୍ଟି ଅନ୍ଧାରର ଆବରଣ ତଳେ ଆଖିରୁ ଲୁହ ପୋଛିଲା ।

ଚଇତନ କହିଲେ, କେବଳ ସେତିକି ନୁହେଁ ଝୁଣ୍ଟି ! ସେ ତାଙ୍କର ଦୁଇଟି ଅକର୍ମଣ୍ୟ ପିଲାଙ୍କ ଭବିଷ୍ୟତ କଥା ବି ଭାବୁଥିଲେ । ସେ ଏହି ଆଶା ରଖି ସେପୁରକୁ ଚଲେ ଯେ ତୁ ତାଙ୍କର ବୋଝ ତୋ' ମୁଣ୍ଡକୁ ନେବୁ । ଗୋଟିଏ ପିଲା ତ ଚାଲିଗଲା ।

ଝୁଣ୍ଟି କହିଲା, ଆହା ' ତାଙ୍କ ମନର ଆଶା ତା'ଙ୍କ ବ୍ୟାକୁଳ ଭାଷାରୁ ମୁଁ ଜାଣି ପାରିଥିଲି । ମୁଁ ମୋ' ନିଜ ଦୁଃଖରେ ଛଟପଟ ହେଉଥିଲି । ମୋ' ମନରେ ସ୍ଥିରତା ନ ଥିଲା । ତାଙ୍କ ମନର ଆଶାକୁ ଜେଜିବା ଉପରେ, ତାଙ୍କ ପାଖକୁ ଯିବା ପାଇଁ ସାହସ କରିପାରି ନ ଥିଲି । ଅପବାଦକୁ କି ମୋ'ର ଡର ଥିଲା ।

ନିଜ ଗୁଣ୍ଡରୁ ଖସିଯିବା କଥାରେ ଝୁଣ୍ଟିର ଗ୍ରୀବା ଥରିବାକୁ ଲାଗିଲା । ଚଇତନ ପାତ୍ରଙ୍କ ମନରେ କ'ଣ ଅଛି, ସେ କ'ଣ ଚାହାନ୍ତି, ନିଜେ ପ୍ରକାଶ କରୁ ନାହାନ୍ତି । କାହିଁକି ବାଟଟାରେ ଠିଆ ହୋଇ ଜଣେ ପରପୁରୁଷ ସଙ୍ଗେ ସେ ଆଳାପ କରି ଅନର୍ଥକ ପୁଣି ସେହି ଅପବାଦର ପସରା ମୁଣ୍ଡରେ ନୋହି ବୁଲିବ ? ସହସା ଏହି ଚିନ୍ତା ତା'କୁ ଅସ୍ଥିର କଲା । ଅନ୍ଧାରର ବି ଆଖି, କାନ ଅଛି । ସେ ବି କଥା କହିପାରେ ।

ଅରକ୍ଷିତ ଅସ୍ଥିର ହେଲାଣି । ଘରକୁ ଯିବାକୁ ଜିଦ୍ଖୋର ହୋଇ ଅଳି କଲାଣି । ଝୁଣ୍ଟି ତା'କୁ ଗୁଡ଼ିଉପରକୁ ଉଠାଇଲା ।

ଚଇତନ କହିଲେ, ସେହି ଅପବାଦ ତୋ' ମୁଣ୍ଡରେ ଲଦି ଦେବାକୁ ଚାହେଁ ନାହିଁ । କାର୍ତ୍ତିକା'ଦି ଶୀଘ୍ର ଖଲାସ ହୋଇ ଘରକୁ ଫେରିବେ । ତାଙ୍କ ପାଖରୁ ମୋର ସବୁ ଦୋଷ ମୁଁ ମାଗି ନେବି । ମୁଁ ଜାଣେ, ସେ ମୋତେ କ୍ଷମା କରିବେ । ସେଇଠୁ, ମୁଁ ତାଙ୍କ ପାଖରେ ହାତ ପାତିବି । ତାଙ୍କର ପାଖରେ ଅଳି କରିବି । ମାଗିବି । କେବଳ ତତେ ନୁହେଁ ଝୁଣ୍ଟି, ଅରକ୍ଷିତକୁ ବି । ଯାଉଛି ।···

ଝୁଣ୍ଟିର ଦେହରେ ନୂଆ ଶିହରଣ । ଝୁଣ୍ଟିର ମନରେ ନୂତନ ଜୀବନର ରଙ୍ଗିନ ସପନ । ଝୁଣ୍ଟିର ଗୁଡ଼ରେ ନବୀନ ପୁଲକର ଅଦମ୍ୟ ସ୍ପନ୍ଦନ । ସେହି ସ୍ପନ୍ଦନର ଦୋଳନରେ ଅନ୍ତର ତଳେ ଚେଚେ ବେଦନାର ତୁହାଇ ତୋଫାନ । ସେଥିରେ କାରୁଣ୍ୟର ସ୍ଵର ।

ତା'ର କୋଡ଼ ଥରୁଛି । ମୁଣ୍ଡ ଭୁମୁଛି । ଶିଥିଳ ବାହୁ ବନ୍ଧନରୁ ଅରକ୍ଷିତ ଓହ୍ଲାଇ ଆସୁଛି । କାନ୍ଦିଲା ସ୍ଵରରେ କହୁଛି, ଯିବୁ ନାହିଁକି ? ମତେ ତ ଡର ଡର ମାଡ଼ୁଛି ବୋଉ ! ଅନ୍ଧାର-ଗୁଜୁଗୁଜୁ ଆସିବ···

ଝୋଷ ବାମହାତରେ ତାକୁ ଦେହକୁ ଆଉଜାଇ କହିଲା, ଯିବାରେ ପୁଅ ! ଟିକିଏ ରହ । ମୋ' ମୁଣ୍ଡଟା କାହିଁକି ବୁଲାଇ ଦେଉଛି । ଦେହ ଥରୁଛି ।

ଚଇତନ ପାଣେ ବ୍ୟଗ୍ର ହୋଇ କହିଲେ, ଚାଲ ଚାଲ ରୁ ଥକି ପଡ଼ିଥିଲୁ । ଠିଆ ଠିଆ ତୋ' ଆଗରେ ମୋ' ନିଜ କଥା ଗପି ତୋ' ମୁଣ୍ଡରେ ଗୁଡ଼ାଏ ଭାବନା ପୂରାଇ ଦେଲି । ଏଇ ବାଟରେ ଦୁଇଚାରି ଜଣ ଚାଲିଯିବାର ତୁ ଦେଖିଥିବୁ । ହୁଏତ କିଏ କ'ଣ ମନେ କରିଥିବ, କି ଅପବାଦ ଦେଇ ପ୍ରଚାର କରିବ, ସେକଥା ବି ଭାବିଥିବୁ ।

ଝୋଷ କହିଲା, ମୋତେ ଭୁଲ ବୁଝନା । ମୁଁ ମିଛଟାରେ ବହୁ ଅପବାଦ ସହିଛି । ମୋ' ଛାତି ପଥର ହୋଇସାରିଛି । କାହାରି ଅପବାଦିଆ କଥାକୁ ମୁଁ ଦେହକୁ ନିଏ ନାହିଁ । ମୁଁ ଜାଣେ, ତମକୁ ଯିଏ ଯେତେ ଦୋଷ ଦେଉ, ତମର ସୁନା-ଚରିତ୍ରରେ କଳା ଲେପିବାକୁ କାହାର ତୁଣ୍ଡ ଖୋଲିବ ନାହିଁ ।

—ମୋ ଉପରେ ତୋ'ର ଏତେ ବିଶ୍ୱାସ ଝୋଷ ?

—ପିଲାଟି ଦିନରୁ । କେମିତି ଭୁଲି ପାରିବ ? ତମେ ଆସ । ଜେଜେମା ଦେଖିଲେ ଭାରି ଖୁସି ହେବ । ଏତେ ତ ଡେରି ହେଲାଣି, ଆଉ ଟିକିଏ ଡେରି ହେଲେ ହେଉ । ଅଲେଖ ପାଇଁ ଯଦି ଭାବୁଛ, ଆଉ ଡେରି ନ କରି ଘରକୁ ଯାଅ ।

—ରାତି ପହରକଯାଏ ପୂଝାରୀ, ଚାକର, କୋଠିଆଙ୍କ ପାଖରେ ଅଲେଖ ରହେ । ମତେ ଖୋଜେ ନାହିଁ । ମୋ'ର ବାରି ଧନ୍ଦା । ଘରକୁ ସହଳ ଫେରି ହୁଏ ନାହିଁ ତ !

ଚଇତନ ପାଣେ ହାତ ଲମ୍ବାଇ ପୁଣି ଅରକ୍ଷିତକୁ ଛାତି ଉପରକୁ ନେଲେ । କହିଲେ, ଚାଲ । ତତେ ମୁଁ ତମ ଘରେ ଛାଡ଼ି ଦେଇ ଆସିବି । ତୋ' ଜନ୍ମ-ଦିନର ପିଠା ମତେ ଖାଇବାକୁ ଦେବୁଟି ?

ଝୋଷ ତା'ର ଉତ୍ତର ଦେଲା, ସତେ ତା'ର ଏଡ଼େ ଭାଗ୍ୟ ହେବ ?

ଚଇତନ କହିଲେ, ତୋ' ହାତର ପିଠା ! ତୋ'ର ଦେହ ଥରୁଛି । ମୁଣ୍ଡ ବୁଲାଉଛି ପରା ! କେଉଁଠୁ ଝୁଣ୍ଟି ପଡ଼ିବା ଅସମ୍ଭବ ନୁହେଁ । ମୋ'ର ଏଇ ହାତଟି ଧରି ଧୀରେ ଧୀରେ ଚାଲିଆ ।

ସେ ତାହାଣ ହାତଟି ବଢ଼ାଇ ଦେଲେ । ଯେଉଁ ହାତଟିର ସ୍ନେହଭରା ପରଶ ଜୀବନରେ କେଜାଣି ସହସ୍ରଥର ସେ ପାଇଛି, ଏବେଯାଏ ସ୍ମରଣରେ ଲାଖି ରହିଛି, ସେହି ହାତଟିକୁ ଧରି ଚାଲିବାକୁ ପ୍ରବଳ ଆଗ୍ରହ ତାକୁ ମତାଉଥିଲେ ବି କିଏ ଯେପରି ହାତଟିକୁ ଅଚଳ କରି ଦେଉଥିଲା । ସେ ହାତ ଥରୁଥିଲା ।

ଚଇତନ ନିଜେ ଠାବ କଲେ ।

ଝୋଷର ହାତଧରି ଆଗେଇ ଚାଲିଲେ । ବହୁ ବର୍ଷ ପରେ ଆଶାସ୍ମୀ-ପୁରୁଷର

ଉଦାର-ପରଶ ଟିଏର ଉପାସୀ ଦେହରେ ନୂତନ ଚେତନାହରା ନଶା ଚରାଇଲା । ନମିଷକରେ ସେହି ନଶା ଚହଟିଲା ଭାବନାକୁ । ଅଜାତ ଭୁଲାଇ ଦେଖାଉଥିଲା ଭବିଷ୍ୟ ଜୀବନର ସୁନେଲି-ସପନ । ସେ ସପନ ଅଧପାସୋରା, କାମନା-ବୋଝର ।

ଦାଣ୍ଡ କବାଟ ଖୋଲା ଥିଲା । ପିଣ୍ଡାର ପାହାଚ ପାଖରେ ଲଣ୍ଠନଟିଏ ଜଳୁଥିଲା । ଟିକିଏ ଦୂରରେ ହାତରେ ଠେଙ୍ଗା ଧରି ରଥିଆ ଠିଆ ହୋଇଥିଲା । ଟିଏର ଜେଜେମା ନିକଟରେ ବସି ତାକୁ କ'ଣ କହୁଥିଲେ ।

ଦୂରରୁ ଆଲୁଅ ଦେଖି ଅରକ୍ଷିତ ଚଇତନଙ୍କ କାଖରୁ ଓହ୍ଲାଇ ପଡ଼ିଲା । ସେହି ଆଗ ଧାଇଁଆସିଲା । ବୁଢ଼ୀଙ୍କ ପିଠିରେ ଲାଗିହୋଇ, ତାଙ୍କ ବେକକୁ କୁଣ୍ଢାଇ ଦୋହଲାଇ ଦେଲା ।

ଖୁସି ହୋଇ ବୁଢ଼ୀ ତାକୁ କୋଳକୁ ନେଲେ । ଗେଲ କରି କହିଲେ, ତୋର କଥା ଭାବୁଥିଲି । ଅସାଧ ଅରମା ବାଟରେ ଅନ୍ଧାରରେ କେମିତି ଟିଏ ତତେ ଆଣନ୍ତା ? ସେଇଥି ବଗ୍ଗୁର ଆଲୁଅ ଦେଇ ରଥିଆକୁ ପଠାଉଥିଲି ।

ଟିଏ ପଛେ ପଛେ ଚଇତନ ପାଣ୍ଡଙ୍କୁ ଦେଖି ବୁଢ଼ୀଙ୍କର ବିସ୍ମୟର ସୀମା ରହିଲା ନାହିଁ ।

ଟିଏ ପଚାରିଲା, ଚହ୍ନି ପାରୁଛୁ ମା ? ଅନ୍ଧାର ହେଲାରୁ ଆମକୁ ଛାଡ଼ିବାକୁ ଆସିଲେ ।

ଚଇତନ ହାତ ଯୋଡ଼ି, ମୁଣ୍ଡ ସାମାନ୍ୟ ନୁଆଇଁ ନମସ୍କାର କଲେ ।

ବୁଢ଼ୀ କହିଲେ, କାହା ମୁହଁ ସକାଳେ ଦେଖିଥିଲିଟି ! କେଡ଼େ ଭାଗ୍ୟ ମୋ'ର ! ଭିତରକୁ ଆସ ବାବା । କାହାପରି ସେଠି କାହିଁକି ଠିଆ ହୋଇଛ ? ଆରେ ରଥିଆ, ତୁ ଏବେ ଯା, ତୋ' କାମ ସରିଲା । ତୋ' ବାପାକୁ କହିବୁ କାଲିଆଡ଼କୁ ଟିକିଏ ଆସିବ ।

ବୁଢ଼ୀ ଉଠିଲେ । ଲଣ୍ଠନ ଉଠାଇ ଘରଭିତରକୁ ଯାଉଁଣୁ ମନକୁ ମନ କହି ହେଲେ, କେଡ଼େ ଭାଗ୍ୟ ସତେ ! ରଜାଘର ପୁଅ ମୂଳଆଦୁଆରେ ପାଦ ଦେଇଛନ୍ତି । ଡାଆଣୀ ବାଘୁଣୀଟା ଏ ଘରେ ପଶିଲାଦିନରୁ ଲକ୍ଷ୍ମୀ ଛାଡ଼ି ପଳାଇଥିଲେ । କାହାର ମହତ ସେ ରଖିଲା ନାହିଁ । କମିଆଁ କରି ପୁଅକୁ ମୋ'ର ମେଣ୍ଢା କରଦେଲା । ଘର ଭୂମିଟା ପାଇଁ ତାକୁ ମତାଇ ମଣିଷମାରୁ କଲା ।

—ଗତ କଥା ଭୁଲି ଯାଅ ଆଇ ! ଭଲ କରିବାକୁ ଯାଇ ମୁଁ ବିପରୀତ କଲି । ନାଟୁଆର ଭୂଣ୍ଡ ଉପରେ ଏ ଘରକୁ ମୁଁ ଆସୁ ନ ଥିଲି । ସେ ଗଲାବେଳେ ଯେଉଁ

ଘଟଣା ଘଟିଗଲା, ସେଥିପାଇଁ ଦୁଃଖରେ, ଲାଜରେ ଏଠାକୁ ଆସିପାରୁ ନ ଥିଲି। ଝିଅ ଆଉ ତା ପୁଅକୁ ଛାଡ଼ିବାକୁ ଆଜି ଆସିଲି।

ଚଇତନ ଖଞ୍ଜା ଭିତରେ ପଶି ଯାଇଥିଲେ। ଝିଅ କବାଟ କଳି ଶିକୁଳି ଲଗାଇଲା। ତରତର ହୋଇ ତା' ଶୋଇବା ଘରକୁ ଚାଲିଗଲା। ସଫା ଆସନ ଖଣ୍ଡିଏ ଆଣି ପିଣ୍ଡାରେ ପାରି ଦେଲା। ରୋଷଘର ପିଣ୍ଡାରେ ରଖା ହୋଇଥିବା ପାଣିଗରାରୁ ଅଜାଡ଼ି ଲୋଟାଏ ପାଣି ଆଣି ପାଖରେ ଠିଆ ହେଲା। ମନର ସଂକୋଚ ତା'ର ଦୂରେଇ ଯାଇଥିଲା। କହିଲା, ସେ କଣ ଆସୁଥିଲେ କି ମା ? ଅରକ୍ଷିତର ଜନ୍ମଦିନର ପିଠା ଖାଇବାକୁ ଡାକିଲାରୁ ସେ ଆସିଲେ।

ଚଇତନ ହସ ହସ ହୋଇ ତା' ମୁହଁକୁ କଣେଇଁ ଚାହିଁଲେ। ଝିଅର ଉଲ୍ଲସିତ ଅପାଙ୍ଗରେ ତାଙ୍କର ମୋହିତ ଦୃଷ୍ଟିର ମିଳନ ତା'ର ମୁହଁରେ ଶିହରି-ସରମର ରଙ୍ଗ ବୋଳିଲା। ସେ ଆଖି ନୁଆଁଇ ରୋଷଘର ପିଣ୍ଡାକୁ ଗଲା।

ତା'ର କାନରେ ବାଜିଲା, ବୁଢ଼ୀ କହୁଥିଲେ, ଯାହା କହନ୍ତି ବନ୍ଧୁର ଘରର ଶାଗ ଖରଡ଼ା। ଝିଅ ଖୁଦପିଠା କରିଛି ରେ ନାତି ! ମନରେ ସେନେହ ଥିଲେ ସେଇ ଖୁଦପିଠା ତୁଣ୍ଡକୁ ଅମୃତ ପରି ଲାଗିବ। ଏଲୁଟିଆ ଝିଅଟା। ଘରଯାକର କାମ। ରାତି ନ ପାହୁଣୁ ଉଠେ, ରାତି ଅଧରେ ବିଛଣା ଧରେ। ଦେହରେ ଅଳସ ନାହିଁ। ବାତଚକ୍ର ପରି ବୁଲୁଥାଏ। କଥା କହିଲେ ଏ କାନରୁ ସେ କାନକୁ ଶୁଭିବ ନାହିଁ। ଶଙ୍ଖ-କଣ୍ଢେଇ ରୂପ। ଏମିତିକା ଲକ୍ଷ୍ମୀ ଝିଅକୁ କି ପରାଭବ ସେ ଅଲକ୍ଷଣା ନ ଦେଲା, ଆହା !

ଚଇତନ ଆସନ ଉପରେ ବସିଲେ। କହିଲେ, ମୁଁ ସବୁ ଜାଣେ ଆଈ !

—ଜାଣିବୁ ନାହିଁ କାହିଁକି ? ତା'ର ପିଲାଟି ଦିନରୁ ସେ ଶାଶୁଘରକୁ ଯିବା ଦିନ ଯାଏ, ତୁ ତା'କୁ କେଡ଼େ ଶରଧା କରୁଥିଲୁ। ସେ ବି ତତେ ଖୁବ ଭଲ ପାଏ। କମଳା ତାକୁ ସାନଭଉଣୀ ପରି ମଣୁଥିଲା।

ଝିଅ କହିଲା, ତୁ ତ ଗପୁଡ଼ି ପେଡ଼ି। ଦେଖିଲୁ ହାତରେ ଘିଅ-ଡାବରଟି ଧରି ସେ କେମିତି ତୋ' ମୁହଁକୁ ଚାହିଁ ରହିଛନ୍ତି। ତୋ' ଗପ ଶୁଣିବେ, ନା ପିଠା ଖାଇବେ ?

—ତୁ ଖାଆରେ ନାତି। ମୁଁ ଆଉ ପାଟି ଖୋଲିବି ନାହିଁ। କେତେ ଯୁଗ ପରେ ଏ ଘରେ ପାଦ ଦେଇଛୁ। ମୋ ଛାତି କୁରୁଳି ଉଠୁଛି। ସବୁ ଉଦବେଗ ଉଗାଳି ଦେବାକୁ ମୋ ଆତ୍ମା ବିକଳ ହେଉଛି। ମୁଁ ଏବେ ତୁନି ରହୁଛି। ଅରକ୍ଷିତଟି ଆଗରେ ବସି ଢୁଳେଇଲାଣି। ଦିନ ସାରା ତେଣେଇଁ ତେଣେଇଁକା ହାଲିଆ ହୋଇଛି। ତାକୁ ମୁଁ ଶୁଆଇ ପକାଏଁ। ଆଲୋ ଝିଅ, ଚଇତନକୁ ପେଟେ ନଖାଇବୁ, ତେବେ ଯାଇଁ ଛାଡ଼ିବୁ, ହଁ···

ବୁଢ଼ୀ ଧୀରେ ଧୀରେ ଉଠିଲେ । ନଦରେ ଘାଣ ହେଉଥିବା ପିଲଟିର ଡେଣା ଧରି ସେ ରହୁଥିବା ଘରଭିତରକୁ ଚାଲିଗଲେ । ଧାରେ ଚୁଖା ଉପରେ ମାଟି ଦୀପ ଜଳୁଥିଲା । ପୁନାଙ୍ଗ ତେଲରେ ଜଳେ । ଅଳପ ମଧୁର ଆଲୁଅ । ବୁଢ଼ୀଙ୍କ ଆଖିକୁ ଥଣ୍ଡା ରଖେ । ବାଡ଼ିର ଗଛରୁ ଫଳ ସଂଗ୍ରହ କରି, ଫଟାଇ ପେଡ଼ାଇ ତେଲ ସାଇତି ରଖିଛନ୍ତି ।

ଟଗର ମଣିଲା, ଦୁହିଁଙ୍କୁ ଏକାଠି ରହିବାର ସୁଯୋଗ ଦେବାକୁ, ମନଖୋଲା କଥାଭାଷା ହେବାକୁ ତା'ର ଜେଜେମା ଆଡ଼େଇ ଗଲେ । ଯେଉଁ ବିଷୟରେ ଆଳାପ ଆଲୋଚନା କରାହେବ ତା'ର ଆଭାସ କଥାର ଠାରରେ ଦେଇଗଲେ । ସେ ଜାଣନ୍ତି ନାହିଁ ତ ଅନ୍ଧାରର ଆବରଣ ତଳେ ପରସ୍ପରକୁ ଲୋଡ଼ିଲା ଦିଓଟି ମନର ଆଳାପ-ଆଲୋଚନା ଶେଷ ହୋଇଛି, ଦିଓଟି ହାତର ବେଲୁବେଲ ନିବିଡ଼ ସଂଯୋଗ ଆଲୋଚନାର ମନବେଦନା ନିଷ୍ପତ୍ତି କରିସାରିଛି ।

ଚଇତନଙ୍କର ଭୋଜନ ସରିଲା । ଟଗର ଯେତେ ଢାଳାଇଲେ ସେ ଥାଳି ଉପରେ ହାତ ଘୋଡ଼ାଇ ବାରଣ କଲେ । କହିଲେ, ଏଣିକି ପେଟ ଫାଟିବ । ତୋ ପାଇଁ କିଛି ରଖିଛୁ, ନା ମୋ ପାଇଁ ତୁ ଉପାସରେ ଶୋଇବୁ ?

ଟଗର ହସିଲା । କହିଲା, ଆଉ ଯାହା ଅଛି ସେତକ ଯଦି ଖାଆନ୍ତ, ସତେ ଯଦି ମତେ ଉପାସ ରହିବାକୁ ପଡ଼ନ୍ତା ମୁଁ ଆହୁରି ଖୁସି ହୁଅନ୍ତି । ତମକୁ ଏ ଘରେ ଦେଖିଲା ବେଳରୁ ମୋର ଭୋକଶୋଷ ଅନ୍ତର ହୋଇଛି; ପୁଣି କେବେ ଏ ସୁଯୋଗ ମୋ ଭାଗ୍ୟରେ ଘଟିବ କେଜାଣି ।

ଚଇତନ ଆଚମନ ଶେଷ କଲେ । ହାତ ପୋଛିବାକୁ ଅଳଗୁଣିକୁ ଚାହିଁଲେ । ଗାମୁଛାଟି ପିଣ୍ଡା ତଳକୁ ଖସି ପଡ଼ିଛି ଦେଖି ଟଗର ତା'ର ପିନ୍ଧାଶାଢ଼ିର କାନି ବଢାଇ ଦେଲା ।

ଚଇତନ ନଠେଇ ନଠେଇ ହାତ ପୋଛିଲେ । ପାଖରେ ଠିଆ ହୋଇ ତାଙ୍କୁ ଚାହିଁ ରହିଥିବା ଟଗରର ନୂଆରୂପ ଦେଖୁଥିଲେ । ତା'ର ଏ ସୁଷମ ଠାମ, ସରଳ ମନଜଣା ଠାଣି ସେ ଆଉ କେବେ କେଉଁଠି ଦେଖି ନ ଥିଲେ । ଭରପୂର ଯୌବନ, ନିଖୁଣ ମୁହଁ । ମନଓଟରା ଆଖି । କିନ୍ତୁ ତା'ର ଦେହ ଓ ରୂପକୁ ଝଟ-କାଇବାକୁ ଶୋଭନ ବସନ ଭୂଷଣ ନାହିଁ । ଦରିଦ୍ର ବେଶ ।

କହିଲେ, ଏଇ ହାରଟି ତୋ' ବେକକୁ ଗ୍ରେଟ ହେଉଛି ଟଗର ।

—ଅରକ୍ଷିତର ବେକକୁ ବଡ଼ ହେଲା । ମନା କ ମାନି ଜେଜେମା ମତେ ପିନ୍ଧାଇ ଦେଲା । ତା କଥା ମୁଁ ଭାଙ୍ଗି ପାରିଲି ନାହିଁ । ଉତାରି ଦେଉଛି ।

ଟଗର ବେକର ହାରରେ ହାତ ଦେଉଣୁ, ଚଇତନ ତା'ର ଦୁଇହାତ ଧରି କହିଲେ, ଥାଉ ଥାଉ, ଉତାରିବୁ କାହିଁକି ? ସୁନ୍ଦର ଦିଶୁଛି ଯେ ଟିକଏ ଲମ୍ବ

ହୋଇଥିଲେ ଗ୍ରୀବ ଉପରେ ପଦକଟି ଆହୁରି ଭଲ ଦିଶନ୍ତା । ଏଇଟି ତା' ପାଇଁ ଗଢ଼ା ହୋଇଥିଲା । ତୋ' ବେକ ପାଇଁ କ'ଣ ଆମ ଘରେ ହାରର ଅଭାବ ଅଛି ? ମୋର ଆଉ କିଏ ବା ଅଛି ଯେ ପିନ୍ଧିବ ?

ଟଗ ଜାଣେ, ମଣିକୁଦର ଝିଅ ପରି ରତନପୁରର ଚଇତନଙ୍କର ଆଉ କେହି ଭାଇଭଉଣୀ, ଏପରିକି ନିକଟ ସମ୍ପର୍କର ଅନ୍ୟ କେହି ନାହାନ୍ତି । ପାଢ ବଂଶର ସମ୍ବଳ ଏକା ଅକର୍ମଣ୍ୟ ଅଲେଖ । ତା ପାଇଁ ଚଇତନ ସବୁବେଳେ ଆକୁଳ-ବିକଳ ।

ଖୁଣ୍ଟିଆ ବଂଶର ଯିଏ ସମ୍ବଳ, ତା'କୁ ଝିଅ ଅସ୍ୱୀକାର କରିଛି । ଚଇତନ ଭାଇ ସେହି ଅଲକ୍ଷଣୀଟାର ଦୀର୍ଘାୟୁ କାମନା କରୁଛନ୍ତି । ସେହି ପୁଣି ତାକୁ ସ୍ନେହର ଡୋରରେ ପରମ୍ପରା ପରନ୍ତ ଗୁନ୍ଥାଇ ଦେଉଛନ୍ତି ! କ'ଣ ତାଙ୍କର ମନରେ ଅଛି ? କଦିଛିଣା ଦେହଟାର କଳା ଲଗା ଭୋକ ପାଇଁ, ସେ ଭୋକକୁ ଆହୁରି ତେଜାଇବା ପାଇଁ, ସେ ସୁନ୍ଦର ଶାଢ଼ି ଆଉ ଆଖିଝଲସା ଦାମିକା ଗହଣା ପିନ୍ଧିବ ? କାହିଁକି ? କେଉଁ ଭବିଷ୍ୟ ଆଶାରେ ? ନିଜ ରୂପରେ ନିଜେ ମୁଗ୍ଧ ହୋଇ ଅଶାସ୍ତ୍ରୀରେ ଉତ୍ତେଜିତ ହୋଇ, ଖାଲି ଦେହଟାର ଭୋକ ମେଣ୍ଟାଇବାକୁ ଅକୁଳକୁ ଭାସିଯିବ ନାହିଁ ତ ?

ଟଗର ମନରେ ଲୁଚିଥିବା ଭାବନାର ତୋଫାନ ତା'ର ଦେହକୁ ଥରାଇ ଦେଲା । ଦୁଇ ଆଖିରେ ଲୁହ ଟଳଟଳ ହେଲା । ମୁହଁର ରଙ୍ଗ ବଦଳିଲା । ପାଟିରୁ କଥା ବାହାରିଲା ନାହିଁ । ସେ ତା'ର ଦୁଇ ହାତ ବେକରୁ ତଳକୁ ଖସାଇଲା ।

ତା'ର କାତର କରୁଣ ଅବସ୍ଥା ଚଇତନଙ୍କର ନିଜଭୁଲି ଆଗ୍ରହର ଗତି ଅଟକାଇଲା । ସେ ସାବଧାନ ହେଲେ । ହାତ ଓହ୍ଲାଇ ପଛେଇ ଆସିଲେ । କହିଲେ, ତୋ ପାଇଁ ମୋ'ର ସ୍ନେହର ଆବେଗକୁ ମୁଁ ଅଟକାଇ ପାରିଲି ନାହିଁ । ନ ଜାଣି ତୋ ମନରେ ଆଘାତ ଦେଲି କି ଟଗ ?

—ନାହିଁ, ନାହିଁ । କିପରି ମୋ ମନର ଆନନ୍ଦ ମୁଁ ପଦାକୁ ଦେଖାଇ ପାରିବି ? ମୁଁ ତ ଅତି ନିଶମାଖୀ । ତମର ସ୍ନେହ, ତମର ଦୟା ମୋ'ର ଆନନ୍ଦ, ମୋର ଗରବର ଧନ ! ସେତିକି ମୋ'ର ଗ୍ରୀବ ତଳେ, ଅମୂଲ୍ୟ-ରତନ ପରି ସାଇତି ରଖିବି । ଆଉ କିଏ ତା'କୁ ଦେଖିବ ? ତମର ଦାନକୁ ଗ୍ରୀବ ଉପରେ ଦୋଳାଇ, ଦେହରେ ମଣ୍ଡି, କିପରି ମୁଁ ମୁଣ୍ଡ ସିଧା ରଖି, ଆଖି ଟେକି ବାଟ ଚାଲିବି କହ !

ଚଇତନଙ୍କର ଜ୍ଞାନ ଫେରିଲା । ବିବେକ ଚେଇଁ ଉଠିଲା । ଆଖିର ପରଦା ମିଳାଇଗଲା । ସେ ଆଜି ପୁଣି ନୂଆ ରୂପରେ ଟଗକୁ ଚିହ୍ନିଲେ । ସେହି ଟିକି ଝିଅଟି, ଯାହାକୁ ସେ ଲଙ୍ଗଳା ବେଳରୁ ଦେଖି ଆସିଥିଲେ, କୋଳରେ କାଖରେ ଧରିଥିଲେ, ତାଙ୍କ ଆଗରେ ସେ ଦେବୀପ୍ରତିମା ପରି ଠିଆ ହୋଇଛି । ନିଜର ତେଜରେ ନିଜେ ଝଟକୁଛି । ସବୁ ଅତ୍ୟାଚାର, ଅପବାଦ, ଅଭାବ, ଅନଟନ, ଅକ୍ଳାନ୍ତ ପରିଶ୍ରମ ତା'ର ଦେହର ଝଟକ ଓ ମନର ଟେକକୁ ଊଣା କରିପାରି ନାହିଁ !

କହିଲେ, ତୁ ଠିକ୍ କହୁଛୁ ଟଗ ! ମତେ ତୁ ଚେତାଇ ଦେଉଛୁ । ମୁଁ ତୋର ମନ ପାଇସାରିଛି । ତା'ର ଉଜ୍ଜ୍ୱଳ ଝଲକ ଦେଖିଛି । ସେତକ ତୋର ଦେହର ଲାବଣ୍ୟକୁ ମୋ' ଆଖିରେ ବହୁଗୁଣ ବଢ଼ାଇଛି । ଗ୍ଲର ସୁନାରୂପାର ଗହଣା ତା'କୁ ଅଧିକ ବଢ଼ାଇ ପାରିବ ନାହିଁ । କାର୍ତ୍ତିକଦା'ଙ୍କର ଫେରନ୍ତା ବାଟକୁ ମୁଁ ଚାହିଁ ରହିଛି । ମୋ ପ୍ରସ୍ତାବରେ ସେ କ'ଣ ରାଜି ହେବେ ନାହିଁ ?

ଟଗ କହିଲା, କେଜାଣି ?

—ମୁଁ ତାଙ୍କର ପାଦ ଧରିବି ଟଗ ! ତୋ'ର ପାଇଁ, ତୋ' ପୁଅଟି ପାଇଁ···

—ମୁଁ ବି ସେଇଆ କରିବି । ତମର ପାଇଁ, ଅଚଳିଆ ଅଲେଖଟି ପାଇଁ···

ସବୁ କହି ହୋଇଗଲା । ଜିଭ କାମୁଡ଼ି ଟଗ ଦୁଇହାତର ପାପୁଲିରେ ମୁହଁ ଘୋଡ଼ାଇଲା । ଦହେଁ ଦୁହିଙ୍କର ଭବିଷ୍ୟତକୁ ମିଶାଇ ଏକାକାର କରିବାକୁ ନୀରବ ସମ୍ମତି ଜଣାଇଲେ ।

— ୧୩ —

ଚଇତନ ଯାନ୍ତ ବିଦାୟ ନେଲେ ।

ଟଗ ଦାଣ୍ଡ କବାଟ କିଳି ଅଗଣାକୁ ଆସିଲା । ଅକ୍‌କା ହୋଇ ଠିଆ ହେଲା । ନିଶବ୍ଦ ଖଞ୍ଜା । କେଳେମା ଶୋଇ ପଡ଼ିଲେଣି । ତାଙ୍କର ସ୍ୱରଶବ୍ଦ ନାହିଁ । ପୁଅଟି ବି ଶୋଇ ପଡ଼ିଛି ।

କାନ ଛାଁ ଛାଁ ହେଉଛି । ମୁଣ୍ଡ ଭିତରେ ଏକା ରାହାରେ କିଏ ବଇଁଶୀ ବଜାଉଛି । ଗୋଟିଏ ଲହର । ଶ୍ରୁତଅସ୍ପ କରୁଣ ସ୍ୱର । ଏକୁଟିଆ ଜୀବନରେ ନିରୋଳା ରଜନରେ ସେହି ସ୍ୱରର ଲହର ସେ କେତେଥର ଶୁଣିଛି । ମନେ କରୁଛି, ଅନାହୂତପୁର ନାଦ, ଯହିଁରେ ଝୁଣ୍ଟିଆ-ବଂଶର ବଡ଼ବଡ଼ୁଆଙ୍କର ଆକୁଳମିନତି ମିଶି ରହିଛି ।

ସେମାନଙ୍କ ପାଇଁ ଟଗ ପାଣି ଟେକୁ ନାହିଁ । ସେମାନେ ଭୋକ-ଶୋଷୀ । ତା'ର ହାତକୁ ଚାହିଁ ରହିଛନ୍ତି । ସେମିତି କ'ଣ ଚାହିଁ ରହିଛି ଝିଅ ? ରୋଗ-ଯନ୍ତ୍ରଣାରେ ଘାଣ୍ଟି ହେଉଛି ? ଖଁ-ଖଁ ଖଙ୍କାର କାଢ଼ି ଏଇ ଅନ୍ଧାର ଘରରେ ଶୋଇଲା ଠାବରେ ଏଣେ ତେଣେ ପକାଉଛି ? ସେଥିରେ ମୁଣ୍ଡା ମୁଣ୍ଡା ରକ୍ତ ! କେହି ତା'ର ପାଖ ପଶୁ ନ ଥିବେ । କିଏ ଲଗାଇଥିବ ଆଲୁଅ, ତୁଣ୍ଡରେ ଦେବ ପାଣି ?

ଅନ୍ଧାର, ବଳବଳ ଅନ୍ଧାର । ଉଠିବାର ଶକ୍ତି ନ ଥିବ । ଦୁର୍ବଳ ହାତ ଅଣ୍ଡାଳୁଥିବ । କଅଣ ସେ ଖୋଜୁଥିବ ? ତା'ର ଗଞ୍ଜେଇ ଚିଲମ, ଦିଆସିଲି ମୂଠା ? ଏତେସର ହେଲାପରେ କେଜାଣି ଗଞ୍ଜେଇଟିକା ଛାଡ଼ି ଦେବଣି । ମଦପାଣି ପିଉ ନ ଥିବ । ତେବେ କାହାକୁ ସେ ଖୋଜୁଛି ? ତା'ର ସେହି ଅଲକ୍ଷଣା ସାଙ୍ଗ-

ମାନଙ୍କୁ, ଯେଉଁମାନେ ତା'ର ଦୁର୍ଦ୍ଦଶା ପାଇଁ ଦାୟୀ ? ସମସ୍ତଙ୍କୁ ସେ ବିଶ୍ୱାସ କରୁଥିଲା । ତାଙ୍କ ପାଇଁ ଘର ଜୁର କଲା । ତାଙ୍କର ଶିକ୍ଷାରେ ଭୂମିବାଡ଼ି ବିକ ଭିଖାରି ହେଲା । ସେମାନେ ପାଖ ପଶୁ ନଥିବେ । ଝିଅ ସେମାନଙ୍କର ନିଜ ରୂପ ଦେଖି ସାରିବଣି । ବୁଝି ସାରିବଣି, ସେମାନେ ଶତ୍ରୁ ଥିଲେ । ସେମାନେ ତା'କୁ ମରଣର ଚୁଲି ଭିତରକୁ ମୋହି ଦେଉଥିଲେ । ସେ ଜଳିଛି । ଏବେବି ଜଳୁଛି । ସେମାନଙ୍କୁ ସେ ଖୋଜୁ ନ ଥିବ । କାହାକୁ ତେବେ ?

କର୍ଣ୍ଣେଲକନ୍ୟା, ଗୋଟାଗୁଏଁ ଆପଣାର ବୋଲି ଢଙ୍ଗ ଦେଖାଇ ବେଲ-କରୁଥିବା କୁଳମୀ ପୁନାଦେଇଲକୁ ? ସେ ବା କାହିଁକି ଝିଅର ପାଖ ପଶୁଥିବ ? ଶିବବାବାଙ୍କୁ ଆପଣାର କରି ସେ ସବୁ ପାଇସାରିଛି । ତା'ର କି ଲୋଡ଼ା ?

ଝିଅ ଚିହ୍ନି ସାରିବଣି । ଯମଦୂତଙ୍କ ସଙ୍ଗେ ଭେଟାଭେଟି ହେଲାବେଳେ, ଦୁନିଆଁ ଲୋକଙ୍କୁ ଚିହ୍ନିଛି ବୋଲି ବୁଝିଲେ, ତା'ର କି ଲାଭ ହେବ ?

ଖୋଜୁଥିବ ତାକୁ ପରା, ତା'ର ଟୋକୀ । ସାତ ଆଠ ବର୍ଷର ଘରକରଣା ଭିତରେ ଘଟିଥିବା ଦିନ ଦିନକର ଘଟଣା ନିଶ୍ଚେ ତା'ର ମନେ ପଡୁଥିବ । ସେ ବୁଝି ସାରିଥିବ ଯେ ଟୋକୀ କେବଳ ତା'ର ଖାଇବା, ସେ ଆଉ ଖେଳକଣ୍ଢେଇ ନ ଥିଲା, ସେ ଥିଲା ତା'ର ସବୁସହୁଣୀ ମାଆ ପରିକା । ଅଜଟିଆ ପୁଅର ସବୁ ଅଝଟ ସହୁଥିଲା । ସେ ପୁଣି ଥିଲା ଗୋଟିଏ ଓଲମୀ, ଶାନ୍ତ, ନିରୀହ ଭଉଣୀ ପରି । ଯାହା କହିଲେ ଓଜର ଆପତ୍ତି କରୁ ନ ଥିଲା, ବୋଲ ମାନୁଥିଲା ।

ହାତ ଅଣ୍ଟାଳି ଝିଅ ତା'କୁ ଖୋଜୁଛି, ଯାହାକୁ ସେ ପାଖରୁ ତଡ଼ି ଦେଇଛି, ଯାହାର ପେଟର ପିଲାକୁ ଥରେ ଚୁମି ଦେଇ ଯିବାକୁ ସେ ଆସି ନାହିଁ ?

ଆସି ପାରୁ ନାହିଁ କି ? ଦେହରେ ଶକତ ନାହିଁ ! ମନରେ ବଳ ନାହିଁ ? ଜୀବନ ହୋଇଛି ହା-ହୁତାଶିଆ ? ଯିବାକୁ ଖବର ପଠାଇ ପାରୁନାହିଁ । ପାଞ୍ଚ ବର୍ଷର ଛଡ଼ାଛଡ଼ି ପରେ ମନରେ ଆଶା ପଶୁନାହିଁ । ସେ ନିର୍ଲଜପଣିଆରେ ଖାଲି ଖବରଟାଏ ପଠାଇ ଦେଲେ ବାପଘରେ ସୁଖ ଓ ନିର୍ଝଞ୍ଜାଳର ଜୀବନକୁ ପଛରେ ଛାଡ଼ି ଟୋକୀ ଆତୁରି ହୋଇ ଧାଇଁଯିବ ? କେଉଁ ଭୋଗଭାଗ୍ୟ ପାଇଁ ?

ନିର୍ମଳ ଆକାଶର ମିଟିମିଟି ନକ୍ଷତ୍ରଗୁଡ଼ିକୁ ଟୋକୀ ଚାହିଁଲା । ପିଲାଟିଦିନରୁ ସେମାନଙ୍କୁ ସେ ସେମିତି ଦେଖିଛି । ସେମାନେ ମୂକ । ସେମାନେ ବଧିର । ମଣିଷର ଭଲମନ୍ଦ, ନୀତି ଅନୀତି ସବୁ ଦେଖନ୍ତି । ତୁଣ୍ଡର ଭାଷା ଶୁଣିଥିବେ । କେଜାଣି ମନର ଭାବନା ବି ଜାଣିପାରୁଥିବେ ।

ସେମାନେ ତୁନିତାନି । ଜାଣୁଥିବେ, ନିରମାଖି ଟୋକୀର ଗ୍ଲାନତଳେ ଅତୀତ ବାହୁନି ବାହୁନି କାନ୍ଦୁଛି । ଅତୀତର ଡୋର ଛିଣ୍ଡାଇ ଭବିଷ୍ୟର ଡୋରରେ ଜୀବନକୁ

ଚିରଦିନ ପାଇଁ ବାନ୍ଧିବାକୁ, ଅନ୍ୟ ଚିନ୍ତାଧାର ଚାଲିବାକୁ ସେ ରାଜି ହୋଇଛି, ନିଜେ ବେକ ଦେଖାଇ ଦେଇଛି । ଅନ୍ୟ ଗତି ଆଉ ନାହିଁ ।

ଝିଅର ମଙ୍ଗଳ ପାଇଁ ସେ ମହାଦେବଙ୍କୁ ଜଣାଇ ସାରିଛି । କେଉଁଠି ହେଲେ ମହାପାପ ଉଠିଥିବ । ଏବେ ବି ସେ ଜଣାଣ କରୁଛି, ହେ ଠାକୁରେ, ତା'କୁ ଭଲ କରିଦିଅ । ସେ ସୁସ୍ଥ ସବଳ ହେଉ । ଭଲ ବୁଦ୍ଧି ତା'ର ହେଉ ଠାକୁରେ, ସେ ନୂଆ ସଂସାର କରୁ । ସୁଖରେ ରହୁ । ପାଞ୍ଚ ପୁଅଙ୍କର ବାପ ହୋଇ ଖୁଣ୍ଟିଆ ବଂଶର ନାମ ରଖୁ । ହେ ଠାକୁରେ— !

ଟଗ୍ରି ହାତ ଯୋଡ଼ି କପାଳରେ ଲଗାଇଲା । ଶୂନ୍ୟକୁ ଚାହିଁ, ମୁଣ୍ଡ ଟେକି ଦେବଦେବ ମହାଦେବଙ୍କୁ ପ୍ରଣାମ କରି ବାରମ୍ବାର ଜଣାଣ କଲା । ଦେହ ଭୁଲାଇ ଚାରିଦିଗକୁ ତା'ର ମନର ଜଣାଣ, ଯେତେ ଯେଉଁଠି ଶିବଶଙ୍କର ବିଜେ କରିଛନ୍ତି, ସମସ୍ତଙ୍କ ପାଖକୁ ପଠାଇଲା ।

ଆଖିରୁ ଅମାନିଆ ଲୁହ ଝରି ପଡ଼ୁଥାଏ । ଚିବୁକ ଉପରେ ପଡ଼ି ସେ ଲୁହ ଟୋପା ଟୋପା ହୋଇ କୋହଥିବା ଉନ୍ନତ-ସ୍ତନର ଶିଖ ଶୀତଳ କରୁଥାଏ । ଖୁଣ୍ଟିଆ କୁଳର ବୋହୂପଣିଆକୁ ନିଜ ମନରୁ, ନିଜ ଅଙ୍ଗରୁ ଧୋଇ ଧାଇ ନିଶ୍ଚିହ୍ନ ନିର୍ମଳ କରୁଥାଏ ।

ବୁଢ଼ୀଙ୍କର ନିଦଭାଙ୍ଗିଲା । ସେ ଡାକ ଛାଡ଼ିଲେ, ଆଲୋ ଟଗ୍ରି, ଛୁଆଟାକୁ ମଶା ଚରିଗଲେ । ମୋ' ଆଖି କେତେବେଳେ ମାଡ଼ି ପଡ଼ିଲା । ଚଇତନ କ'ଣ ଯାଇ ନାହିଁ ? ପିଲାକୁ ନେବୁ ?

ଟଗ୍ରି ଉତ୍ତର ଦେଲା, କେତେବେଳୁ ସେ ଗଲେଣି । ମୁଁ ଯାଉଛି ରହ ।

ଲୁଗା ସଜାଡ଼ି ଟଗ୍ରି ଅଞ୍ଚଳରେ ମୁହଁ ପୋଛିଲା । ଦୀର୍ଘଶ୍ୱାସ ଛାଡ଼ି ପ୍ରକୃତିସ୍ଥ ହେଲା । ଆଲୁଅକୁ ସାମାନ୍ୟ କମାଇ ସେ ତା' ଜେଜେମାଙ୍କ କୋଠରୀରେ ପଶିଲା । ତା'ର ଉପସ୍ଥିତିରେ ବୁଢ଼ୀ ହାତ ଭରା ଦେଇ ଉଠିଲେ । ପଚାରିଲେ, କେତେବେଳେ ଗଲା ?

—କହିଲି ପରା, କେତେଥର କହିବ ?

—ତୁ ରାଜି ହେଲୁ ତ ?

—ମୋ'ର ରାଜି ଅରାଜିରେ କ'ଣ ଥାଏ ମା ! ବାପା ପିନା ଫେରି ନାହାନ୍ତି, ତୁ ତ ଘରର ମୁରବି ବସିଛୁ । ମୁଁ ବାପ ଘରେ ଝିଅ । ଯେଉଁଠି ନେଇ ଯୋଇ ଦେଲ ସେଠି ମୁଁ ମୋ କର୍ତ୍ତବ୍ୟରେ କେବେ ହେଳା କରି ନ ଥିଲି । ଯେତେ ଦୁଃଖ ସହିଲି, ଦିନେ କେବେ ତମକୁ ଜଣାଇଁ ନ ଥିଲି । ମାଡ଼ ମାରି ତଡ଼ିବାରୁ, ପୁଣି ଆସି ଏଠି ଆଶ୍ରା ନେଇଛି । ଗୋଟାକରୁ ଦିଓଟି ହୋଇଛି । ପୁଣି ଯେଉଁଠି ନେଇ ଯୋଇବ, ଯିବି । ନାହିଁ କରିବାକୁ ମୋ'ର ରାହା ନାହିଁ ।

ବୁଢ଼ୀ ଉଠି ବସିଲେ । କହିଲେ, ସତ ଯେ, ମୁଁ ପଗ୍ଭରୁଛୁ ଚଇତନ ଉପରେ ତୋ'ର ବିଶ୍ୱାସ ନାହିଁ ?

—ନିଜ ଉପରେ ମୋ'ର ବିଶ୍ୱାସ ଅଛୁ ଲୋ ମା ! ତାଙ୍କୁ ମୁଁ ପିଲା ଦିନରୁ ଜାଣେ । ମୁଁ ବି ଜାଣିଛୁ, ସେ ମତେ ସ୍ନେହ କରନ୍ତି । ତାଙ୍କ ଉପରେ ତା'ର ଓ ବାପାଙ୍କର ବିଶ୍ୱାସ ନ ଥିଲେ ମୁଁ କ'ଣ ବଳେ ଧାଇଁ ଯାଇ ତାଙ୍କ ଘରେ ପଶିବି ?

ଝିଅ ଅରକ୍ଷିତଙ୍କୁ ତଳୁ ଉଠାଇ ଜାନ୍ଦରେ ପକାଇ ଗୁଡରେ ଧଇଲା ।

ବୁଢ଼ୀ ନିଜକୁ ନିଜେ କହୁଥିବାର ତା କାନରେ ବାଜିଲା—ମୋ ଝିଅ ସବୁଦିନେ କୁହାର ବୋଲର । ମୋ' ଝିଅର ସରସ ବୁଦ୍ଧି । କାର୍ତ୍ତିକାକୁ ବୁଝାଇ ଦେଲେ ସେ ବୁଝିବ । ହେ ବଡ଼ ଠାକୁରେ, ତମେ ସବୁ କରୁଛ । ତମେ ସମସ୍ତଙ୍କୁ ସବୁ କରାଉଛ । ହଟ କରି ଭୁଆଁ ବୁଲାଅ ନାହିଁ । ମୋ ଝିଅକୁ ରାଜରାଣୀ କର । ଦେଖିବି । ସେଇଠୁ ମରିଲେ ଯେଣେ ମନ ତେଣେ ନିଅ । ସରଗ ହେଉ, ନରକ ହେଉ, କି ଆଉ କେଉଁଠିକି, ତମ ଇଚ୍ଛା ।

ଝିଅ ମନ ଉଲ୍ଲାସରେ ନିଜ କୋଠରୀକୁ ଆସିଲା ।

ଭବିଷ୍ୟ ଜୀବନର ସୁଖସପନରେ ଦିନରାତି ତା'ର ବେଗି ବେଗି କଟି ଯାଉଥିଲା । ତା'ର ଉଦ୍ଧତ ଚଲନରେ ନିତିଦିନିଆ କାମଗୁଡ଼ିକ ଯେପରି ଖେଳି ହାତ ହଲାଇଲେ ହୋଇଯାଏ । ଚଲନରେ ଫୁର୍ତ୍ତି । ମୁହଁରେ ହସ । ଗଲାଅଇଲାଙ୍କ ସଙ୍ଗେ ଲାଜ ଲାଜ ଅଳପ ଆଳାପ । ସତେକି ସେମାନେ ସବୁ ଜାଣିଲେଣି ।

ଦିନ କେଇଟିରେ ସେ ଧାରଣା ତା'ର ବଦଳିଗଲା । ସେ ବୁଝିଲା, ଶିବ-ରାତ୍ରିର ଘଟଣା କାହାର ଗୋଚରକୁ ଆସି ନାହିଁ । ଡବଡ଼ୀ ଜେଜେମା ଗୁଣ୍ଡିକୁ ଆସ୍ତରେ ରଖି ପାରିଛନ୍ତି ।

ମନ ଖୋଜୁଥିଲା ଚଇତନଙ୍କୁ । କାହିଁକି ସେ ମୁହଁଛପା ଦେଇ ରହିଲେ ? ଶିବରାତ୍ରିର ସୁହାଗ ସେ କ'ଣ ମନରୁ ପୋଛିଦେଲେ ? କିଏ ଜାଣେ କାହିଁକି କାହାର ମନ କ୍ଷଣକରେ ବଦଳିଯାଏ ? ତାଙ୍କର ସ୍ନେହର ଦାନ ରୂପେ ସେ ଯାହା ତାକୁ ଦେବାକୁ ଗ୍ଭହୁଁଥିଲେ, ଆନନ୍ଦରେ ଗ୍ରହଣ କରିବାକୁ ଝିଅ ଆଗ୍ରହ ଦେଖାଇ ନ ଥିଲା; ଓଲଟି ବିନସ୍ତର ସହିତ ମନା କରିଥିଲା । ତାଙ୍କର ମନରେ, ନିଜ ଅଜାଣତରେ ସେ କ'ଣ ଆଘାତ ଦେଇଥିଲା ? ସେ କଣ କିଛି ମନତଳେ ମାଗୁଥିଲେ,

ଯେଉଁ ମାଗୁଣୀ ପାଇବାର ଆଶାର ନିଶ୍ଚିତତା ତାଙ୍କ ଆଖିରେ ମୁହଁରେ ନୂଆ ପ୍ରଭା ଚହଟାଇଥିଲା ? ଦେହରେ ଉତ୍ସାହର ତେଜ ଛୁଟାଇ ଥିଲା ?

ନିଜକୁ ନିଃଶେଷ କରି ତାଙ୍କ ହାତରେ ଅଜାଡ଼ି ଦେବାର ପ୍ରବଳ ଆବେଗର ବେଗକୁ ଆକଟି ଅଟକାଇଲା ଚେଁଖିଥିବା ପରିଣାମର ଡର ! ସେ ଗେରସ୍ତଛଡ଼ା, ବାପଘରେ ଆଶ୍ରୟନେଉଥିବା, ଘରବାହୁଡ଼ା ଯୁବତୀ ଝିଅ । ଥରେ ଧଇର୍ଯର ବନ୍ଧ ଭାଙ୍ଗିଲେ ଆଉ କ'ଣ ସେ ନିଜକୁ ଆକଟି ଅଟକାଇ ରଖି ପାରନ୍ତା ?

ଆସିଲେ ନାହିଁ କାହିଁକି ? ତାଙ୍କପରିକା ନିର୍ଭୟ ଯଣ୍ଡୋଟ ମଣିଷ, ପ୍ରତାପୀ ମଣିଷ ଲୋକନିନ୍ଦାକୁ ଡରିଲେ ? ଅବା, ମନରେ ତାଙ୍କର ଆଉ କ'ଣ ଅଛି ? ତେବେ ଅଲେଖ ସଙ୍ଗରେ ଅରକ୍ଷିତକୁ ତାଙ୍କ ଘରକୁ ନେଇଯିବାକୁ ମଧୁଆକୁ ସେ ନିର୍ଦ୍ଦେଶ ଦେଇଥିଲେ । ଅଲେଖ ସଙ୍ଗରେ ପିଲାଟି ତାଙ୍କ ଘରେ ଖେଳେ । ଚାକର ବାକରଙ୍କୁ, ବେଶୀ ତ ମଧୁଆକୁ ସେ ତାଗିଦ୍ କରି ଦେଇଥାନ୍ତି ଯେମିତି ସେ ଅରକ୍ଷିତକୁ ଏକୁଟିଆ ଛୁଆନ୍ତେ ନ ଛାଡ଼ନ୍ତେ ।

ଅରକ୍ଷିତକୁ ନିଜ ପିଲା ପରି ସେ ଭଲ ପାଆନ୍ତି ।

ଟଗର ମନ ଜାଣିଲା ପରି ତା'ର ଜେଜେମା ଦିନେ ମଧୁଆ ହାତରେ ଖବର ପଠାଇଲେ । କହିଲେ, ମୁଁ ଜାଣେ, ବାବୁଙ୍କର ବାର କାମ । ତର ମିଳୁ ନ ଥିବ । ଚାଲି ଚାଲି ଆରସାହିଯାଏ ଯିବାକୁ ମୋ' ବଳ ପାଇବ ନାହିଁ । ଗଡାଏ ବାଟ । ବାବୁଙ୍କୁ କହିବୁ, କେବଠୁ ତାଙ୍କୁ ମୁଁ ଦେଖି ନାହିଁ । ବେଳ ମିଳିଲେ ଟିକଏ ଇଆଡେ ଆସିବେ ।

ମଧୁଆ କହିଲା, ହଉ । ସବୁ ଦିନେରକ ଯାଏ ଆମ ବାହାର ଖଞ୍ଜାରେ ଗାଁ ଲୋକଙ୍କର ଯିବା ଆସିବା କାରବାର ଲାଗିଛି । ଚଉପାଢ଼ୀରେ ଆଲୁଅ ଜାଳି ଲେଖା ପଢ଼ା କାମ ହଉଛି । ବାବୁଙ୍କୁ ଫୁରୁସତ ମିଳୁ ନାହିଁ ।

ଟଗର କହିଲା, ବେଳ ଦେଖି ଲୋକେ ଗଲାପରେ ତୁ କହିଦେବୁ ।

—ହଁ, କହିବ ।

ଫଗୁଦଶମୀ । ରବିବାର, ସଞ୍ଜ । ରଥିଆ ଆସି କହିଦେଇ ଗଲା, ତା' ରଘୁ ମାମୁଁ ଆସିଥିଲେ । ତା' ବାପାଙ୍କୁ ସଙ୍ଗରେ ନେଇ ଗୋଟେ ଗୋଟେ ତା' ମାମୁଁ ଘରକୁ ଚାଲିଗଲେ । ତାଙ୍କ ଘରେ ପୁଣି କ'ଣ କଜିଆ ଗୋଳ ଲାଗିଲାଣି । ତା' ବାପା ମିଳାମିଶା ନ କରାଇଲେ ସେମାନେ ପିଟାପିଟି ହେବେ । ଗାଇ ଦୁହିଁବାକୁ ସେ ରହି ପାରିବ ନାହିଁ ।

ଟଗର ଘରସଫାଇଟି ଶେଷ କଲା । ମୁହଁ ସଞ୍ଜ ନ ହେଉଣୁ ବୃନ୍ଦାବତୀଙ୍କ ମୂଳରେ ସନ୍ଧ୍ୟାବତୀ ଥୋଇ ଓଳଗି ହେଲା । କେଉଁ ଜଣାଣ ସେ କେବେ ଘେନା କରିଛନ୍ତି ?

ମନର ଅଭିମାନକୁ ଆଡ଼େଇ ଟେଣ୍ଟିର ଆସ୍ପା ଗୁହାରି କଲା, ଅରକ୍ଷିତକୁ କୋଟି ପରମାୟୁ ଦିଅ ମା !

ପିଣ୍ଡା ଉପରେ ବୁଢ଼ୀଙ୍କ ପିଠିରେ ନାଉ ହୋଇ ଅରକ୍ଷିତ ତାଙ୍କ ମନ-ଖୁସିରେ ଦୋହଲାଉ ଥାଏ । ବୁଢ଼ୀ ପାଟି କରି କହୁଥିଲେ, ରହିରେ ଚଗଲା, ନାଲିଟେଣର କାଚ ହାତରୁ ଖସିପଡ଼ିବ ।

ବୁଢ଼ୀ ଆଲୁଅ ଜଳାଉଥିଲେ । ତାଙ୍କ ଆଗରେ ମଧୁଆ ହାତରେ ଗ୍ରେଟ ପୁଡ଼ାଟାଏ ଧରି ଠିଆ ହୋଇଥିଲା । ଟେଣ୍ଟିଆଡ଼କୁ ମୁହଁ ବୁଲାଇ କହିଲା, ନିଅ, ବାବୁ କ'ଣ ପଠାଇଛନ୍ତି ।

ବୁଢ଼ୀ ଆଲୁଅ ଦିଓଟି ଜଳାଇଲେ । ପଚାରିଲେ, ହଇରେ ମଧୁଆ, ମୋ ଖବର ରୁ ଦେଇଥିଲୁଟି ?

ମଧୁଆ କହିଲା, ସେଇଦିନ ତ କହିଥିଲି ।

— ଉନଦିନ ହେଲା । ଭୁଲିଗଲି ପରା । ମୁଁ ପଚାରୁଥିଲି ବୋଲି ଆଉ ଥରେ କହିଦେବୁ । ସେ ପୁଡ଼ାଟି କ'ଣ ରେ ?

—ଦେଇକ୍ଙ୍କୁ ଦେବାକୁ କହିଲେ । ମୋ ହାତକୁ ବଢ଼ାଇ ଦେଇ ଗାଁ ଲୋକଙ୍କ ସଙ୍ଗେ ଚାଲିଗଲେ । ଦୋଳ ପୂନେଇଁ ଅଳପ ଦିନ ଅଛି । ଗାଁ ମେଳଣ ପାଇଁ ରାନ୍ଧା ଅସୁଲ ଆଦାୟ ସରି ନାହିଁ । ସେଇ କାମରେ ଜଡ଼ ଯାଉଛନ୍ତି । ଫେରୁଛନ୍ତି ରାତି ଅଧରେ ।

ବୁଢ଼ୀ କହିଲେ, ଆଲୋ ଟେଣ୍ଟି, ଏବେ ବୁଝିଲି, ଆସିବାକୁ ସେ ବେଳ ପାଉ-ନାହିଁ । ରାଧାଗୋବିନ୍ଦ ଠାକୁରଙ୍କ କାମ ଆଗ । ହଉ, ତୁ ଯା'ରେ—

ଟେଣ୍ଟି ମଧୁଆ ହାତରୁ ପୁଡ଼ାଟି ନେଲା । ବୁଢ଼ୀଙ୍କ ପାଖରେ ଥୋଇ ଦାଣ୍ଡ କବାଟ କିଳିବାକୁ ତା ପଛେ ପଛେ ଗଲା ।

ବୁଢ଼ୀଙ୍କ ପାଖକୁ ଫେରିଆସି କହିଲା, ଅରକ୍ଷିତ ତୋ' ପାଖରେ ଥାଉ । ମୁଁ ଆଗ ଗାଈ ଦୁହିଁ ଆଣେ । ବୁଧେଇ କେମିତି ବୋବାଳି ଛାଡ଼ୁଛି ଶୁଣୁନୁ ?

—ଖୋଲୁନୁ ପୁଡ଼ାଟି ! ଲୁଗା ଥିଲା ପରି ଲାଗୁଛି ।

—ତୁ ଖୋଲି ଦେଖୁଥା ! ଗାଈ ଉଛନ୍ନ ହେଲାଣି ।

ଗୋଟିଏ ହାତରେ ଆଲୁଅ ଓ ଆର ହାତରେ ଠେକିଧରି ଟେଣ୍ଟି ବାରିଆଡ଼କୁ ଗଲା ।

ମେଘ ନ ଥିଲା ନିର୍ମଳ ଆକାଶରେ । ଦଶମୀ ଜହ୍ନ ତୋରା ଦିଶୁଥାଏ ।

କାମ ସାରି ଟେଣ୍ଟି କ୍ଷୀର ଠେକି ନେଇ ରୋଷଘରେ ପଶିଲା । ବୁଢ଼ୀ ଡାକ ଛାଡ଼ିଲେ, ଇଲୋ ଟେଣ୍ଟି, ଦେଖିବୁ ଆ । ଚଇତନ କେଡ଼େ ସୁନ୍ଦର ଜିନିଷ ପଠାଇଛି । ବଡ଼ ଲୋକର ବଡ଼ ମନ । ଜଲଦି ଆ ।

ସ୍ନେହଘର ଭିତରୁ ଟୁଣ୍ଡା ଜବାବ ଦେଲା, କଏ ନେଇ ପଳାଉଛନ୍ତି ମା, ଏମିତି ଉଚ୍ଛନ୍ନ ହେଉଛୁ କାହିଁକି ? ଚୁଲି ଲଗାଇ କ୍ଷୀରଟିକ ବସାଇ ଦଏଁ । ପିଲାଟା ଖେଳି ଖେଳି ଆସିଛି । ଶୋଇ ପଡ଼ିଲେ ଉଠିବାକୁ ହାଇଗଣ କରିବ ।

—ଆଲୋ, ଦେଖି ଯାଆନ ! ପୁଡ଼ା ଭିତରେ ଆଉ କ'ଣ ଅଛି । କେଡ଼େ ଯତନରେ ବାନ୍ଧିଛି !

ଟୁଣ୍ଡାର ହାଲକ ଶୁଖିଗଲା । ଚୁଲି ଜଳାଉଣୁ ସେ ମନେ ମନେ ଗୁଣି ହେଉଥିଲା, କ'ଣ ହୋଇପାରେ ? ମନା କରିଥିଲା, ପୁଣି ଆଉ କି ଗହଣା ପଠାଇ ଦେଲେ ? ଲୋକେ କ'ଣ କହିବେ ବୁଝିଲେ ନାହିଁ ? ପରଲୁଗା ପିନ୍ଧି ଯାତକୁ ଯିବାର ବେଖାର ହେବ । ନୋହିଲେ, ପେଟ୍ଟପଣ ନିଜ କୋରଡ଼ରେ ସାଗ୍‌ଦନ ଲୁଚି ରହିବ । ଜାଣି, ଘଡରେ ତ ସେ କୁଆଡେ ବାହାରେ ନାହିଁ ।

ବୁଢ଼ୀଙ୍କର ଡାକ ଶୁଣି ମଧ୍ୟ ସେ ମାଟେଇ ରହିଲା । ମନ ଛନ ଛନ । ଜାମ ବାହାନାରେ ବାଆଁ ରେଇ ହୋଇ ଅରେ ଯାଇ ଗୃହିଁଦେଇ ଆସିବାକୁ ଆଗ୍ରହ ହେଲା । କିନ୍ତୁ ଗୋଡ଼ ଚଳିଲା ନାହିଁ ।

ଜେଜେମା ତା'ର ଭଙ୍ଗା ସଂସାରକୁ ନୂଆକରି ଗଢ଼ିବାକୁ ଆତୁର । ଦିନେ ଯାହାଙ୍କୁ ଶତ୍ରୁ ମଣୁଥିଲେ, ଯାହାଙ୍କ ପାଇଁ ତାଙ୍କର ଜୀବନରୁ ବଳି ଅଧିକ ପୁଅ ମଣିଷମାର ଜେହେଲ ଖଟୁଛି, ତା' ପାଖରେ ଅଜାଡ଼ି ଦେବାକୁ, ତାକୁ ସେନେହରେ ବାନ୍ଧି ରଖିବାକୁ ସେ ତାକୁ ମତାଉଛନ୍ତି । ଉମ୍ଫାଉଛନ୍ତି । ସୁଯୋଗ ଦେଉଛନ୍ତି । ତାଙ୍କର ଡାକରେ ପାଖକୁ ଧାଇଁ ଯିବାକୁ ସେ ଆପଣାଛାଏଁ ଲାଜରେ ସଢ଼ି ଯାଉଥିଲା ।

ଟୁଣ୍ଡା କହିଲା, କେମିତି ଯିବ ମା ? କ୍ଷୀର ଉତୁରି ଚୁଲିରେ ପଡ଼ିବ ।

ବୁଢ଼ୀ ତାକୁ କହିଲେ, ହଉ ହେଲା । ତୋ' ଶୋଇବାଘର ଖଟ ଉପରେ ରଖି ଦେଉଛି । ଓଜନିଆଁ ପ୍ଲେଟ ପୁଡ଼ାଟି ଖୋଲୁ ନାହିଁ । ଦେଖିବୁ···

ଟୁଣ୍ଡା ରୋଷେଇ କାମରେ ମନ ଦେଲା । ତରତର ହେଲା ନାହିଁ । ଭାବିଲା, ଯାହା ସେ ପଠାଇଥାନ୍ତୁ, ସେ ଆନନ୍ଦରେ ଗ୍ରହଣ କରିବ । ବ୍ୟବହାର କରିବ । ତାଙ୍କର ମନ ଊଣା କରିବ ନାହିଁ । ତାଙ୍କର ସ୍ନେହ ଓ ଆଗ୍ରହରେ ବନ୍ଧବାଡ଼ ପକାଇବ ନାହିଁ ।

ଭାବିଲା, କେବେ ତା'ର ବାପା ଫେରିବେ ? ଫେରିବାର ବେଳ କ'ଣ ହୋଇ ନାହିଁ ? ସେ ଯଦି ଚଇତନଙ୍କର ପ୍ରସ୍ତାବରେ ରାଜି ନ ହୁଅନ୍ତି ? ତା'କୁ ଗୋଡ଼ରେ ଆଡ଼େଇ ତା' ଅନୁନୟ ବିଧେନା ନ କରନ୍ତି ? ସେ କି ବୁଦ୍ଧି କରିବ ?

ନ ବୁଝି ନ ସୁଝି ନାଟୁଆ-ବାଦୁଣୀର ଶିକ୍ଷାରେ ପଡ଼ି ତାକୁ ତା'ର ବାପା ଯମପୁରକୁ ପଠାଇ ଦେଇଥିଲେ । ଦେଲ ନାସ୍ତି, ହେଲା ପାର, ଏଇ ସ୍ପାରରେ । ତା'ର ମଲାଛିକିନି ଖୋଜି ନ ଥିଲେ । ତାଙ୍କ ଲେଖାରେ ଟୁଣ୍ଡା ମରିଥିଲା ।

ସେ ସୁଖ ଭୋଗିଛୁ, ଦୁଃଖ ସହିଛୁ, ଯନ୍ତ୍ରଣାରେ ଘାଣ୍ଟିଚକଟି ହୋଇଛୁ । ସେ ମାନ-ଅପମାନ, ପ୍ରଶଂସା-ନିନ୍ଦା ମନରେ ଭେଦାଇଛୁ । ତଥାପି ଧୈର୍ଯ୍ୟ ଧରି କର୍ତ୍ତବ୍ୟ କରିଛୁ । କି ସ୍ତ୍ରୀ, କି ପୁରୁଷ, ତାଙ୍କର ସ୍ୱଭାବପ୍ରକୃତିର ପରିଚୟ ପାଇଛୁ । ରୂପଭେକ, କଥାଭାଷା ଓ ସ୍ୱଭାବପ୍ରକୃତି ସଙ୍ଗେ ଚହ୍ଲାପରିଚ ହୋଇଛୁ । ଜଣଜଣକଠାରେ ଏସବୁ କେଡ଼େ ଅଲଗା ଅଲଗା । ବିଭିନ୍ନ ବେଳକାଳରେ, ସୁବିଧାସୁଯୋଗରେ ବଦଳୁଥାଏ । ନୂଆ ନୂଆ ରଙ୍ଗ ବୋଲି ହେଉଥାଏ । ଯାହା କହନ୍ତି—ମଣିଷ ମନ, କ୍ଷଣ କ୍ଷଣକେ ଆନ !

ଆଉଟି-ପାଉଟି ହୋଇ ସେ ନୂଆମଣିଷ ହୋଇ ସାରିଛୁ । ସେ ପନ୍ଦର ବର୍ଷର ଅଜଣା ଝିଅ ନୁହେ ଯେ ଆଉମାନେ ଯେମିତି ନଚାଇବେ ସେ ନାଚିବ । ଗୋଟିଏ ଯୁଗ ତା' ଉପରେ ବୋହିଗଲାଣି । ନିଜର ଭବିଷ୍ୟ ସଙ୍ଗେ ତା' ପେଟରୁ ଜନମି ଥିବା ଅବୋଧ ନିର୍ଦ୍ଦୋଷ ପିଲାଟିର ଭବିଷ୍ୟ ବିଚାରି ଯାହା ଭଲ ମଣିବ ସେ ଅବଶ୍ୟ କରିବ ।

ଯାହା ହେବାକୁ ଜଣେ ତ ଅଛନ୍ତି । ତାଙ୍କର ସ୍ନେହକୁ ମନର ଭୂଷଣ କରିବ । ତାଙ୍କର ଦାନକୁ ଦେହର ଭୂଷଣ କରିବ । କିଏ କ'ଣ କହିବ କାନରେ ବାଜିଲେ ବାଜୁ, ମନରେ ପୂରାଇବ ନାହିଁ । ତା ବାପ ଅମଙ୍ଗ ହେଲେ ହେଉନ୍ତୁ, ସେ ଅମାନିଆ ହେବ । ଅଲେଖକୁ ଆପଣାର କରି ଅରକ୍ଷିତକୁ ତାଙ୍କ ପାଦତଳେ ସମର୍ପି ଦେବ । ବାପ ତା'ର ପର କଲେ କରନ୍ତୁ । ସେ ଡରିବ ନାହିଁ । ଯୁଧାର ଗାଈର ବାଛୁରି ମରେ । ପଡ଼ିସହଣୀର ପିଠିରେ ବେତବାଡ଼ି ଗରଜି ଯାଏ । ଭଲରେ ଦୁନିଆଁ ନାହିଁ ।

ସଞ୍ଜ କେବଠାରୁ ଗଡ଼ିଗଲାଣି । ଦଶମୀ ଜହ୍ନ ମୁଣ୍ଡ ଉପରୁ ପଶ୍ଚିମ ପାଖକୁ ଢଳିଲାଣି । ପାତଳା ଧୋବଲା ବଉଦ କାହିଁ ମାଡ଼ି ଆସି ସେହି ଖଣ୍ଡିଆ ଜହ୍ନର ମୁହଁର ଝଲକ ମଳିନ କରିଛି । ପବନ ଶୀତଳ ହେଲାଣି ।

ଟଭି କାନେଇଲା । କେଜେମାଙ୍କର ଗପ, ଆଉ ଅରକ୍ଷିତର ପାଟି ଧାରୁ ଶୁଭୁ ନାହିଁ । ଘର ଭିତରେ ଲଣ୍ଠନ ଜଳୁଛି ।

ଟଭି ପିଣ୍ଡା ଉପରେ ଥିବା ଆଲୁଅ ତେଜିଲା । ବୁଢ଼ୀଙ୍କ ଘରର ଦ୍ୱାରବନ୍ଧ ପାଖକୁ ଯାଇ ଭିତରକୁ ଚାହିଁଲା । ଦେଖିଲା, ମସିଣା ଉପରେ ଦହେଁ ଶୋଇ ପଡ଼ିଲେଣି । ପୁଅର ପିଠିରେ ବୁଢ଼ୀ ତାଙ୍କର ହାଡ଼ୁଆ ହାତ ଥାପିଛନ୍ତି । ଭାବିଲା ତାଙ୍କୁ ଉଠାଇବ ନାହିଁ । ତା' ନିଜର ଦେହଟା ଗରମ ଲାଗୁଛି । ଗୋସଘରର

ଧୂଆଁ, ଧାସ, ଆଉ ନଜର ଝାଳରେ ଅଠାଳିଆ ଅସନା ହୋଇଛି । ଅସୁଖ ଲାଗୁଛି । ଦୁ'ବେଳା ସ୍ନାନ କରିବା ତା'ର ଅଭ୍ୟାସ । ସେଇଆ କରିବ । ନିସ୍ତଳ ବେଳ । ସେଇଠୁ ସେ ଦେଖିବ, ଚଇତନ ପାଇଁ କ'ଣ ପଠାଇଛନ୍ତି ।

ବାରିଆଡ଼େ ସବୁକାମ ସାରି ଫେରି ଆସିଲା । ଶୁଖିଲା ଲୁଗା ପାଲଟୁଣୁ ନଜର ଭରପୂର ତନୁକୁ ନିରେଖି ଦୀର୍ଘଶ୍ୱାସ ଛାଡ଼ିଲା । ଟିକିଏ ଉତ୍ତେଜିତ ହେଲା । ପୁଣି ଘୋଟିଗଲା ବିଷାଦ । କେତେଦିନ ଏ ଦେହର ତେଜ ରହିବ ? କେତେ ଦିନ ନିଜେ ଝଲକ ତା'ର ଝଙ୍କ ନିକ୍ଷେପି ପାରିବ ? ନିରାଶାପଣ ଦେହ ଓ ମନର ଟେକକୁ ଛଟପଟ କରେ । ଅଧୀର କରେ । ହାଲିଆ କରି ଶୁଆଇଦିଏ । ସତେ କି ସେ ଅରଣାଟକ ଚିରଦିନ ପାଇଁ ଶୋଇଲା । ଆଉ ଉଠିବ ନାହିଁ । ସେଇଟା ଅଲୋଡ଼ା, ଅଖୋଜା ।

ନିଜ ଅନୁଭବରୁ ଟେଶ ବୁଝିଛି, ସେ ଟେକ ମରେ ନାହିଁ । ଘାଲିଆ ହୋଇ ପଡ଼ିଥାଏ । ଅନ୍ୟର ସୁଖ ସୌଭାଗ୍ୟ ଗୋଚରକୁ ଆସିଲେ, କେହି ଭବିଷ୍ୟ ସୁଖର ମୃଗତୃଷ୍ଣା ଆଡ଼କୁ ଆଖି ଓଟାରି ନିହାଇ ଦେଲେ, ସେହି ଦେହ ଓ ମନର ଟେକ ମୁଣ୍ଡ ଟେକେ । ଚଳଣିକୁ ବାଉଳା-ବାଉଳା କରେ । ପୁଣି, ଦୁରାଶାର ଖଗନାଚ ଉଭେଇ ଗଲେ ଦେହ ଓ ମନର ତାପର ଧାଧ କମେ । ଅଣାହଜା ଟେକ ଅଚେତିଆ ନିଦର ଆଶ୍ରା ଲୋଡ଼େ ।

ଚଇତନଙ୍କର ଘର ସଂସାର ଗୋଟାଏ ମୃଗତୃଷ୍ଣା ନୁହେଁ କି ? କିଏ ଜାଣେ ? ପିଲା ଦିନରୁ ସେ ସ୍ନେହ କରୁଥିଲେ । ବିମଳା ଜାଣନ୍ତି । ସେ ବାପଘରକୁ ଫେରି-ଆସିଲା ପରେ ଯେତେବେଳେ ବିମଳା ଜାଣିଲେ ଯେ ଟେଶ ଆଉ ଶାଶୁଘରକୁ ବାହୁଡ଼ିବ ନାହିଁ, ପୁଣି ସ୍ୱାମୀ ତାର ଅପବାଦ ଦେଇ ଘରୁ ତଡ଼ିଛି, ଟେଶର ପିଲାକୁ ଦେଖିବାକୁ ସେହି ନିସ୍ତୁର ଥରେ ଆସିଲା ନାହିଁ, ସେ କ'ଣ ରୋଗରେ ଘାଣ୍ଟି ହେଲା ବେଳେ ଅନ୍ୟ କଥା ବିଚାରୁଥିଲେ ?

ଭାବୁଥିଲେ, ତାଙ୍କ ଅନ୍ତେ ଦୁଷ୍ଟରିଜା ଟେଶକୁ ତାଙ୍କ ସ୍ୱାମୀ ଅନ୍ୟ-ଗୃହରେ ସ୍ନେହ କରିବେ ? ଯୁବତୀ, ଗୋରସ୍ତିଛଡ଼ା, ମୁରବିର ଆକଟ-ନ-ଥିଲା ଟେଶର ରୂପ ଜଳୁଛି । ସ୍ୱାସ୍ଥ୍ୟ ଜଳଜଳ ଟଳଟଳ ହେଉଛି । ସେ ଗାଁ ଝିଅଟା । ତାର କି ଲାଜ-ସରମ ? ସେହି ଟେଶ ଭଲରେ ହେଉ ମନ୍ଦରେ ହେଉ ଚଇତନଙ୍କୁ ଆଦର ରହିବ ? ତାଙ୍କ ପିଲା ଦୁଇଟାଙ୍କ ଭାଗ୍ୟ କ'ଣ ହେବ ?

କେଜାଣି, ଏପରି ଭାବନା ତାଙ୍କୁ ଘାରିଥିବ । ତାଙ୍କ ପାଖରେ ଟେଶର ଉପସ୍ଥିତି ଓ ଉଲୋଇପଣିଆ ରୋଗିଣୀ-ମନରେ ଅନିଶ୍ଚିତ ଆଶଙ୍କା ଆଣିଥିବ । ଈର୍ଷା, ଘୃଣା, ନିସାହାପଣିଆଁ ? ଶରଣ ପଶିବାକୁ ଏସବୁ ମନକୁ ଆତୁର କରିଥିବ ? ସେହି ଆତୁରତାର ବାହାର ପ୍ରକାଶ ତାଙ୍କର ଅଧିକା ସ୍ନେହ ? ଚୁଣ୍ଡର ଶେଷ କଥା ? ···ଉପହାର ।

ଅକାନ୍ତର ଭାବନାରେ ସେ ସରମିଗଲା । ନିଜକୁ ମଣିଲା ପାତକୀ । ପୁଣି ଭାବିଲା, ସେ ନମିସ୍ଥା ଥିଲେ । ତାଙ୍କ ମନରେ କାହିଁ କୂଟକପଟ ପଶିବ ? ସ୍ୱାମୀଙ୍କୁ ସେ ଦେବତା ପରି ମଣୁଥିଲେ ।

ଟେଷ୍ଟ ନିଜକୁ ଧିକ୍କାରି ଆଲୁଅ ଧରି ଘରେ ପଶିଲା । ଖଟ ଉପରୁ ପୁଡ଼ାଟି ଉଠାଇ ତଳକୁ ଆଣିଲା । ଖୋଲିଲା ।

ବୁଢ଼ୀଙ୍କ ପାଇଁ ଧଡ଼ି ନ ଥିବା ମୋଟା ଧୂଳେଇ ମିଲ୍-ଲୁଗା । ସେମିତିକା ଶାଢ଼ି ସେ ପିନ୍ଧନ୍ତି । ପୁଅ ପାଇଁ ନେଳିଆ ରଙ୍ଗର ଅଧାପ୍ୟାଣ୍ଟ୍, ପୁଣି ସେହି ରଙ୍ଗର ଅଧା-କାମିଜ, ସେଥିରେ ଆଗପଟେ ସୁନେଲି ସୂତାର ଦି ଧାଡ଼ି ଫୁଲ । ତା' ଗୋରା ଦେହକୁ ଖାପ ଖାଇବ । ଶାଢ଼ିଟିର ରଙ୍ଗ ଗୋଲାପୀ । ଟିକିଏ ଫିକା । ଚଉଡ଼ା ଧଡ଼ି, କମ୍‌କୁଟ ନକ୍ସା । ଦକ୍ଷିଣୀ ହୋଇଥିବ । ପାତଳା ହେଲେ ବି ଗାଢ଼ି । ପଣତ ପାଖରେ ଧାଡ଼ି ଧାଡ଼ିକା ଅଜଣା ଫୁଲର ବୁଟି । ସେହି ରଙ୍ଗର ବ୍ଲାଉଜ୍ । ଖଣ୍ଡିଏ ସାୟା ।

ସବୁ ତା' ଆଖିକୁ ସୁନ୍ଦର ଦିଶିଲା ।

ଗ୍ରେଟ ପୁଡ଼ାରେ ଗୋଟିଏ ସୁନାହାର । ତା' ତଳେ, ଭଙ୍ଗା ହୋଇ ରଖା ହୋଇଛି କେତେଗୁଡ଼ିଏ ଦଶଟଙ୍କିଆ ନୋଟ୍ । ସେତକ ମଝିରୁ ଖୋଲିଗଲା । ଦିଶିଲା ଖଣ୍ଡିଏ ଚିଠି !

ଆଗ ଟେଷ୍ଟ ହାରଟିକୁ ଉଠାଇଲା । ଲମ୍ବ ଚେନ୍‌ର ହାରଟି ବଡ଼ ସରୁ ସରିକା । ଚକ ଚକ । ପାନପତରିଆ ପଦକରେ ରାଧାକୃଷ୍ଣଙ୍କ ଯୁଗଳ ମୂର୍ତ୍ତି । ସୁନ୍ଦର ଦିଶୁଛି । ଅଧିକ ଆନନ୍ଦ ଓ ଅଳପ ଭୟରେ ଟେଷ୍ଟ ବିଚଳିତ ହୋଇ ପଦାକୁ ଗୁହିଁଲା । ଅଗଣାପାରି ଦାଣ୍ଡଘରର ଭିତରକବାଟ ଖୋଲା ଥିଲେ ବି ବାହାର କବାଟ ବନ୍ଦ ହୋଇଛି । ସେ ନିଜେ ଶିକୁଳି ଦେଇଥିଲା । କେଜାଣି, କାଳେ ଖୋଲା ଥିବ । ନିଶ୍ଚିତ ଓ ନିଶ୍ଚିନ୍ତ ହେବାକୁ ସେ ଅସ୍ତବ୍ୟସ୍ତ ହୋଇ ଧାଇଁଲା । ଖୋଲା କବରୀ ଅଧ-ଫୁଙ୍ଗୁଳା ପିଠି ଉପରେ ଦୋହଲୁଥାଏ ।

ଦ୍ୱାର ପରଖି ଫେରିଲା । ଜେଜେମା-ବୁଢ଼ୀଙ୍କ ଘରକୁ ଉହୁଙ୍କି ଗୁହିଁଲା । ଦିହେଁ ଶୋଇ ପଡ଼ିଛନ୍ତି । ଅରକ୍ଷିତ ଦୀର୍ଘଶ୍ୱାସ ଗ୍ରୁଡ଼ୁଛି । ବୁଢ଼ୀଙ୍କର ନାକର ଶବଦ । ଟିପେଇ ଟିପେଇ ନିଜ କୋଠରୀକୁ ସେ ଫେରି ଆସିଲା । ତଳେ ବସି ହାରଟିକୁ ପୁଣି ନେଇକଲା । ଗରିବ, ଦରମାଖୀ ଜୀବନର ପ୍ରଥମ ସୁନାର ହାର । ଯେଉଁ ଖଣ୍ଡିକ ତା'ର ଶାଶୁ ବେକରେ ନାଇ ଦେଇଥିଲେ । ସେଇଟା ସ୍ୱାମୀ ପାଖରେ ଯୋଉଥିଲା ପରି । ତାଙ୍କର ବାଲୁଙ୍ଗା, ମଦୁଆ, ଗଞ୍ଜେଇଖିଆ ପୁଅର ବାଧ୍ୟତାରେ ସେ ସେଇଟାକୁ ଶିବବାବାଙ୍କୁ ଦେଇଥିଲା ।

ଏଇଟି ହ୍ୱାରକାକରେ ସାର । ରାଧା-କୃଷ୍ଣ ଦହେଁ କେମିତ ଏକାଠି ଠିଆ ହୋଇଛନ୍ତି ! ମିଶାମିଶି ! ତାକୁ କେମିତ ମାନବ ? ଟେଖ କବାଟ ଆଡ଼କୁ ବୁଲି ବସିଲା । ହଲୁସା ଘୁଡରୁ ବସନ ଓଲଗ ହ୍ୱାରଟିକୁ ବେକରେ ଝୁଲଇଲା । ସଜାଡ଼ିଲା । ଉଡ଼ନେ ଆବୋର ହ୍ୱାର ଲମ୍ବିଲା ଆହ୍ଲର ଭଲକୁ । ମହିରେ ଝୁଲିଲା ଯୁଗଲ-ମୂର୍ତ୍ତିର ମଦକ ।

ବସନ ସଜାଡ଼ିଲା । ଚଠିର ଖଞ୍ଚ ଖୋଲି ପଢ଼ିଲା । …ଦୋଳ ପୁନେଇଁ ପାଇଁ ପଠାଇଲି । ହତଭାଗ୍ୟ ଅଲେଖଟି ଛଡ଼ା ଦୁନିଆଁରେ ମୋର ନଜର ବୋଲି ମଣିବାକୁ କେବଳ ରହି ତ ଅଛୁ; ଆଜି ତୋ'ର ପ୍ରଥଟି । ନଜେ କ'ଣ ଯାଇ ନ ଥାନ୍ତି କ ? ତୋ'ର ସ୍ନେହ ମତେ ଓଟାରୁଛ । କନ୍ତୁ, ତୋର ନନ୍ଦା-ଯାଇବା ଡ଼ର ମୋ ଗୋଡ଼ ଅଟକାଉଛ—

ଅମା ନଆଁ ପାଦ ଆଗକୁ ବଢ଼ାଇଲେ ପଛରୁ ଓଟାରୁଛ ଗୋଟାଏ ଦୋଦୋ-ପାଞ୍ଚିଆ ମନ, ଦୃଢ଼ୁଗୁଡ଼ୁ ଭାବନା । ମୋ ଉପରେ କ'ଣ ତୋର ବିଶ୍ୱାସ ନାହିଁ ? ଯଦ ଥାଆନ୍ତା, କାହିଁକ ତୁ ଅଲେଖଙ୍କ ପଣ ଆଗକୁ ଆସିବାକୁ ସୁଖ ପାଆନ୍ତୁ ? ପଗ୍ଭରଲି ଲୋକଙ୍କୁ ତୁ କ'ଣ କହ ପାରନ୍ତୁ ନାହିଁ ଯେ, 'ଯେଉଁ ଘରକୁ ତୁ କରଦେଲୁ ସେ ଘର ବୋହୁର ଧ୍ୟାନଜ୍ଞାନର ଆଞ୍ଚଳାକରୁ ସ୍ନେହ ମୂଠିଏ । ବାକତକ ଝରଆର ମଦ ଗଙ୍ଗେଇରେ ଯାଇଛ ।'

ଡୋଳଖରର ପାଇଁ ସାମାନ୍ୟ ଶହେଟି ଟଙ୍କା । ମିଳିଲା କ ନ ମିଳିଲା ନଜେ ଯାଇ ବୁଝି ଆସିବ । —

ଟଖ ନଜକୁ ନଜେ ପଗ୍ଭରଲା, କେବେ ଆସିବେ ? କେତେବେଳେ ? ସତେ ମେ କ'ଣ ଅଲେଖଙ୍କ ପଣ ତାଙ୍କ ଆଗରେ ଠିଆ ହେବ ? ତାଙ୍କର ସେନେହ ସମ୍ପଦକୁ ଅପମାନ ଦେବ ? ଅସ୍ୱୀକାର କରବ ? କାହାକୁ କାହିଁକ ଡ଼ରବ ? କଏ ପଗ୍ଭରଲେ କ ଜବାବ ଦେବାକୁ ହେବ ଚଠିରେ ସେ ବତାଇ ଦେଇଛନ୍ତି ।

ମନ ଖୁସିରେ ଟଖ ଟଙ୍କା ତକ ଗଣି ସେହି ଚଠିରେ ଗୁଡ଼ାଇ ଟିଣ ବାକସରେ ଲୁଚାଇଲେ ଲୁଗ ରଖିଲା । ଖବରକାଗଜ ପୁଳକ, ଯହିଁରେ ଶାଢ଼ି ଓ ଜାମା ଗୁଡ଼ାହୋଇ ଆସିଥିଲା, ତାକୁ ଭାଙ୍ଗି ବାକ୍ସ କଡ଼ରେ ଗଲାଇ ଦେଲା ।

ନଜ ପାଇଁ ଆସିଥିବା ସାଙ୍ଗା, ବ୍ଲାଉଜ ଓ ଶାଢ଼ି ସିଧା ବେକରେ ହ୍ୱାର ଝୁଲଇଲା । କଏ ଜାଣେ, କାଲେ ତା'ର ମନ ପରଖିବାକୁ ସେ ହଠାତ୍ ଆସି ପହଞ୍ଚି ଯିବେ ? ଘଉ ତ ବେଶୀ ହୋଇ ନାହିଁ ।

ମନରେ ମଳୟ ଲାଗିଛି । ପୁରୁଣା ଦେହ ପଲ୍ଲବ ଉଠିଛି । ପୁଲକ ଉଠିଛି । ନବୀନ କାମନା ନୂତନ ଜୀବନ ଲଭିଛି । ରକ୍ତରେ ଖେଳୁଛି ବନ୍ୟାର ଢେଉ । ଷୋଡ଼ଶୀର ଉନ୍ମାଦନାରେ ସେ ଅଧୀର ଅସ୍ଥିର ହୋଇଛି ।

ନିଜର ରୂପକୁ ଥରେ ନିରେଖି ଆତ୍ମ-ସନ୍ତୋଷ ଲଭିବାକୁ ସେ ଆଇନା ଖୋଜିଲା । କାନ୍ଥରେ ଝୁଲୁଛି । ଉଠାଇ ଆଣି ଆଲୁଅ ତେଜିଲା । ନିଜ ମୁହଁକୁ ଚାହିଁଲା । ସତେକି ଆଜି ସେ ସେଇ ମୁହଁଟିକୁ ନୂଆ ଦେଖୁଛି । ଆଖି ତଳର ମହଳ-କାଳିମା ଦୃଷ୍ଟି ଓଟାରୁଣୁ ସେ ଛନକା-ଦୃଷ୍ଟିକୁ କପାଳକୁ ଟେକିଲା । ବୟସକୁ ଓ ଅତୀତର ବହଳ-ଅନୁଭବକୁ ଉହାଡ଼କରି ସେ ନିଜକୁ ବୁଝାଇଲା, ମଥାର ସିନ୍ଦୂର ଟୋପା ଲେସି ହୋଇଛି, ଆଖିରେ କଜଳ ନାହିଁ, ମୁଣ୍ଡର କେଶ ଅଳଗା ହୋଇଛି, ପିଠିରେ ଝୁଲୁଛି । ଛି, କେତେ ଅସନା ! କାଲେ ସେ ଆସିଯିବେ ? କାଲେ ପିଲାଟା ଉଠିବ ?

ଟିକି ପରିଜସ୍ଥ ମାନିଲା ନାହିଁ । ଆଖିର କଜଳ, କପାଳର ସିନ୍ଦୂର ଟୋପା ଘଷାମଜା ପୂରିଲା ମୁହଁକୁ ସତେକି ସୁନ୍ଦର କଲା । କିନ୍ତୁ ଜଙ୍ଘଯାଏ ଲମ୍ବ କେଶର ପ୍ରସାଧନ ସରିଲା ନାହିଁ । କିଏ ଜୁଡ଼ା ପକାଇବ ? ଜେଜେମା ବଞ୍ଚିଥିଲେ ଦୁ'ଘଣ୍ଟା ଲାଗି ତାଙ୍କ ଥରିଲା ହାତରେ ଯେନକେନେ ଜୁଡ଼ା ବାନ୍ଧି ଦେଇଥାନ୍ତେ । ତା'କୁ ଉଠାଇଲେ ପୁଣି ପୁଅ ଉଠିବ । କଣ୍ଠାନାଦ ଶୁଣିଲେ ସେ ଅଝଟିଆ ହେବ । ଖିଆ-ପିଆ କାମ । ସେତକ ସରିଲେ, ବାସନ ଧୁଆ । ଘର ସଫା । ପିଲାଙ୍କି ବି ଶୋଇବ ନାହିଁ ।

ସେ ଯଦି ଆସି ପହଞ୍ଚିବେ ?

କିଏ ଦାଣ୍ଡ କବାଟ ବାଡ଼େଇଲା ପରି ! ଡ଼ାକିଲା କି ? ଟିକିର ହାତ ଅଟକିଲା । ସେ କାନେଇଲା । ଛୁଡ଼ ଦାଉଁ ଦାଉଁ । ବାହାର ପାଖେ କବାଟରେ କିଏ ଆଘାତ କରୁଛି । କିଏ ହୋଇଥିବ ? ସେ ଆସିଛନ୍ତି; ସେ, ଯିଏ ତା'ର କାମନା ଭାବନା, ଯିଏ ତା'ର ଶୟନର ସପନ, ଆଉ ସପନର ଜୀବନ ।

ଟିକି ତରୁଣୀ ନଭେସି, ଆଲୁଅ ଟେକି ଅସ୍ତବ୍ୟସ୍ତ ହୋଇ ଦାଣ୍ଡ ଘରକୁ ଧାଇଁଲା । ଥରିଲା ଗୁଣ୍ଡରୁ ବାହାରିଲା, ଖୋଲୁଛି ।

ଆଲୁଅ ରଖି ଖିଲିକି ଖୋଲିଲା । କବାଟ ଦୁ' ଫାଳ ଦୁଇ ହାତରେ ଧୀରେ ଧୀରେ ମେଲାଇଲା । ଯାହାର ମୁହଁରେ ଉଜଳା ଆଲୁଅ ପଡ଼ିଲା ସେ ତା'ର ଖୋଜିଲା ମଣିଷ ନୁହନ୍ତି । ହତାଶାରେ ବ୍ୟଥିତ ଟିକି ଥକା ହୋଇ, ଆଖି ବୁଜି କୋହ ଅଟକାଇଲା ।

ମଧୁଆ କହିଲା, ମତେ ବାବୁ ପଠାଇଛନ୍ତି ।

ଟଗ୍ରା ଆଖି ଖୋଲି ପଚାରିଲା, ଅଲେଖ ଶୋଇ ନାହିଁ କରେ ?

—ସେ ଶୋଇଲାରୁ ମୁଁ ଅଇଲି । ମୋ' ଘରକୁ ମୁଁ ଆଜ ଯାଇଥାନ୍ତି ଯେ ବାବୁ ଆସି ପହଞ୍ଚିଲେ । ମତେ ପୁଣି କାମରେ ବରଗିଲେ ।

—କାମରେ ବରଗିଲେ ? ନଜେ ସେ ଟିକେ ଆସିଲେ ନାହିଁ ?

—କେମିତି ଆସନ୍ତେ ? ହାଲିଆ ହୋଇ ଫେରିଛନ୍ତି । ସରୁଦନ ପରି ଆଜ ବି ଗାଧୋଇବେ, ପୂଜା କରବେ, ସେଇଠୁ ଯାଇ ଖାଇ ବସିବେ । ପୂଝାରି-ଚାକର-ମାନେ ଚାହିଁ ରହିଥିବେ ।

—ସତେ ? ତତେ କାହିଁକି ପଠାଇଛନ୍ତି ?

—ମତେ ତ ଭୁଲିଭୁଲି କହିଲେ, ଯା' କହିବୁ, ଏତେ ଡେରି ହେଲାଣି, କାଲି ଯେମିତି ହେଲେ ନଶ୍ଚେ ଆସିବେ । କହିଲେ, କାନସ ପାଇଲେ କି ନାହିଁ ଟିକିଏ ଲେଖା ନେଇଥିଲେ ସେ ଦେଖି ଫେରାଇ ଦେଇଥାନ୍ତେ ।

—ରୁ ତାଙ୍କର ଖାଟି ବିଶ୍ୱାସୀ, ହଇରେ ମଧୁ ?

—ବିଶ୍ୱାସଘାତକ ହେଲେ ମୋ'ର ଜୀବନ ଖାଇଦେବେ ।

—ତାଙ୍କୁ ନବେଲାରେ କହିବୁ, ମୋ ପାଖରେ କାଗଜ, କଲମ, ସ୍ୟାହି କିଛି ନାହିଁ । କେମିତି ଲେଖିବି ? ଡେରି ପଛେ ହେଉ, ସେ ଖାଲି ଥରେ ଆସିବେ । ପାଇଲି ବୋଲି ପଦେ କହିଦେବୁ । ସେ ଗୋଡ଼େ ଗୋଡେ ଫେରିଯିବେ ।

—ଇହିବ ଦେଇ !

ଟଗ୍ରା ପୁଣି କହିଲା, ତୋ' କଥାରେ ମୋ'ର ବିଶ୍ୱାସ ଅଛି । କହିବୁ, ତାଙ୍କୁ ମୁଁ ଅପେକ୍ଷା କରି ରହିଛି । ଯା, ଧାଇଁ ଯା— ।

ମଧୁଆ ମୁହଁ ଫେରାଇ ସଡକୁ ସଡ ଧାଇଁବାକୁ ଲାଗିଲା । ସେ ଆଖି ଆଗରୁ ଛପିବାଯାଏ ଟଗ୍ରା ଅନାଇଁ ରହିଲା । କବାଟ କିଳି, ଆଲୁଅ ଧରି ଫେରି ଆସିଲା-ବେଳକୁ ତା'ର ଗୋଡ଼ ଥରୁଥିଲା । ନଜ କୋଠରୀରେ ପଶି ସେ ତା'ର ପଲଙ୍କ ଉପରେ ବସି ତଳକୁ ଗୋଡ଼ ଲମ୍ବାଇଲା । ଆକାଶ ପାତାଳ କେତେ କ'ଣ ଭାବିବାକୁ ଲାଗିଲା । ପୁଣି ବିଚାରିଲା, ଏତେ ରାତିରେ ଆସିବାକୁ ଖବର ପଠାଇ ସେ କ'ଣ ଭୁଲ କରି ନାହିଁ ? ସେ କ'ଣ ଅଝିଆ ଅପିଆ ଧାଇଁ ଆସିବେ ?

ତାର ଭାବନାର ବାଟ ଓଗାଳିଲା ବୁଢ଼ୀଙ୍କର ଡ଼ାକ । ଆଲୋ ଟଗ୍ରା, ପିଲାଟା ତ ଅଝିଆ ଶୋଇ ପଡ଼ିଲା, ଆଉ କ'ଣ ଉଠିବ ?

ଟଗ୍ରା ଉତ୍ତର ନ ଦେଇ ପାଖକୁ ଗଲା ।

ବୁଢ଼ୀ ଉଠି ବସିଥିଲେ । ଲଣ୍ଠନ ତେଜ ପଣତ ହଲାଇ ପୁଅ ମୁହଁରୁ ମଶା ଘୁରୁଡ଼ାଉଥିଲେ । ଟଗ୍ରା ଆଡ଼କୁ ଚାହିଁ ରହିଲେ । କାହାରି ମୁହଁରୁ କଥା ବାହାରୁ ନ ଥାଏ । ବୁଢ଼ୀଙ୍କର ନହୁଆ ଆଖି ଟଗ୍ରାର ଗୋଡ଼ରୁ ମୁଣ୍ଡଯାଏ ବୁଲି ଯାଉଥାଏ ।

କହିଲେ, ତୋ' ସୁନ୍ଦର ଦେହକୁ ଖାସା ମାନୁଛି ଲୋ ଝିଅ ! ହାରଟି ତୋ' ଗୁଡ ଉପରେ ଝଲସୁଛି । ଚଇତନ ତତେ କେଡ଼େ ଭଲ ପାଏ, ହୁଁ !

ଝିଅ ତାଙ୍କୁ ବାଆଁରେଇ ଦେବାକୁ କହିଲା, ଅରକ୍ଷିତ ଅଲେଖ ସଙ୍ଗରେ ନିଶ୍ଚେ ଖାଇକରି ଆସିଥିବ । କଷ୍ଟାନନ୍ଦ କାହିଁକି ଭାଙ୍ଗିବ ? ତା' ମନକୁ ଯେତେବେଳେ ଉଠିବ, କ୍ଷିର ପିଇବ । ତୁ ଖାଇବୁ ନାହିଁକି ମା ?

—ମନ ହେଉ ନାହିଁ ଲୋ, ପେଟ କେମିତି ଖରାପ ଲାଗୁଛି । ତୁ ଖାଇଦେଇ କାମ ଶେଷ କର । ପୁଅକୁ ନେବୁ ? ମୋ' ଆଖି ମାଡ଼ି ପଡ଼ୁଛି । କିଏ ଆସିଥିଲା କି ମା ? ଦାଣ୍ଡକବାଟ ଖୋଲିବାର, ପୁଣି ବନ୍ଦକରିବାର ଶବଦ ଶୁଣିଲାପରି ମନେ ହେଲା ।

ଝିଅ କହିଲା, ମଧୁଆ ପୁଣି ଆସିଥିଲା । ଚଇତା ଭାଇ ଏବେ ତାଙ୍କ ଘରକୁ ଫେରି ତା ହାତରେ ଖବର ପଠାଇଥିଲେ ଯେ—

—ତୁମ୍ଭେ ରହିଲୁ କାହିଁକି ?

—ଗାଆଁର ତାଙ୍କର ବାର କାମ । ସବୁ କାମ ସାରି ସେ ଏବେ ଘରକୁ ଫେରିଲେ । ସେ ଗାଧୋଇବେ, ପୂଜା କରିବେ । ପେଟ ହାଉ ହାଉ ଜଳୁଥିବ । କିଛୁ ଖାଇବେ ତ ପୁଣି ?

—ଘରେ ଘରଣୀ ନ ଥିଲେ କିଏ ମନ ଜାଣି ଖାଇବାକୁ ଦେବ ? ପୂଜାରୀ ହାତର ଖିରି-ପୁରି ଘରଣୀ ହାତର ଶାଗ-ପାଣି ସରିକି ? ଆସିବ କହିଛି ?

ବୁଢ଼ୀଙ୍କର ହାଡ଼ୁଆ ମୁହଁରେ ହସ ହସ ଭାବ ଦେଖି ଝିଅକୁ ଲାଜ ଘୋଟିଗଲା । ତାଙ୍କୁ ଆସିବାକୁ ସେ ଖବର ପଠାଇଛି, ଏତକ ସେ ମୁହଁ ଖୋଲି କହିପାରିଲା ନାହିଁ । ସମ୍ମତି ଜଣାଇବାକୁ ସେ ମୁଣ୍ଡ ହଲାଇଲା ।

ବୁଢ଼ୀ କହିଲେ, ଛୁଆଟି ଶୋଇଛି ତ ଶୋଇଥାଉ । ଉଠାଇବୁ କାହିଁକି ? ଚଇତନ ଘରେ ଅଲେଖ ସଙ୍ଗରେ ନିଶ୍ଚେ ଖାଇଥିବ । ସେ ଉଠିଲେ ତମକୁ କ'ଣ ନିଶ୍ଚିନ୍ତରେ କଥାଭାଷା କରାଇଦେବ ? ଜୀବନ ସଉଦା କଥା ! ଶୋଇଥାଉ ଏଇଠି, ମୋ' କୋଳରେ ! ମୁଁ ବଞ୍ଚି ଥିବାଯାଏ ସେ ମୋ କୋଳ ଛାଡ଼ିବ ନାହିଁ । ଯେମିତି ତତେ ବଢ଼ାଇଥିଲି । ତୁ ମୋ'ର ନାତୁଣୀ ହୋଇଥିଲୁ । ତୋ' ପେଟର ଛୁଆ ମୋ ନାତି ହେବ । କାର୍ତ୍ତିକା ମୋ' କଥାରୁ ବାହାର ହେବ ନାହିଁ । ଅରକ୍ଷିତକୁ ତ ପୁଅ କରିବ ।

—ଆଉ କେତେ ଦିନ ତୁ ବଞ୍ଚି ରହିବୁ ଯେ ଆଗତ-ଭବିଷ୍ୟ କଥା ବିଚାର କରୁଛୁ ମା ? ତୋ ବୟସ ସ୍ତରିକୋଡ଼ି ନା ?

—ଆଲୋ, ନାହିଁଲୋ ! ମତେ ଊଣକୋଡ଼ି ଅଧେ ବି ହୋଇ ନାହିଁ, ମୋ' ବାହାଘରର ଦ' ବର୍ଷ ପୂରି ନ ଥିଲା କାର୍ତ୍ତିକାର ଜନମ । ସେତେବେଳେ ମତେ

ଊଣେଇଶ ବର୍ଷ । ଆଉ ତ ହେଲେ ନାହିଁ । ତାକୁ କୋଡ଼ିଏ ପୂରି ଏକୋଇଶି ଚାଲିଲା ବେଳେ ଦିବ୍ୟସୁନ୍ଦରି ବୋହୂ କରି ଆଣିଲି । ରୂପ ଯେମିତି, ଗୁଣ ସେମିତି । ସତର ବର୍ଷର ଝିଅ । ଦି' ବର୍ଷ ପୂରି ନ ଥିଲା ତୋ'ର ଜନମ ! ଝିଅ ନ ହୋଇ ପୁଅଟିଏ ଯଦି ହୋଇଥାନ୍ତୁ ଲୋ ମା !

—ପୁଅ ହେବାକୁ ମୁଁ କ'ଣ ମନା କରିଥିଲି ? ପୁଅ ହୋଇଥିଲେ ଏତେ ସ୍ୱପ୍ନମାନ କାହିଁକି ହୋଇଥାନ୍ତ ?

—ମନ ସିନା ବୁଝେ ନାହିଁ, କାହାର ଭାଗ୍ୟ ଉପରେ କାହାର ହାତ ଅଛି ମା ? ସେଇ ଚକାଡୋଳା ଡୋରି ଧରିଛି । ଯେମିତି ତା' ମନ ସେମିତି ନଚାଉଛି । ସେଇ କରୁଛି, ସେଇ କରାଉଛି । ମୋ' ଆଇଷ କଥା ପଚାରିଲୁ ଯେ, କିଏ କହିପାରିବ ? ଭାବୁଛି, ବୁଢ଼ୀ ଅପୁରୁଣୀର ଜୀବନ ପରି କେଉଁଠି ଯାତଡାଳ ପଙ୍କ ତଳେ ମୋ ଜୀବନ ଫରୁଆ ଭିତରେ ଲୁଚି ରହିଥିବ । ଭଅଁର ପେଟରେ···

—ମାଆ ଲୋ ! ତୋ' ଗପ ପେଡ଼ି ଫିଟିଲେ ରାତି ପାହିବ, ତେବେ ବି ସରିବ ନାହିଁ । କେତେ କାମ ମୋ'ର ବାକି ପଡ଼ିଛି ।

—ସତେ ଲୋ ଝିଅ ' ମତେ ନିଦ ଘୋଟି ଆସିଲାଣି । ତୁ ଡାକିଲେ ମୁଁ ବଲେ ଉଠିବି ।

ଦୀର୍ଘଶ୍ୱାସ ଛାଡ଼ି ବୁଢ଼ୀ ପୁଣି କହିଲେ, କଥାଟିଏ ମୋ'ର ମନେ ପଡ଼ିଯାଉଛି ଲୋ ଝିଅ ' କାଲିପରି ମତେ ଲାଗୁଛି । ଚଇତନର ବାହାଘର ପରେ ବୋହୂ ଦେଖିବାକୁ ଯାଇଥିଲି । ତୁ ବି ଯାଇଥିଲୁ ମ ! ନୂଆବୋହୂ ପାଖରେ ତୁ ଥାଉ । ଚଇତନ ବୋଉ କହିଲେ, ଖୁଡ଼ୀ, ଝିଅଟି ଯଦି ବର୍ଷ ଦିନେ।ଟି ଆଗରୁ ଜନମିଥାନ୍ତା ମୁଁ ତା'କୁ ବୋହୂ କରି ଆଣିଥାନ୍ତି । ଚଇତନ ତାକୁ ଭାରି ସୁଖପାଏ । ମୁଁ କହିଲି, କେମିତି ଅସମ୍ଭବ କଥା କହୁଛ ଗୋ ? ତା ବୋଉର ବାହାଘର ଦି' ବର୍ଷ ନ ପୂରୁଣୁ ଝିଅର ଜନମଟି ! ଯଦି ତମର ଏତେ ଶରଧା ଥିଲା, ଦିନ ବରଷ ଡେରି କରିଥିଲେ କ'ଣ ତମ ପୁଅ ବୁଢ଼ା ହୋଇ ଯାଇଥାନ୍ତା ? ସେ କହିଲେ, ମୁଁ କ'ଣ କରିବି ? ପୁଅ ରାଜି ହେଉ ନ ଥିଲା । ତା' ବାପା ବାହାଘର କରିବାକୁ ତରତର ହେଲେ ।

—ପୁରୁଣା ପୁରାଣ କାହିଁକି ଖୋଲୁଛୁ ?

—କାହିଁକି କି, ବାହା ସିନା ହେଲା ସେ ଚଇତନ, ତୋ' ପ୍ରତି ତା ଶରଧା କମି ନ ଥିଲା । ତୁ ବଡ଼ ହେଲୁ । ତୋ' ପ୍ରତି ତା ଶରଧା, ଆଉ ତା' ନେଇ ବୁମଲା, ପୁଣି ତା' ଶାଶୁଙ୍କ ସ୍ନେହ ଦେଖି ଝରସରା ନାଟୁଆ ତୋ' ନାଁରେ ଲୋ ମା, ନିନ୍ଦା କରି, ନିଜେ ଦେଖିଲା ପରି, ଶୂନ୍ୟରୁ ତୋଳି ଅସନା ଅପବାଦ ଉଠାଇଲା । ଶୁଣିଲେ କାନରେ ହାତ ଦେବୁ ।

—ଅପବାଦ !

—ମୁଁ ନିଜେ ଶୁଣିଛି । ସେ କାର୍ତ୍ତିକାକୁ କହୁଥିଲା । ଥରେ ନୁହଁ, କେତେ ଥର । ଦାଣ୍ଡମାଇପିଙ୍କ ଆଗରେ ବି ଗପିଲା । ସେଇଥିପାଇଁ ଲୋ ମା, ଭଲକରି ନ ବୁଝି ନ ଶୁଝି, କୁଆଡ଼ର କିଏ ସେହି ମଦୁଆ, ଛତରା, ଝୁଣ୍ଟିଆଘରର ପୁଅ ହାତକୁ ତତେ କାର୍ତ୍ତିକା ଟେକି ଦେଲା ।

ଝୋଷର ଆଖିରେ ଲୁହ ଝଲଝଲ ହେଲା । ପଥରଖୁଣ୍ଟ ପରି ସେ ଠିଆ ହୋଇ ରହିଲା ।

ବୁଢ଼ୀ କହିବାକୁ ଲାଗିଲେ, ସେଇଥିପାଇଁ ଲୋ ଝୋଷ, ସେଇଥିପାଇଁକି ନାଝୁଙ୍କର କୁଶିକ୍ଷାରେ ପଡ଼ି ସେ ତୋ' ମଲାହଜିଲା ଖୋଜୁ ନଥିଲା । ନାଝୁଣୀ ତାକୁ କି ଔଷଧ ଖୋଇଥିଲା, କି ମନ୍ତ୍ର କରିଥିଲା କେଜାଣି । ଚଇତନର କାନରେ ତା' ଅପବାଦଭରା କଥା କେଉଁମାନେ ସବୁ ଫୋଡ଼ୁଥିବେ । ସେଇଥିପାଇଁ ହୋଇ-ଥିବ କି କ'ଣ, ସେ ଆମର ଘୁନାଥାଳ ଜମି ମାଡ଼ି ବସିଥିଲା ।

କୋହ ସମ୍ଭାଳି ନ ପାରି ଝୋଷ କଇଁ କଇଁ ହୋଇ କାନ୍ଦି ଉଠିଲା । ବୁଢ଼ୀ କାକୁସ୍ଥ ହୋଇ କହିଲେ, ମତେ ମରଣ ହେଉ । ଆଜି ପର୍ବ ଭଲ ଦିନରେ, ଖୁସି-ଆନନ୍ଦ ବେଳରେ, ମୁଁ ଏଗୁଡ଼ା ତୋ' ଆଗରେ କାହିଁକି କହିଲିଟି ! ଆଜିଯାଏ ତ ମୁହଁରେ କୋଲପ ପକାଇ ରଖିଥିଲି ।

ଝୋଷ ଦୁଇହାତର ପାପୁଲିରେ ଆଖି ଓ ମୁହଁରୁ ଲୁହ ପୋଛିଲା । କହିଲା, ଆଗରୁ ଏ ସବୁ ତୋ' ମୁହଁରୁ ଶୁଣିଥିଲେ ମୁଁ ମୋ'ର ସଲଖ ବାଟ କାଟିଥାନ୍ତି । ମାଆ ଲୋ, ମତେ ଲାଗୁଛି, ମୋ' କପାଳଟା ସେଇଆ । ଦୁଃଖ ସହିବାକୁ ମୋର ଜନମ । ଦୋଷ ନ କର ମୁଁ ଦୋଷୀ । ଅବାଟକୁ ପାଦ ନ ବଢ଼ାଇ ମୁଁ ପାତକୀ । ହଉ ହେଲା । କହିଲୁ ଭଲ କଲୁ । ଯିଏ ମତେ ଜନମ ଦେଇଛି, ମୋ' ରଥର ଚକ ସେ ଗଡ଼େଇ ନେଉଛି । ମୋ'ର ବଳ ନାହିଁ ।

—ସେଇଆ ଲୋ ଝୋଷ ! ତୋ' ଦୁଃଖର ବେଳ ସରିଆସିଲା । ନବରଙ୍ଗିଆ ନକାଢ଼ୋଲା ସମସ୍ତଙ୍କୁ ଲୋ ମା, ତା' ମନ ଖୁସିରେ ଧେଇଧେଇ ଥେଇଥେଇ ନଚାଏ । କ'ଣ କରୁଛୁ କରୁଥାଉ । ଚଇତନ ଆସିଯିବ । ତୁ ଯା । ମୁଁ ମୋର ଶୋଇଲି । ଯିଏ ତତେ ଏତେ ଭଲ ପାଏ, ତାକୁ କ'ଣ ମନ ଦୁଃଖରେ ଭେଟିବୁ ? ତା' ପାଇଁ ତୋ' ଜନମ, ତୋ' ପାଇଁ ତାଆର । ଦିହିଙ୍କ ଜୀବନରେ ଯାହା ଘଟି ଯାଇଛି, ସେତକ ତମକୁ ଚେଙ୍ଗାଇ, ତମ ମନରେ ଦାଗ ରଖିବାକୁ ବନ୍ଦ କରିଛି । ଚେଙ୍ଗ ଶିଖିଲା । ସଂସାରକୁ ଚହ୍ନିଲା । ଭଲ ହେଲା । ନାଝୁଣୀ କୁଆଡ଼େ ମଲା କି ଛତରକୁ ଗଲା । କାର୍ତ୍ତିକାକୁ ବୁଝେଇବ, ମଙ୍ଗେଇବ । ତୁ ଯିବୁଟି ଏବେ···

ବୁଢ଼ୀ ତଳେ ହାତଭରା ଦେଇ ଉଠିଲେ । ଝୋଷର ଓଠରେ ହାତ ଦେଲେ । କହିଲେ, ଯାଉନୁ, ଯା । ମୁହଁରେ ପାଣିହାତ ମାରି ପୋଛିବୁ । ମୁଣ୍ଡବାଳ ଦୋହଲୁଛି

ଲେ, ତେବେ ଭଲ ଦିଶୁଛୁ ତ ! ଚଇତନ ଆସିବ । ତାକୁ ଖୁସି ମନରେ ହସି ହସି ଭେଟିବୁ ମା, ତା' ମନରେ ଦୁଃଖ ଦେବୁ ନାହିଁ ।

ଟୋଷିକୁ ସେ ତାଙ୍କର ଦୁର୍ବଳିଆ ହାତରେ ଠେଲି ଘର ଭିତରୁ ପଦାରେ ଛାଡ଼ିଲେ । ତାଙ୍କ କୋଠରୀର ଦ' ଫାଳିଆ କବାଟ ଆଉଜାଇ ଜଞ୍ଜିର ଦେଲେ ।

ଟୋଷି ମଣିଲା, ଆଜ ତା'ର ଚଉଠୀ ବୋଲି କେଜେମା ଘେନା କରିଛନ୍ତି । ବଡ଼ଯାଆ ପରି ଅବୁଝା ଟିକିଯାଆକୁ ଶିଖାଇମଣାଇଁ ଗେଲବସର ସାନ ଦିଅରର ଚଉଠୀଘର ଭିତରକୁ ରାତିଅଧରେ ଦେହଲୀ ଡ଼ିଆଇଁ ଠେଲି ଦେଉଛନ୍ତି ।

•

ମନକୁ ମନ ସେ ହସିଲା । ପିଣ୍ଡା ଉପରେ ଜଳୁଥିବା ଆଲୁଅକୁ ଅଧିକ ତେଜି ଅଗଣାକୁ ଓହ୍ଲାଇଲା । କେତେବେଳେ ସେ ଆସିବେ ? ମଧୁଆ ଯାଇ କ'ଣ ଏଣୁ-ତେଣୁ କହିଲା କି ? ମନ ଦୁଃଖ କରିଥିବେ ? ଆସିବେ ନାହିଁ ?

ଆଶା ଓ ଦୁରାଶାର ଦୋଳାରେ ଟୋଷିର ଭାବନା ଝୁଲୁଥିଲା ବେଳେ ଦାଣ୍ଡ କବାଟରେ କିଏ ହାତ ବାଡ଼େଇବାର ଶବଦ ହେଲା । ଟୋଷି ଧାଇଁ ଯାଉଣୁ ଶୁଣିଲା, ତା'ର ନାମ ଧରି ସେ ଡ଼ାକ ଛାଡ଼ୁଛନ୍ତି ।

ଟୋଷି କବାଟ ଖୋଲିଲା ।

ଆଗରେ ଠିଆ ହୋଇଛନ୍ତି ତା'ର ସପନପୁରୁଷ, ମନର ମୂରତି । ଧୋବଲୁଗା ଉପରେ ଧୋବ ପଞ୍ଜାବୀ ପିନ୍ଧିଛନ୍ତି ! କବାଟ ଦ'ଫାଳ ଦୁଇଆଡ଼କୁ ଆଉଜାଇ ଟୋଷି କଡ଼େଇ ଠିଆ ହେଲା । ତୁଣ୍ଡରୁ ବଚନ ବାହାରିଲା ନାହିଁ ।

ଚଇତନ ଆଗ ବଳିପଡ଼ି କହିଲେ, ମୋ'ର ଟିକିଏ ଡ଼େରି ହୋଇଗଲା ଟୋଷି ! କିଛି ଯଦି ନ ଖାଇ ଆସିଥାନ୍ତି ପୁଝାରୀ ରୋକର ମତେ ରାନ୍ଧି ବସିଥାନ୍ତେ !

ଟୋଷି ଉତ୍ତର ଦେଲା, ଭଲ କଲ । ଭିତରକୁ ଆସ । ମଧୁଆ କ'ଣ କହିଥିବ କେଜାଣି, ଏତେ ରାତିରେ ଡ଼କାଇଲି । ତମେ ରାଗି ନାହଁ ତ ?

ଟୋଷିର ପ୍ରଶ୍ନର ଉତ୍ତର ନ ଦେଇ ଚଇତନ ଭିତରକୁ ଆସିଲେ । ଅଗଣାରେ ଠିଆ ହେଲେ । ଟୋଷି ଦାଣ୍ଡ କବାଟ ବନ୍ଦ କରି ପାଖକୁ ଆସିଲା । ଆଲୁଅର ତେଜରେ ଲଳଲଳ ଟୋଷି ତା'ର ନୂଆ ବେଶରେ ଝଟକୁଥିଲା ।

ଚଇତନ କହିଲେ, କାମ ଶେଷ କରି ଘରକୁ ଫେରିଲି ଡ଼େରିରେ । ହାଲିଆ ହୋଇଥିଲି । ପୁଣି ଭାବିଲି, ନିତ୍ୟକର୍ମ ସାରି ଆହୁରି ଅଧିକ ଡ଼େରିରେ ଆସିଲେ ତମର ଅସୁବିଧା ହେବ । ଯେତେ ହେଲେ ମଧୁଆ ରୋକରବାକର ପିଲା । ତା' ହାତରେ ଦାମିକା ଜିନିଷ ପଠାଇଥିଲି । ସେଇଥିପାଇଁ—

ଝେଣ୍ଟ କହିଲା, ମୋ'ର ଅପରାଧ ହୋଇଛି । ତମକୁ ଥରେ ଦେଖିବାକୁ ମୋ ମନ ଛଟପଟ ହେଉଥିଲା । ଲେଖିବାକୁ ବ କାଗଜ କଲମ କାହିଁ ପାଆନ୍ତି ଯେ ?

ଗୁଣ୍ଡିଆଖିର ନୀରବ ନିବିଡ଼ ମିଳନ । ଦୁଇଟି ଭୋକିଲା ଆଶାର ଆଶ୍ଳେଷ । ମମତାର ବନ୍ଧନ । ଆଗତ ଜୀବନର ସୁଖ ଓ ଶାନ୍ତିର ସୁନେଲୀ ସପନ ।

ଝେଣ୍ଟର ମଥାରେ ମୁଗ୍ଧ ଚଇତନଙ୍କର ହାତର ପରଶ ତା'ର ବିହ୍ୱଳଭାବ ଦୂର କଲା ।

ଚଇତନ କହିଲେ, ତୋ'ର ଲେଖା ମୁଁ ତୋ ଦେହରେ ପଢ଼ୁଛି । ଆଉ କ'ଣ ଶୋଇ ପଡ଼ିଲେଣି ?

ଝେଣ୍ଟ ଚଇତନଙ୍କର ଆର ହାତ ଧରି କହିଲା; ହଁ । କୋଡ଼ରେ ଅରକ୍ଷିତକୁ ଶୁଆଇଛି । ଭିତରୁ କବାଟ ଦେଇଛି । କହିଲା, ତମେ ଆସିଲେ ପିଲାଟା ଭଲରେ ଆମକୁ କୁଆଡ଼ିକା କରାଇଦେବ ନାହିଁ ।

ସତେ ? କହି, ଚଇତନ ଝେଣ୍ଟର ପୁଟୁକା ଗାଲରେ ସରୁସୁରୁପଡ଼ା ମାରିଲେ । ସେ ଅଭିଆଡ଼ୀ ଥିଲାବେଳେ ଅତି ଗେହ୍ଲାରେ ଯେମିତି ସେ କରୁଥିଲେ । ଅପେକ୍ଷା ନ କରି ଝେଣ୍ଟର କୋଠରି ଆଡ଼କୁ ଆଗେଇ ଯାଉଣୁ କହିଲେ, ଖୋଲା ଆକାଶ ତଳେ ଆଉ ମୁଁ ଠିଆ ହୋଇ ରହିପାରିବ ନାହିଁ । ସେମାନେ ଜଳଜଳ କରି ଚାହିଁଛନ୍ତି । ସେମାନେ ଶୁଣିବେ... ।

ଝେଣ୍ଟ ବୁଝିଲା, ପୁଣି ନ ବୁଝିଲା ପରି ପଚାରିଲା, କେଉଁମାନେ ମ ? କେହି ତ କୁଆଡ଼େ ନାହିଁ ! ଉପରେ ଜହ୍ନ, କେତେ ତଳକୁ ନଇଁଗଲାଣି, ଆଉ ସେ ଛୋଟବଡ଼ ତାରାଗୁଡ଼ାକ, ସେମାନେ କ'ଣ ଶୁଣି ପାରନ୍ତି ନା କହି ପାରନ୍ତି ?

ପିଣ୍ଡା ଉପରୁ ଆଲୁଅ ଟେକି ଚଇତନ ମୁକୁଳା ଦ୍ୱାରବାଟେ କୋଠରି ଭିତରେ ପଶିଲେ । ଝେଣ୍ଟ ନିଃସଙ୍କୋଚରେ ତାଙ୍କ ପଛେ ପଛେ ଗଲା । ହସି ହସି କହିଲା, ସେମାନେ ଖାଲି ଦେଖି ପାରନ୍ତି ।

ଘର ମଝିରେ ଆଲୁଅ ରଖି ଚଇତନ ଓଲଟି ଚାହିଁଲେ । ହସହସ ହୋଇ ସପ୍ରିତା ଝେଣ୍ଟର ମୁହଁକୁ ଦେଖିଲେ । ଝେଣ୍ଟ ଲାଜସରସର ହୋଇ ଦୃଷ୍ଟି ନୁଆଁଇଲା ।

ଚଇତନ କହିଲେ, ସତ କଥା । କିନ୍ତୁ, ତତେ ମୁଁ ଆଜି ନୂଆ ରୂପରେ ଦେଖୁଛି । ଆହୁରି ଦେଖିବି, ଆଖି ପୂରାଇ ଦେଖିବି । ମୋ' ଆନନ୍ଦର ଭାଗ ସେମାନଙ୍କୁ ଦେବି କାହିଁକି ?

ଚଇତନ କବାଟ ଦୁ' ଫାଳ ଆଉଜାଇ କାଠର କିଳଣି ଠେଲିଲେ । ଝେଣ୍ଟର ହାତ ଦୁଇଟି ଟେକିଲେ । ସେଥିରେ ରୁଣି ଝୁଣି ପଚି ପାଣିକାଚ । ଦୁ' ପଟି ଲାଲ ଓ ଦୁ' ପଟି ନେଳି । ପଟିକ ପରେ ପଟିଏ । ଯେମିତି ତା'ର ହାତଧରି ସେ ପଲଙ୍କ

ଉପରେ ବସିଲେ । ଗୋଡ଼ ତଳକୁ ଝୁଲାଇଲେ । ଝୋଟିକୁ ପଲଙ୍କ ପାଖକୁ ଓଟାରନ୍ତେ ସେ ଆପେ ଯାଇ ଠିଆ ହେଲା । ଦେହ ଝାଳେଇ ଉଠିଥିଲା । ବସ୍ତ୍ରବାର ଶକ୍ତ ତାର ଲୋପହୋଇ ଆସୁଥିଲା ।

ଚଇତନ ତା'ର ଅନାବୃତ ମୁହଁକୁ ତନ୍ମୟ ହୋଇ ଚାହିଁଲେ । କାନର ଲବଙ୍ଗଫୁଲରେ ହାତଦେଇ ସେ କହିଲେ, ପାଞ୍ଚଘର ବୋହୂର ପୁନେଇଁ ଜହ୍ନ ମୁହଁକୁ ଇଏ କ'ଣ ମାନବ ? ହାତର କାଚ ବ ? କେତେ ଯୋଡ଼ା କାନଫୁଲ, ତହୁଁ ବଳି ତହୁଁ ବଳି, ପୁଣି ଭଲକ ଭଲ ସୁନାକାଚ ମୁଠା ତୋ' ପଇଁ ବିମଳା ସାଇତି ଯାଇଛନ୍ତି । ସବୁ ତୋ'ର । ବାଛି ବାଛି ତୋ କାନକୁ ମାନିଲାପରି ହେଲେ, ଆଉ ହାତକୁ ଶୋଭିଲା ପରି ମୁଠିଏ ମୁଁ କାଲେ ନେଇ ଆସିବି । କାଲେ ତତେ ପିନ୍ଧାଇବି ।

—ନାହିଁ, ନାହିଁ— ।

—କାହିଁକି ? ମୋ ଚଠି କ'ଣ ପଡ଼ିଲୁ ? ଲୋକେ କ'ଣ କହିବେ ସେ କଥା ବିଚାରୁଛୁ ? ସେମାନଙ୍କୁ କ'ଣ ଝାଣ ମନରେ ଜବାବ ଦେଇ ପାରନୁ ନାହିଁ ଯେ ସବୁ ତୋ'ର ? ଖଣ୍ଡମଣ୍ଡଳରେ ନାମଡାକ ଖୁଣ୍ଟିଆଘର ଗରବ ନ ଥିଲେ । ପାଞ୍ଚପୁରୁଷରୁ ଖାନଦାନ । ତୁ ଦିନେ ଥିଲୁ ସେହି ଘରର ଏକମାତ୍ର ବୋହୂ । ତୋ' ଶାଶୁ ଶଶୁରଙ୍କର ଆଖିର ପିତୁଳା । ତାଙ୍କର ସ୍ନେହ ଓ ଧନ ସବୁ ସେମାନେ ତୋତେ ଦେଇଥିଲେ । ତୋ'ର ତୁ ନେଇ ଆସିଛୁ । ଏମିତି ଜବାବ୍ ଦେଲେ ସେମାନେ ଅବିଶ୍ୱାସ କରି ପାରିବେ ନାହିଁ ।

ଝୋଟି ମଥା ଟେକି କହିଲା, ହୁଏତ ଅବିଶ୍ୱାସ କରିବେ ନାହିଁ । କିନ୍ତୁ ମିଛ କହି ତମର ସ୍ନେହକୁ ମୁଁ କାହିଁକି ଲୁଚାଇବି ? ସତ କହିବି । ମୁଁ ଯେ ପାଞ୍ଚଙ୍କ ଘରର ବୋହୂ ହେବାକୁ ଯାଉଛି ଏହା ଜଣାଇଁ ଦେବାକୁ ଡରିବି ନାହିଁ । ସେମାନେ ନିନ୍ଦା କରିବେ । ଦୁର୍ନାମ ରଟାଇବେ । ମିଛ କଥାରେ ଦୁଇଟା ଗାଁରେ କେତେ ନିନ୍ଦା ରଟିଥିଲା । ଦୁର୍ନାମର ନାଗରା ବାଜିଥିଲା । ମନ ଦୁଃଖରେ ସହିବାକୁ ବାଧ୍ୟ ହୋଇ-ଥିଲି । ନିଘୋଳାରେ ବସି କାନ୍ଦିଥିଲି । କିନ୍ତୁ ତମ ପାଇଁ ଯଦି ନିନ୍ଦା ରଟେ, ଦୁର୍ନାମ ଘୋଟେ ମୁଁ ଆନନ୍ଦରେ ହସିବି । ମିଛ କହୁ ନାହିଁ ।

—ସତେ, ସତେକି ଝୋଟି ? ମୋ' ଉପରେ ତୋ'ର ଏତେ ବିଶ୍ୱାସ ? ମୁଁ ଯଦି କେବଳ ତୋର ରୂପଯୌବନକୁ ଲୋଭ କରି ତୋ'ର ସ୍ୱାସ୍ଥ୍ୟ ଭରପୂର କଅଁଳ ଦେହଟାକୁ ଭୋଗ କରିବାର ଲାଳସାରେ ଖାଲି ବାହାର ଦେଖାଣି ସ୍ନେହର ଛଳନା କରୁଥାଏ ?···

ଚଇତନଙ୍କର ହସ ହସ ପ୍ରଫୁଲ୍ଲ ମୁହଁକୁ ଚାହିଁ ଝୋଟି ହସିଲା । କହିଲା, ତମ ସ୍ନେହର ଛଳନା ମୋ'ର ସତ୍ୟ । ବିମଳା ଭାଉଜ ତମ ଘରକୁ ବୋହୂ ହୋଇ ଆସିବାର ବହୁ ବର୍ଷ ଆଗରୁ ମୋ ପ୍ରତି ତମର ସ୍ନେହ କ'ଣ ଛଳନା ଥିଲା ? ସେ

ଆସିବାର ଦଶ ବର୍ଷ ଯାଏ ତାଙ୍କର ସ୍ନେହ ମୁଁ କେମିତି ଭୁଲି ପାରିବି ? ସେହି ସ୍ନେହ ଭିତରେ ମୁଁ ତମକୁ ଅନୁଭବ କରୁଥିଲି ।

ଟିକିଏ ରୁନ୍ଧି ରହି ପୁଣି ସେ କହିଲେ, ସାତ ବର୍ଷ ଅଲଗା ରହିଲି । ଅନ୍ୟ ଗୋଟାଏ ସଂସାର । ତମକୁ ମୁଁ ଭୁଲି ନ ଥିଲି । ଯେଉଁ ଖବର ପାଉଥିଲି, ସେଥିରୁ ମୋ'ର ଧାରଣା ହୋଇଥିଲା ଯେ ତମେ ମୋର ନାପର ଶତ୍ରୁ ହୋଇଥିଲ । ଫେରିଆସି ବୁଝିଲି, ମୋ' ପ୍ରତି ତମର ଅତୁଟ ସ୍ନେହ, ନାଟୁଆ ଉପରେ ତମର ଘୃଣା, ଯାହା ଘଟିଗଲା ସେଥିକି ଦାୟୀ । ତମର ନିର୍ମଳ ଚରିତ୍ରରେ ଆଜିଯାଏ କେହି କଳଙ୍କ ଲେପି ପାରି ନାହାନ୍ତି । ମୋ ପାଇଁ ଯଦି ସେଥିରେ କଳଙ୍କ ବୋଲାହୁଏ, ତା' ଠାରୁ ବଳି ଅଧିକ ସମ୍ମାନ ମୋ'ର ଆଉ କ'ଣ ହୋଇପାରିବ ?

ଚଇତନ ତନ୍ମୟ ହୋଇ ଶୁଣୁଥିଲେ । କହିଲେ, ତୁ ଏତେ କଥା କହି ପାରିଲୁ ? କାହୁଁ ଶିଖିଲୁ, ତତେ କିଏ ଶିଖାଇଲା, ମୁଁ ବୁଝିପାରୁଛି ।

—କ'ଣ ବୁଝିଛ ?

—ପିଲାଟି ଦିନରୁ ତୋର ଦୁଃଖକଷ୍ଟ ଭୋଗିଲା ଜୀବନ, ପରଘରକୁ ଯାଇ କଳବଳିଆ ଘରକରଣା, ଏ ଗାଆଁକୁ ଫେରିଲା ପରେ ସତର୍କସାବଧାନ ଚଳଣି ସବୁ ମିଶି ତତେ ନୂଆ ମଣିଷ କରିଛନ୍ତି । ତୁ କେବଳ ମୋ'ର ସ୍ନେହ ପାଇନୁ ଲୋ ଟଗି, ମୋର ସମ୍ମାନ ବି ପାଇଛୁ ।

ଟଗିର କୋହ ଉଠୁଥିଲା । ସେ ଦୃଷ୍ଟି ନୁଆଁଇ ନୀରବ ରହିଲା । ଚଇତନ ଆଉ କ'ଣ କହିବେ ଶୁଣିବାକୁ ଅପେକ୍ଷା କଲା । କିନ୍ତୁ ସେ କିଛି କହିଲେ ନାହିଁ ।

କିଛିକ୍ଷଣ ପରେ ସେ ପୁଣି କହିଲେ, ତୁ ମୋ'ର ହୋଇ ସାରିଛୁ । ତୋର ମନ ଓ ଭବିଷ୍ୟକୁ ମତେ ସମର୍ପି ଦେଇଛୁ । ମୁଁ ତାକୁ ଗ୍ରହଣ କରୁଛି । ମୋ'ର ବି ତତେ କିଛି ଦେବାକୁ ପ୍ରାଣ ଡାକୁଛି । ନେବୁ କି ନାହିଁ କହିଲୁ ?

—ତମର ଦାନ ନେବାକୁ ମୁଁ ମନା କରିପାରିବି ନାହିଁ । କଥାଟିଏ କହିବି । ମତେ ଅଲାଜୁକୀ ମଣିବ ନାହିଁ । ତମରି ଆଗରେ ମୋ'ର ଜନମ । ତମରି କାଖରେ କୋଡ଼ରେ ହୋଇ ବଢ଼ିଲି । ଗ୍ରୁଢର ଉମ୍ମ ଦେହରେ ଭେଦାଇଥିଲି । ଏ ଗାଆଁ ଛାଡ଼ି ସେ ଗାଆଁକୁ ଯାଇ ଫେରିଆସିଲି । ମୁଁ ଗୋଟିଏ ପିଲାର ମା । ଦେହ ଓ ମନର ସବୁ ଅନୁଭବ ନେଇ ଫେରିଛି । ମୁଁ ଗୋଟାଏ ଛଡ଼ାଫୁଲ, ଫିଙ୍ଗା ଫୁଲ ।—

ଚଇତନ ବାଧା ଦେଇ କହିଲେ, ସେତିକି କହିଥା । ମୁଁ କହୁଛି ଶୁଣ । ତୁ ଛଡ଼ା ଫୁଲ ଟଗି, କିନ୍ତୁ ତୁ ନଗେଲା ସୁନାରେ ଗଢ଼ା । ମୋ'ଠାରୁ ଅଧିକ ତତେ କିଏ ଚିହ୍ନିଛି । ତୋ' ବାହାର ରୂପଟି ସହ ତୋ' ମନର ରୂପ ମୁଁ ଦେଖିଛି । ଦୁଃଖର ନିଆଁରେ ତାତି ତାତି ସିଏ ଅଧିକରୁ ଅଧିକ ଝଟକୁଛି ! ମୋର ମନର

ଆଖିରେ ଯେଉଁଟି ଝଲସେ । ବାହାରର ରୂପ ଓ ଭେକ ଖାଲି ଆଖି ଓଠାରେ ଲେଟେଇ, ଦେହର ଭୋକ ବଢ଼ାଏ । ମୁଁ ଜାଣେ, ତତେ ବି ଅଜଣା ନାହିଁ, ଭୋଗର ଆନନ୍ଦରେ ଦେହର ଭୋକ ଟିକିଏ ପରେ ଆସୁଥାଏ, ଅଜାଡ଼ି ହୋଇ ଶାନ୍ତ ହୁଏ । ସେଇଠୁ ଦୂରଟେ ବାହୁଡ଼ି ମରଯାଏ । ପୁଣିଥରେ ଜନମି ଅସ୍ଥିର ହୋଇ ଫେର ଆସିବାକୁ ବ୍ୟାକୁଳ ହୁଏ ।

ଟଗ୍ରି ବନାଙ୍କ ମନ କେବଳ ଶୁଣୁଥିଲା । କହିଲା, ମୁଁ ମୂର୍ଖ । ମୁଁ ଓଲମୀ, ତମର କଥା କେମିତି ବୁଝିବି ? କ'ଣ ଦେବାକୁ କହୁଥିଲ ବାଅ ? ମୁଁ ନେବି ।

ଚଇତନ କହିଲେ, ମୋ'ର ଶ୍ରେଷ୍ଠ ପୁଅ, ଆଉ ମୋ ଘରର ଦାୟିତ୍ୱ ବୋଝ ତୁ ମୁଣ୍ଡରେ ବୋହିବୁ । ଖାଲି ତୋର ସମ୍ମତି ଲୋଡ଼ୁଛି ।

—ମୁଁ କ'ଣ ପାରିବି ?

—ପାରିବୁ । ମୁଁ ତୋ' ପଛରେ ଥିବି ।

—କେବେ ନ ମାରିବ କାହିଁକି ? କାଲୁ ବାପା କେବେ ଫେରିବେ ? ତମ ପାଖରୁ ଦୂରେଇ ରହିଲେ କେମିତି ଛଟପଟ ହୋଇ ମୋର ଦେଳ କଟିବ କପରି ବୁଝାଇ କହିବି ?

ଟଗ୍ରିର ଆଖିରେ ଲୁହ ଛଳ ଛଳ ହେଲା ।

ଚଇତନ କହିଲେ, ତାଙ୍କ ଫେରିବାର ସମୟ ଗଡ଼ିଗଲାଣି । ଯେକୌଣସି ଦିନ ସେ ଫେର ଆସି ପାରନ୍ତି । ଆରେ ହଁ, ଗୋଟାଏ ବଡ଼ କଥା ମୁଁ କହିବାକୁ ଭୁଲି ଯାଇଛି । ଅଲେଖଙ୍କୁ ନେଇ ମୁଁ କାଲି ଦୁପରବେଳା କଟକ ଯାଉଛି । ଶୁଣିଲି, ବଡ଼ଡାକ୍ତରଖାନାରେ ସ୍ନେହୀପିଲାଙ୍କର ଅପରେସନ୍ କରି ତାଙ୍କୁ ଭଲ କରି-ଦେଉଛନ୍ତି । ଯାଏଁ, ଥରେ ଦେଖାଇ ପରୀକ୍ଷା କରାଇ ଆସେ ।

—ଏତେ ! ମତେ ସଙ୍ଗରେ ନେଇ ଯାଅ ।

—ମଧୁଆକୁ ସଙ୍ଗରେ ନେଇ ଯାଉଛି । ଏବେ ତ ଅପରେସନ୍ ହେଉ ନାହିଁ, ଖାଲି ପରୀକ୍ଷା କରି ଦେଖିବେ । ଆମ ବ୍ଲକ୍‌ର ଡାକ୍ତର ଦିନକ ପାଇଁ ମୋ ସଙ୍ଗେ ଯାଉଛନ୍ତି । କାଲି ରାତିରେ ସେ ଫେର ଆସିବେ । ଦରକାର ହେଲେ ଦୁଇ ତିନି ଦିନ ମୁଁ ରହିଯିବି । ଆଜି ଫଗୁ ଦଶମୀ । ଚତୁର୍ଦ୍ଦଶୀ ସନ୍ଧ୍ୟା ପୂଜା ମୁଁ ନିଶ୍ଚୟ ଫେରି ଆସିବି ଟଗ୍ରି !

ଦୁଇ ହାତଯୋଡ଼ି ଟଗ୍ରି ମୁଣ୍ଡରେ ଲଗାଇଲା । ଠାକୁରଙ୍କଠାରେ ମନେମନେ ଗୁହାରି କଲା—ମା-ଛେଉଣ୍ଡ ହତଭାଗ୍ୟ ପିଲା ଅଲେଖଟିକୁ ଭଲ କରିଦିଅ ପ୍ରଭୁ !

ଆଲୋଚନାର ବିଷୟ ସରଳ ।

ଉଭୟେଁ କିଛି କ୍ଷଣ ନୀରବ ରହିଲେ । କେହି କାହାରି ମୁହଁକୁ ଚାହିଁ ପାରିଲେ ନାହିଁ । ଏକାଠି ଘରକରଣାର ଭବିଷ୍ୟ ଯୋଜନା ଦୁହିଙ୍କୁ ଟିକିଏ ଆନମନା କଲା । ଦୁହିଙ୍କ ମନରେ, ଅତୀତର ଆକାଶରେ ଫୁଟି ଆସିଲା ଯେଉଁ କାଳାଧୂମର ବଉଦ ତା ଆଡ଼କୁ ଦୃଷ୍ଟି ଟାଣି ହୋଇଗଲା ।

ସେ ବଉଦ ଗୋଟାଏ ଅନ୍ଧକାର । ଗୋଟାଏ ନିରାଶାର । ବଉଦର ସଙ୍ଗେ ସଙ୍ଗେ ମାଡ଼ି ଆସିବ ଝଡ଼ ଧୂମାଳି, ସପନର ଘରକରଣା । ବାସ୍ତବତାର ରୂପ କି ନେଇଥିବ ଭାଙ୍ଗି ଚୁରି ଛାରଖାର ହେବ ? ଦୁହିଁଙ୍କ ଆଶାପୂର୍ଣ୍ଣ ଜୀବନକୁ ଉଡ଼ାଇ ନେବ, ନିକ୍ଷେପିବ ବିପରୀତ ଦିଗରେ, କାହିଁ କେତେ ଦୂରରେ ? ହାତ ପାଇବା ତ ଦୂରର କଥା, ସେହି କଳାଧୂମର ଘୋଟିଲା-ମେଘର ଆସ୍ତରଣ ତଳେ ଦୃଷ୍ଟି ବି ପାଇବ ନାହିଁ ।

ଭାବୁଥିଲେ ଚଇତନ, ଅନୁନୟ ବିନୟ, ଦୋଷ ମାଗଣି, ଧନସମ୍ପଦ ସମର୍ପଣ ସତ୍ତ୍ୱେ ଯଦି କାର୍ତ୍ତିକ ମହାନ୍ତି ରାଜି ନ ହୁଅନ୍ତି ସେ କ'ଣ କରିପାରିବେ ? ଯାହାଙ୍କର ସ୍ତ୍ରୀ, ପୁତ୍ର, ଭବିଷ୍ୟତ କିଛି ନାହିଁ, ଜେଲ ଜୀବନର ଦୁଃଖ ସହି, ଏକସଙ୍ଗେ ବେଳ ବିତାଇଥିବା ଅନ୍ୟାନ୍ୟ ବନ୍ଦୀମାନଙ୍କର ଜୀବନର କାହାଣୀ ଜାଣି ସେ କି ପ୍ରକାର ମଣିଷ ହୋଇ ଫେରିଥିବେ ? ସେ ତ ମୂଳରୁ ଅଣ୍ଡିଆ ମଣିଷ ଥିଲେ, କିନ୍ତୁ ସଚ୍ଚୋଟ ଓ ନିର୍ଭୟ । ପରର ହାନିଲାଭରେ ଅସଂପୃକ୍ତ । ସରଳ ହି, ସମସ୍ତଙ୍କଠାରେ ବିଶ୍ୱାସ କିନ୍ତୁ ଯାହା ବୁଝିବେ ସେଇଆ ।

ମନେ ପଡ଼ିଲା ସେଦିନର ଦୃଶ୍ୟ । କେବଳ ତାଙ୍କୁ ହିଁ ଆଘାତ କରିବାକୁ ସେ ଶିମୁଳିତଳ କିଆରି ପାଖରେ ତାଙ୍କ ଆଡ଼କୁ ଧାଇଁ ଆସୁଥିଲେ । ନାଟୁଆ ଚଣ୍ଡିକା ପରି ବାଳ ମୁକୁଳା ଗର୍ଜୁଥିଲା । ଅକଥ୍ୟ ଅସଭ୍ୟ ଭାଷାରେ ସେ ଚଇତନଙ୍କୁ ଶୋଧୁଥିଲା । କାର୍ତ୍ତିକ ଉତ୍ତେଜିତ ହୋଇ ହାତରେ କଟୁରି ଧରି ଗରଜୁ ଥିଲେ, ଆଉ ଧାଇଁ ଆସୁଥିଲେ । ଚଇତନଙ୍କର ବିଶ୍ୱାସୀ କୋଠିଆ ଦାଟ ଓଗାଳି ପ୍ରଥମ ପାହାର ଦେଲା । ସେହି ବଳିଷ୍ଠ ପୁରୁଷ କାର୍ତ୍ତିକ ମହାନ୍ତିଙ୍କୁ କୁଣ୍ଢାଇ ଧରି ଅଟକାଇବାକୁ ଚେଷ୍ଟା କରୁଥିଲା । ଅନ୍ୟମାନେ ଦଉଡ଼ି ଆସି ତାଙ୍କୁ ନିସ୍ତେଜ ଛେଚି ସଙ୍କ୍ରାସ୍ତିନ କରିବା ଆଗରୁ ସେ କୋଠିଆକୁ କ୍ଷତବିକ୍ଷତ ଲହୁଲୁହାଣ କରି ସାରିଥିଲେ ।

କୋର୍ଟ-କଚେରୀରେ ମକଦ୍ଦମା ଯେଉଁ ରୂପ ଧରୁ, ପ୍ରକୃତ ଘଟଣା କାର୍ତ୍ତିକଙ୍କୁ ତ ଜଣା । ସେ ଅନୁତାପ କରିଥିଲେ, ଦୋଷ ସ୍ୱୀକାର କରିଥିଲେ । ଗୋଟିଏ ଗରିବ ମୂଲିଆର ବିନା ଦୋଷରେ ଜୀବନ ନେଇଥିବାରୁ ନିଜ ଜୀବନକୁ ତୁଚ୍ଛ କରି ଫାଶୀ

ଗୁଣ୍ଡରେ ଝୁଲିବାକୁ ଗ୍ରହୁଥିଲେ । ସେ କିପରି ବୁଝିବେ, ସବୁ ଘଟଣାର ମୂଳରେ ନାଟୁଗ୍ରର ଭିତର ଅସନା, ଅସଯତ, କ୍ରୋଧିଲଭାଷା, ମା' ନଥିଲ ସାହାଯ୍ୟହୀନା ଉପବାସୀ, ସରଳିଆ, ନିର୍ଦ୍ଦୋଷ ଟଗ୍ର ପ୍ରତି ତା'ର ଅକାରଣ ଆକ୍ରୋଶ ଲୁଚି ରହିଥିଲ ।

କାର୍ତ୍ତିକ ମହାନ୍ତିଙ୍କ ଘରଆଗରେ ଅନ୍ୟ କେହି କେହି ଗ୍ରାମବାସୀଙ୍କ ଗହଣରେ ମହନ୍ତି ଚଇତନ ଥକା ହୋଇ ଠିଆ ହୋଇଥିଲେ । ଗୋଟିଏ ଯୁଗ ବିତି ଗଲଣି । ଦୋଳଯାତ୍ରା ପାଇଁ ଚାନ୍ଦା ମାଗିବାକୁ ଯାଇଥାନ୍ତି । ସଞ୍ଜ ବୁଡ଼ିଆସୁଥାଏ । ଦାଣ୍ଡକବାଟ ବନ୍ଦ ଥାଏ । ନାଟୁଗ୍ର କେଳକାଲା ରଡ଼ି ଗ୍ରୁଡ଼ୁଛି, ଗର୍ଜୁଛି, ଅସଭ୍ୟ ଭାଷାରେ ଟଗ୍ରକୁ ଶୋଧୁଛି । ଚଉଦ ବର୍ଷର ବଢ଼ିଲା ଝିଅ ସେ, ଖାଲି କଇଁ କଇଁ ହୋଇ କାନ୍ଦୁଛି ।

ତା'ର ଜେଜେମା ବୁଢୀ ଚାହିଁ ରହିକା ନାଟୁଗ୍ରକୁ ସାବଧାନ କରି କହୁଛନ୍ତି, ଆଲୋ, ତୋ' ଭୁଣ୍ଡକୁ ଯେତେ ପୁଅମୂତ ଉଗାଳୁଛୁ ଉଗାଳୁ ଥା । ତେବେ ନ ଗନ୍ଧାଉ ପଛେ, ଧସାରକୁ ସେ ବିଚକଟିଆ ଗନ୍ଧ ଚହଟୁଛି । ବୁଝି ହୁସିଆର ! ପିଲାଟା ଦେହରେ ହିଁ ପ୍ରେମ୍ଲୁଛି ତ ଏ ଘରେ ନିଆଁ ଲଗାଇଦେବ । ଧୁନୀ ହୋଇ ବସି ଶୁଣୁଛୁ କ'ଣ ରେ କାର୍ତ୍ତିକା, ତା' ମୁହଁରେ ନିଆଁ ଜାଳି ଦେ ।

କାର୍ତ୍ତିକ କହୁଛନ୍ତି, ଚୁପ ହ । କାହିଁକି ସେମିତି ଅନଡ଼ଭୁଛୁ ? ଆଲୋ ଟଗ୍ର, ଆଉ ତାଙ୍କଘରକୁ ଯିବୁ ନାହିଁ । ଛି, ଛି, ତୋ' ଦୋଉର କଥା ମାନି ଚଳୁନୁ !

ନାଟୁଗ୍ର ଗର୍ଜୁଛି, ଯିବ ନାହିଁ ! ଚୂଲିପଣୀକୁ ସେ ଚଇତନିଆ ବାଇ କରିଛି । ଚୂଲିପଣୀ ପ୍ରଧାନୀଲା ଲଗାଇଛି । କୋଉ ଛଟକରେ, ସବୁ ପାଇଟି ବାକିଆ ପକେଇ ଲୁଚି ଲୁଚି ପଳାଇବ । କୋଉଠି ମୂଲିଆ-ମୂରୁଖ ଦେଖି ଜଲଦି ବିଦାକର, ନୋହିଲେ ଦେଖିବୁ ରହିଥା, ଅଣବାହୁଆ ନାତି ତୋ ନା ପକାଇବ । ଚଇତନିଆଁ ଭଲ ଜଣେ । ଧନୀଘର ପୁଅ ବୋଲି କ'ଣ ଗରିବଘରର ମହତ ସାରିବ ! ଦେଖିବୁ ରହ ରେ ! ...

କାଲି ପରି ଲାଗୁଛି । ଚଇତନ ସାଙ୍ଗମାନଙ୍କ ସଙ୍ଗେ ବାହୁଡ଼ି ଆସିଥିଲେ । ଗ୍ଲାନିରେ ଛନକା । ନିଜ ପାଇଁ ନୁହେ, ହତଭାଗିନୀ ଟଗ୍ର ପାଇଁ ! ରକ୍ତରେ ନିଆଁ ଲାଗିଥିଲା । ମୁଣ୍ଡ ଭିତରେ ପ୍ରତିଶୋଧ ନେବାର ସଂକଳ୍ପ ଜାଗିଉଠିଥିଲା ।—

ଆଜି, ଏଇ ନିର୍ଜ୍ଜନ ରାତିରେ, ସେଇ ଟଗ୍ର ନୂଆ ମନ, ନୂଆ ଜୀବନ ଓ ଆଶା ନେଇ ଆଗରେ ଉଭା ହୋଇଛି । ସେ ଏବେ ବି ନିରାଶ୍ରୟା । ପୋଷା ମାନିଛି । ଯେ କାମନା କରୁଛି, କିନ୍ତୁ ସେ ପର । ଘରଣୀ ନ ହେବା ଯାଏ କି ଅଧିକାରରେ ନିଜ ଦେହର ଭୋକ ମେଣ୍ଟାଇବାକୁ ସେ କେବଳ ଟଗ୍ରର ନୁହେଁ, ନିଜର ମହତ ପଣରେ କାଳିମା ବୋଳିବ ? କିଏ ଜାଣେ, ଗୋପନ ମିଳନର ପରିଣାମ କ'ଣ ହେବ ?

—ଟୋକୀର ମନରେ ସେହିପରି ଭାବନାର ତୋଫାନ—ଶିବବାବାଙ୍କର ମଠର ଘଟଣା, ସୁନା ଦେଈର ଚକ୍ରାନ୍ତ, ନିଶାର ପ୍ରଭାବରେ ଅଧଚେତା ଅବସ୍ଥାର ଉତ୍ତେଜନା ଓ ଗୃମଣ୍ଡାର ଧାରଣା । ନିଜକୁ ସେ ମଣିଥିଲା ଶଙ୍କସ । ଯିଏ ତା'କୁ ଦୋଗ୍ରୁଣୀ କରିଥିଲେ ତାଙ୍କୁ ଘେନିଥିଲା ଶିବଶଙ୍କର ବୋଲି । ସପନ ପରି ମନେ ହେଉଥିଲା ନିରଟ ସତ । କେଜାଣି, ଯଦି ସେହି ମିଳନର ଫଳ ହୋଇଥିବ ତା'ର ପ୍ରାଣରୁ ବଳି ଅଧିକ ଅରକ୍ଷିତଟି !

ଆଜି ତା'ର ଶୋକକେ ଆତୁର ଛଟପଟ ଆତ୍ମା, ଆଶା ଜରଜର ଅଧୀର ଦେହଟାକୁ ଆଗରେ ଦିଅ ସ୍ନେହ ଓ ନିର୍ଭରର ଚଳନ୍ତିପ୍ରତିମାର ସ୍ତୂତରେ ଅଜାଡ଼ି ଦେବାକୁ ଉତ୍କଣ୍ଠ କରୁଛି । ତୁଣ୍ଡର ସବୁ ଭାଷା ସରିଛି । ଖାଲି ଟିକିଏ ନୀରବ ପରଶ । ଆଖିର ଅବୁଝା ଭାଷା । ଦୁଇଟି ତନୁ ଏକାଠି ହେବାର ଆମନ୍ତ୍ରଣ !

ସେ ଆଜି କାହାରି ଘରର କୁଳବୋହୂ ନୁହେଁ । ସେ ଦୋଗ୍ରୁଣୀ ହେବ ନାହିଁ । ଯାହାଙ୍କ ଘରର ସେ ଘରଣୀ ହେବ, ସେହି ତ ଆଗରେ ଉଭା ! ତା'ର ଭବିଷ୍ୟ, ତା'ର ଆଶ୍ରୟ !

ତା'ର ଭବିଷ୍ୟ ! କିନ୍ତୁ, ଆଜି ସେ ନିଜେ କ'ଣ ? ବାପ ଘରେ ଝିଅ । ବାପ ବାହୁନ୍ତ ନ ଥିଲେ ବି ସେ ତାଙ୍କରି ଘରେ ତାଙ୍କରି ଆଶ୍ରିତା । ମନେ ପଡ଼ୁଛି ଗୋଟିଏ ଯୁଗ ତଳର ଘଟଣା, ବାଘୁଣୀ ସାବତମାଆର ଝିଙ୍ଗାସ । ସେତେବେଳେ ଯେଉଁ ବୟସରେ ସେ ବୁଝି ନ ଥିଲା । ନାଟୁସ୍ତର ଆଖି ତରଟା, ଦାନ୍ତ ରଗଡ଼ା, କଳକଳା ତଣ୍ଡ, ଫୁରକୁଟି ନାକ, ତା'ର ଅସଭ୍ୟ ଭାଷାକୁ ଈର୍ଷାରେ ଜଳିଲା ଗାଳିରୂପେ ସେ ଗ୍ରହଣ କରିଥିଲା ।

ତା'ର ଗୂଢ଼ଅର୍ଥ ସେ ବୁଝି ନଥିଲା । ଶୁଣି ଶୁଣି କାନର ଅଭ୍ୟାସ ହୋଇ ଥିଲା—‘ଟୋକୀ ମହନ୍ତ ସାରବ, ଅଣବାବୁଆର ମା' ହେବ'···

ଏ ବୟସରେ ବୁଝିବାକୁ କେଉଁକଥା ତା'ର ବାକି ? ଅରକ୍ଷିତକୁ ଲଜରୁ ବଞ୍ଚାଇବାକୁ, ଅଣବାବୁଆ ଟାହୁଲରୁ ଉଦ୍ଧାରିବାକୁ ସେ ନିଜେ ତା'କୁ ଏବେ ଶିଖାଇ ଦେଇଛି—ବାପ ନାଁ ପଚାରିଲେ କହିବୁ ରେ ପୁଅ, ‘ଶ୍ରୀ ଝପ୍ରମଣି ଖୁଣ୍ଟିଆ’ । ଜେଜେଙ୍କ ନାଁ ପଚାରିଲେ କହିବୁ ‘ଶ୍ରୀ ଫଗୁମଣି ଖୁଣ୍ଟିଆ,’ ଆଉ ତୋ' ଅଜାଙ୍କ ନାଁ ଶ୍ରୀ କାର୍ତ୍ତିକ ମହାନ୍ତି ।···

ଅରକ୍ଷିତ ଶିଖିଲାଣି । ଅଧିକରୁ ଅଧିକ ଜାଣିବାକୁ ତା'ର ଆଗ୍ରହ ବଳିଲାଣି ।

ଯେତେ କଥା ସେ ପଚାରେ ସବୁ ଅଡୁଆ ପ୍ରଶ୍ନ । ତା'ର ଉତ୍ତର ଟୋକୀ ଦେଇ ପାରେ ନାହିଁ । ବାଆଁରେଇ ଦେଇ ତା'ର ତରଳ ଆଗ୍ରହକୁ ଅନ୍ୟଆଡ଼କୁ ଅଡ଼ାଇ ନିଏ । କେବେ କଡ଼ାଳି କଲେ କାମ ବାହାନାରେ ଅନ୍ୟଆଡ଼େ ଉଠି ପଳାଏ ।

ଛୁଆଟାକୁ ବି ତା'ର ଡର !

ତା'ର ବାପା ଜେଲରୁ ଫେରି ଆସିଲା ପରେ, ସବୁ ଶୁଣି ଯଦି ଅସଙ୍ଗ ହୁଅନ୍ତି ? ଯେଉଁ ଚଇତନ ପାଣଙ୍କୁ ସେ ମହାଶତ୍ରୁ ମଣିଥିଲେ, ତାଙ୍କୁ ଯଦି ସେ ବିଶ୍ୱାସ ନ କରନ୍ତି ? ପୁଣି ଯଦି ଚଇତନଙ୍କର ଅଂଶ ତା' ଭିତରେ ଅଙ୍କୁରି ଉଠେ ? କେମିତି ସେ ମୁଣ୍ଡ ଟେକି ବାଟ ଚାଲିବ ? କାହା ମୁହଁକୁ ସେ ଚାହିଁବ କପାଳ- ଗେରସ୍ତ-ଛଡ଼ା ଘରବାହୁଡ଼ା ବାପଘରେ ଝିଅ ! ଦୁଇଟି ଗାଆଁରେ ଯେତେ ଯାହା ମିଛ-ଅପବାଦ ରହିଥିଲା, ସବୁ ସତ ଫଳିଯିବ ।

ଉପରେ ଟଗର ଗୋଡ଼ରୁ ମୁଣ୍ଡଯାଏ ଥରିଉଠିଲା । ଦେହ ହୋଇଆସିଲା ଘର୍ମାକ୍ତ । ଉସ୍ତ ଗ୍ରବ ଚାହିଁଲା ମୁହଁକୁ । ଆଖିରେ କ୍ଷମାପ୍ରାର୍ଥନାର ଆକୁଳତା । ଧୀରେ ଧୀରେ ତା' ପାଦ ପଛେଇ ଆସିଲା । ଅକ୍ଷମଣୀୟ କେଉଁ ଦୋଷ କଲା ପରି ଡର ଡର ଚାହିଁଲା ଚଇତନଙ୍କ ମୁହଁକୁ । ଦୃଷ୍ଟି ସ୍ଥିର ରହି ପାରିଲା ନାହିଁ । ଉହାଇ ପବନରେ ଆଲୁଅ-ଶିଖା ହଲହଲ ହେଲା ପରି ସେ ଦୃଷ୍ଟି ଦୋହଲୁଥିଲା । ରୁଦ୍ଧ-କୋଠରୀ ଭିତରେ ଯାହା ସବୁ ଘଟି ଯାଇଛି, ଜମଣ ସେ ତା'ର ବନ୍ଧୁରକ, ଯିଏ ହାତ ମାଝରେ ବସିଛନ୍ତି, ତାଙ୍କୁ ବାରଣ କରିବ ?

ଟଗର ମନର ଅବସ୍ଥା ଚଇତନ ବୁଝିଲେ । ସେ ହସ ହସ ମୁହଁରେ ପଲଙ୍କ ଉପରୁ ଉଠିଲେ ।

ଟଗ ମଣିଲା, ଯେଉଁ ନିଆଁ ସେ ତାଙ୍କର ମନରେ, ଶିରା ପ୍ରଶିରାରେ ଜଳାଇ ସାରିଛି, ସେହି ନିଆଁରେ ତାକୁ ବି ସେ ହୋମର କାଠ ଭଳି ଜଳାଇ ଦେବେ । ଆଉ ତା'ର ପରିତ୍ରାଣ ନାହିଁ ।

ଚଇତନ ରୁଦ୍ଧ କବାଟକୁ ଚାହିଁଲେ । ଦୁଇ ପାଦ ଆଗେଇ କିଳିଣିରେ ହାତ ରଖିଲେ, ଫେରି ଚାହିଁଲେ । ସେମିତି ସସ୍ମିତ ସେ ଚାହାଣି ।

ଟଗ ମଣିଲା, ସେ ନିଶ୍ଚିତ ହେବାକୁ ପରଖି ଦେଖୁଛନ୍ତି । ଖଞ୍ଜା ପାଖର ଛୋଟ ଛୋଟ ଝରକା ଦୁଇଟି ତ ବନ୍ଦ ଅଛି, ଖାଲି ପଛପଟର ଝରକା ଖୋଲା । ସେ ନିଶ୍ଚିନ୍ତ ହେଲେଣି । କିଏ ତାଙ୍କୁ ବାରଣ କରିବ ? କିଏ ବାଧା ଦେବ ? ସେ ନିଜେ ଟଗ ?

ସେ ଶବ୍ଦ ହଜାଇଛି । ତା'ର ମନବଳ ଭାଙ୍ଗି ସାରିଛି । ତାଙ୍କର ଦୁଇ ପାଦରେ ମଥା ଲଗାଇ ଆଖିରୁ ଲୁହ ଗଡ଼ାଇ ତାଙ୍କୁ ନିରସ୍ତ ଦେବାକୁ କପଣ ସେ ମିନତି କରିବ ?

ଚଇତନ କିଳିଣି ଫେଡ଼ିଲେ । ଧୀରେ ଧୀରେ କବାଟ ଦି' ଫାଳ ଠିଆ-ମେଲା କଲେ । ଦ୍ୱାରବନ୍ଧ ଆରପାଖରେ ପାଦଟିଏ ଥାପି ଅଳସ ଭଙ୍ଗିରେ ଅଗଣାକୁ ଅନାଇଲେ । ଅନ୍ଧାରୁଆ ଦିଶୁଛି । କାହାରି ସ୍ୱର-ଶବ୍ଦ ନାହିଁ । ଶୁଭୁଛି କେବଳ ଝିଙ୍କାରୀର ରବ । କୋଠରୀ ଭିତରକୁ ପଶିଆସୁଛି ଶୀତୁଆ ଢେଉ ।

ଝୋଲିର ଓଷ୍ଠ ଥରିଉଠିଲା । ସେ କ'ଣ ସତେ ଚାଲିଯିବେ ? ତା' ମନରେ ଲହଡ଼ି ଭାଙ୍ଗି ଥିବା ଏଣୁତେଣୁ ଭାବନାଗୁଡ଼ାକ କପରି ତାଙ୍କର ମନକୁ ଛୁଇଁଲା ? ପର କରି, ତା'ର ଆଶାର ଆଲୁଅକୁ ଫୁଙ୍କି ଚିରଦିନ ପାଇଁ ଲିଭାଇ ସେ ଚାଲିଯିବେ ?

ଆଖିରୁ ଲୋତକ ଝରି ଆସିଲା । ଜୀବନହୀନ ମୂର୍ତ୍ତି ପରି ସେ ସେମିତି ଠିଆ ହୋଇ ରହିଲା । ପାଦ ଚଳିଲା ନାହିଁ । କଣ୍ଠରୁ ଭାଷା ବାହାରିଲା ନାହିଁ । ଲୁହଝରା ଝାପସା ଆଖିକୁ ଦିଶିଲା, ସେ ପାଦ ଫେରାଇ ଆସୁଛନ୍ତି । ଓଲଟି ଚାହିଁ ମୁହୂର୍ତ୍ତିକରେ ପାଖକୁ ଆସୁଛନ୍ତି । ପଚାରୁଛନ୍ତି ସ୍ନେହଭରା ଧୀର କଅଁଳ ସ୍ୱରରେ, ତୁ କାନ୍ଦୁଛୁ କାହିଁକି ଝୋଲି ?

ଝୋଲିର ଉତ୍ତରକୁ ଅପେକ୍ଷା ନ କରି, ତା'ର ଲୋଟିଲା କାନକୁ ହାତରେ ଧରି ଚଇତନ ତା'ର ଆଖିରୁ ଲୁହ ପୋଛୁ ପୋଛୁ ପୁଣି ପଚାରିଲେ, କ'ଣ ହେଲା ? କି ଦୁଃଖ ତୋ' ମନରେ ଅଜାଣତରେ ଦେଲି କି ଝୋଲି ! ବୁଝି ପାରୁ ନାହିଁ ତ !

ଝୋଲି ମୁହଁ ନ ଖୋଲି ଚଇତନଙ୍କର ବିସ୍ମିତ ଆଖିକୁ ଚାହିଁଲା । ତାଙ୍କର ବ୍ୟଥାଭରା ଦୃଷ୍ଟିରେ ନଜର ସ୍ଥିର ହୋଇଗଲା । ମୁଣ୍ଡ ହଲାଇ ନାସ୍ତିର ସୂଚନା ଦେଲା । ସେ ଦୁଇବାହୁ ତୋଳି ଚଇତନଙ୍କର ବେକରେ ତା'ର କରବଲ୍ଲରୀ ଗୁଡ଼ାଇଲା । ଦପନହୀନ ମଥାଟିକୁ ନେଇ ବଳିଷ୍ଠ-ପୁରୁଷଙ୍କର ବକ୍ଷ ଉପରେ ଥାପିଲା । ଶୁଣୁଥିଲା ସବୁ ସେହି ବକ୍ଷର ସ୍ପନ୍ଦନ ।

ବାମ ହାତରେ ତା'ର ତନୁକୁ ବେଢ଼ାଇ ଚଇତନ ଆର ହାତରେ ତାର କେଶ ସାଉଁଳିଲେ । ଅନନ୍ତ ଅବକାଶର କୋମଳ ସ୍ପର୍ଶରେ ସେ ମତୱାଲ୍ ହେଉଥିଲେ । ଆଗରେ ପଲଙ୍କ ନିମନ୍ତ୍ରଣ କରୁଛି । ଆଗ୍ରହ ବଳିଲା ସେହି ତନୁକୁ କୋଳାଇ ତା'ର ନିମନ୍ତ୍ରଣ ସେ ରକ୍ଷା କରିବେ । ଅଦମ୍ୟ ସେ ଆଗ୍ରହ ।

ପ୍ରୌଢ଼ତ୍ୱ ଆଡ଼କୁ ଟାଣେଇ ଆସିଥିବା ଅଭିଜ୍ଞ-ବିବେକ ଚଳଚଣ୍ଡ ପରି କେତେ ଦୁଃଖଶୋକଭରା ଘଟଣାର ଛବି ଦେଖାଇ ସେହି ଆଗ୍ରହକୁ ଆକଟିଲା । କାନରେ ବାଜିଲା କରୁଣ-ରାଗିଣୀ । କିଏ ଯେପରି ଚେତାଇ ଦେଉଛି, 'ଗୋପନ-ମିଳନର ଦୁଃଖଦ ପରିଣାମ ଜଣା ନାହିଁ କି ? କିଏ ଜାଣେ, ଜୀବନର ଚକ କେଉଁ ରାହାରେ ଗଡ଼ିବ ।

ପ୍ରେମ ତ ବ୍ୟଭିଚାର ନୁହେଁ !

ଅକୁହା ଆନନ୍ଦରେ ଚଇତନଙ୍କର ଉତ୍ତେଜନା ପ୍ରଶମିତ ହେଲା । ସେ ହାତ ହୁଗାଳିଲେ । ଗୋଟିଏ ହାତରେ ତା'ର ପିଠି ଆଉଁସି ଡାକିଲେ, ଟେଭି !

ଟେଭି ହାତ ଓହ୍ଲାଇଲା । ଅଳସେଇ ଅଳସେଇ ମଥା ଟେକି ଚଇତନଙ୍କ ମୁହଁକୁ ଚାହିଁଲା । ଲାଜେଇ ଲାଜେଇ ଦୃଷ୍ଟି ନୁଆଁଇଲା ।

ଚଇତନ ଦୁଇ ହାତରେ ତା'ର ମୁଣ୍ଡଟି ଟେକିଲେ । ମଥା କୋଳେଇ ତାକୁ ବାରମ୍ବାର ଗେଲ କଲେ । ସେ ଆଖି ଟେକି ଚଇତନଙ୍କ ମୁହଁକୁ ଚାହିଁପାରିଲା ନାହିଁ ।

ଚଇତନ କହିଲେ, ତୁ ମୋ'ର ହୋଇଯାଇଛୁ ଟେଭି ! ମୋ'ର ଏ ଗ୍ରୁଢରେ ଆଉ କେବେ କାହାର ମୁହଁ ଥାନ ପାଇବ ନାହିଁ । ମୁଁ ବି ମୋତେ ତୋ' ପାଖରେ ସମର୍ପି ଦେଇଛି । ମୁହଁ ଲୁଖାଇଛୁ କାହିଁକି ? ଆଜିପରି ଶୁଭରାତିରେ ମୋ' ମୁହଁକୁ ଚାହିଁ ତୁ ହସ । ତତେ ଗୁପ୍ତ କଥାଟିଏ କହିବି ।

ଟେଭି ଲାଜେଇ ଲାଜେଇ ଚାହିଁଲା । ମୃଦୁ ହସି ପଚାରିଲା, କି ଗୁପ୍ତ କଥା ?

—ଆ, କହିବି । ସେମାନେ ଶୁଣନ୍ତୁ ।

—କେହି ତ ନାହାନ୍ତି, କିଏ ଶୁଣିବ ?

ଚଇତନ ଟେଭିର କଟିରେ ହାତ ବେଢ଼ାଇ ତା'କୁ ଅଗଣାକୁ ଆଣିଲେ । ତୁଳସୀ-ଚଉରା କଡ଼ରେ ତା'କୁ ପାଖରେ ଠିଆ କଲେ । ଆକାଶ ଆଡ଼କୁ ଆଙ୍ଗୁଠି ଦେଖାଇ କହିଲେ, ଏମାନଙ୍କ କଥା କହୁଥିଲି । ସେମାନେ ଦେଖନ୍ତୁ ଓ ଶୁଣନ୍ତୁ । କଡ଼ରେ ଏଇ ତୁଳସୀ-ମାତା, ପୁଣି ମଥାନ ଉପରେ ଆମ ସମସ୍ତଙ୍କର ଆପଣାର ମାମୁଁ, ଜହ୍ନମାମୁଁ ସବୁ ଦେଖନ୍ତି, ସବୁ ଶୁଣନ୍ତି । ସମସ୍ତଙ୍କ କାମର ସାକ୍ଷୀ ରହନ୍ତି । ତାଙ୍କର ଭାଷା, ଯହିଁରେ ଆଶୀର୍ବାଦ ଅବା ଅଭିଶାପ ଥାଏ, କେବଳ ଭଲ କି ମନ୍ଦ କାମ କଲା ଲୋକର କାନକୁ ଶୁଭେ । ଶୁଭୁଥାଏ ବରାବର । ସେମାନେ ଆମ ଦୁହିଁଙ୍କର ମନକାମନା ଜାଣନ୍ତି । ନୁହେଁ କି ଟେଭି ?

ଟେଭି କହିଲା, ସେମାନେ ଆମର ମନକାମନା ପୂରଣ କରିବେ । ମୋ'ର ଏ ପିଣ୍ଡରେ ପ୍ରାଣ ଥିବା ଯାଏ, ମୁଁ ତମର, ମୁଁ ତମର ସେବାକାରିଣୀ ଦାସୀ ।

ଚଇତନ କହିଉଠିଲେ, ଦାସୀ ? ନାହିଁ ଟେଭି, ମୁଁ ବଞ୍ଚିଥିବା ଯାଏ ତୁ ହେବୁ ମୋ' ହୃଦୟର ରାଣୀ । ସେଠି ଆଉ କେବେ କାହାର ଛାଇ ପଡ଼ିବ ନାହିଁ । ସେଇଥି ପାଇଁ ଜାଣିଲୁ ଟେଭି, ଅତି କଷ୍ଟରେ ମୁଁ ମୋର ପାଗଳ ଆଗ୍ରହକୁ ନିଜ ଭିତରେ ଆଟକି ରଖିଲି । ତୋ'ର ନିର୍ମଳ ପବିତ୍ର ଦେହରେ କଳଙ୍କ ଲେପିବାକୁ ଚାହିଁଲି ନାହିଁ । ମଣିଷ ଜୀବନର ଯାହା ଶ୍ରେଷ୍ଠ ଆନନ୍ଦ, ଯାହାର ତୁଳନା ନାହିଁ, ତାକୁ ଆଶ୍ୱାସି ରଖିଲି ଆଉ ଗୋଟିଏ ଶୁଭରାତି ପାଇଁ ।

- କେବେ ଆସିବ ସେ ରାତ ?

—ଶୀଘ୍ର ଆସିବ ! ରତନପୁର ହାଲେଲମସ୍ତ ହୋଇଥିବ । ବାଣ ଓ ବାଇଦର ଶବ୍ଦରେ ଦାଣ୍ଡ କମ୍ପୁଥିବ । ପାଞ୍ଚ ପୁଅର ବାହାଘର ହେଉଥିବ ମହାନ୍ତ ଘରର ଝିଅ ସଙ୍ଗରେ । ସମସ୍ତେ ସମ୍ମତ । ସମସ୍ତେ ଖୁସି । ସେ ବୁଢ଼ାଙ୍କର ଯେ କ'ଣ ଗୋଟାଏ ଅତୀତ ଥିଲା, ସମସ୍ତେ ତା'କୁ ଗୋଡ଼ରେ ଦଳି ଆଗେଇ ଯିବେ । କନ୍ୟା ଦାନ କରିବେ ଟଭିର ବାପା କାର୍ତ୍ତିକ ମହାନ୍ତ !

—କେବେ ସେ ଫେରିବେ ?

—ଫେରିବାର ବେଳ ଗଡ଼ିଗଲାଣି । କାହିଁକି ଫେରି ନାହାନ୍ତି, ମତେ ଆଶ୍ଚର୍ଯ୍ୟ ଲାଗୁଛି । କଟକ ଯାଉଛ ତ, ଘଟଣା କ'ଣ ବୁଝି ଆସିବ ।

—ନିଶ୍ଚେ ବୁଝି ଆସିବ, ତମକୁ ମୋ' ରାଣ ।

—ଦିନଟିଏ ଡେରି ହେଲେ ମଛେ ହେବ, ବୁଝି ଆସିବ । ହୁଁ, ବାହା ପରେ ଆସିବ ପୁଣି ଚଉଠୀରାତି । ଆମ ବୁଢ଼ାଙ୍କର ଜୀବନରେ ସେହି ରାତି ଥରେ ଥରେ ଆସିଥିଲା । କିନ୍ତୁ ଟଭି, ସେ ରାତକୁ ଅନ୍ୟମାନେ ଆମ ଉପରେ ଲଦି ଦେଇଥିଲେ । ଆମର ଚଉଠୀରାତକୁ ଆମେ ନିମନ୍ତ୍ରଣ କରି ଆଣିଥିବା । ଫୁଲ ଶେଯ, ଘିଅ-ଦୀପ, ଦୁଇଟି ଚହଲାଘେନା ମନ । ଦୁଇଟି ଦୋ'-ଦୋ' ଚହଲା ଦେହର ଖୋଲାଖୋଲି ନିବିଡ଼ ବନ୍ଧନ···

—ସେତକ କହଥା । ତମ ଗୁପତ କଥା ମୁଁ ଜାଣି ପାରିଲିଣି । ହେଇଟି ଦେଖ, ଜହ୍ନ ମଥାନ ତଳକୁ ଖସି ଯାଉଛି । ଅନ୍ଧାର ମାଡ଼ି ଆସିବ ଯେ—

ଚଇତନ କହିଲେ, ସତେ ତ ! ମାମୁଁ ଆମର ଲାଜରେ ମୁହଁ ଲୁଚଉଛନ୍ତି । ଭାବୁଛନ୍ତି···

—କି ପାପ ଆମେ କରୁଛୁ କି ?

—ସେଥିପାଇଁ ନୁହେଁ, ଏଇଥି ପାଇଁ ।

ଚଇତନ ଟଭିକୁ ଆଲିଙ୍ଗନ କଲେ । ପରସ୍ପରର ବାହୁବନ୍ଧନ ଭିତରେ ଦୁଇଟି ଦେହର ନିବିଡ଼ ଆଶ୍ଳେଷ । ଚୁମ୍ବନର ଆଦାନ ପ୍ରଦାନ । ଉତ୍ତେଜନାରେ ଜରଜର, ଅସ୍ଥିର ଦଉଟି ଜୀବନ । ଫସମର ବାରଣ ଟଳମଳ ହେଲା ।

ନିର୍ମଳ ଉନ୍ମୁକ୍ତ ଆକାଶର ମିଟିମିଟିକା ଉଜ୍ଜ୍ୱଳ ତାରାଗୁଡ଼ିକ ସେ ଦୁହିଙ୍କୁ ଚେତାଇ ଦେଲେ—ବାସରରାତି ଏ ନୁହେଁ; କାହିଁ ପବିତ୍ର ଘିଅଦୀପ, ଆଉ ଫୁଲଶଯ୍ୟା ?

ବାହୁ ବନ୍ଧନ ଶିଥିଳ ହେଲା । ଦେହ ଦୁଇଟି ବିଚ୍ଛିନ୍ନ ହେଲା । ପଛେଇ ଆସିଲା । ମୁହଁ ଖୋଲିଲା ଟଗ୍ରି. ଅନ୍ଧାର ତ ମାତ୍ର ଆସିବ, ତମେ ଆଲୁଅଟି ସଙ୍ଗରେ ନେଇ ଯାଅ ।

ଚଇତନ କହିଲେ, ଜହ୍ନ ମଥାନ ଉହାଡ଼ରେ ଛପିଛି । ଗାଁ ଦାଣ୍ଡରେ ଆଲୁଅ ପଡ଼ିଥିବ । ବେଶି ବାଟ ନୁହେଁ । ବେଳେ ବେଳେ ଆହୁରି ଅଧିକ ରାତିରେ ମୁଁ ଫେରେ ।

ଚଇତନ ବିଦାୟ ନେଲେ, ଛାଡ଼ିଗଲେ ଗୋଟାଏ ଅପାସୋରି ଅନୁଭୂତି, ଯାହା ଟଗ୍ରିକୁ ବିଚଳିତ, ବିବ୍ରତ କଲା । ଆଶା ଓ ନିରାଶା, ଆନନ୍ଦ ଓ ନିରାନନ୍ଦ ତା'ର ମନରେ ଢେଉ ଖେଳିଲା । କ'ଣ ସେ କରିବ, ଏହି ଚିନ୍ତା ତା'କୁ ଅସ୍ଥିର କଲା । ଅଧାବାଇଆଣୀ ପରି ଅଗଣାରେ ଏ ପାଖ ସେ ପାଖ ହୋଇ ବୁଲିବାକୁ ଲାଗିଲା, ଯେଉଁ ବାଟରେ ସେ ପାଦ ଦେଇଛି, ସେ ବାଟ ତାକୁ ଆଉ ତା'ର ଶିଶୁଟିକୁ ନେଇ କେଉଁ କାନ୍ତାର, କି ପନ୍ତାରରେ ଛାଡ଼ିବ ନାହିଁ ତ ? କିଏ ତାକୁ ବୁଦ୍ଧି ବତାଇବ ? ବାଟ ଦେଖାଇବ ?

ତା'ର ଏକମାତ୍ର ସାହା ଓ ସାହସ ଜେଜେମାବୁଢ଼ୀଙ୍କ ଆଗରେ ଲାଜ ସରମ ଛାଡ଼ି, ସବୁ ଗପିବାକୁ ସେ ଧାଇଁଗଲା ତାଙ୍କର କୋଠରୀ ଆଗକୁ । କବାଟରେ ହାତ ପିଟି ସେ ଡାକିଲା, ମା, ମା—

ସତେ କି ତା'ର ଜେଜେମା ଛଟାଗାଳି ପଡ଼ିଥିଲେ । ସଙ୍ଗେ ସଙ୍ଗେ ସେ ଜବାବ ଦେଲେ ।

ପରଦିନ କଅଁଳ ଗାଧୁଆ ବେଳେ **ଜଣେ ଚଇତନ ସାହେବ ସଜବାଜ** ହୋଇ ଆସି ପହଞ୍ଚିଲେ । ବାସିକାମ ଶେଷ କରି, ଅରକ୍ଷିତକୁ ଗାଧୋଇ ଦେଇ, ଟଗ୍ରି ତାକୁ ନୂଆ ପ୍ୟାଣ୍ଟ୍ ଓ ଜାମା ପିନ୍ଧାଇ ଦେଇଥିଲା । ଖୋଇ ପେଇ ଅଗଣାରେ ବୁଢ଼ୀଙ୍କ ପାଖରେ ଛାଡ଼ିଥିଲା । ସେ କାଠଘୋଡ଼ା ଧରି ଖେଳୁଥିଲା । ଚଇତନ ପାଇଁକୁ ଦେଖି ଖେଳ ଛାଡ଼ି ସେ ତାଙ୍କ ପାଖକୁ ଚାଲିଗଲା । ବୁଢ଼ୀ ପିଣ୍ଡାଉପରୁ ଉଠି, ଅଣ୍ଟା ସଳଖି ଠିଆ ହେଲେ । ଚଇତନ ମୁଣ୍ଡ ନୋଇଁ ନମସ୍କାର କଲେ । ହାତର ପ୍ଲେଟ ପୁଡ଼ାଟି ବୁଢ଼ୀଙ୍କ ହାତକୁ ବଢାଇ ଦେଲେ । ଅରକ୍ଷିତକୁ କାଖ କଲେ ।

ବୁଢ଼ୀ ଡାକ ଛାଡ଼ିଲେ, ଆଲୋ ଟଗ୍ରି, କିଏ ସେ ଆସିଛି ଧଅସି ଧାଇଁଆ ଦେଖିବୁ ।

ବାରିଆଡ଼ରୁ ଟଗ୍ରି ଉତ୍ତର ଦେଲା, କିଏ ମା ?

—ମୁଁ କ'ଣ କହିଛି ? କଏ ତୋ'ର ଚନ୍ଦ୍ରାପଶତ ।

ଘାଲୁଆ ପାଟିରେ ତାଙ୍କର ହସ ଫୁଟିଲା । ସେ କହିଲେ, ପୁଅକୁ ନେଇ ସବୁ କଟକ ଯାଉଥିଲୁ ବାପ ? ସକାଳେ ଅନୁକୂଳ କରିବୁ ବୋଲି ଟଙ୍କା କହୁଥିଲୁ । ବଡ଼ଠାକୁରେ କୁଆଁରିର ଶବ୍ଦ ଶ୍ରବଣ କରନ୍ତୁ । ସେ ଭଲହୋଇ ଫେରୁ । ସେ ଯେମିତ ସ୍ନେହୀ, ସେମିତ ବୁଦ୍ଧିଆ । ଯେମିତି ଗଛର ଫଳ, ସେହି ଗୁଣ ତ ମିଳିବ ?

ଟଙ୍କା ବାଡ଼କବାଟ ଫାଙ୍କରେ ଦେଖି ଜାଣି ପାରିଥିଲା । ଓଦାଲୁଗା ପାଲଟି, ସେ କବାଟ ଖୋଲି ତରତର ହୋଇ ଅଗଣାକୁ ଆସିଲା । ଓଦା ସରସର ମୁଣ୍ଡ ଉପରକୁ ବସନ ଟାଣି ଲଜେଇ ଲଜେଇ ସେ ଓଳଗି ହେଲା ।

ଚଇତନ ତା ମୁହଁକୁ ଚାହିଁ ମୃଦୁ ହସିଲେ । ବୁଢ଼ୀଙ୍କୁ ଉତ୍ତର ଦେଲେ, ହାତ୍ ଅବଧାନ ପାଞ୍ଜି ଦେଖି ଆସି କହିଲେ, ଏକାଦଶୀ ଘଣ୍ଟା ନଅଟା, ତେବେ ସକାଳ ନଅଟା ତିରିଶି ମିନିଟ୍ ପରେ ଅମୃତବେଳା ପଡ଼ିବ । ସବୁ ସଜାଡ଼ି କରି ହୋଇଛି । ମେଇଠ୍ ବସ୍ । ସଞ୍ଜ ସରିକି କଟକରେ ପହଞ୍ଚିବୁ ।

ଟଙ୍କା କହିଲା, ତମେ ଫେରିବ ଚତୁର୍ଦ୍ଦଶୀ ଦିନ । ଡାକ୍ତର କ'ଣ କହିବେ ଶୁଣିବାକୁ ଆମେ ଗୁଡ଼ାକ ପରି ଚାହିଁରହିଥିବୁ ।

ବୁଢ଼ୀ କହିଲେ, ଭଲ ଖବର ତୋ' ମୁହଁରୁ ଶୁଣିବାକୁ ଆମେ କାଳିଆ-ବଳିଆଙ୍କୁ ଜଣାଣ କରୁଥିବୁଁ । ସେଇ ତ' ଭାଇ ତ ସବୁ କରାଉଛନ୍ତି । ସେ ଦୟାକଲେ ପିଲା ଭଲ ହୋଇଯିବ ।

ଚଇତନ କହିଲେ, ସତେ ମ ଆଈ ! ତାଙ୍କ ବିନୁ କାହାରି ତ ଅନ୍ୟ ଗତି ନାହିଁ । ସେଇ ଆମକୁ ନାଆଁ ଆଡ଼କୁ ଦଉଡ଼ାଉଛନ୍ତି । ଅବିବେକୀ ପାଗଳ ପରି ଠିକ୍ ନାଆଁକୁଣ୍ଡ ଭିତରକୁ ଧଇଁସଇଁ ହୋଇ ରାଗଦ୍ୱେଷରେ ହେଉ କି ଖୁସି ଆନନ୍ଦରେ ହେଉ, କେଉଁଠି ବେଳକୁ ଏକା ସେଇମ ଆଈ, ଭଲ ବୁଦ୍ଧି ଦେଇ ଅଟକାଇ ରଖନ୍ତି । ବୁଦ୍ଧିବଳରେ କାମ କରିବାକୁ ସମୟ ଦିଅନ୍ତି । ନୁହେଁ କି ?

ବୁଢ଼ୀ ପାନିଆଁନି ମନ ଦୃଢ଼ହୋଇ ଏକାଠି କରି ମୁଣ୍ଡରେ ଥାପିଲେ । ଆଖି ବୁଜି କହିଲେ, ସେଇଆ ରେ ନାତି ! ଅଲକ୍ଷଣା କାଳର ରଙ୍ଗ ଆଉ । କେବେ ଖେଳିବାକୁ ଆମକୁ ଖେଳାଏ, ଟହ ଟହ ହସୁଥାଏ ।

ଚଇତନ ଓ ଟଙ୍କାଙ୍କ ଭିତରେ ମୁହଁ ଓ ଆଖିର ଇଙ୍ଗିତରେ, ଓଠର ନିଶବ୍ଦ ସ୍ପନ୍ଦନରେ କଥାଭାଷା ହେଲା—

—କହିବୁ ?

—ନାହିଁ ମ !

ବୁଢ଼ୀ ଆଖି ଖୋଲି ମୁଣ୍ଡ ଟେକିଲା ବେଳକୁ ସେ ଦୁହେଁ ପରସ୍ପରକୁ ଗ୍ରହି ହସ ହସ ହେଉଥିଲେ ।

ବୁଢ଼ୀ ପୁଣି ହସିଲେ । କହିଲେ, ମୁଁ ଯେତେ ପଚାରିଲି ଏ ଟୋକା କ'ଣ କହିଲା ? ମୁଁ ଏତେ ଓଲମୀ ନୁହେଁ ମ ! ତା' ମୁହଁ, ଆଖି, ଢଙ୍ଗ ତ ସବୁ କହିଦେଲା । ହଉ, ହରି ଠାକୁରେ ତମକୁ କୋଟି-ପରମାୟୁ ଦେଉ । ତମେ ସୁଖରେ ସଂସାର କର । ସାତ ପୁଅର ମା'-ବାପ ହୁଅ ।

ଟଗ୍ର ଭୟମିଶା ବରକୁଆ ସ୍ୱରରେ କହିଲା, ତୁ ଏଗୁଡ଼ା କ'ଣ କହୁଛୁ ମା ! କାନ୍ଥବାଡ଼ଙ୍କର ବି ଆଖି କାନ ଥାଏ । ଧର୍ମାରେ ଅବା ଝୁସିରେ ନବଳ କରିବାକୁ ଆଖିରେ ଦେଖିଲା ପରି କଏ କ'ଣ ପଦେ କହିଦଏ । ନିଆଁ ଝୁଲ ପଡ଼ି ଗାଁ ଧ୍ୱଂସ ହୋଇ ମାଉଁଶ ହେଲା ପରି କଥା ହୁଏ । ସେମିତିକା କଥାରୁ ଗୋଟାଏ ସଂସାର ମୋ'ର ଉଚ୍ଛନ୍ନ ହେଲା । ଏ ଘରେ ଶରଣ ପଶିଲି । ଏ ଘରେ ବି ମତେ ଠାବ ମିଳିବ ନାହିଁ—

ଟଗ୍ରର ଆଖିରୁ ଲୁହ ଝରିଲା ।

ବୁଢ଼ୀ ଆକୁଳ କଣ୍ଠରେ କହିଲେ, ଇଲୋ, ମୁଁ ତମର ଆଇ ବୁଢ଼ୀଟା, ପଦେ ଅଣ୍ଟା ନକଲରେ କହିଦେଲି । ମୁଁ କ'ଣ କହୁଛି ? ସେଇ ଅବେଇଜ ଚକା-ଡୋଳାଟା ମୋ' ତୁଣ୍ଡରେ କୁହାଇ ଦେଲା । ମତେ ମରଣ ହେଉ । ତୋ' ଆଖିଲୁହ ମତେ ସେ ନବରଙ୍ଗିଆ କାଳିଆଭୂତ ନ ଦେଖାଉ । ବହୁତ ଗୁହାରି କଲିଣି ସେଇଟାକୁ । ମୋ' ମନକାମନା ପୂରଣ ହେବ । ସେଇଠୁ ବହୁତ କହିବି ଲୋ ଟୋକୀ, ଦେଖିବୁ ତୁ କାନ୍ଦିବୁ ନା ହସିବୁ ।

ଟଗ୍ର ହସିଦେଲା ।

ଚଇତନ କହିଲେ, ଅସଲ ଯାହା କହିବାକୁ ଆସିଥିଲି ଏତେବେଳଯାଏ କହି ନାହିଁ । କ'ଣ କି, କାର୍ତ୍ତିକା'ଇ କେବଠାରୁ ଖଲାସ ହେଲେଣି । ସେ ଯାଇଁ ପୁରୀରେ ଅଛନ୍ତି । ଭଗବାନ ଗୁପ୍ତ, ଆଉ କପିଳ ଜେନା ତାଙ୍କ ନିଜ କାମରେ ପୁରୀ ଯାଇ-ଥିଲେ । କାଲି ଫେରିଆସିଲେ । ଆଜି ସକାଳେ ସେ ଦୁହେଁ ଆମ ଘରକୁ ଆସିଥିଲେ । ଏଇ ଖବର ଦେଲେ ।

—ପୁଅ ମୋ'ର କେବେ ଘରକୁ ଫେରିବ ? ଆମ କଥା ମନେ ରଖିଛନ୍ତି ? ପଚାରୁଥିଲା ?

—କ'ଣ କି, ସେ ଖଲାସ ହୋଇ ସିଧା ପୁରୀ ଗ୍ଲଲିଗଲେ । ଠାକୁର ଦର୍ଶନ କରିବେ, ମଣିଷମାରଣ ଦୋଷ ଖଣ୍ଡିବେ । ନିଜେ ସେଠି ପ୍ରାୟଶ୍ଚିତ୍ତ ହେବେ, ସେଇଠୁ ଶୁଦ୍ଧି ହୋଇ ସେ ଗାଆଁକୁ ଫେରିବେ । ହେଲେ, ଶୁଦ୍ଧି ହେବାକୁ କିଛି ଧନ ତ ଲୋଡ଼ା । କାହୁଁ ପାଇବେ ?

—ଘରକୁ ଆସିଲା ନାହିଁ କି ଚିଠି ବି ଲେଖିଲା ନାହିଁ । କ'ଣ ସେ କଲା ?

—ଭଗିଆଇ ଆଉ କପିଳ ଠିକ୍ ଏଇଆ ପଚାରୁଥିଲେ ମ ଆଈ ! ସେ କହିଲେ, ଦୋଷ ପାଇଁ ସିନା ଜେଲ୍ ଭୋଗିଲେ, ଯେମିତି ହେଲେ ତ ତାଙ୍କ ଆଘାତରେ ଗରିବ ଗାଁ ପୁଅଟି ମଲା ? ପାପ ବୋଲି ମୁଣ୍ଡେଇ କେମିତି ସେ ଅଶୁଦ୍ଧ ଦେହକୁ ଗାଁରେ ପୁରାଇଥାନ୍ତେ, ତମେ କହ ? ଧୁଆଁରେ କେଇଦିନ ଭିକ ମାଗିଲେ । ଲୋକେ ତାଙ୍କ ଗଣ୍ଡି ଦେଖି ମାରି ଗୋଡ଼େଇଲେ । କହିଲେ, ଖ୍ରୀଷ୍ଟପରିକା ରୂପ ଧରନ୍ତୁ, ମୂଳ ଲାଗିଲା ।

ବୁଢ଼ୀ ପଚାରିଲେ, ସେଇଠୁ ?

ଚଇତନ କହିଲେ, କାର୍ତ୍ତିକା'ଙ୍କ ମୂଳ ଲାଗିଲେ । ବୋଲି ବୋହିଲେ । ସଞ୍ଚୟ କଲେ । ସେଇଠୁ ସବୁ କାମ ସାରି ପିଣ୍ଡ ଶୁଦ୍ଧ କଲେ ।

ଝିଅ ପଚାରିଲା, ଫେରୁ ନାହାନ୍ତି କାହିଁକି ?

ଚଇତନ କହିଲେ, ଶୁଣିଲ, ସେ ବୋଲ ଧରେଇ ବାସି-ତିଆସି ଆସିବେ । ସେ ଆହୁରି ବଳନ୍ତ ହୋଇଛନ୍ତି । ମୁଣ୍ଡ ଲମ୍ବା କରିଛନ୍ତି । ବେକରେ ତୁଳସୀ ମାଳି ପକାଇଛନ୍ତି । ତେବେ, ବାବାଜୀ ହୋଇ ନାହାନ୍ତି । ସେ କୁଆଡ଼େ ଏବଯାଏ ଧନ ବୋଲି କୋଉଠି କାମ କରି ପଇସା ଦେଉଛନ୍ତି । ସଞ୍ଜହେଲେ ପହଡ଼ ପଡ଼ିବାଯାଏ ମନ୍ଦିର ବେଢ଼ା ଭିତରେ ବେଳ କଟାଉଛନ୍ତି ।

—ସେ କ'ଣ ବାବାଜୀ ହେବ କି ?

—ନା, ନା, ଶୀଘ୍ର ଗାଁକୁ ଫେରିବେ ବୋଲି କହୁଥିଲେ । ଗାଁର ସବୁ ଖବର ପଚାରି ବୁଝୁଥିଲେ । କଣକୁ ବି ସେ ବାଦ୍ ଦେଇ ନାହାନ୍ତି । ମୁଁ କଟକରୁ ଆସିଲେ ନଜେ ପୁଣି ଯିବି । ଭଗିଆଇ ମୋ' ସଙ୍ଗେ କଟକ ଯାଉଛନ୍ତି । ତାଙ୍କୁ ବି ମୋ' ସଙ୍ଗେ ପୁଣି ନେଇଯିବି ।

—ହଉ ବାବା । ତା'କୁ ଆଖିରେ ନ ଦେଖିବା ଯାଏ ମୋ ମନ ତହଲ-ବକଲ ହେଉଥିବ । ଝିଅ କ'ଣ ନିଶ୍ଚିନ୍ତ ହୋଇ ରହି ପାରିବ ? ସୁ ତରତର ଅଛୁ । କପିଳ ଜେନାଙ୍କୁ ଡକାଇବି ଭାବୁଛି ।

ଚଇତନ କହିଲେ, ତା' ପାଖକୁ ମୁଁ ଖବର ପଠାଇବି । ସେ ବେଳ ପାଇଲେ ଆସିବେ । ମୋ'ର ଡେରି ହେଉଛି । ମୁଁ ଯାଉଛି ଆଈ । ଯାହାକୁ ହାତରେ ଧରିଛ ଝିଅ ତାକୁ ଆଜି ନଷ୍ଟ ନାଇବ । ନୋହିଲେ, ସତ କହୁଛି, ମୋ' ମନରେ ଦୁଃଖ ହେବ ।

ବୁଢ଼ୀ କହିଲେ, କାହିଁକି ନ ନାଇବ ? ମୋ' ପାଖରେ ଗ୍ରୀଷ୍ମପସ୍ତ ପଣିଆଁ ଦେଖାଇଲେ ତା' କାନ ମୋଡ଼ିଦେବି । କାହାକୁ ଡର ବା ? ଲୋକେ ଚରଚା କଲେ କରନ୍ତୁ । କାର୍ତ୍ତିକ ଫେରିଲେ, ତା' ସନମତ ନେଇ ଓଲଟି ମୁଁ ପ୍ରଚାର କରିବି ।

ଏହା ଗଉରବ କଥା । ସେମାନେ ଭୋଜଭାତ, କ୍ଷୀରିପୁରିର ପିଆସ୍ତ । ଦନ, ଦାର ଥର ହେଲେ ଆଙ୍ଗୁଠି ଗଣୁଥିବେ ।

ବୁଢ଼ୀ କ୍ରୁନ୍ଦଳ ଉଠିଲେ ।

ଚଇତନଙ୍କୁ ବିଦାୟ ଦେବାକୁ ଟଭି ତାଙ୍କ ପଛେ ପଛେ ଦାଣ୍ଡକୁ ଆସିଲା । ମୁହଁ ବୁଲାଇ ଚଇତନ ହସହସ ହୋଇ କହିଲେ, ଯାଉଛି ଟଭି, ଡେରି ହେବ ।

ସେ ତର ତର ହୋଇ ଆଗେଇ ଗଲେ ।

ଆଖି ଆଗରୁ ସେ ଛପି ଯିବାଯାଏ ଟଭି ଚାହିଁ ରହିଲା । କାପରି ଗୋଟାଏ ଅଜଣା କୋହ ଛାତି ତଳେ ହାବୁକା ମାରିବାକୁ ଲାଗିଲା । ତା'ର ବାପା ଯେ ଶୀଘ୍ର ଘରକୁ ଫେରିଆସିବେ ଏହି ଖବର ତା' ଚନ୍ଦ୍ରାକୁ ଚହଲାଇ ଦେଲା । ଆନନ୍ଦ ପଛେ ପଛେ କେଜାଣି କାହିଁକି ଗୋଟାଏ ଅନିଶ୍ଚିତ ଅସ୍ୱସ୍ତି ତା' ମନକୁ ବିଚଳିତ କଲା ।

ମୁହୂର୍ତ୍ତି କେତୋଟିର ବିଚଳ ଅବସ୍ଥାକୁ ଦୋହଲାଇ ଦେଲା ଅଳାଖିତ । ସେ ପଛକୁ ଆସି ତା'ର ଗୋଡ଼କୁ ଧରି କହିଉଠିଲା, ମୋ' ଜେଜେ ଆସୁଛନ୍ତି ବୋଉ ! ଜାଣୁ ନା, ବୁଢ଼ୀ ମା କହୁଛି, ମୋ ପାଇଁ ସେ ଖେଳଣା ଆଣିବେ । ତାଙ୍କ ନା ମୁଁ ଜାଣେ ଯେ—

ଟଭି ସ୍ନେହ ଜରଜର ଆଖିରେ ତାକୁ ଚାହିଁ ରହିଲା ।

ଗୋଠବାହୁଡ଼ା ବେଳେ କପିଳ ଜେନା ଆସିଲେ । ଟଭି କବାଟ ଖୋଲିଲା । ଗାଁ ଲେଖାରେ ସେ ଭାଇ । ବାହାହେଲା ଝିଅର ଲାଜ-ସଂକୋଚ କରିବାର କଥା ନୁହେଁ । କିନ୍ତୁ ଟଭିକୁ ଲାଜ ଘୋଟିଗଲା ।

ଚଇତନଙ୍କର ସେ ଅନୁଗତ, ଗୋଡ଼ାଣିଆଁ ସାଙ୍ଗ । ସବୁ ସେ ଶୁଣିଥିବେ; କେଜାଣି ? ଯେଉଁ ଟଭିକୁ ସେ ଅଭେକା ରୂପରେ ଗାଁରେ ଆତଯାତ ହେବାର ଦେଖିଥିବେ, ତାକୁ ସେ ନୂଆ ଭେକରେ ଦେଖି କ'ଣ ଭାବିଥିବେ ? ଚଇତନ ପଠାଇଥିବା ସ୍ୱରପଟି ସୁନାକାଠ ଓ ମୋତିବନ୍ଦୁ ଲଗା କାନଫୁଲ ହଳିକ, ଜେଜେମା ବାଧ କରିବାରୁ ସେ ଆଗ ବୃନ୍ଦାବତୀଙ୍କୁ ଦେଖାଇ ନିଜେ ପିନ୍ଧି ଦେଇ ଥିଲା ।

ଘର ଭିତରକୁ ଆସି କପିଳ ଟଭିର ହାତ ଗୋଡ଼ରୁ ମୁଣ୍ଡଯାଏ ଚାହିଁଲେ । ହସିଲା ମୁହଁରେ କହିଲେ, ତୁ ଆଉଜାତକା ଦିଶୁଛୁ ଟଭି ! ଭାରି ସୁନ୍ଦର ଦିଶୁଛୁ । ହଁ, ନାମଜାଦା ଖୁଣ୍ଟିଆ ଘର ବୋହୂର କ ଅଭାବ ଥିଲା ଯେ ! ଏବଯାଏ ସେଡ଼ିରେ ଲୁଚାଇ ରଖିଥିଲୁ କାହିଁକି ?

ଝଣ୍ଟା ଉତ୍ତର ନ ଦେଇ ଅଗଣାକୁ ଓହ୍ଲାଇଲା ।

ତା' ପଛେ ପଛେ କପିଳ ଆସିଲେ । କହିଲେ, କାର୍ତ୍ତିକା'ଙ୍କ ସଙ୍ଗେ ଜଗନ୍ନାଥ ମନ୍ଦିରରେ ଦେଖା ହୋଇଥିଲା । ସରପଞ୍ଚ ଚଇତନ ଭାଇ ତମକୁ ସବୁ ଦେଖା କରି କହିବାକୁ ମୋତେ ଖବର ପଠାଇଥିଲେ । ତୋ' କଥା କାର୍ତ୍ତିକା'ଙ୍କ ବେଶି ପଚାରୁଥିଲେ ଲୋ ଝଣ୍ଟା, ତୋ' ପୁଅ କଥା ବି ।

ପିଣ୍ଡାରେ ବସିବା ପାଇଁ ଝଣ୍ଟା ପିଢ଼ା ଖଣ୍ଡେ ଥୋଇ ଦେଇ କହିଲା, କେଳେ-ମା ବାଡ଼ିରେ ଅଛନ୍ତି, ତାଙ୍କୁ ମୁଁ ଡାକିଦିଏଁ ।

ବୁଢ଼ୀ ଆସି ପାଖରେ ବସିଲେ । ଝଣ୍ଟା ଅରକ୍ଷିତକୁ ଧରି ଗୋହିଘର ଭିତରେ ପଶିଲା । ତାକୁ କୋଳରେ ବସାଇ ସେମାନଙ୍କର କଥାବାର୍ତ୍ତାକୁ କାନେଇଲା ।

ସକାଳେ ଚଇତନ ଯାହା କହିଥିଲେ ସେଇଆ, କିନ୍ତୁ ସେ ଯାହା କହି ନ ଥିଲେ, ଅବା ସିବାକୁ ତରତର ହୋଇ କହିବାକୁ ବେଳ ପାଇ ନ ଥିଲେ, ସେତକ ଶୁଣି ଝଣ୍ଟାକୁ ହତାଶିଆ ଲାଗିଲା ।

ଶିମୁଳିତଳ କଆଁରି ଉପରେ ଘଟିଥିବା ଘଟଣା ପରେ ଗାଁ ଲୋକେ ଲହୁ-ଲୁହାଣ କାର୍ତ୍ତିକଙ୍କୁ ବାନ୍ଧି ରଖିଥିଲେ । କେତେ ଲୋକ ତାଙ୍କୁ ନିମ୍ଭକ ଛେଚିଥିଲେ । ଏବଯାଏ ଦେହର କେତେ ଜାଗାରୁ ଘା' ଚିହ୍ନ ଛପିଯାଇ ନାହିଁ । କାର୍ତ୍ତିକ ମନେ ରଖିଛନ୍ତି । ସେମାନଙ୍କର ନାମ ସେ ଭୁଲି ନାହାନ୍ତି । କାହାରି ଉପରେ ତାଙ୍କର ଈର୍ଷା-ଆକ୍ରୋଶ ନାହିଁ । ସେମାନଙ୍କୁ ଦେଖିଲେ, ପୁଣି ସେମାନଙ୍କର ସମ୍ପର୍କରେ ଆସିଲେ କାଳେ ତାଙ୍କ ଭିତରେ ଶୋଇଲା ଅହଙ୍କା ପେଡ଼ି ଭିତରର କୋଧିଲା ନାଗସାପ ପରି ଫଣା ଟେକି ଉଠିବ, ସେହି ଡରି ତାଙ୍କୁ ଗ୍ରାନିଆଁ କରୁଛି । ଥରେ ତେଜ ଉଠିଲେ ସେହି ସାପ କ'ଣ ପଦ୍ମତୋଳା ମାନିବ ?

କାର୍ତ୍ତିକ ଏମିତି ବୁଝାଉଥିଲେ । ପୁଣି ସେ ଆଖିରୁ ଲୁହ ପୋଛି ଭଗବାନ ଓ କପିଳଙ୍କୁ କହିଲେ, ମୁଁ ଏ ଜଗାକାଳିଆ ପାଖରେ ଶରଣ ପଶିଛି । ତାଙ୍କୁ ଜଣାଣ କରୁଛି, ମୋ ମନରୁ ସେହି ନାଗଅହଙ୍କାକୁ ସେ ତଡ଼ି ଦେଉନ୍ତୁ । ଯେବେ ସେ କାଳିଆ କହିବ, ମୋ ବୁଢ଼ୀବୋଉର ସେବା କରିବାକୁ ମୁଁ ଯିବି । କହୁଛି, ସେ ବେମାର ପଡ଼ିଛି । ଠାକୁରେ ତାକୁ ପାଖକୁ ନେଲେ, ତା' ଦେହକୁ ଜାଳି ପାଉଁଶ କରିବ ।

ପୁଣି କହିଥିଲେ କାର୍ତ୍ତିକ ମହାନ୍ତି, ସତେ ମୋ' ଘରଣୀ ନାଟୁଆ ପ୍ରାଣ ବିକଳରେ ଘରଦ୍ୱାର କୁଆଡ଼େ ପଳାଇଲା, ଅବା ସରପଞ୍ଚ ପରପଞ୍ଚ, ଚଇତନ ତାକୁ ନିଜେ ନ ମାରି, ଜୀବନରୁ ମରାଇ, ଜଳାଇ, ପାଉଁଶକୁ ପାଣିରେ ଭସାଇ ଦେଇଛନ୍ତି ? କାଳିଆକୁ ଜଣା । ହଁ, ସେ କଳିଆଖୋରଣୀ ଥିଲା, ଅଭଦ୍ର କଥା କହି ଶୋଧୁଥିଲା । ତାକୁ ଆପଣମାନେ ଚଡ଼ାଇ ଦେଉଥିଲେ ? ତା' ସଂସାର ଉପରେ ହାତ

ପକାଉଥିଲେ ? ତା' ଦରବକୁ ଲୋଭ କରୁଥିଲେ ? ତା'ର ବଢ଼ିଲା ଝିଅକୁ ମୁଠିଏ ଭଲ କରି ଖାଇବାକୁ ଦେବାର ଲୋଭ ଦେଖାଇ, ଗାଁ ଦାଣ୍ଡରୁ ନିଜଘରକୁ ପିଠି ଘୁଷୁରା ନେଉଥିଲେ ! ଯାବତ ମା ସେ ହେଉ ପଛକେ, ଝିଅର ଭଲ ମନ୍ଦ ପାଇଁ ଲୋକେ ତା'କୁ ତ ନିନ୍ଦନ୍ତେ ! ସେମାନଙ୍କର ନିନ୍ଦାଅପବାଦ ଟାହିଟାପରା ସହୁଥାନ୍ତା ସେହି ଟଗି !

କାର୍ତ୍ତିକଙ୍କର ଧାରଣା ଏକାଥରେ ଭୁଲ ବୋଲି ଠାକୁରଙ୍କ ଆଡ଼କୁ ହାତ ବଢ଼ାଇ ଭଗବାନ ଗୁପ୍ତ ଓ କପିଳ ଜେନା ଶପଥ କରିଥିଲେ । ପରେ ଘଟିଥିବା ସବୁ ଘଟଣା ତାଙ୍କୁ ବୁଝାଇ ଦେଇଥିଲେ । ନାଇତନଙ୍କ ଦୁରବସ୍ଥା, ଅଗାଧ ସମ୍ପତ୍ତି ଓ ପ୍ରତିପତ୍ତି ସତ୍ତ୍ୱେ, ଶ୍ରେଷ୍ଠୀପୁଅଟି ଛଡ଼ା ତାଙ୍କର ଆଉ କେହି ନାହିଁ । ଏକୁଟିଆ ଜୀବନର ଦୁଃଖର କାହାଣୀ ତାଙ୍କର ସେ ଶୁଣିଲେ । ଠାକୁରଙ୍କ ବେଢ଼ା ଭିତରେ, ମା ଲକ୍ଷ୍ମୀଙ୍କର ମନ୍ଦିର ଆଗରେ ସେ ତଳେ ମୁଣ୍ଡ ଲଗାଇ କହିଲେ, କାହିଁକି ରେ ହଟିଆ, ନବରଙ୍ଗିଆ, ତୁ ଏତେ ହଟ ଲଗାଇଛୁ ! ତୋ' ମନରେ ଆଉ କ'ଣ ଅଛି !

ଟଗିର ଦୁଃଖର କାହାଣୀ ସେ ଦୁହେଁ କାର୍ତ୍ତିକଙ୍କୁ ଜଣାଇଥିଲେ । ଯେତିକି ସେମାନେ ଅନ୍ୟମାନଙ୍କଠାରୁ ଶୁଣିଥିଲେ ସେତିକି । ଟଗିର ଚଳଣିକୁ ସେମାନେ ବହୁତ ପ୍ରଶଂସା କରି କହିଥିଲେ । ପୁଅଟିର କଥା ବି । ଜୋଇଁଙ୍କର ଦୁର୍ଗୁଣ ପଣିଆଁରୁ ସେ ଅବସ୍ଥା ଭୋଗୁଛି । ନିଜର ପିଲାଟାକୁ ବି ଥରେ ଛୁଇଁ ଦେଇ ଯିବାକୁ ସେ କୋଉଁ ଚଣ୍ଡାଳ ମନ କଲା ନାହିଁ । ଟଗିକୁ ସେ ଛାଡ଼ି ସାରିଛି । ପାଞ୍ଚବର୍ଷ କଟିଲାଣି । ଆଉ ତା' ସଙ୍ଗେ କି ସମ୍ପର୍କ ' ଆମ ଗାଁ ଝିଅକୁ ଆମେ ଅନ୍ୟ ପାତ୍ରରେ ଦେଇ ପାରିବା ନାହିଁ ? ତହୁଁ ବଳି ତହୁଁ ବଳି ପାତ୍ର ମିଳିବେ । ଜାଣ, ବୁଝି ବସିଛନ୍ତି । ତମ ଫେରନ୍ତା ବାଟକୁ ଗାଁ ଲୋକେ ଅପେକ୍ଷା କରିଛନ୍ତି । ତମ ବୋଉ ଧନ ଗଣୁଛନ୍ତି । ଗୋଟିଏ ଗୁଡ଼ୁଲରେ ଗଢ଼ା ଦେବଶିଶୁ ପରି ଟଗିର ପୁଅ, ଭାରି ବିଚକ୍ଷଣ, ତାକୁ ତମେ ପୁଅ କରିବ ।

କାର୍ତ୍ତିକ କୁଆଡ଼େ ପଚାରିଥିଲେ, ନାତି ଟୋକାକୁ ପୁଅ କରିବି ? ଖୁଣ୍ଟିଆ କୁଳ ବୁଡ଼ିବ, ମୋ' କୁଳ ରହିବ । ଝିଅଟି ଯିବ ଆଉ କାହାର କୁଳ ରଖିବାକୁ । ନାଟୁଆ ବସିଛି ତ ? ସେ କ'ଣ ଫେରିବ ନାହିଁ । ତା ସଂସାର ଖବର ସେ ବୁଝିବ ନାହିଁ ?

କପିଳ କହିଲେ, ଆମ ଆଗରେ ସେ ନିଜକୁ ନିଜେ ଏମିତି ପଚାରିଲେ । ମନକୁ ମନ ହସିଉଠି ମୁଣ୍ଡରେ ହାତ ଯୋଡ଼ି ଲଗାଇଲେ । କହିଲେ, ଆରେ ଭଗି, ଆରେ କପିଳ, ମୁଁ ମଣିଷମାରି ଦାଗୀ । ଜାଣି ତ ମୂର୍ଖ । ମୋ'ର ଅକଲ ନାହିଁ । କେଉଁଟା ଠିକ୍, କେଉଁଟା ଭୁଲ ମୁଁ କ'ଣ ବିଚାରି ପାରିବି । କାଳିଆକୁ ପଚାରିବି । ମୋ' ଭିତରେ ଥାଇ ସେ ମୋତେ ବୁଦ୍ଧି ବତେଇବ । ତା'କୁ ପଚାରି କାମ କରିବି ।

କେଉଁଠି ଝଡ଼ଛୁ, କେଉଁଠି ହାଣଛୁ । ବାର ହରବର ହୋଇଛୁ । ମୋର କ ଥାଏ ? ତା' ନାଚ, ସେ ନଚ୍ଛଇବ । ମୋର ଖାଲି ନାଚବା କଥା—

ବୁଢ଼ୀ ଆଖିରୁ ଲୁହ ପୋଛୁଥିଲେ । କହିଲେ, ସେଇଆ ରେ ପୁଅ କପିଳ, ସେଇଆ । ଦେଖିବୁ ରହ, ଠାକୁରେ କାର୍ତ୍ତିକାକୁ ଭଲ ବୁଦ୍ଧି ଦେବେ । ସେ ମୋ' ପାଖକୁ ଧାଇଁ ଆସିବ । ସେଇଠୁ ସେ କ'ଣ କହିଲା ରେ କପିଳ ?

କପିଳ ଜେନା କହିଲେ, କାର୍ତ୍ତିକଭାଇ ଆମ ପାଖରୁ ଉଠି ଚାଲିଗଲେ । ବେଢ଼ା ଭିତରେ ଲୋକଗହଳି ବଢ଼ିଥିଲା । ସଞ୍ଜ ଆରତିର ଘଣ୍ଟବାଇଦ ମନ୍ଦିର ଭିତରୁ ଶୁଭୁଥିଲା । ଭିଡ଼ ଭିତରେ ପଶି ମନ୍ଦିର ଭିତରକୁ ଯିବାକୁ ସେ ଚେଷ୍ଟା କରୁଥିଲେ । ଆମେ ଧର୍ମେଁ ବି ଆଗେଇ ଗଲୁ । ଆଉ ତାଙ୍କ ସଙ୍ଗେ ଦେଖା ହୋଇ ନାହିଁ । —

କପିଳ ବିଦାୟ ନେଇଗଲେ ।

କେତେବେଳେ ଅରକ୍ଷିତ ଚମ୍ପି ପାଖରୁ ଯାଇ ବୁଢ଼ୀଙ୍କ ପାଖରେ ବସି ତାଙ୍କ କଥା ଶୁଣୁଥିଲା । ଦାଣ୍ଡକବାଟ ବନ୍ଦ କରିବାକୁ ବୁଢ଼ୀ ଉଠିଯିବାରୁ ସେ ପୁଣି ଚମ୍ପି ପାଖକୁ ଫେରିଆସିଲା ।

ଚମ୍ପି ତାକୁ ଦୁଇ ହାତରେ ଟେକି ଛାତିରେ ଧରିଲା । ତା' ମୁହଁରେ ଚୋକ ଦେଲା । ଲୁହ ଢଳଢଳ ଆଖିରେ ପୁଅର ଗୋଲଗାଲିଆ ଚମ୍ପାରଙ୍ଗର ପରଖିଦିଆ ସୁନ୍ଦର ମୁହଁକୁ ଚାହିଁଲା । ସତେକି ଏବଯାଏ ସେହି ମୁହଁଟିକୁ ସେ ନିରେଖି ନ ଥିଲା । ଅସ୍ଥିର ମନକୁ ତା'ର ଚଇତନ ସ୍ଥିର ହେବାକୁ ନିଜ ଭିତରେ ପ୍ରବୋଧିଲା, 'କାହିଁକି ଛାଟିପିଟି ହେଉଛୁ ? ଏଇ ତୋ'ର ଦୁଃଖପାସୋରି ପୁନାପ୍ରତିମା । ଏଇ ତୋ'ର ମନର ମାନସିକ; ଦେହର ଭୂଷଣ; ଆଉ କଛି ତୋ'ର ଲୋଡ଼ା ନାହିଁ—

ପୁଅକୁ କାଖ କରି ସେ ଘେରପଘରୁ ଅଗଣାକୁ ଆସିଲା । ସୂର୍ଯ୍ୟ ବୁଡ଼ି ଯାଇଥାନ୍ତି । ଛାଇ ମାଡ଼ି ଆସିଥାଏ । ତାକୁ ସେ ତଳକୁ ଓହ୍ଲାଇ ଦେଲାରୁ ସେ ପଚାରିଲା, ତୋ' ବାପା ତ ଆସିବେ, ତୁ କାନ୍ଦୁଛୁ କାହିଁକି ?

ଚମ୍ପି କହିଲା, ନାଇଁ ରେ ଧନ, ମୁଁ କାନ୍ଦୁ ନାହିଁ । ହେଇ ଦେଖ୍, ମୁଁ ହସୁଛି । ଚମ୍ପି ଅଞ୍ଚଳରେ ଆଖି ପୋଛି, ତାକୁ ଚାହିଁ ମୁହଁ ହଲାଇ ହସିଲା ।

ପଚାରିଲା, ମୋ' ବାପା କେବେ ଆସିବେ ?

ଚମ୍ପିର ମୁହଁ ମଉଳିଲା । ସେ ଉତ୍ତର ନଦେଇ ପ୍ରଶ୍ନ ପଚାରିଲା, ଦେଖିଛୁ ତାଙ୍କୁ ?

—ନାଇଁ ମ ବୋଉ ! ତାଙ୍କ ନାଁ ଖାଲି ରୁ ବଦଳେଇ ଦେଇଛୁ । ମନେ ରଖିଛୁ । କହିବ, ତାଙ୍କ ନାଁ ସ୍ୱର୍ଣ୍ଣମଣି ଝୁଣ୍ଟିଆ । ଆମ ଘର ମଣିକୁଦ ।

ବୁଢ଼ୀ ଫେରି ଆସୁଥିଲେ । ପିଲାର କଥା ତାଙ୍କ କାନରେ ପଡ଼ିଲା । ସେ ଧାଇଁ ଆସି ଅଗଣାରେ ତା'ର ହାତ ଧରିଲେ । କହିଲେ, 'ନାଇଁ, ନାଇଁରେ ଅରକ୍ଷିତ ! ତୋ' ବାପା ତ ଫେରି ଆସୁଛି । କାମକୁ ଯାଇଥିଲା । ଠାକୁର ଦର୍ଶନ କରି ଫେରିବ । ତା' ନା କାର୍ତ୍ତିକ ମହାନ୍ତି । ମନେ ରଖିଥା, କାର୍ତ୍ତିକ ମହାନ୍ତି, ଏଁ—

—ସେ ମୋ' ଅଜା ।

—ଥିଲେ ରେ, ସେ ତୋ' ଅଜା ଥିଲେ । ସେ ତୋ' ବାପା ହେବେ । ତା' ନା କାର୍ତ୍ତିକ ମହାନ୍ତି । ମନେ ରଖିଥା । ତମର ଗାଁ ଏଇ ରତନପୁର । ମଣିକୁଦ ନୁହେଁ । ଏଇ ଘରେ, ଏଇ ରତନପୁରରେ ତୋର ଜନମ । ତୋ ବୋଉ ନା ତ ରଙ୍ଗଣୀ—

—ମିଛ କହୁଛ ମା ! ମୋ' ବୋଉ ତ ଝୁମ୍ପି—

—ନାଇଁରେ, ନାଇଁରେ ବାଇଆ । ଝୁମ୍ପି ତୋ' ବଡ଼ଭଉଣୀ । ତୋ' ଅପା । ହଁ, ସେଇଆ । ତୋ' ଅପା । ତୋ' ବୋଉ ନାଁ ରଙ୍ଗଣୀ । ତାଆରି ମୁହଁ ଘୁ ଆଣିଛୁ । ସେଇ ଆଖି, ସେଇ ଓଠ । ସେଇ ବୋଉ ତୋ'ର ତତେ ଆଣି ଘୋର ଅନ୍ଧାର ଭିତରେ ଝୁମ୍ପି କୋଳରେ ଶୁଆଇ ଦେଇଗଲା—

—କୁଆଡେ ଗଲା ମା ?

—ସ୍ୱର୍ଗକୁ । ହେଇଟି ଦେଖ ।

ବୁଢ଼ୀ ଉପରକୁ ଆଙ୍ଗୁଠି ଦେଖାଇଲେ ।

ଅରକ୍ଷିତ ସ୍ୱର୍ଗକୁ ଚାହିଁଲା । ସେ ପଚାରିଲା, କେବେ ସେ ଫେରିବ ?

—ଆସୁଛି ତ । ଅନ୍ଧାରରେ ଲୁଚିଲୁଚି ଆସେ । ଝୁମ୍ପି କୋଳରେ ତୁ ଶୋଇ ପଡ଼ିଥାଉ । ସେ ଆସିଲାବେଳେ ସମସ୍ତେ ଶୋଇଥାନ୍ତି । ତତେ ଆଉ ଝୁମ୍ପିକୁ ସେ ଗେଲ କରି, ପୁଣି ଫେରିଯାଏ ।

—ସେ ବୋଉ ଆସିଲାବେଳେ ତା'କୁ ଦେଖିଛୁ ?

—ନାଇଁରେ ନାଇଁ, କେହି ଚେଇଁଥିଲେ ସରଗରୁ ଗଲା ମଣିଷ ଆସନ୍ତି ନାହିଁ । ସମସ୍ତେ ନିଦରେ ଶୋଇଲେ ଯାଇଁ ଆସନ୍ତି । ତୋ' ବୋଉ ରଙ୍ଗଣୀ ବାହୁଡ଼ିଲାବେଳେ ମତେ ସପନେଇ ଯାଏ । ସେତକବେଳେ ସପନରେ ମୁଁ ତା'କୁ ଦେଖେଁ । କଥାବାର୍ତ୍ତା ହୁଏ । ସେ ସରଗକୁ ଫେରିଗଲେ ମୋ' ନିଦ ଭାଙ୍ଗିଯାଏ ।

ଝୁମ୍ପି କେତେବେଳୁ ଯାଇ ତା' କୋଠରିର ଚଉକାଠ ଧରିଠିଆ ହୋଇଥିଲା । ସେମାନଙ୍କର କଥାବାର୍ତ୍ତା ଶୁଣୁଥିଲା । ଆଖିରୁ ଗଡ଼ିଆସୁଥିଲା ଅବାଧ ଲୁହଧାର । ସେ ପାଟି କରି ଉଠିଲା, ମା !

—କ'ଣ ଲୋ ଝିଅ ? ତୁ ପୁଣି କାନ୍ଦୁଛୁ କି ?—

ଝିଅ ଛେପ ଢୋକି, କୋହ ଅଟକାଇ କହିଉଠିଲା, ମାଆ ଲୋ, ତୋ' ପୁଅ ପ୍ରତି, ମୋ' ପ୍ରତି, ପୁଣି ମୋ ପିଲାଟା ପ୍ରତି ତୋ'ର ଯେଉଁ ସେନେହଣରଧା ସେଇସବୁ ତତେ ସମାନ ଦେଖାଉଛି । ଆମପାଇଁ ତୁ ଯେଉଁ ସପନର ଘରସଂସାର ଗଢିଛୁ ମୋ ବାପାର ମୁଣ୍ଡ ହଲରେ ସେସବୁ ଭୁଷୁଡ଼ି ପଡ଼ିବ । ପିଲାଟା ଯାହା ଜାଣିନି. ମେଇଁଆ ସେ ମନେ ରଖିଥାଉ ।

ବୁଢ଼ୀ ପିଣ୍ଡାପାଖକୁ ଆସିଲେ । କହିଲେ, ମୋ' ପୁଅ ମୋ' କଥାରୁ ବାହାର ହେବ ନାହିଁ । ତେବେ, ଏ ସଂସାରକୁ ତୁ ଏଡ଼େ ପିଲାଟି ଦିନରୁ ମୋ' ଠଉଁ ଅଧିକ ଚହ୍ନିଲୁଣି । ତୋ' କଥା ମୁଁ ନିଶ୍ଚେ ମାନିବି ଲୋ ମା, ନିଶ୍ଚେ ମାନିବି । ମୁଁ ତ ଶୁଖିଲା ପତର । କାଲି ଟିକିଏ ଫୁଙ୍କି ଦେଲେ ଝଡ଼ିପଡ଼ିବି । ତୋ' ଜୀବନର ଖେଳ ତତେ ଖେଳିବାକୁ ପଡ଼ିବ । ତୋ' ଭବିଷ୍ୟ ପାଇଁ ମୋ' ବଗ୍ଗର ପାଣିର ଗାର ।—

ଝିଅ ପିଣ୍ଡାକୁ ଆସିଲା । ତା'ର ମନେହେଲା ଯେପରି ତା'ର ଜେଜେମା ଥରୁଛନ୍ତି । ଟଳି ଟଳି ହେଉଛନ୍ତି । ଅତେକ ପଡ଼ିଯିବେ । ସେ ବୁଢ଼ୀଙ୍କୁ ଧରି କାନ୍ଥକୁ ଆଉଜାଇ ବସାଇଦେଲା । ନିଜେ ତାଙ୍କ ଆଗରେ ବସି ଗେହ୍ଲେଇ ହୋଇ କହିଲା, ତୁ ମନଦୁଃଖ କଲୁ କି ମା ? ତୋ' ବଗ୍ଗର ମୁଁ କେବେ ତଳେ ପକାଇ ନାହିଁ । ନା, କେବେ ଅନ୍ୟଥା କରିବି ନାହିଁ । ମୋ' କପାଳରେ ଯାହା ଥିବ ହେବ । ମୁଁ ଭୋଗିବି ।—

ଅରକ୍ଷିତ ଆସି ପାଖରେ ଠିଆ ହେଲା ।

ବୁଢ଼ୀ କହିଲେ, ମୋ' ମୁଣ୍ଡ କାହିଁକି ବୁଲାଇ ଦେଲୁ ମା ! କପିଳର କଥା ଶୁଣି, ତୁ ହତାଶିଆ ହୋଇଛୁ ବୋଲି ମୁଁ ମଣିଲି । ସେଇଠୁ କାହିଁକି ମୋ' ନିଜ ଉପରେ ବିଶ୍ୱାସ ଥିଲା । ସେ ଅଲକ୍ଷଣା ଚଣ୍ଡାଳଟା ଏବଯାଏ ନାଟୁଆ, ନାଟୁଆ ହେଉଛି । କି ଓଷଦ ସେ ଡ଼ାକୁଣୀ ତା'କୁ ଖୋଇଛି କେଜାଣି ! ମୋ' କଥା ଯଦି ସେଇଟା ନ ମାନେ, ନିଶ୍ଚେ ମୋ' ପ୍ରାଣ ଉଡ଼ିଯିବ । ତତେ ମୁଁ କାଲି ଯେଉଁ ଅବସ୍ଥାରେ ପକାଇଲି ମା, ମୁଁ ତ ନ ଥିବି—

ଝିଅ ତା'ର ଜେଜେମାଙ୍କର ଦୁଷ୍ଚିନ୍ତା ଓ ଦୁଃଖର କାରଣ ଅନୁମାନ କଲା । ହସିଉଠିଲା । କହିଲା, ମତ ଯେ, ତୋ' ସାହସରେ ମୋ ରକତରେ ନିଆଁ ଲାଗି-ଥିଲା ଲୋ ମା । ତତେ ଲୁଚାଇବି ତ ଆଉ କାହାକୁ କହିବି ? ତାଙ୍କ ରକତରେ ବି ନିଆଁ ଲଗାଇଥିଲି ।

—ଏଁ ? ହୁଡ଼ିଲୁ ?

ଅରକ୍ଷିତ ଝିଅର ପିଠିରେ ନାଇ ହୋଇ ତାକୁ ହଲାଇ ହଲାଇ ପଚାରିଲା କୋଉଠି ନିଆଁ ଲଗାଇଥିଲୁ ବୋଉ ?

ଟଗ୍ର ହାତ ବୁଲାଇ ତାକୁ କୋଡ଼କୁ ଟାଣି ନେଲା । ତା' ମୁହଁରେ ଚୋକ ଦେଲା । କହିଲା, ଚୁଲିରେ ପୁଅ । ଶୁଣ ମା, ମୁଁ ଭଲମନ୍ଦ ବହୁତବା ବୁଦ୍ଧି ହରାଇଥିଲି । ହୁଡ଼ିଥାନ୍ତି । କଷ୍ଟେ ଚୁଲିରେ ଉଦ୍ଧାର ପଶିଥାନ୍ତି । ସେହି ମତେ ତାଙ୍କର ସେନେହରେ ରକ୍ଷା କଲେ । କହିଲେ, ମନ ସଙ୍ଗେ ମନ ମିଶି ଏକାକାର ହୋଇଛୁ । ବାକି ଖୁସି ଆନନ୍ଦଟା ଚଉଠୀ ଘରରେ । ଅଜଣାରେ ହେଲେ ବି, ସମସ୍ତଙ୍କର ଭୋଜଗିଆ କଲ୍ୟାଣରେ, ଆଉ ଜାଣତରେ । ତା'ଠାରୁ ବଳି ଅଧିକ ସନମାନ, ଗନ୍ଧରବ, ଆନନ୍ଦ କାହୁଁ ମିଳିବ ?

—ମର ଯାଇଥାଏଁ ଟି । କାଳିଆ ତାକୁ ବଶାଣହେ ବର୍ଷ ପରମାୟୁ ଦେଉ । ମୁଁ ନିଶ୍ଚିନ୍ତ ହେଲି । ଆଉ ମୁଁ ମରିବି ନାହିଁ । ତୋ' ସୁଖ ଦେଖିବି ଲୋ ଟଗ୍ର । କାର୍ତ୍ତିକା ହଁ କଲେ ଭଲ, ନାହିଁ କଲେ ମୋର ଦୁଃଖ ନାହିଁ । ଆଲୋ ମା, ସଞ୍ଜ ହୋଇଆସୁଛି । ଯା', ମନ ଖୁସିରେ କାମ କର । ସହଳ ସାରିଦେ ।

ବୁଢ଼ୀ ଟଗ୍ର କୋଳରୁ ଅରକ୍ଷିତକୁ ଓଟାରିଲେ । କହିଲେ—'ଆ'ରେ ନାତି, ମୋ ପାଖରେ ବସ । ତତେ କଥା କହିବି । ବୁଢ଼ୀ ଅସୁରୁଣୀର ଆଇସ କଥା' ।

ଟଗ୍ର ଘରକାମରେ ମନଦେଲା । କାମ ଭିତରେ ବେଳେ ବେଳେ ତା'ର ମନ ଚହଟି ଉଠୁଥିଲା । ହାତ ଅଟକି ଅଟକି ଯାଉଥିଲା । ସେ ବିଚାରୁଥିଲା, ତାର ଜେଜେମାଙ୍କର ତାଙ୍କ ପୁଅ ଉପରେ ଯେଉଁ ଅଟଳ ବିଶ୍ୱାସ ଥିଲା, କପିଳ ଜେନାଙ୍କର କଥାରେ ସେହି ବିଶ୍ୱାସ ଦୋହଲୁଛି । କିନ୍ତୁ ଜେନାଏଁ ଯେ ସତ କହିଲେ, ସେଥିରେ କେଉଁ ପଡ଼ିଆରି ?

ଯିଏ ତାର ମନ କିଣିଛନ୍ତି, ଯାହାକୁ ସେ ନିଜକୁ ସମର୍ପି ଦେବାକୁ ଉଚ୍ଛନ୍ନ ହୋଇଥିଲା, ଭବିଷ୍ୟତର ପ୍ରମାଦକୁ ମନରେ ଥାନ ଦେଇ ନ ଥିଲା, ତାଙ୍କ ମନର ବିଶ୍ୱାସ ତ ଜାଣିବୁଏ ଉଣା ହୋଇ ନ ଥିଲା ? ଏଡ଼େ ପ୍ରତାପୀ, ଏଡ଼େ ବୁଦ୍ଧିଆ, ଚତୁର ଯିଏ, ନିଜ ପାଗଳପଣରେ ଖଣ୍ଡମଣ୍ଡଳକୁ ଆପଣାର କରିପାରିଛନ୍ତି, ସେ ଅବିବେକୀ ନୁହନ୍ତି । ଯେଉଁ ଅଭିନିବେଶ ନିରମାଖି ଟଗ୍ରକୁ ସେ ତାଙ୍କର ମନ ବଢ଼ାଇ ଦେଇଛନ୍ତି, ତା' ପାଇଁ ତା' ପାଖକୁ ତାଙ୍କର ଅମୂଲ୍ୟ ସମୟ ନଷ୍ଟ କରି ଧାଇଁ ଆସିଥିଲେ କାହିଁକି ? ଲୋକନିନ୍ଦାକୁ ତ ଡରି ନ ଥିଲେ ।

ଟଗ୍ର ମନର ଦୃଢ଼ତା ଫେରିଆସିଲା ।

ଗୋବିନ୍ଦ ଦ୍ୱାଦଶୀର ଉଜ୍ଜ୍ୱଳ ଜହ୍ନ ନେଳି ଆକାଶର ଉପର କୋଣକୁ ଉଠି ନାହିଁ । ନିର୍ମଳ ଆକାଶ । ରାତି ପ୍ରହରେ ହେବ ନାହିଁ ତ, ପିଣ୍ଡା ଉପରେ କାନି ପାରି ତାରି କେଳେମା ଶୋଇଛନ୍ତି । ତାଙ୍କ ଆଖିକୁ ସହଜରେ ନିଦ ଆସେ ନାହିଁ । ଖାଲି ଆଖିବୁଜି ପଡ଼ିଥାନ୍ତି । କେଜାଣି ଗତିମୁକ୍ତି ପାଇଁ ଠାକୁରଙ୍କର ନାମ ମନେ ମନେ ନେଉଥିବେ ।

ଝରିଆର ଦେଖନ୍ତିରେ ସେ କେବେ କେଉଁ ଠାକୁରଙ୍କୁ ପୂଜିବାକୁ ଯାଆନ୍ତି ନାହିଁ । ଦୋଳ ପୁନେଇଁରେ ବିମାନ ଦେଖନ୍ତି, ତଳେ ମୁଣ୍ଡିଆ ମାରନ୍ତି । ଗାଆଁରେ ଯାତ୍ରା ହେଲେ, ରୋଗ ବଇରାଗ ନ ମାନି ସେ ରାତିସାରା ଉଜାଗର ହୋଇ ଦେଖନ୍ତି । ମରଦନ ବାଛଣା ଧରନ୍ତି ।

ଝରି ଡାକିଲା, ମାଆ !

—କ'ଣ କାମ ପଡ଼ିଲା ?

—ଖାଇଲି, ତୁ ଶୋଇପଡ଼ିଲୁ । ଦ' ଗୁଣ୍ଡା ମୋଟେ ଖାଇଲୁ । ସବୁ ତ ଫେରାଇଦେଲୁ । ଯେତେ ଯତ୍ନ କରି ରଖିଲେ କି ହେବ, ଡାଲି, ତରକାରି କାଲି ସକାଳକୁ ଗନ୍ଧ ହୋଇଯିବ ।

—ତୁ ଏବେ କୋଉ ଖାଇଲୁ ? ଏଇ କହିଲି ଜେନା ମ, ସତ କହିଲା କି ମିଛ କହିଲା କିଏ ଜାଣେ ? ଏ ଘର ମଉସା ସେ ଘର ପିଉସା ହେବା ଜଣକ ସେ । ଚଇତନର ତା' ଉପରେ ପରିଆରି ଥିଲେ ଥିବ, ମୋ'ର ତ ନାହିଁ । କାହା କଥାରୁ ମତେ କ'ଣ ମିଳିବ ଲେ ? ମୁଁ ଯାହା ବିଚାରିଛି, ସେଇଆ କରିବି । ଏକା ତୁ ରାଜି ହେଲେ ହେବ ।

—କଅଣ ତୋ' ବିଚାର ?

ବୁଢ଼ୀ ତଳେ ହାତ ଭରାଦେଇ ଉଠିଲେ । କାନି ଓଟାରି ଦେହ ଘୋଡ଼ାଇଲେ । ଗୋଡ଼ତଳେ ରଖାହୋଇଥିବା ଲଣ୍ଠନଆଲୁଅ ତେଜିଲେ । କହିଲେ, ଆ, ତୁ ମୋ' ପାଖରେ ବସ । ମୋ' ଘର କାନ୍ଥରେ ସେଉଁ ଛବି ଓହ୍ଲାଇଛି—କାଳିଆ ବଳିଆ, ମଝିରେ ସୁଭଦ୍ରା, ସେଇଆଙ୍କୁ ସୁମରୁଥିଲି । ଚକାଡୋଳା ମତେ ବୁଦ୍ଧି ବତେଇଲା । ଶୁଣିବୁ !

ଝରି ବୁଢ଼ୀଙ୍କ ଆଗରେ ବସିଲା । ପଚାରିଲା, କି ବୁଦ୍ଧି !

—ତାକୁ କହିଲି, କାର୍ତ୍ତିକାକୁ ସେ ଭଲ ବୁଦ୍ଧି ଦେଉ । ତା' ବାଇଆପଣ ଭାଙ୍ଗୁ । ତା' ପାଖରେ ନେହୁରା କଲି, କାର୍ତ୍ତିକାକୁ ସେ ଅଟକାଇ ରଖୁ । ମୋ' ଭଲେଣି ମନେ ମନେ ମୁଁ ତାକୁ ଜଣାଇଁ ଦେଇଛି । ଶୁଣ, ମୁଁ ବଞ୍ଚିଥାଉଣୁ, ଏ ଘରର ମୁରବି ସେ ନୁହେଁ, ମୁଁ । ଯେଉଁ ଜମିଖଣ୍ଡିକ କାର୍ତ୍ତିକାର ମଉରସୀ, ସେହି ଶିମୁଳିତଳି କିଆରିକୁ ଚଇତନ ନେଇଛି ।

ମୁଁ ଏ ଘରକୁ ବୋହୂ ହୋଇ ଆସିଲା ବେଳେ, ପାଖଙ୍କ ସାହିରେ ବଳଟେ ଡ଼ିହ ଉପରେ ଶ୍ରେଷ୍ଠ ଘରଖଣ୍ଡେ ଥିଲା । ତାଙ୍କର ଭଉଣୀ ଜମି ଥିଲା ଯେ, ତୋ' ଜେଜେଙ୍କ ପିଉସୀମାନଙ୍କୁ ଆଉ ବଡ ଭଉଣୀମାନଙ୍କୁ ବାହା କରାଇବାରେ ବିକ୍ରୀ ହେଲା । ଏବକା ଜମି ତୋ' ଜେଜେ କିଣିଲେ ମୋ' ନାମରେ । ଏଇ ଉଚ୍ଚ ଭୂଇଁକୁ ବି ମୋ ନାମରେ କିଣିଥିଲେ । କାହିଁକି ନା ତାଙ୍କ ବାପଙ୍କ ନାଁରେ କେତେ ମହାଜନ ଡ଼ିଗ୍ରୀ କରି ରଖିଥିଲେ । ସେମାନେ ପୁରୁଣା ଡ଼ିହକୁ ନେଲେ । କାର୍ତ୍ତିକା ଏଇ ଅରକ୍ଷିତ ପର ହୋଇଥିଲା । ଆମେ ଏ ଘର ତୋଲେଇ ଆଇଲୁ । ସେଇଥିପାଇଁ ଏ ଘରଟି ଏକୁଟିଆ ହୋଇଛି, ଆଉ ଦାଣ୍ଡଟା ଏତେ ବଡ ।

—ମୁଁ ଏ ଘଟଣା ଜାଣିଛି ମା ! ତୁ ଦିନେ ନାଟୁଆକୁ ସେଇ କଥା କହି ଚେତାଇ ଦେଇଥିଲୁ ।

—କାର୍ତ୍ତିକା କେବେ ଆସିବ, ରାଜି ହେବ କି ନ ହେବ ସେ କଥା ମୁଁ ଜାଣେ ନାହିଁ । ମୁଁ ତାକୁ ରହି ବସିବ ନାହିଁ । ଚତୁର୍ଦ୍ଦଶୀ ଦିନ ଚଇତନ ଫେରିବ । ଦୋଳ ପୂର୍ଣ୍ଣିମା ଦିନ ମଜ ମଙ୍ଗନ, ମଜ ବାହାଘର ହେବ ।

—ବା-ହା-ଘ-ର ।

—ହଁ ଲୋ ମୋ' ସୁନା-କଣ୍ଢେଇ ! ତେଓର ବାହାଘର । ରାଧୁ ପାଆନ୍ତର ବୁଢ଼ା, ସେଇଦିନ ତତେ ଝିଅ କରିବେ । ତାଙ୍କ ଗୋହରେ ସେ ବାହା କରାଇବେ । ତାଙ୍କ ଘରଯା ବୁଢ଼ୀ ସାତ ପୁଅର ମା । ସାତ ଝିଅ ସେ ଖୋଜୁଥିଲା । କାଳିଆ ତାଙ୍କୁ ଗୋଟିଏ ବି ଦେଲା ନାହିଁ । କାଳିଆ ସାଙ୍ଗେ ସେ ଯିଦ ପକାଇଛି । କହୁଛି, ହଇରେ ପୋଡ଼ାମୁହାଁ, ଆମ ଦି' ପ୍ରାଣୀଙ୍କି କୋଉ ନରକ ଆଡ଼କୁ ଟଣୋଉଁଛୁ ? ସାତ ଝିଅ ମୁଁ କରିବି । ସାତ ଥର କନ୍ୟାଦାନ ଦେବି । ସେଇଠୁ ଦେଖେଇ ଦେବି ରେ ମାଇପଛଡ଼ା, ତୋ'ର କେତେ କପ୍ରାମନ ।

ସେ ଛଅ ଝିଅ ବାହା କରାଇଲାଣି । ଆଉ ଗୋଟିଏ ବାକି ଅଛି । ତୁ ରାଜି ହେଲେ କାଲି ସକାଳେ ମୁଁ ଖବର ପଠେଇବି । ମତେ ରାଣୀ-ଗୁଡ଼ିଆଣୀ କହୁଥିଲା ପରା ।

—ଆଲୋ ମା, ମୁଁ ଗେରସ୍ତ ଛାଡ଼ି ଆସିଛି । ମୋ'ର ପାଞ୍ଚ ବର୍ଷର ପୁଅ । ବାପ ବଞ୍ଚିଛନ୍ତି । ଶ୍ରୀମତୀରବେଣୀ ଦେଓ, ମୋ ବାପା ଜେଲରୁ ମୁକୁଳି ପୁରୀରେ ଅଛନ୍ତି । ରାଧୁ ସାନ୍ତ, ଆଉ ତାଙ୍କ ସ୍ତ୍ରୀ ଓ ପୁଅମାନେ କାହିଁକି ଜଞ୍ଜାଳରେ ପଶିବାକୁ ମଙ୍ଗିବେ ? ତୋ' ବୁଦ୍ଧି ବିଭ୍ରମ ହେଲାଣି ।

ବୁଢ଼ୀ ଧୁମ୍ ମାରି ବସିରହିଲେ । ଟଗ ଭାବିଲା, ମେ ତାଙ୍କ ମନରେ ଆଘାତ ଦେଇଛି । ତା' ପାଇଁ ଆଉ ତା' ପୁଅ ପାଇଁ ସେ ବେଶି ଆକୁଳ ହୋଇ ଯାଉଛନ୍ତି । ତାଙ୍କ ମନର ଦୁଃଖ ଦୂର କରିବାକୁ ସେ ହସି ହସି କହିଲା, ଆଲୋ ମା, ମୁଁ ପିଲାଟିଆ ନୁହେଁ । କେତେ ଦୁଃଖ ଅଙ୍ଗେ ନିଭାଇଛି । କେତେ ଗାଳି-ଗଞ୍ଜଣା ସହିଛି । ଅପବାଦର

ବୋଝ ଅକାରଣ ମୁଣ୍ଡରେ ବୋହୁଛୁ । ମୋ ଦେହ କାଠ ହୋଇଛି, ମନ ପଥର ହୋଇଛି । ପିଲାଟିକୁ ବଢ଼ାଇ ମଣିଷ କରିବାକୁ ଆହୁରି ଆହୁରି ମରିବି । ବାପା ରାଜି ହେଲେ ଭଲ, ରାଜି ନ ହେଲେ ତାଙ୍କ ଅମଙ୍ଗ ତାଙ୍କଠେଇଁ ରହିବ । ମୋ'ର ସେଥିକି ଶୋଚନା ନାହିଁ ।

—ସତେ କି ମା ?

—ସତେ ଲୋ ! ଯିଏ ରାଜି ହେବାର କଥା, ସେ ରାଜି ହୋଇଛନ୍ତି । ନ ବୁଝି ନ ଶୁଣି ଯେଉଁଦିନ ନାଟୁଆର ଶିକ୍ଷାରେ ପଡ଼ି, ମୋ' ସ୍ୱଭାବ ଉପରେ ବି ସନ୍ଦେହ କରି ବାପା ମତେ ପରଘରକୁ ତଡ଼ିଦେବେ, ଜାଣି ସେହି ଦିନଠୁ ତାଙ୍କ ଲେଖାରେ ମୁଁ ମରିଛି । ଆଜି ମୁଁ ତୋ' କଥାରୁ ଭଲକରି ଜାଣିଲି, ମଣିକୁଦରୁ ଆସି ଏ ପାଞ୍ଚବର୍ଷ କାଳ ମୁଁ ମୋ ଜେଜେଙ୍କ ସମ୍ପତ୍ତିରୁ ଚଳାଛି । ତାଙ୍କର କିଛି ଧାରି ନାହିଁ ।

—ସତେ ଲୋ ଝିଅ !

—ହେଲା । ଯିଏ ମତେ ଚାହେଁ, ମୁଁ ଆଗ ତା' ପାଖକୁ ଚାଲିଯିବି । ଥରେ ତ ବାହା ହେଇଛି, ଆଉ କି ବାହା ? ପଚୁଡ଼ି-ମଣିଷ ଖଣ୍ଡେ ହେଲେ ଦୁଇଅ କାମ ସରିବ ।

—ଚଇତନ କ'ଣ ମଙ୍ଗିବ ?

—ମୁଁ ଯାହା କହିବ, ସେ ସେଇଆ କରିବେ । ସେଥିକି ତୁ ନିଶ୍ଚିନ୍ତ ରହ । ତାଙ୍କର ଘରେ ସେହି କାମଟି କରାହେବ । ତା' ପରେ ମୁଁ ହେବି ସେ ଘରର ଘରଣୀ ।

—ହଁ, ହଁ ।

—ଗାଆଁ ଲୋକଙ୍କୁ, ଅଘର ଦୁଆରି ସମସ୍ତଙ୍କୁ ଦିନ ବନ ଭୋଜିଭାତ ଖୁଆଇବ । ସେତେ ଯେଉଁଠି ଏ ଗାଆଁରେ ଠାକୁର-ଠାକୁରାଣୀ ଅଛନ୍ତି, ସମସ୍ତଙ୍କର ପୂଜା କରାଇବ । ବଡ଼ ଠାକୁରଙ୍କ ନିତଭୋଗ ପାଇଁ ଅମୃତ-ମନୋହି ଲାଗି ମୁଁ ନିଷ୍ଟେ ଖଞ୍ଜିଦେବି । ସେ ଖଣ୍ଡିକ ସେହି ଶିମୂଳ ତଳ 'କିଆରି । ଦେଖିନ୍ତୁ ରହ, ମୁଁ କ'ଣ କରିବି ।

ବୁଢ଼ୀ ଖୁସି ହୋଇ ଝିଅର ତଣ୍ଟିକରେ ହାତ ଦେଇ କହିଲେ, ମରିଯାଉଥାଏଁ ଟି ! ମୋ ସୁନା-କଣ୍ଢେଇ ଝିଅର ଭଲ ବାଗରେ । ମୁଁ ଏଥର ନିଶ୍ଚିନ୍ତ ହେଲି । ମନ ଖୁସିରେ ଶୋଇବି । କାଲିଆକୁ କହିବି, ମୋ' ବାପ୍ପରକୁ ଭଣ୍ଡେଇ ଦେଇଥିଲୁ ରେ ଦୁନିଆ । ଝିଅ ବାପ୍ପରକୁ ଠିକଣା ବାଟରେ ଚଲାଇଛି ।

ବୁଢ଼ୀ ଶୋଇବାକୁ ଗଲେ । ଝିଅ ଆଲୁଅ ଦେଖାଇ ନିଜ କୋଠରୀକୁ ଆସିଲା । ଅରକ୍ଷିତ ଦେହରେ ଚଦର ଘୋଡ଼ାଇଲା । ବାହାରକୁ, ଉଜ୍ଜ୍ୱଳ ଅଗଣା

ଆଡ଼କୁ ଗ୍ରହିଲା । ଯେଉଁ କଥା ସେ ସପନରେ କେବେ ଚନ୍ତ୍ର ନ ଥିଲା, ସେ କଥା କିଏ ତା'ର ଭୂଣ୍ଡରେ ଭୁହାଇଦେଲା ? କିଏ ତା' ମୁହଁରୁ ଲାଜପାଣି ପୋଛିଦେଲା ? ତା' ମନରେ ଏଡ଼େବଡ଼ ସାହସ ଆଣି ଠିଆ କରାଇଲା ?

ସେଇ କାଳିଆ !

ହଁ ରେ ହଁ ଭୂଇ । ତୋ' ବଳିଆ ମୋ ମନରେ ବଳ ପୂରାଇଛି । ଡ଼ାହାଣ-ବାଆଁ । ଆଗରେ ରହି ଦେଖିଲେ ଦଣେ ବାଆଁ-ଡ଼ାହାଣ । ମଝିରେ ମୁହିଁ ନାଗମାଝି । କୁଆଡେ ଟାଣୁଛି ଟାଣ । ମୋ'ର କି ଗ୍ରହ ? ଯାହା କୁହାଇଲୁ ସେଇଆ କରିବି ।

ଟଗ୍ରି ଏହିପରି ନିଜ ଭିତରେ ମନ-ଚଇତନ ସଙ୍ଗେ କଥାଭାଷା ହେଲା । ସବୁ ଅବସାଦ ପୋଛି ନୂଆ ଉତ୍ସାହ ଓ ଆନନ୍ଦରେ ପୁଣି ଆସିଲା ଅଗଣାକୁ ।

ଦ୍ୱାଦଶୀର ଜହ୍ନ ହସୁଛି । ଏବଯାଏ ସେ ମଥା ଉପରକୁ ଆସି ନାହିଁ । ବାଁଆଡ ପଛରୁ ଧୀରେ ଧୀରେ ଖଣ୍ଡେ ପାତଳ-କାଳିଆ ମେଘ ତା' ଆଡ଼କୁ ମୋହିଁଛି, ପୁଣି ଡ଼ାହାଣ ପାଖରୁ ଧୋବଳା ବାଦଲ । ଚନ୍ଦ୍ର ସ୍ବରପାଖ ଝାପସା ମଣ୍ଡଳରେ ମିଶିଯିବାକୁ ଆଗ୍ରହ ପରି !

ଆଜିକା ରାତିଟି ବେଶୀ ଲମ୍ବ ପରି ଲାଗୁଛି କାହିଁକି ? ଅଳପ କାମକୁ ବହୁତ ଆଲୋଚନା, ଅଧିକ ଉତ୍ତେଜନା ପାଇଁ ହୋଇଥିବ । ବରି ରଗଡ଼ା କି ବରି 'ବଟା, ଅବା ଆଉ କେଉଁ ପାଇଟିରେ ଲାଗିଯାଇଥିଲେ ବେଳ କେତେ ବେଗରେ ପଳାଇ-ଥାନ୍ତା ! ଯାହା କହନ୍ତି, କାମିକା ଲୋକକୁ ସମସ୍ତ ଡ଼ରେ, ସେଇଆ । ରାତ ପହରେ କଟିଯିବଣି କି ?

ଟଗ୍ରର ଭାବନା ତା ମୁଣ୍ଡରେ ଅଛି, ବଲମାଳରୁ ଭାସିଆସିଲା ବଲୁଆ ଦଳର ବୋବାଳି । ହେଲା, ଏଥର ରାତି ପହରେ କଟିଲା । ବଲୁଆ ବୋବାଳି ସରୁଣୁ ତାଙ୍କର ପଲରୁ ଗୋଟାଏ ଭେରଣ୍ଡା ବକଟାଳ ରଡ଼ି ଛାଡ଼ିଲା ରହିରହିକା, ରୁହାକୁ ରୁହା ।

ବୁଢ଼ୀ ଡାକ ଛାଡ଼ିଲେ, ଆଲୋ ଟଗ୍ରି । ଶୋଇଲୁ କି ?

—ନାଇଁ ମ ମା, ନିଦ ଲାଗୁ ନାହିଁ ।

—ତେବେ ଶୁଭୁନ୍ଥି, କେମିତ ସେଇଟା ଦୋବଉଛି ? ମୋ ଗ୍ରଇ ନିଦ ଗ୍ରଉଁ କରି ଭାଙ୍ଗିଗଲା ।

—ପିଲା ଶୋଇଛି, ଡ଼ରିବ ।

—ତା' ବୋବାଳି ବନ୍ଦ ହେଲାଣି ।

—ହେଲେ ହେଉ । ଅଗଣାରେ ଭୂ କ'ଣ କରୁଛୁ ? ଘର ଭିତରକୁ ଯା । ପିଲାର ମୁଣ୍ଡ ଟେକ ଦେ । ତା' ଦେହକୁ ଟିକିଏ ଆପତେଇଦେ । କାଲେ ଡ଼ରିଥିବ ।

ବୁଢ଼ୀଙ୍କ କଥା ମାନ ଝଷ ତାଙ୍କର ଘରବାଟେ ପିଣ୍ଡାକୁ ଉଠି କହିଲା, ଭୁ ଏବେ ଚନ୍ଦ୍ରଙ୍କି ଲ୍ କାହିଁକ ? ମୋ' ପୁଅ କ'ଣ ଡରବାର ପିଲା ?

ବୁଢ଼ୀ କହିଲେ, ଭୁ ବଡ଼ ଓଲମୀଝା । ଭେରଣ୍ଡା କାହିଁକ ବୋବାଏ ଜାଣୁ ନାହିଁ ? ଚଣ୍ଡୀ, ଗ୍ରମଣ୍ଡା, ବକଝା ଏଇମାନଙ୍କ୍ର ଉଠାଇ ଦଏ । ସେମାନେ ଭୂଲଚର ବାହାରନ୍ତ । ପିଲାଙ୍କଠେଇଁ ତାଙ୍କର ଆଶାଟି ?

ଝଷ କହିଲା ସେଗୁଡ଼ା ଖାଲ ମିଛର-ଜୀବ । ସତ ସନ୍ଧ ହୋଇଥିବତ ହେଇଥାନ୍ତ । ସେମାନେ ଜାଣନ୍ତ ମୋ' ପୁଅ ଶିବଅଂଶରେ ଜନମ । ତା' ପାଖ ପଶିବାକୁ ସେଗୁଡ଼ା ସାହସ କରବେ ନାହିଁ ।

ବୁଢ଼ୀ ଛଳେଇ କହିଲେ, ଅଲାନ୍ନୁକ୍ଳା ଲୋ । ଶିବଶଙ୍କର କୈଳାସପୁର ଛାଡ଼ ଦୁର୍ଗାଶଙ୍କରଙ୍କ୍ର ମୁରୁଛନ୍ତ, ଭୁ ମାନବଝା ପାଖକୁ ଆସିଥିଲେ ମଣିଷମାଉିସ ଗ୍ରଷିବାକୁ ନା ? ଯା' ଲୋ ଛିଅନି ।

ଝଷ ବଡ଼ ମାଟିକର ହସିଲା । କହିଲା, ଯାଉଛ ମ ' ସେ କ'ଣ ଫସାର ଭୂଲବାକୁ ଏକୁଟିଆ ଆସନ୍ତ ନାହିଁକ ? ମୁଁ ତୋ ଝଗ୍ରମଣିକୁ ମୁରୁଛଲ, ମୋର ମାନବୀଦେହରେ ଦୁର୍ଗାଶଙ୍କରଙ୍କ୍ର ଅବତରଇଲ । ଗଞ୍ଜେଇ ନଶାରେ ଭୋଳ ସେ ଭୋଳାନାଥ କ'ଣ ଜାଣି ପାରଲ କ ମୁଁ ଦେବୀ କ ମାନବୀ ?

—ତତେ କ'ଣ କହିବହିଲେ ଅଲାନ୍ନୁକ୍ଳା··· ?

ବୁଢ଼ୀ ହସି ହସି ନସ୍ତାନ୍ତ ହେଲେ । ଉଠି ବସିଲେ ।

ଝଷ ଘରେ ପଶିଲା । ତା' ମୁହଁରେ ହସର ନଣବଦ ଭଙ୍ଗିମା ଲଖି ରହିଥାଏ । ସେ ଧୀରେ ଧୀରେ ଅରକ୍ଷିତର ମୁଣ୍ଡ ଟେକଲା । ପାତଳ ତକଆଟି ସଜାଡ଼, ବାଗେଇ ରଖି, ପିଲାର ମୁଣ୍ଡ ଥାପିଲା । ଚଦର ସଜାଡ଼ିଲା । ଖଟ ଉପରେ ତା' ପାଖରେ ବସି ଦେହ ଆପଡାଇଲା ।

ତା' ମୁହର ହସିଲାଭାବ ମୁହରେ ମିଳାଇଲା । ଘୋଟିଆସିଲା ଗାମ୍ଭୀର୍ଯ୍ୟ । ଭାବିଲା, ମଣିଷ ତା' ଅଜାଣତରେ ଏମିତ ମନତଳର ଗହନ କଥା କହି ପକାଏ । ନିଜକୁ ସାନ୍ତ୍ୱନା ଦେଲା, ଜେଜେମା କଥାର ମରମ ବୁଝିବେ ନାହିଁ । ସେ ପରହାସ ଘେନଥିବେ ।

ମଣିଷର ସବୁ ବୟସର ଘଟଣାବଳୀର ଅଦେଖା ସୂଅରେ କୁଆଡ଼େ ଉଡ଼ି-ହୋଇଯାଏ । ନୂଆ ବୟସରଣା ଭସିଲା ପତର ଯାବୁଡ଼ି ଧରିବାଯାଏ ମନ ଉବେଇ-ଟୁବେଇ ହୋଇ ଅଣନିଶ୍ୱାସୀ ହୁଏ । ସେହି ଦ୍ୱାଦଶୀ ରାତିରେ ପିଲାର ଦେହରେ ହାତ ଥାପଡ଼ୁଣୁ ଟଙ୍ଗ ଏହା ବୁଝିଲା ।

ରାତି ପହରକ ପରେ ପୁଣି କିଏ ଦାଣ୍ଡକବାଟ ଧଡ଼ଧଡ଼ କଲା । ଡାକ ଶୁଭିଲା ବଡ଼ ପାଟିରେ । ଏଡ଼େ ସାହାସିଆ, ଏଡ଼େ ବାହାପିଆ କିଏ ସେଇଟା ?

ବୁଢ଼ୀ ଆରଘରୁ ପାଟିକରି କହିଲେ, କିଏ ଡାକୁଛି ଲୋ ଟଙ୍ଗ । ଏତେ ରାତିରେ ଅଚ୍ୟୁତ ଆଇଛି କି ? ତା' ଶଶୁର ଘର ଓଗାଳରୁ ଫେରିଲା ? ମଣିକୁଦର ପାଖ ଗାଆଁଟା ତ, କ'ଣ ବୁଝି ଆସିଥିବ···

ଟଙ୍ଗର ହାତ ଅଟକିଲା । କ'ଣ ବୁଝି ଆସିଥିବେ ? ଯେଉଁ ଭାବନା ତା ମନରେ ପଶିଲା, ତା'ର ଗୁଡ ଥରଉଠିଲା । କାନକାନ କୋହର ହାବୁକାରେ ସେ ଖଟଉପରୁ ଡେଇଁ ଦ'ଗୁଣ ଝେପାରେ ବୁଢ଼ୀଙ୍କ ଘରର ଦ୍ୱାରପାଖରେ ପହଞ୍ଚିଲା । କହିଲା, ହେଇ ଲୋ ମା ! ପୁଣି ସେ କବାଟ ଧଡ଼ଧଡ଼ କଲେଣି । ଡାକୁଛନ୍ତି, ଅଡଛିଆ ଡାକ ।

—ହଁ, ଅଚ୍ୟୁତ ହୋଇଥିବ । ସେମିତିଆ କ'ଣ ଖବର ହୋଇଥିବ ମ ! ଭେରଣ୍ଡାଟା ବୋବାଉଥିଲା !

—କି ଖବର ମା !

—ତୋ'ର କି ଥାଏ ? ମୁଁ ଯାଇ ଖୋଲିବି ।

ବୁଢ଼ୀ ଉଠିଲେ । ପିଣ୍ଡାକୁ ଆସି କହିଲେ, ମତେ ଆଲୁଅ ଡେକ ଦଢ଼ାଇ ଦେ । ପିଲାଘର ଅନ୍ଧାର କରନା । ଯେତେହେଲେ ଏକା ରନ୍ତି । ମୋ ଘରର ଆଲୁଅ ଦେ ।

ବୁଢ଼ୀ ପାଟିକରି ଜବାବ ଦେଲେ, ଯାଉଛି ରେ ପୁଅ, ଏମିତି ଉଚ୍ଛନ୍ନ ହେଉଛୁ କାହିଁକି ?

ଟଙ୍ଗ ଥରିଲା ହାତରେ ଅଗଣାକୁ ଓହ୍ଲାଇଥିବା ତା'ର ଜେଜେମା'ଙ୍କ ଲଣ୍ଠନ ଧରାଇ ଦେଲା । ମନର ପ୍ରଶ୍ନ ତୁଣ୍ଡରୁ ବାହାରିଲା ନାହିଁ ।

ବୁଢ଼ୀ ଆଗେଇ ଯାଉଣୁ ଟଙ୍ଗାକୁ କହିଲେ, ପିଲା ପାଖକୁ ଯାଉନୁ ? ନିଜକୁ କହି କହିକା ଚାଲିଲେ, କରମଗୁଣରୁ ଏତେ ଦୁଃଖ ଓ ଯାତନା ତୁ ଭୋଗିଲୁରେ ଚଣ୍ଡାଳ, ଶେଷକୁ ଛଟପଟ କଲବଲ ହୋଇ ଗଲୁ ? ଆମର କି ଥାଏ ?

ଟଙ୍ଗ ଖଟକୁ ଆଉଜି ଠିଆ ହୋଇଥିଲା । ଜଣେଇଁ ଶୋଇଲା ପିଲାର କାନ୍ଧ ଉପରେ ହାତଟିଏ ଥାପି ଫଦାକୁ ଚାହିଁଲା । ଆଖିରେ ଅମାନିଆଁ ଲୁହ ଭରିଉଥାଏ ।

ପୁଅ ଉଦ୍ଦେଶ୍ୟରେ ମନେ ମନେ ସେ କହୁଥାଏ, ଅତ୍ୟୁତମଉସା ଯଦି ସେହି ଅଶୁଭଖବର ନେଇ ଆସିଥିବେ ରେ ଧନ ଆଉ ତୁ ମୋ' ବାପର ମୁହଁ ଦେଖିବୁ ନାହିଁ । ସମସ୍ତେ କହିବେ, ଆହା ଅରକ୍ଷିତନି ବାପଛେଉଣ୍ଡ । ମୋ' ଆଡ଼କୁ ଆଙ୍ଗୁଠି ଦେଖାଇ କହିବେ··· ।

ଝଗ୍ର ମନରେ ବ ସେ ଅଶୁଭ ଅସମ ଶବଦ ଉଚାର ପାଶଲ ନାହିଁ । ତା'ର ଆଖିରୁ ଲେତକ ଗଡ଼ି ଆସିଲ

ଦାଣ୍ଡ କବାଟ ଧଡ଼ଧାଡ଼୍ ହୋଇ ଖୋଲଲ । କଏ ଜଣେ ଗରଜ ଉଠିଲ, 'ଏତେ ଡ଼ାକଲାଠଉଁ ବ କେହି କବାଟ ଖୋଲୁ ନ ? ସଞ୍ଜ ପହରଟା, ସମସ୍ତେ ଶୋଇପଡ଼ଲ ?'

ବୁଢ଼ୀ ଚତ୍କାର କଶଉଠିଲେ, ମୋ ଧନରେ, ମୋ ବାଇଆରେ, କେମିତ ଜାଣନ୍ତ ତୁ ମୋ ଜୀବନ ଆଇଚ୍ଛୁ ? ତୋ' ଫେରନ୍ତା ମୁହଁ ଦେଖିବ ବୋଲ ମୁଁ ବଞ୍ଚି ରହିଛୁ, ମୋ' ବାଇଆ ମାଳରେ—

ବୁଢ଼ୀ ବାହୁନବାକୁ ଆରମ୍ଭ କଲେ ।

ଝଗ୍ର ତରତର ହୋଇ ଆଖିରୁ ଲୁହ ପୋଛିଲ । ଗୋଟାଏ ଯୁଗରୁ ଅଧିକ ବଢଲଣି, ସେ ତା' ବାପଙ୍କର ସ୍ୱର ଶୁଣି ନଥିଲ । ସ୍ୱର ବଦଳ ଯାଇଛୁ । ଧାଇଁ ଯାଇ ତାଙ୍କର ପାଦ ଧଶ ଜୁହାର କଶବାକୁ ସେ ଘରୁ ବାହାରିଲ । ପିଣ୍ଡାକୁ ଆସୁଣୁ ସେ ଦେଖିଲ, ଜଣେ ବଳଷ୍ଠ ପୁରୁଷ, ମୁଣ୍ଡ ଲମ୍ବା, ଧୋବ ଲୁଗା ପିନ୍ଧ, ଦେହରେ ଖଇରରଙ୍ଗର ହାତକଟା ଜାମା ଗଳାଇ, ପଦାରୁ ଦାଣ୍ଡଘର ଭିତରକୁ ପଶି-ଆସୁଛନ୍ତ । ଦୁଇ ହାତରେ ଦୁଇଟି କନାର ବ୍ୟାଗ, ତାହା ଭରପୂର ହୋଇ ଫୁଲି-ଉଠିଛୁ ।

ଝଗ୍ରର ଜେଜେମା, ଅବୁଝା ଶବଦଗୁଡ଼ିଏ ଧୀରେ କହି କାହ୍ନକୁ ଆଉଜ ବାହୁନୁଛନ୍ତ । ତା' ବାପା କହିଲେ, କାହିଁକ ସକେଇ ହେଉଛ୍ଛ ? ତୋ' ଲେଖାରେ ମୁଁ ମରଛୁ । ଆଲୋ, ଆସି ନ ଥାନ୍ତ ସେ ବାଘ ଘରେ ତୋ'ର ପାଇଁ ମିଶଗ ନାଚଲ ବୋଲ ଶୁଣି ମୁଁ ଧାଇଁ ଆସିଲ ।

ବାହୁନା ଅମାଇଁ ବୁଢ଼ୀ ପଗ୍ଭରଲେ, ମୁଁ କ'ଣ କଲରେ ପୁଅ ? ତୁ ଫେରଲେ ତୋ' ଘର, ତୋ ଝିଅ, ତୋ ନାତକୁ ତତେ ସମର୍ପି ଦେଇ ମଶାଣିକୁ ଯିବାକୁ ମୁଁ ଗୋଡ଼ଟେକ ବସିଛୁ । ସବୁ ତୋର ଯେମିତ ଥିଲ ସେମିତ ରହିଛୁ । କଛ ଖିନଖରାପ ହୋଇ ନାହିଁ । ମୁଁ ଯଦି ତୋର ଅଡ଼ୁଆ ହେଉଛୁ ରେ ପୁଅ, ମତେ ଜୀଅନ୍ତା ବୋହାଶ ନେଇ ମଶାଣିରେ ଫୋପାଡ଼ ଦେଇଆ । ତତେ ଜନମ କଶଛୁଟି, ମତେ କଦାପି ଖାଆନା । କୋଉ ମିଶଗ ତୋ ଘରେ ନଗ୍ଭଇଲ ରେ ?

—ଘରର ଘରଣୀ ନାଚ୍ଚିଶି ଗଲା କୁଆଡ଼େ ?

ପ୍ରଶ୍ନ ପଚ୍ଚାର ବୁଢ଼ୀଙ୍କର ଉତ୍ତରକୁ ଅପେକ୍ଷା ନକରି କାର୍ତ୍ତିକ ଦାଣ୍ଡ କବାଟ ବନ୍ଦ କଲେ । ବ୍ୟାଗ ଦୁଇଟି ଉଠାଇ ସେ ଅଗଣାକୁ ଆସିଲେ ।

ଘର ଭିତରେ ଟୁଣ୍ଡି ବରଡ଼ାପତ୍ର ପରି ଥରୁଥିଲା । ଯେଉଁ ବାପକୁ ସେ ଧୀର-ସ୍ଥିର, ଦୟାର ଅବତାର, ନରମା ଲୋକ ରୂପେ ଦେଖି ଯାଇଥିଲା ସେ ଏପରି ହୁଡ଼ମା ପ୍ରକୃତି ପାଇଲେ କେଉଁଠୁ ? କେବଠୁଁ ? ଯିଏ ଏତେ ବତ୍ସଳ ଥିଲେ ସେ ହେଲେ ଏତେ ନିଷ୍ଠୁର ? କ'ଣ କରିବ ସେ ସ୍ଥିରକରି ପାରିଲା ନାହିଁ ।

ବୁଢ଼ୀ ଆଲୁଅ ଧରି ଅଗଣାକୁ ଆସିଲେ । ଘରେ ପାଦ ଦେଉଣୁ ନ ଦେଉଣୁ ପୁଅର ବଣମୂର୍ତ୍ତି ଦେଖି ସେ ଗ୍ଲାନଆଁ ହୋଇଥିଲେ । ସବୁ ଭୟ, ଦୁଃଖ, ଅଭିମାନକୁ ଧୈର୍ଯ୍ୟଧରି ଚୋକ ଡାକ ଛାଡ଼ିଲେ, ଆଲୋ ଟୁଣ୍ଡି, ତୋ' ବାପ ପରା ଆସିଛନ୍ତି । ପୁଅ ତୋ'ର ଶୋଇଲାଣି କି ? ଆସୁନୁ ?

ଅଗଣାରେ ଠିଆ ହୋଇ କାର୍ତ୍ତିକ ଘରଆଡ଼କୁ ଚାହୁଁଥିଲେ ।

ଜେଜେମା'ଙ୍କ ନିର୍ଦ୍ଦେଶରେ ମନରେ ସାହସ ବାନ୍ଧି ଟୁଣ୍ଡି ଧାରୁ ବାହାରିଲା । ଅଗଣାକୁ ଯାଇ ତଳେ ମୁଣ୍ଡ ଲଗାଇ ଓଲଗି ହେଲା । ଧୈର୍ଯ୍ୟର ବନ୍ଧ ଭାଙ୍ଗି ଗୁଡ଼ ତଳର କୋହ ହାବୁକାଇ ଆସିଲା । ସେ କଇଁ କଇଁ ହୋଇ କାନ୍ଦ ଉଠିଲା ।

କାର୍ତ୍ତିକ ତାଆର ଆଡ଼କୁ ଚାହିଁ ରହିଲେ । ଉଠ ବୋଲି କହିଲେ ନାହିଁ । ସାନ୍ତ୍ୱନା ଦେଲେ ନାହିଁ ।

ବୁଢ଼ୀ କହିଲେ, ଆଲୋ, ଶଳେଇ ହେଉଛୁ କ'ଣ ? ଉଠ୍ । ପୁଅ ମୋ'ର ଧାଇଁ ଧାଇଁ ଆସିଛି । ପାଣି ନୋଟାଏ ଦେ । ସେ କ'ଣ ଖାଇବ, ଯା ଆଗ ଠିକଣା କର । ତୋ' ବାପ ଆସିଲାଣି । ମୋ ଦାୟିତ୍ୱ ସରିଲା । ମୋ' ପାଇଟି ତୁଟିଲା ।

ଟୁଣ୍ଡି ଉଠି ଠିଆ ହେଲା ।

କାର୍ତ୍ତିକ ଏକା ଆଖିରେ ଝିଅକୁ ଚାହିଁ ରହିଲେ । ଯେଉଁ ଧଡ଼ିଆ ଧେଙ୍ଗ ପନ୍ଦର ବର୍ଷର ଶୁଖୁଟୀ ଝିଅକୁ ସେ ପରଘରକୁ ପଠାଇଥିଲେ. ଜାଣି ଭିକାରୁଣୀ ବେଶରେ, ସେଇ ଟୁଣ୍ଡି ତ ସେ ନୁହେଁ ! ହୃଷ୍ଟପୁଷ୍ଟ ଯୁବତୀ ଝିଅ । କି ସୁନ୍ଦର ରୂପ । ଘାଜଜେମା ପରି ଦିଶୁଛି । ହାତରେ, ବେକରେ, କାନରେ, ସୁନାଗହଣା ଝଟକୁଛି । ହଁ, ମୁହଁରେ ସେକାଳ ଟୁଣ୍ଡିର ଛିଟିକା ବାରିହେଉଛି । ନାକ, ଆଖି, ଭ୍ରୂଲତା, କପାଳ, ଓଠ ଏକାପରିକା ଦିଶୁଛି ।

କାର୍ତ୍ତିକଙ୍କର ରୁକ୍ଷ-ମୁହଁର ଚେଜ ବଦଳି ଶାନ୍ତ, କୋମଳ ହେଲା । ସେହି ମୁହଁରେ ଉଲ୍ଲାସର ଆଭା ଉକୁଟିଲା । ଆଖିରେ ଦ' ବିନ୍ଦୁ ଲୁହ ଝଲସିଲା ।

ଟୁଣ୍ଡି ଦେଖିଲା, ଟୁଣ୍ଡି ବୁଝିଲା, ତା' ବାପର ପଥର ଗୁଡ଼ ତରଳିଛି । ସେଥିରୁ ତା' ପାଇଁ ସ୍ନେହ ଓ କରୁଣାର ଶୀତଳ ଝରଣା ବହି ଆସୁଛି । ସେହି ପବିତ୍ର ଝରଣା ତା'ର ଦୁଃଖ ଓ ଗ୍ଲାନିକୁ ଧୋଇ ଦେବାକୁ ତାକୁ ଡାକୁଛି, ନିମନ୍ତ୍ରଣ କରୁଛି ।

ସେହି ଅଚଳ ମୂର୍ତ୍ତିର ମୁହଁ ଖୋଲିଲା, ହଁ ତୁଇ ମୋ'ର ଝିଅ ! ଦୁଇଟି ମୂରତ ଦୁଇଟି ରୂପ ମୋ'ର ମନେ ପଡ଼ୁଚି । କଣେକ କୋଳରେ ଆଉ ଜଣେ । ଏକା ପରକା ଦଉଟି ମୁହଁ । କୋଳରେ ବସାଇ ଯିଏ ଝୁଲହାଣ୍ଡି କରୁଥିଲା ସେ ନାହିଁ, ସେ ହଜି ଯାଇଛି । ଯିଏ ବସି ଝୁଲହାଣ୍ଡି ହେଉଥିଲା, କଣ କଣ ହସୁଥିଲା, ସେଇ ତ ତୁଇ ଟୋକି, ମୋ'ର ଦୁଃଖପାସୋରା ଟୋକି ! ଟିକିଏ ବଡ଼ ହେଇଛୁ, ନା ?

ସେହି ମୂର୍ତ୍ତିର ହାତଦୁଇଟି ଟେକ ହୋଇଗଲା । ଖୋଲିଗଲା । ଜୋଛନା ଧୂଆ ଶୀତଳ ଆଗଣାରେ, ବୃନ୍ଦାବତୀଙ୍କର ଚଉରା ଆଗରେ, ନଳଭୁଲ ଟୋକି ତା' ବାପର ଗୁଡ଼ ଉପରେ ମୁଣ୍ଡଟି ରଖି ଦୁଇହାତରେ ତାଙ୍କୁ ବେଢ଼ାଇ ଧରିଲା । କଇଁ କଇଁ ହୋଇ କାନ୍ଦଉଠିଲା ।

କାର୍ତ୍ତିକ ତା'ର ମୁଣ୍ଡ ସାଉଁଳିଲେ ।

ସେହି ଅଗଣାରେ ବସି, ମୁଣ୍ଡରେ ହାତ ନନ୍ଦି, ଅଧ ଖୁସିରେ ବୁଢ଼ୀ ବାହୁନି ଉଠିଲେ, ହାଁ ମୋ ରଙ୍ଗିଣୀ-ସୁଣୀ, ସୁକିଗଲୁ ହେଇ ଅନ୍ଧଅସୁଣୀ, ମୋ ରଙ୍ଗିଣୀ ସୁଣୀ । ସେ ପୁରରେ ଥାଇ ପକା ସୁହାଣୀ, ମୋ'···

ଅରକ୍ଷିତ ଘର ଭିତରୁ କାନ୍ଦ ଉଠିଲା । ବୁଢ଼ୀଙ୍କର କାନ୍ଦଣା ବନ୍ଦ ହୋଇଗଲା । ସେ ଧଡ଼ପଡ଼ ହୋଇ ଉଠିଲେ । କହିଲେ, ସେ ଛତରୁଣ୍ଠା ଉଠିଲାଣି ଲୋ ଟୋକି । ଡରିବ । ମୁଁ ତୋ' ପୁଅ କଡକୁ ଯାଉଛି । ଆଲୋ, ମୋ ପୁଅ ଧାଇଁଧାଇଁ ଆଇଛି । ତା' ଖବର ଆଗ ବୁଝ । ସେଇଠୁ ମନ ଇଚ୍ଛା ଗେଲ ହେଉଥିବୁ । ଶଦେଇବା ବେଳ କଟିଗଲାଣି ଲୋ ମା !

ବୁଢ଼ୀ ଘର ଭିତରକୁ ପଶିଲେ । ···

କାର୍ତ୍ତିକ ଶାନ୍ତ ହୋଇଥିଲେ । କହିଲେ, ପଞ୍ଚ ଆଗରୁ ଗାଆଁରେ ପହଞ୍ଚିଲିଣି ! ଚହ୍ନା ଲୋକେ, ଆପଣାର ଲୋକେ, ଏମିତକି ସେହି ଶିମୂଳୀତଳ କଥାର ପାଇଁ ଯେଉଁମାନଙ୍କୁ ପାହାର ପିଟିଥିଲି, ଯେଉଁମାନେ ମତେ ପିଟି ପିଟି ବେହୋସ କରିଥିଲେ, ତାଙ୍କ ଭିତରୁ କାହାର କାହାର ସଙ୍ଗେ ମୋ'ର ଦେଖା ହେଲା । ସମସ୍ତେ ଗତକଥା ଭୁଲିଗଲେଣି । ମୁଁ ଭୁଲିନାହିଁ ଯେ, ହେଲେ ହିଂସାବାଦ କରି ସେମାନଙ୍କର ଶତ୍ରୁ ହେବାକୁ ଚାହୁଁନାହିଁ । ସେମାନଙ୍କୁ ଶତ୍ରୁ କଲେ ନିଜ ରକ୍ଷଣ ଅସମ୍ଭବ ହେବ । ତେଣୁ, ଯିଏ ଡାକିଲା ବାଟେଭାଙ୍ଗି ଗଲି । ସେମାନେ ମୋ ଦୁଃଖ ଶୁଣିଲେ । ଗାଆଁର ଭଲମନ୍ଦ ହାଲଚାଲ ଗପିଲେ । ସ୍ନେହରେ ଯାହା ଯିଏ ଦେଲା ମୁଁ ଖାଇଛି । ଖାଇବାକୁ ମୋ'ର ଆଉ ଇଚ୍ଛା ନାହିଁ ।

ଟେଙ୍ଗି କହିଲା, ଆମ ଗାଈର ନରୁଡା କ୍ଷୀର ଆଉଟି ରଖିଛି । ସେଥିରୁ ଗିଲାସେ ପିଇବ ନାହିଁ ?

—ହେଉ, ଅଧଗିଲାସେ ପିଇବି । ସମ୍ପର୍କେ ବସ୍ତିଇ ଦେଲେ ମୁଁ ଏଇ ପିଣ୍ଡାରେ ଟିକିଏ ବସିବି । ସେହି ଲୋକମାନେ ଯାହାସବୁ କହିଲେ ନା, ମୋ ମୁଣ୍ଡ ଗରମ ହୋଇ ଯାଇଛି । ତୋ'ର ଭାବିବାର କିଛି ନାହିଁ । ମୁଁ ବୋହୂକୁ ପଚାରି ବୁଝିବି, ଆଗ ତୋ' ପୁଅକୁ ଆଣ । ମୁଁ ଦେଖେଁ । କେତେଟିଏ ହେଲାଣି ?

ଟେଙ୍ଗି ଶୁଣିଲା, ତା'ର କେଜେମା ପିଲାକୁ ଚୁମାକରି ସାରିଲେଣି । ତା' ସଙ୍ଗେ କ'ଣ କଥାଭାଷା ହେଉଛନ୍ତି । ତା'କୁ ବୁଝାଶୁଝା କରି ବଳେ ଆଣି ତା' ବାପାଙ୍କ ପାଖରେ ଠିଆ କରିବେ ।

ଟେଙ୍ଗି ମସିଣା ଆଣି ପିଣ୍ଡାରେ ପାରିଲା । କେତେ କାଳର ପୁରୁଣା ତକିଆଟିଏ ଯାହାକୁ ଧୋବ କନାର ଖୋଳରେ ଭରିଥିଲା, ତା'କୁ ଆଣି ଗୋଟିଏ ପାଖରେ ରଖିଲା । କହିଲା, ଅରକ୍ଷିତକୁ ଶିବଚତୁର୍ଦ୍ଦଶୀ ଦିନ ତିରିଶବର୍ଷ ପୂରିଲା ବାପା ! ହତଭାଗାଟା, ଆଜଯାଏ ତା' ବାପର ମୁହଁ ଦେଖିଲା ନାହିଁ । ମଦ ଗଞ୍ଜେଇ ପିଲାଦିନରୁ ଖାଏ ତମର ସେ ଜୋଇଁ । ବାହାଗଣ୍ଠିରୁ ହାତ ଚଲେଇଗଲା ମୋ' ଉପରେ ।

ଶାଶୁ ଶଶୁର, ଆହା, ସେମାନେ ସ୍ୱର୍ଗରେ ରହିଲେଣି, ତାଙ୍କୁ ନିନ୍ଦିବ ନାହିଁ । ମତେ ଝିଅଠୁ ବଳି ଭଲପାଉଥିଲେ । ତାଙ୍କ ପୁଅଟା ଯେ ଛତର ସେମାନେ ମୂଳରୁ ଜାଣିଥିଲେ । ଗୋଟିଏ ବୋଲିତ ପୁଅ । ସେମାନେ ବା କଅଣ କରନ୍ତେ ? ସେଇ ପୁଅର ମାଡ଼ ଅତ୍ୟାଚାରରେ ଦ'ଟା ଛୁଆ ପେଟରେ ମଲେ—

—ଆ ହା ହା !

ଟେଙ୍ଗି ମୁଁ-ମୁଁ ହୋଇ କାନ୍ଦିଲା ।

ଟେଙ୍ଗି ଆଖିରୁ ଲୁହ ପୋଛିଲା । କୋହ ଢୋକି କହିଲା, ସେହି ଦୁଃଖ ମନରେ ପୁରାଇ ଠାକୁର ଠାକୁରାଣୀ ପରିକା ମୋ ଶଶୁର ଶାଶୁ ଡକାଡକି ହୋଇ ସେ ପୁରକୁ ଚାଲିଗଲେ ବସନ୍ତ ରୋଗରେ । ତାଙ୍କ ଗାଆଁରୁ କେତେ ପୁରୁଷ, ସ୍ତ୍ରୀ, ପିଲା-ଛୁଆ ମରିଗଲେ ବାପା ! ଦଇବ ମତେ ଖାଲି ନିନ୍ଦାଅପମାନ ସହାଇବାକୁ, ମାଡ଼ ଖୋଇବାକୁ ବଞ୍ଚାଇ ରଖିଲା ।

—ନିନ୍ଦା ଅପମାନ ?

—ହଁ, ବାପା । ସେ ଗାଆଁରେ ଜଣେ ପଣ୍ଡିମାବାବାଜୀ ମଠ ବସାଇଥିଲେ । ନିଜକୁ ଶିବଶଙ୍କର ବୋଲି ତାଙ୍କ ଚେଲାଙ୍କ ଆଗରେ କହି ପ୍ରଚାର କରାଉଥିଲେ ।

—ଜାଣିଥିଲି ମା, ତାଙ୍କର ଅଲୌକିକ ଗୁଣ ଥିଲା ବୋଲି ଖଣ୍ଡମଣ୍ଡଳରେ ଡକା ପଡ଼ିଥିଲା । ତାଙ୍କ ଦର୍ଶନ ପାଇଁ, ପୁଣି କ'ଣ ମାନସିକ କରିବାକୁ, ତୋ' ବୋଉ ନାଟୁସି ମୋ ସଙ୍ଗେ ଲଗାଇଥିଲା । ନେବି ନେବି ହୋଇ ନେଇପାରି ନଥିଲି ।

—ବାପା, ସେ ସାହା ପଛେ ହେଉନ୍ତୁ, ତାଙ୍କ ଭଗତମାନଙ୍କୁ ମଦ ଓ ଗଞ୍ଜେଇ ଖୋଉଥିଲେ । ନାନା ଉପାୟରେ ଟଙ୍କାପୂନା ସେମାନଙ୍କଠାରୁ ଓଟାଣ ନେଉଥିଲେ । ତମ ଯୋଗୁଁ ତାଙ୍କର ପାଲରେ ପଡ଼ି ସବୁ ସାରିଲି । ଚରିଢ ଗଲା, ଭୂଇଁବାଡ଼ି ସବୁ ଦଳାଛଦା, ବିକି ବଟା କରି ଖାନଙ୍କୁ ଦେଲି । ମୋ' ନାମରେ କଳଙ୍କ ବୋଲି ଧନ୍ଦା ରଟାଇଲି, ତା' ବାବାଜୀ ଶିଷ୍ୟରେ ଯେ ମୋ ଭିତରେ କୁଆଡ଼େ ଜନ୍ମରୁ ଲୁମଣ୍ଡା ଟାଏ ଥିଲି । ସେଇ ସମସ୍ତଙ୍କୁ ଖାଇ ଦଉଚି ।

– କେମନ୍ତ ?

—ହଁ, ବାପା ' ସେଇ ନିନ୍ଦା ସେ ବାବାଜୀ ରଟାଇଲା । ତା' ଚେଲାମାନେ, ସେ ନିଜେ ପ୍ରଚାର କରାଇଲେ । ଘରେ ମାଟି କାମୁଡ଼ି ମୋ' ଶାଶୁଶଶୁରଙ୍କ ସ୍ନେହକୁ ସୁମରି ମୁଁ ଏକୁଟିଆ ପଡ଼ିଥାଏ । ମଦଖାଇ, ଗଞ୍ଜେଇ ଟାଣି ଯେବେ ସେ ଘାଢଅଧରେ ଅବା ଆଖୁର ଭିତରେ ଫେରେ, ମତେ ନିସ୍ତକ ଛେଚେ । କିଏ ସେଠି ମୋର ଅଛି ଯେ ମୋ ପଟିରେ ପଡ଼ିବ ?

—ଆହା ! ମୋ ପାଖକୁ ଖବର ପଠାଇଲୁ ନାହିଁ ? ନାଟୁଆ-ବୋଉ ତୋ'ର ଶୁଣିଥିଲେ ନିଜେ ଧାଇଁ ଯାଇଥାନ୍ତା । ସେ ମଦୁଆ ଛତରା ଟୋକାକୁ ଏମିତ ସାଧ କରିଥାନ୍ତା, ଭୂ ଦଳେ ବୁଝିଥାନ୍ତୁ । ସେ ବାବାଜୀଙ୍କୁ ଟିକିଏ ଦେଖି, ତା' ଗୁଣ ପରଖି ଲୁହା ଜାଣି ପାଣି ଦେଇଥାନ୍ତା ।

—ବାପା, ମୋ ଭଗ୍ୟ ମୁଁ ଭୁଞ୍ଜୁଥିଲି । ଗୋଟାଏ ଛତରା ହାତରେ ସେଇ ଭଗ୍ୟ ମୋତେ ଛନ୍ଦିଥିଲା । ନ ବୁଝି ନ ଜାଣି ବଡ଼ଘରର ବୋହୂ ହେବାକୁ ରଜା-ପୁଅ ପରି ପିଲା ହାତରେ ମତେ ଟେକ ଦେଲ ତ ! କାହିଁକି ତମମାନଙ୍କୁ ଦହଗଞ୍ଜ କରନ୍ତି ? ସହି ନ ପାରିଲେ ବରଂ ଜୀବନ ହାରିଥାନ୍ତି—

– ସେମିତ କହନା ମା ! ତୋ'ର ଜାଗ ଉଢଆଣି ବୟସ ପାର ହୋଇ ନ ଥିଲା । ଭଲମନ୍ଦ ବିଗ୍ଚର ତୋ' ମନକୁ ଛୁଅନ୍ତା ନାହିଁ । ସେଇ ବୟସଟା ସେମିତକା । ସ୍ନେହଶରଧାରେ ବଶ ହୁଏ । ଟିକିଏ ଆଦର, ଧାପେ ଲୋକଦେଖାଣ, ଯତନ, ଆହ୍ଲାଦ ପାଇଲେ ସେ ବୟସ ଅନ୍ଧ ହୁଏ, ନିଆଁକୁ ଡରେ । ଶାସନ ମାନେ ନାହିଁ ।

—ଜୀବନ ତ ନିଷ୍ଟେ ହାରି ଦେଇଥାନ୍ତି ଲେ ବାପା, ମୋ ସଙ୍ଗେ ଏଇ ଅରକ୍ଷିତଟା, ପେଟ ଭିତରେ ଡନ ମାସର ଛୁଆ ବି ମରିଥାନ୍ତା । ସେ ସୁଣ୍ଡାଳ ଜାଣିଲା । ତଥାପି, ମାରି ମାରି ମତେ ଗଇଆଁ କରୁଥିଲା । ଏଇ ପିଲାର ମୁହଁ ଦେଖିବ ବୋଲି ମାଟିକାମୁଡ଼ି ଝଣ୍ଟିଆ ଖାଦ୍ୟ ହୋଇ ପଡ଼ିଥିଲି । ଭାବୁଥିଲି, କେଜାଣି ପୁଅ କି ଝିଅର ମୁହଁ ଦେଖିଲେ ତମର ମଦୁଆ ଜୋଇଁର ମନ ଡଟିବ !

ଟଗ୍ ଆଖି ପୋଛିଲା ।

କାର୍ତ୍ତିକ କହିଲେ, ଟେଶ୍ର ଲୋ, ତୋ' ଦୁଃଖ କଷ୍ଟ ପାଇଁ ତୁ ମତେ ଦାୟୀ କରବୁ ନାହିଁ । ତୋ' ବୋଉ ନାଟୁସ୍ତାକୁ ବି ଦୋଷିବୁ ନାହିଁ । କୁଳର ମର୍ଯ୍ୟାଦା ରଖିବାକୁ, ନ ଜାଣିଲାର ପିଲ ଝିଅଟା ତୁ, ତତେ ଅପବାଦରୁ ବଞ୍ଚାଇବାକୁ, ତୋ'ର ଭଲ ପାଇଁ ଆମେ ଖୁଣ୍ଟିଆଙ୍କ ହାତକୁ ଟେକ ଦେଇଥିଲୁ । ଖାନ୍‌ଦାନ-ନାଁଡାକ ଘର !

—କାହାକୁ ମୁଁ ଦୋଷୁ ନାହିଁ ବାପା ! ସେଇ ଅଲକ୍ଷଣା ତଙ୍କାତୋଳିଆ ଚୁପ୍‌ସଇତାନ କାଳିଆ ତା ମନ ଖୁସିରେ ଯେମିତି ନଚାଉଛି ସେମିତି ନାଚୁଛି । ମୁଁ କ'ଣ ସେହି ଅଧାପାଗଳିଆ, ହାଡ଼ମାଳିଆ, ତମର ରୋଗଣା ଜୋଇଁଙ୍କ ଗୁଡ଼ି ବାପଘରେ ଶରଣ ପଶିବାକୁ ଆସିଥାନ୍ତି ? ବାପା ଲୋ, ତମେ ମତେ ଦିନକ ପାଇଁ ଆସିବାକୁ ଅଚ୍ୟୁତ ମଉସାଙ୍କ ହାତରେ ଖବର ପଠାଇଥିଲ । କୁଆଡ଼େ ଜେଜେମା କତରାଲଗୀ ହୋଇ ପଡ଼ିଥିଲ । ମତେ ଖୋଜୁଥିଲ । ମତେ ଥରେ ଦେଖିଲେ ସେ ମନ ଖୁସିରେ, ଶାନ୍ତିରେ ମରିଥାନ୍ତା—

—ମୁଁ ଥିଲି କେଉଁଠି ? ମତେ ପୁଲିସ ବାନ୍ଧି ନେଇଥିଲା । ବେହୋସିଆ ହୋଇ ଡାକ୍ତରଖାନାରେ ମୁଁ ପଡ଼ିଥିଲି । ଅଚ୍ୟୁତ ମିଛ କହିଲା ? ଶଳା—

ଟେଶ୍ର କାକୁସ୍ଥ ହୋଇ ବସି ପଡ଼ିଲା । ତା'ର ବାପାଙ୍କର ପାଦରେ ହାତ ଥାପି ଆକୁଳ ସ୍ୱରରେ ଅଳି କଲା, ନାଇଁ ବାପା, ତାଙ୍କର କିଛି ଦୋଷ ନାହିଁ । ତା'ଙ୍କୁ ଜେଜେମା ଆତୁର ହୋଇ ତମ ଜୋଇଁଙ୍କ ପାଖକୁ ପଠାଇଥିଲା । ତମକୁ ପୋଲିସ ହାତରୁ ଉଦ୍ଧାର ଆଣିବାକୁ ଖବର ନେଇ ଅଚ୍ୟୁତ ମଉସା ଧାଇଁ ଯାଇଥିଲେ । ସତ ଖବର ଦିଅନ୍ତେ କ'ଣ ? ତମ ଜୋଇଁ ମଦଖାଇ ଟଳଟଳକା ଆସି ଯେଉଁ କାଣ୍ଡ କଲେ, ଅଚ୍ୟୁତ ମଉସା ଦେଖି ଗୁମନଆଁ ହେଲେ । ତମ ଜୋଇଁ ମତେ ତ ଛେଚଲେ, ଅଚ୍ୟୁତ ମଉସାଙ୍କ ଉପରକୁ ହାତ ଉଠାଇଲେ । ଯେଉଁ ଅସଭ୍ୟ ଗାଳି ତୁଣ୍ଡରେ ଧରି ହେବନି ।

—କେମିନ୍ତ ! ଅଚ୍ୟୁତ ତା'ର ବେକ ମୋଡ଼ିଦେଲା ନାହିଁ ? ତା' ସାମନାରେ ତତେ ସେ ଛେଚିଲା, ବଦମାସ୍ ?

—ମୋର ଦେହସହା ହୋଇଥିଲା ବାପା ! କିନ୍ତୁ ସେ ଯେତେବେଳେ ମାଉସାଙ୍କ ଉପରକୁ ହାତ ଟେକିଲା, ତମର ରକତ ମୋ ଦେହରେ ଅଛି, ମୁଁ ବାଘର ଛୁଆ—

—ହୁଁ ! ବେକରୁ ଧରି ସେ କୁକୁରକୁ ଝୁଣି ଦେଲୁ ନାହିଁ ?

—ବାପା ଲୋ, ମୋ' ବାପା !

କାର୍ତ୍ତିକଙ୍କର ଗୋଡ଼ରେ ମୁଣ୍ଡଥାପି ପୁଣି ଟେଶ୍ର କହିଁ କହିଁ ହୋଇ କାନ୍ଦି ଉଠିଲା । ଆଖିର ଲୁହରେ ତାଙ୍କର ପାଦ ଧୋଇଲା । ଘର ଭିତରେ ବୁଢ଼ୀଙ୍କ କାଖରେ ଥାଇ ଅରକ୍ଷିତ ନୂଆ ମଣିଷ ତା'ର ଜେଜେଙ୍କୁ ଚୁହିଁ ତୁନି ହୋଇ କ'ଣ

ଦେଖୁଥିଲା । ତା' ବୋଉର କାନ୍ଦଣା ଦେଖି ସେ 'ଭେ-କରି' ରଡ଼ି ଛାଡ଼ିଲା । ମୁହଁ ବୁଢ଼ୀଙ୍କର ପିଠି ଆଡ଼କୁ ବୁଲାଇ ଦେଲା ।

ବୁଢ଼ୀ ବିରକ୍ତ ହୋଇ କହିଲେ, ସେଇ ପୁରୁଣା ପୁରାଣ ଖୋଲି, ନିଜେ କାନ୍ଦିଲୁ, ଛୁଆକୁ କନ୍ଦାଇଲୁ । ତୁନି ହ ଲୋ ଟିକି; ଗଲା କଥା ତ ଗଲାଣି···

ଟିକି ମୁଣ୍ଡ ଟେକିଲା । କୋହ ସମ୍ଭାଳି କହିଲା, ସେ ସିଂହପିଲା ହୋଇ ଜନମ ହୋଇଥିଲା । ତା'ର ବାପା, ଜେଜେମାଙ୍କ ନାମରେ ଶତ୍ରୁ ଶଙ୍କ୍ଷ ଥିଲେ । ଗର୍ଭିଣୀ-ଗାଈ ବାଟ ଛାଡୁଥିଲେ । ନିଜ କର୍ମଦୋଷକୁ ସେ କୁକୁରଆ-ବୁଦ୍ଧି ଧରି ଦରମଲା ହୋଇଥିଲା । ରାଗରେ ତା'କୁ ମୁଁ ଦୁଇ ଚାପଡା ଯୋଗିଲି ବାପା ! ସାତ ଆଠ ବର୍ଷର ତପସ୍ୟା ସେତିକରେ ଚୁଲିକୁ ଫୋପାଡ଼ିଲି । ପାତକୀ ହେଲି···

—ନାହିଁ, ନାହିଁ, ନାହିଁ·····

—ଏହିସବୁ କାଣ୍ଡ ଦେଖି, ଶୁଣି, ନିଜେ ଅନୁଭବ କରି ଅଚ୍ୟୁତମଉସା ଯେଉଁଥିପାଇଁ ଯାଇଥିଲେ, ଜେଜେମା ପଠାଇଥିଲେ, ସେକଥା କହିଲେ ନାହିଁ । କାହିଁକି କହନ୍ତେ ? କ୍ୱାଇଁ ତ ମଦୁଆ, ଦରମରା । ଘରର ସବୁ ଉଡ଼େଇଛି । ଭିଖାରୀ ହୋଇଛି । ତମର ବିପଦବେଳରେ କି ସାହାଯ୍ୟ ସେ କରି ପାରନ୍ତା ? ମୋଟେ ଆସି ନ ଥାନ୍ତା । ମଉସା କଥାକୁ ଛପାଇ ଓଲଟା କହିଲେ । ରାତି ପାହି ନ ଥାଏ, ଉଠି ଚାଲି ଆସିଲେ ।

—ଅଚ୍ୟୁତ କ'ଣ କହିଲା ?

—କହିଲା ପରା, ଜେଜେମାଙ୍କୁ ଦେଖିବା ପାଇଁ ଆସିବାକୁ ତମେ ଖବର ପଠାଇଥିଲ । ତେବେ ବି ମୁଁ ଆସି ନ ଥାନ୍ତି । ଘରୁ ମତେ ସେ ତଡ଼ି ଦେଲା । ପୁଅ ହେଲା ପରେ ଖବର ପଠାଇଲି, ତଥାପି ସେ ଆସିଲା ନାହିଁ । ଅଚ୍ୟୁତମଉସାଙ୍କୁ ତମେ ପଚାରିଲେ ସେ ସବୁ କହିବେ ।

କାର୍ତ୍ତିକ କହିଲେ, ତୋଠାରୁ ତ ଶୁଣିଲି, ସେ ଅଧିକା କ'ଣ କହିବ ? ତୋ' ବୋଉ ନାଟୁଆର ଖବର ପଚାରିବାକୁ ଅଚ୍ୟୁତର ଘରବାଟେ ଆସିଲି । ସେ ତା' ଶଶୁର ଘରକୁ ଯାଇ ଫେରି ନାହିଁ । ଝିଅ ସଙ୍ଗେ ତୋ'ର ସମ୍ପର୍କ ତୁଟି ଯାଇଛି । ତାକୁ ଆଉ ସେ ମଣିକୁଦ ଗାଁକୁ ତୁ ଭୁଲିଯା । ଯେଉଁ ପିଲାଟି ଘରେ ଜନମିଛି, ସେ ଏ ଘରର ଆଉ ଏଇ ଘରର ସମସ୍ତଙ୍କର ଖେଳଣା ହେବ···

ବୁଢ଼ୀ ପିଲାକୁ କାଖେଇ ପଦାକୁ ଆସିଲେ । ଖୁସି ହୋଇ କହିଲେ, ସେଇଆ ସତ । ସେ ତୋ ପାଇଁ ଜନମିଛି । ତୁ ସ୍ୱାକୁ ପାଳିବୁ ! ବଢ଼ାଇ ପଢ଼ାଇ ମଣିଷ କରିବୁ । ଟିକି ଜାଣି ତୋର ଅଭିଆଡ଼ୀ ଝିଅ । ତାକୁ ଦେଖି ଶୁଣି ଆଉ ଗୋଟିଏ ସଂସାରରେ ନେଇ ଥୋଇବୁ । ନେ ସ୍ୱାକୁ କୋଳକୁ । ନିଦ ଭାଙ୍ଗିଲାରୁ କାନ୍ଦିଲା ସିନା, ନୋହିଲେ ସେ ଅଚହ୍ନା ବାରବା ପିଲା ନୁହେଁ ।

କାର୍ତ୍ତିକ କହିଲେ, ମୋ' ମନର କଥା ତୁ କହି ଦେଲୁଣି । ତୁ ଯାହା କହିଲୁ ସେଇଆ କରିବା । ଦେ' ମୋ କୋଳକୁ ।

ବୁଢ଼ୀ ଅରକ୍ଷିତକୁ ତଳେ ଠିଆ କଲେ । କାର୍ତ୍ତିକ ତାକୁ ଚୁହିଁ, ହସ ହସ ହୋଇ ହାତ ବଢ଼ାଇଲେ । ଅରକ୍ଷିତ ପଛେଇ ଗଲା । ବୁଢ଼ୀଙ୍କୁ ଅଉଜିଲା । କାର୍ତ୍ତିକ କହିଲେ, କାହା ମୁହଁ ଆଣିଛି ଜାଣୁ ନ ବୋଉ ?

—ତୋ' ମୁହଁରେ ପୁଅ ! ମତେ କାଲିପରି ଲାଗୁଛି, ତୁ ଏମିତକା ପିଲା ହୋଇଥିଲୁ, ତୋ ବାପାର ଚୁଟିକା ବି ଟିକିଏ ଅଛି । ସେଇ ପୁଣି ଜନମ ହୋଇଛି କି କଣ । କରେ ଅରକ୍ଷିତ, ଯାଉନୁ ତୋ ଅଜାଙ୍କ କୋଳକୁ ।

—ହେଲେ ହୋଇଥିବ । ମତେ ତ ଦିଶୁଛି, ତୋ'ର ସେ ଆଗ ବୋହୂ ରଙ୍ଗଣୀର ମୁହଁ ପରିକା ।

—ହୋଇଥିବରେ ବାପ !

ଟଭି ଘୋଷଘରର ଖୋଲ ଚୂଲି ଜଳାଉଥିଲା ।

କାର୍ତ୍ତିକ ଗୋଟିଏ କନା-ବ୍ୟାଗ୍ ଓଟାଇ ଆଣିଲେ । ତା' ଭିତରୁ କେତୋଟି ଚନ୍ଦନପ୍ରି କାଠକଣ୍ଢେଇ କାଢ଼ି ସପଉପରେ ରଖିଲେ । ଗ୍ଲେଟ ଧୂଡ଼ାରେ ମହାପ୍ରସାଦ । ଠାକୁରଙ୍କର ଦୁଇଟି ଛବି । କହିଲେ, ଆ' ଅରକ୍ଷିତ, ଏ ଖେଲଣା ସବୁ ତୋର, ନେ ।

ଅରକ୍ଷିତ ପାଖକୁ ଆସିଲା । ତା' ହାତରେ ଖେଲଣା ଦେଇ, ତାକୁ କାର୍ତ୍ତିକ କୋଳକୁ ନେଲେ । ତା' ମୁହଁରେ ଚୋକ ଦେଲେ । କହିଲେ, ସବୁ ଦୁଃଖ କଷ୍ଟ ମୋ' ପାସୋର ଗଲା ଲୋ ବୋଉ ! ଏହେ ତ ମୋ'ର ହେଲଣି । ଆଲୋ ବୋଉ, ଆଉ ତରତର ହେବ ନାହିଁ । ଦୁନିଆ ସାକ ମୋ ଟଭି ପାଇଁ ତା'ଲଖି ବର ଧୂଣ୍ଡିବ । ଯେଉଁଠି ତମର ମନ ମାନିବ, ଟଭି ରାଜି ହେବ, ସେଇଠି ମୋ ଝିଅକୁ ଦେବ । ଅନ୍ଧ ଅରେ ବାଡ଼ି ହଜାଏ, ଆଉ ମୋ ବାଡ଼ି ହଜିବ ନାହିଁ ।

ଟଭି କାନେଇଥିଲା । କାଲେ ତାର ଜେଜେମା କ'ଣ କହି ପକାଇବେ ଏଇ ଡରରେ ସେ କ୍ଷୀରଗିଲାସେ ନେଇ ପାଖକୁ ଆସିଲା । ତା'ର ବାପାଙ୍କ ଆଡ଼କୁ ବଢ଼ାଇ କହିଲା, ଅଗ ପିଇ ଦେଉଛି, ଖାଲି ଗପରେ କଣ ପେଟ ପୂରିବ ?

ଟଭି ବୁଢ଼ୀଙ୍କୁ କହିଲା, ବାପା ଗ୍ଳଲି ଗ୍ଳଲି ହାଲିଆ ହୋଇ ଆସିଛନ୍ତି । ରାତି ଅଧିକ ହେଉଛି । ତାଙ୍କ ଶୋଇବାଘର ଖଟଉପରେ ବିଛଣା ପାରି ଦେଇଛି । ମଶାରି ଟାଙ୍ଗି ଦେଇଛି । ସେ ବିଶ୍ରାମ କରନ୍ତୁ । କାଲିସକାଳେ ତୋ ମନଇଚ୍ଛା ଗପିବୁ । ଅମେ ତୋ ପାଖେ ଶୋଇବୁ ।

କ୍ଷୀର ଗିଲାସକ ପିଇ ଗିଲାସଟି ଟଭି ହାତକୁ ବଢ଼ାଇଦେଇ କାର୍ତ୍ତିକ କହିଲେ ନାଇଁ, ମଶା ମୋର କ'ଣ କରିବେ ? ଜେଲରେ ଥିଲାବେଳେ ସେମାନେ ରାତିରେ

ରକ୍ତ ଶୋଷନ୍ତି । ଧନ ବେଲା କେଲ୍ ବଗିଚ୍ଚରେ, ତେଲ ଘଣାରେ, ନୋହିଲେ ଡନ୍ତରେ ଖଟି ଖଟି ରକ୍ତ ପାଣି ଫାଟେ । ହାତ ଗୋଡ଼ ଥକି ଟିକିଏ ଅଟକି ଗଲେ ପିଠିରେ ବେତ ବାଡ଼ି ଗର୍ଜି ଯାଏ । ଚମ ଫାଟି ରକ୍ତ ଝରେ । ମଣା ମୋ'ର କ'ଣ କରିବେ ? ମୋର ଏଇ ଝିଅବାପକୁ କୋଳରେ ଶୁଆଇ ତୁ ସେମିତି ଶୁଅ । ମୁଁ ଏଇ ବାରଣ୍ଡାରେ ଅଣ୍ଡାରେ ଶୋଇ ପଡ଼ିବି । ଖରା, ବର୍ଷା, ଶୀତ ସବୁ ଏ ଦେହରେ ଭେଦିଛି ଲୋ ମା ! ସେମାନେ ସମସ୍ତେ ମୋ'ର ଧାର୍ମ···

—ଏତେ ଦୁଃଖଭୋଗ ତୋ' କପାଳରେ ଥିଲା ରେ ଧନ ।

—କିଏ ଜାଣେ ଲୋ ବୋଉ, ସେ ନବରଙ୍ଗିଆ କାଳିଆ ଆଉ କେତେ ଦୁଃଖ ଦେଇ ନଚାଇବ, ନ ନାଁ ତା'ର ନାଟ ଦେଖା ଯାଇଛି । ବହୁତ ଅନୁସରଣ ତାକୁ କଲି । ଭଗବାନ ରାଏ ଓ କପିଳ କେନାଘଠରି ବେଢ଼ା ଭିତରେ ସବୁ ଖବର ଶୁଣିଲି । କାକୁସ୍ଥ ହୋଇ କାଳିଆକୁ ଗୁହାରି କଲି, ସେ ମତେ ବୁଦ୍ଧି ବତେଇବ । କିଛି ତ କହିଲା ନାହିଁ, ସପନେଇଲା ନାହିଁ । ତା'କୁ ମୁଣ୍ଡିଆ ମାରି ଦୁ-ଦଣ୍ଡ ଉଠି ଚାଲି ଆସିଲି ।

—ଭଲ ବୁଦ୍ଧି ସେ ଦେଲାରେ ପୁଅ, ଘରକୁ ଫେରିଲୁ ।

—ଫେରିଲି ତ । ଭଗବାନ ଆଉ କପିଳ ମତେ ଯାହା କହୁଥିଲେ, ଗାଁ ଲୋକେ ସେଇଆ କହିଲେ । ମୁଁ ଏବେ ବୁଝିଲି ଲୋ ବୋଉ, ଚଇତନିଆ ଆମର କାଳ ହୋଇଛି । ତାକୁ ବିଶ୍ୱାସ କରି ସାଧା କାଗଜରେ ଗୋଟାଏ ଦସ୍ତଖତ ଆଉ ଗୋଟାଏ ଟିପଚିହ୍ନ ଦେଇ ଟଙ୍କା ଶହେଟା ଆଣିଥିଲି । ବିଶ୍ୱାସରେ ସେ ବିଷ ଦେଲା, ମତେ ମଣିଷମାରୁ କରାଇଲା । ବିନା ଦୋଷରେ ନାଟୁଆକୁ ଏ ଘରୁ, ଏ ଗାଆଁରୁ ତଡ଼େଇଲା । ପୁଣି ମସୁଧା କରିଛି, ତା' ଖରସା ତୁଣ୍ଡରେ କୁହାଇ ରଟାଇଛି —

କଥା ଶେଷ ନ କରି କାର୍ତ୍ତିକ ଟଭାକୁ କଣେଇ ଚାହିଁଲେ । ଟଭାର ହୃତ୍କମ୍ପ ହେଲା । ସେ ବାଆଁରେଇ ହୋଇ କିଛି ନ ଜାଣିଲା ପରି ଅରକ୍ଷିତର ଡେଣାଧରି ଶୂନ୍ୟେ ଶୂନ୍ୟେ ଗୁଡ଼ ଉପରକୁ ଉଠାଇ ନେଲା । ଥରିଲା ସ୍ୱରରେ କହିଲା, ଆ, କ୍ଷୀର ପିଇ ଶୋଇବୁ । ସକାଳୁ ଉଠି ଅଜାଙ୍କ ସଙ୍ଗେ ମନଇଚ୍ଛା ଖେଳୁଥିବୁ । ସେ ମୋ ବାପା । ଜେଜେମା କହୁଛନ୍ତି ତୁ କୁଆଡ଼େ ତୋ' ଅଜାଙ୍କ ବାପା । ଆଜିଠାରୁ ତୁ ମୋ ଜେଜେ ହେଲୁ ।

ଟଭା ଅରକ୍ଷିତକୁ ନେଇ ଶେଯଘରେ ପଶିଲା ।

କାର୍ତ୍ତିକ ଗୋଡ଼ ଲମ୍ବାଇ ଶୋଇଲେ । ତକିଆକୁ ମୁଣ୍ଡ ତଳେ ସଜାଡ଼ି ଦେଲେ । ହାତ ଗୋଡ ନାଠି, ହାଇ ମାରି, ଅଳସ ଭାଙ୍ଗିଲେ । ଟଭିର ଜେଜେମା ତାଙ୍କର ଗୋଡ ପାଖରେ ବସି ଗୋଡ଼ ଆଉଁସିବାକୁ ଲାଗିଲେ ।

କାର୍ତ୍ତିକ କହିଲେ, ଆଉ ଲୋ ବୋଉ, ମତେ ସଲସଲ ଲାଗୁଛି । ଜେଲ୍‌ର ଜୀବନମୂର୍ଚ୍ଛା । କାମ, ତା' ଉପରେ ଟିକିଏ ହେଲା ହେଲେ ନୋଳାଫଟା ପାହାର, ଗୋଡ଼ ଧ'ଟାକୁ ପଥର କଟନ୍ତି । ଗୋଡ ଘଷା, ଗୋଡ଼ ଆଉଁସା ଅଭ୍ୟାସ ଭାଙ୍ଗିଛି । ବନ୍ଧୁଆଘରୁ ନର୍କଯନ୍ତ୍ରଣା ଭୋଗିଲି । କାହା ପାଇଁ, ତୁ ଟିକିଏ ବିଚାର କର ।

—କପାଳ ରେ ପୁଅ । କେଉଁ ଜନମରେ ତୁ କି ଅପରାଧ କରିଥିଲୁ, ଏ ଜନମରେ ଜାଲିଆ ମେଇ କଷ୍ଟ ଭୋଗେଇଲି । ଦେଖୁନୁ ମତେ ? ମୋର ପୂରୁବ ଜନମର ପାପର ଫଳ ଭୋଗେଇବା ପାଇଁ ମତେ ଆଜଯାଏ ବଞ୍ଚେଇ ରଖିଛି । ପୁଣ୍ୟବାନ ଲୋକ ତୋ'ର ବାପା ଥିଲେ । ମୋ' ସୁନାକଣ୍ଢେଇ ବୋହୂ ରଙ୍ଗିଣୀ ବି ଥିଲା । ···

—ମୁଁ ମାନୁଛି । ଯାହା ତ କରିବାର କଲା ସେ ଚଇତନ, ପୁଣି କାହିଁକି ଆମ ଭଙ୍ଗାଫସାର ଆଡ଼କୁ ହାତ ବଢ଼ାଉଛି ? ତା' ସ୍ତ୍ରୀ ବେମାର ପଡ଼ିଲା । ମୋ' ଝିଅ, ପରଘରର ବୋହୂ, ତାକୁ ଦେଖିବାକୁ ଗଲା । ଭଲ କଲା । ସେଇଟା ତାର ମହତପଣିଆ ।

—ବିମଳା ଟଭିକୁ ଭାରି ଭଲ ପାଉଥିଲା ରେ ପୁଅ, ସତେକି ଟଭି ତା' ସାନ ଭଉଣୀ ।

—ହଉ ହେଲା । ସେ କ'ଣ କହିଦେଲା ବୋଲି ଚଇତନ ପ୍ରଚାର କରାଇଛି ? ଭାରି ଧାଡ଼ସ ! ମୋ' ଘରେ ନିଜେ ଆସି ପ୍ରସ୍ତାବ ପକାଇଛି । କାହା ପାଖରେ ? ତୋ' ପାଖରେ ନା ଟଭି ପାଖରେ ? ହଇଲୋ ବୋଉ ! ଏଇଟା କେଡ଼େ ବଦନାମିଆଁ ବେମହତ କଥା । ଟଭି ସିନା ପିଲାଲୋକ, ତୁ ନିଜେ ବିଚାରଣା କର । ଲୋକେ ନିନ୍ଦା ରଟାଇଲେ ତାଙ୍କର ଦୋଷ ଦେଇ ହେବ ?

ବୁଢ଼ୀ କହିଲେ, ତୁ ନ ଫେରିଲେ, ତୁ ନ ଘେନିଲେ, କିଏ କାହାପାଖକୁ ପ୍ରସ୍ତାବ ଆଣିବ ? କିଏ ଏଠି ତୋ' ବିନା ଆଉ ଗୋଟାଏ ମୁରବି ଅଛି ଯେ କାହାର କେଉଁ ପ୍ରସ୍ତାବରେ ହଁ କି ନାହିଁ କରିପାରିବ ? ଟଭି ତୋ'ର ଝିଅ । ତୁ ଯାହା କରିବୁ ସେଇଆ । ଯେଉଁମାନେ ତୋ' ଆଗରେ ମିଛ ସତ ଗପିଛନ୍ତି, ସେମାନେ କ'ଣ ଏହା ଜାଣନ୍ତି ନାହିଁ ? ଚଇତନ ଥରେ ଦି'ଥର ତା' ଘରଯା ମଲା ପରେ ମୋ ପାଖକୁ ଆସିଛି ଯେ—

— କାହିଁକି ଆସିଛି ତୁ କହ । ନାଟୁଆ ଯଦି ଥାଆନ୍ତା, ସେ ଏ ଘର ଦ୍ୱାର-ବନ୍ଧ ମାଡ଼ି ନ ଥାନ୍ତା । ନାଟୁଆ ତା'କୁ ହାଡ଼େ ହାଡେ ଚହ୍ନିଥିଲା । ବୋଉ ଲୋ,

ପ୍ରାଣରୁ ଅଧିକ ମଣି ଯେଉଁ ଝିଅକୁ ମୁଁ ଭଲ ପାଉଥିଲି, ତଦନ୍ତର ହୋଇ ତା'ର ବାହାଘର କରାଇ ଦେଲି କାହିଁକି, ତାକେ କ'ଣ ଅଜଣା ଅଛି ? ସଇତାନ ଚଇତନଆର ସେଇ ହେଲା ଅସଲ ରାଗ । ସେଇ ରାଗରେ ଟଗ୍ରର ବାହାଘର ପରେ ସେ ମୋ' ଭୂମିଖଣ୍ଡି ନେବାକୁ ଚକ୍ରାନ୍ତ କଲା । ନେଲା ତ, ମତେ ଖୁଣୀ କରାଇଲା । ନାଟୁଆକୁ ତଡ଼ି ମୋ' ଘର ଭଙ୍ଗାଇଲା । ତା' ମାଇଧ ମଲାରୁ ପୁଣି ସେ ମୋ' ଝିଅ ଉପରେ ଆଖି ପକାଇଛି···

ବୃଢ଼ୀ କହିଲେ, ଚଇତନର ମନ ଦୂନା ହେଲାଣି । ବମଲା ପଛେ ପଛେ ତା' ବଡ଼ ପୁଅଟା ବି ଗଲା । ସାନ ପୁଅଟା ଖାଉ ସ୍ନେହାଟିଏ ମ, ଆମ ଅରକ୍ଷିତଖି ସାଙ୍ଗ । ଗୃହର ସଙ୍ଗେ ଆସେ, ଏଠି ଖେଳି ଖେଳି ଯାଏ । ଅରକ୍ଷିତ ବି ତା' ସଙ୍ଗରେ ତାଙ୍କ ଘରକୁ ଯାଏ ସେ !

କାର୍ତ୍ତିକ କହିଲେ, ଓହୋ, ବୁଝିଲି । ଗୁଣ୍ଡୁଆଟା ପୁଣି ଫାନ୍ଦ ପାତିବାକୁ ବସିଲାଣି । ନାଟୁଆ ଥିଲେ ତା' ଚଲାଖି ପଶି ନ ଥାନ୍ତା । ଯେମିତି ହେଲା ସେତିକି । ସେ ଛୋଟା ପିଲାଟା ଏଠିକି ଆସିଲେ ଆସୁ, ମୋ' ନାତିକୁ ସେଠିକି କେବେ ଗ୍ଲାଉନ ନାହିଁ । ଚଇତନଆ ଉପରେ ମୋର ବିଶ୍ୱାସ ନାହିଁ । ଏ ପିଲାର ରୂପ ଦେଖି, ଢଙ୍ଗ ଜାଣି ମନ ଭିତରେ ତା'ର ଈର୍ଷା ଜଳୁଥିବ । କେଉଁବେଳେ ସେ କଅଣ କରିଦେବ ଲୋ ବୋଉ ! ମୋର ପ୍ରାଣେ ଡର ! ତା' ବଡ଼ଲୋକୀ ତା' ଘରେ । ଆମ ଗରୀବ-ପଣିଆଁ ଆମର । ଏ ପିଲା ମୋର ପ୍ରାଣକୁ କିଣି ନେଇଛି । ସେ ବଦ୍‌ମାସ୍ ଚଇତନଆ ଯଦି କ'ଣ କରିଦିଏ ନା, ଆମର ଜୀବନ ଧରି ରହିବା ଅକାରଣ ହେବ ।

ଦୁଧ ପିଇସାରି ଅରକ୍ଷିତ ଟଗ୍ରର କୋଳରେ ଦେଉଘର ପିଣ୍ଡାରେ ଶୋଇ ପଡ଼ିଥିଲା । କାର୍ତ୍ତିକଙ୍କର କଥା ଶୁଣି ଟଗ୍ର ଚକ୍ଲାର କରି ଉଠିଲା, ନାଇଁ, ନାଇଁ ବାପା ! ଆଉ କିଛି କହି ପାରିଲା ନାହିଁ । ପିଲାକୁ ଗ୍ଲତରେ ଜାକି ଟଗ୍ର ଅଧାଦାଇଆଣୀ ପରି ଢ଼' ଖେପାରେ ପାଖକୁ ଧାଇଁ ଆସିଲା । କାନ୍ଦି ଉଠିଲା । କହିଲା, ସେମିତି କହନା ବାପା ! ମୋ' ପିଲା କାହାରି ଶତ୍ରୁ ନୁହେ ।

କାର୍ତ୍ତିକ କହିଲେ, ତୁ କାନ୍ଦ ନା ମା ! ମୋ ନାତିର ଅନିଷ୍ଟ କରିବ, ଏମିତି ପୁଅ ଜନମି ନାହିଁ । ତା' ଆଗରୁ ଆଉ ପୁଞ୍ଜାଙ୍କର ପ୍ରାଣ ନେଇଥିବି । ଜେଲରେ କେତେ ଖୁଣୀ ମୋ' ସଙ୍ଗରେ ଥିଲେ । ଦ୍ୱାଦଶବର୍ଷ କାଳ ତାଙ୍କର କୌଶଳ ମୁଁ ଶୁଣିଛି, ଜାଣିଛି । ସେମାନେ ମଣିଷମାରୁ । ଚଇତନଆଁ କେତେର କେତେ ? ସେ ଭଲ ତ ମୁଁ ଭଲ । ମୋ' ସଂସାରକୁ ହାତ ବଢ଼ାଇଲେ, ମୁଁ ତା ସଂସାର ବୁଡ଼େଇ ଦେବି । ତୁ ଯା, ପିଲାକୁ ଶୁଆଇ ଦେ । ତୁ ନିଶ୍ଚିନ୍ତରେ ଶୋଇପଡ଼ ।

ଟଗ୍ର କୋଠରୀ ଭିତରେ ପଶିଲା । ପୁଅକୁ ଖଟ ଉପରେ ଶୁଆଇ ମଶାରି ପକାଇ ଦେଲା । ଆଲୁଅ କମାଇ କବାଟ ଆଉଜାଇଲା । କବାଟ ପାଖରେ ଆଣ୍ଠୁରେ

ମୁଣ୍ଡଭରା ଦେଇ ବସିଲା । ମୁଣ୍ଡରେ ତାର କୌଣସି ଭାବନା ପଶି ପାରୁ ନ ଥିଲା । ସେ କେବଳ ଶୁଣୁଥିଲା ।

ବୁଢ଼ୀ କହିଲେ, ଚଇତନ ଉପରେ ଠାକୁରେ ଦୁଃଖ ଲଦି ଦେଲା ପରେ ସେ ବଦଳିଛି । ଯାହା ଘଟିଯାଇଛି, ସେଥିପାଇଁ ସେ ଦୁଃଖ କରୁଛି । ଆମ ଜମି ସେ ଆମକୁ ଫେରାଇ ଦେବ ବୋଲି କହିବାକୁ ଆସିଥିଲା ।

—ସତେ ?

—ଖାଲି ସେତକି ନୁହଁ ରେ ପୁଅ ! କହିଲା, ସେ ଜମିରୁ ତା' ଦଖଲ ନବା ବର୍ଷରୁ ଯେତେ ଆଦାୟ ହୋଇଛି, ସବୁର ହିସାବ ସେ ରଖିଛି । ସେ ଫେରାଇ ଦେବ ।

—ତୁ କ'ଣ କହିଲୁ ?

—ଝିଅକୁ ପଚାରିଲି । ସେ ମନା କଲା । କହିଲା, ମୋ ବାପା ଆସିଲେ ତମେ ତାଙ୍କୁ ଦେଲେ ଦେବ । ନିଜ ଶିଙ୍ଗରେ ମାଟି ଖୋଳି ମୁଁ ମୋର ଚଳୁଛି । ମୋ ବାପାର ଯେତକି ଜମି ଆଉ ଅଛି ତା'ର ଫସଲ ଆମର ବଳୁଛି ।

—ଦେଖିଲୁ, ଦେଖିଲୁ ତ ବୋଉ ? ବାଘର ଛୁଆ କେବେ ବିଲୁଆ ହେବ ନାହିଁ । ଠିକଣା ଜବାବ ସେ ଚଇତନିଆକୁ ଦେଇଛି । ଜମି ନେବାକୁ ତମେ ଯେବେ ରାଜି ହୋଇଥିଲେ, ସେ ନିଶ୍ଚେ ଫେରାଇ ଦେଇଥାନ୍ତା । ମୋହିବଡରେ ତମର ମୁହଁ ବନ୍ଦ କରିଥାନ୍ତା । ଆଜି ଏଇଟା ଦେ, କାଲି ସେଇଟା ଦେ, ଏମିତିକରି ଏଠି ନାଟ ଲଗାଇ ଥାନ୍ତା । ବୋଉ ଲୋ, ମୋ ଝିଅକୁ ଯେଉଁ ହଟହଟା କରାଇ ଆମର ଦୁଇ କୂଳର ମୁହଁରେ କଳା ବୋଳି—

ବୁଢ଼ୀ ବ୍ୟସ୍ତ ହୋଇ ଉଠିଲେ । ବଡ଼ପାଟି କରି କହିଲେ, ତୋ' ଝିଅଟା ମନ କଲେ ଶୋଇ ନ ଥିବ ରେ କାର୍ତ୍ତିକା, ଆଉ ମୁଁ ଯେତେ ବୁଢ଼ୀ ହେଲେ ବି ତୋ'ର ବୋଉ ! ଏମିତି ବେମହତ କଥା ଆମ କାନକୁ ଶୁଣା ନାହିଁ । ବୁଝି ବିଚାରି କାମ କରିବାର ବୁଦ୍ଧି ମୋର ହଜି ନାହିଁ । ଝିଅ ପିଲାଛୁଆ ନୁହେଁ । ହିତ ଅହିତ ତାକୁ ଜଣା । କାହାରି ବତାଇବା ଲୋଡ଼ା ହେବ ନାହିଁରେ ପୁଅ ! କିଏ ତାକୁ ଭୁଲେଇ ମାରିବ ? ହଉଲେ, ବଡ଼ା ପରିକା ଘରବର ଝିଅ ହୋଇ ସେ ଜନମ ହୋଇଥିଲା ମନ, ଭାଗ୍ୟ ତାକୁ ନେଇ ରାଜାଘରର ବୋହୂ କରିଥିଲାଟି । ମାତ୍ର ପୁରୁଷର ବୁନିଆଦି ଖୁଣ୍ଟିଆ ଘର, ଯେଉଁ ଘରେ ମୂଳଆପଣରେ ଠିଆ ହେବାର ଯୋଗ୍ୟ ତୋ' ବାପ !

କାର୍ତ୍ତିକ କିଛି ସମୟ ଗୁମ୍ ମାରି ରହିଲେ । ବୋଉଙ୍କର ଭର୍ତ୍ସନାକୁ ମନରେ ଭେଦାଉଥିଲେ । ବୁଢ଼ୀ ଭାଗ୍ୟକୁ ନିନ୍ଦ ମନକୁ ମନ କହିହେଲେ, ତା' ସୁନା ଭେଣ୍ଡି ହେଲାରୁ, ତା' କପାଳ, ଦଇବ-ଚୁଲିପଣା ବାମ କଲାରୁ, ସେ ଆସି ଏଠି ପଶିଲା ।

ସେଇ ଅଚ୍ୟୁତ ମିଛ କହିଲାରୁ ମନେ ସେ ଦେଖିବାକୁ ଆସିଲା । ନୋହିଲେ, ସେ ଏଠିକି କାହିଁକି ଆସିଥାନ୍ତା ? ସେଇଠି ସେ ତା' ଭାଗ୍ୟ ଭୁଞ୍ଜିଥାନ୍ତା । ବାପ ଡ଼କେଇଛୁ, ଯେଉଁ ବାପ ଦିନେ କାଲେ କେବେ ପଚୁରେ ନାହିଁ, ନ ଆସନ୍ତା କେମିତି ?···

କାର୍ତ୍ତିକ କହିଲେ, ତୁମେ ହି ନୋହି ' ମୋ କଥା ମୁଁ ଫେରାଇ ନେଉଛୁ । ନାତୁଣୀ ଥିଲେ କହନ୍ତା । ସେହି ଚଇତନିଆଁର ଡ଼ରରେ ଝିଅକୁ ଏ ଗାଆଁକୁ ଆଣିବାକୁ ମୁଁ ସାହସ କରି ନାହିଁ । ଦେଖିଲୁ ତ, କେମିତି ସେ ନାତୁଣୀକୁ ଡ଼ରେଇ ଏ ଗାଆଁରୁ ତଡ଼ିଲା ? କେମିତି ଅଚ୍ୟୁତ ନେକେଇପିଲାକୁ ଧନ ଦେଇ, ମିଛ କୁହାଇ ଝିଅକୁ ଅଣେଇଲା ?

—ଆରେ ପୁଅ, ଯେଉଁମାନେ ତୋ' କାନରେ ଏମିତିକା ତାହାମିଛ କଥା ଫୁଙ୍କିଛନ୍ତି, ସେମାନଙ୍କ ମାଟିରେ ପୋକ ପଡ଼ିବ । ଦେଖିଥିବୁ ରହ, କାଲିଆ ତାଙ୍କ କି ଅବସ୍ଥା ଦେବ । ଚଇତନ କାହିଁକି ଝିଅକୁ ଆଣନ୍ତା ? ହଇରେ ମୂରୁଖ, ତା'ର ଲକ୍ଷ୍ମୀ ଘରକା ଘରଣୀ ଥିଲଟି । ସେ କେଡ଼େ ଭଲ ତୁ କ'ଣ ଜାଣିବୁ ? ପିଲାଙ୍କ ମାଁ କାଠ ବୋବେଇ, ନ ଖାଇ ନ ପିଇ ବେମାର ହେଲାରୁ ଠାକୁରେ ତା'କୁ ନେଇ ଗଲେ । ଝିଅକୁ ସେ ସେନେହ କରୁଥିଲା ଗିଳିଟି ଦିନରୁ । ମଲା ଆଗରୁ ସେ ଯାହା କହିଗଲା, ତାହା ଝିଅ ଜାଣେ ନାହିଁ । ଚଇତନ ତା'କୁ ଶିଖେଇଲା, ଏ କଥା କେହି ବିଶ୍ୱାସ କରିବେ ନାହିଁ ।

—ସେଥିକୁ ଆମକୁ କ'ଣ ମିଳିବ ?

—ହଇରେ, ମିଳିବ ନାହିଁ ? ଝିଅ ମୋର ଶିମୁଳି ତୁଳା ପରି ଜାଣ ଶୂନ୍ୟରେ ଉଡ଼ୁଛି । ଚଇତନ ବିଚାର କରିବାକୁ ମନ କଲେ ତା'କୁ କ'ଣ ଝିଅ ଅପୂଟ ହେବନି । କାହିଁରେ ତା'ର ଊଣା ? ବିମଳା କହିଯାଇଥିଲା ବୋଲି ତଡେ ପଦେ ପଚାରି ଦେବାକୁ ସେ ଅପେକ୍ଷା କରିଛି । ଝିଅର ଦୁଃଖ ଯିବ । ଅରକ୍ଷିତକୁ ରୁ ପୁଅ କଲେ, ତୋ' ବଂଶ ବି ରହିବ ।

ଝିଅ ଶୁଣିଲା, ତା' ବାପ ଗୋଟାଏ କାଳକାଳା ରଡ଼ି ଛାଡ଼ିଲେ, କେମନ୍ତ ! ଶଳା ଚଇତନିଆଁର ଏଡ଼େ ସାହସ ହେବ ? ମତେ ପଚାରିବ ?

ଅସ୍ଥିର ହୋଇ ସେ ଉଠି ବସିଲେ । ଗୁଡ଼ାଏ ଦୀର୍ଘଶ୍ୱାସ ଛାଡ଼ିଲେ । କହିଲେ, ଏବେ ମୁଁ ବୁଝି ପାରିଲି । ଲୋକେ ଯେଉଁ ବଦ୍‌ନାମିଆଁ କଥା ଉଠାଇଛନ୍ତି, ସେତକ ମିଛ ନୁହେଁ । ସମସ୍ତେ ତମେ ଏକଜୁଟ ହୋଇଛ । ଭାବିଥିଲି, ମୁଁ ଫେରିବି ନାହିଁ ।

ବୁଢ଼ୀ କହିଲେ ତୁ ବାଇଆ ହୁ ନା । କେହି ଏକଜୁଟ ହୋଇ ନାହାନ୍ତି ରେ ପୁଅ । ହଁ କରିବା କି ନାହିଁ କରିବା ଅଧିକାର ତୋର । ତୋ' ଝିଅକୁ କେହି ତ ଜବରଦସ୍ତି ଓଟାରି ନେବ ନାହିଁ ?

—ସେ କଥା ମୁଁ ଜାଣେ । ମୋ' ଝିଅକୁ ମୁଁ ମୋ' ମନଲାଖି ପାତ୍ରକୁ ଦେବି ଅରକ୍ଷିତକୁ ମୁଁ ପୁଅ କରିବ । ଏହା ମୁଁ କହି ସାରିଛି । ସେ ଚଇତନିଆଁ ଯଦି ମତେ ପଚାରିବାକୁ ସାହସ କରି ଆସେ, ମୁଁ ତୋ' ଗୁଣ ପକାଇ କହୁଛି, ବଡ଼ ଠାକୁରଙ୍କ ଦ୍ୱାହି ଦେଇ କହୁଛି, କଟୁରି ପାହାରରେ, ମୁଁ ତିନିବାର ସତ୍ୟ କରୁଛି ବୋଉ, କଟୁରି ଚୋଟରେ ତା' ଗଣ୍ଡିରୁ ମୁଣ୍ଡ ଛଡ଼େଇ ଦେବି । ପାଟ ବଉଁଶ ଆଉ ମାହାନ୍ତି ବଉଁଶ ଏକା ହାଣକେ ବୁଡ଼ାଇ ଦେବି । ଫାଶୀ କାଠକୁ ମୋ'ର ଡ଼ର ନାହିଁ ।

ଟେମିର ହୃତ୍‌କମ୍ପ ହେଲା । ସେ ଥରି ଥରି ଉଠିଲା । ସେ ଚେଇଁ ରହିଛି, ସବୁ ଶୁଣୁଛି, ଏ ଧାରଣା ତା'ର ବାପାଙ୍କୁ ଦେବାକୁ ଭୟ କରୁଥିଲା । ଖାଲି ବସୁଥିଲା, କେତେ ଓଲମୀ ତାର ଜେଜେମା, ବେଶୀ ହାଉଁପାଉଁ ହୋଇ କେତେ ଗପୁଛି କାହିଁକି ? ଘରେ ପାଦ ଦେଉଣୁ ନ ଦେଉଣୁ ତାଙ୍କ ସଙ୍ଗେ କଥା କଟାକଟି କରି ତାଙ୍କୁ ଉତ୍ୟକ୍ତ କରିବା ଠିକ ହୋଇ ନାହିଁ । ନିର୍ଭିନ୍ତରେ ତା'ର ବାପା ଶୋଇ ପଡ଼ିଥିଲେ ପରଙ୍କ ମୁହଁକୁ ଏଣୁତେଣୁ ଶୁଣି ତାଙ୍କର ନୋଖିଲା ମନ ଶାନ୍ତ ହୋଇ-ଥାନ୍ତା ।

ଟେମି ଖଟକୁ ଆଉଜି ଠିଆ ହେଲା ।

ପୁଣି ବୋବାଳି ଗ୍ଭଡ଼ିଲେ ବଲୁଆ ପଲ । ପୁଣି ଭେଟାଣ୍ଡା ରଡ଼ି ଗ୍ଭଡ଼ିଲା । ରାତି ଅଧ ହେଲାଣି । ଟେମି ମଶାରି ଭିତରେ ହାତ ଗଳାଇ ଅରକ୍ଷିତର ମୁଣ୍ଡ ଟେକି ଦେଲା ।

ଜେଜେମା ଡ଼ାକ ଗ୍ଭଡ଼ିଲେ, ଆଲୋ ଟେମି, ଶୋଇ ପଡ଼ିଲୁ କି ? ଆଲୋ ଟେମି —

ନିଦୁଆ ସ୍ୱରର ଛଳନା କରି ଟେମି ଜବାବ ଦେଲା ଉଁ—ଉଁ । କଅଣ ?

—ପିଲାର ମୁଣ୍ଡ ଟେକି ଦେ ମା !

—ଦଉଛି । ରାତି ଅଧ ହେଲା ଯେ— ।

ଧୈର୍ଯ୍ୟ ଧରି ଟେମି କବାଟ ଖୋଲିଲା । ପଦାକୁ ଆସି ଆଖି ମଳିଲା । ସ୍ୱରରେ ବିସ୍ମୟ ଭରି ସେ ପଚାରିଲା, ଏତେ ବେଳଯାଏ ଶୋଇ ନା ବାପା ? ମାଆ ଲୋ, ତୋ'ର ଯେଉଁ କଥା ! ତୋ ଗପ ଯେଉଁ ଫେରି ଦେଇଛୁ ନା ? ମନ ଖୁସିରେ କାଲି ଗପିଥିଲେ ହୋଇ ନ ଥାନ୍ତା ! ତୁ ରୋଗଣୀଟା । ଅନିଦ୍ରା ହୋଇ ଯଦି ଜରରେ ପଡ଼ିବୁ ନା, ତୁ ଶୋଇବୁ ଗଲୁ । ବାପା ଶୋଇବେ । ମୁଁ ତାଙ୍କର ଗୋଡ଼ ଘଷିଦେବି ।

ଟଗ୍ର ତା'ର ବାପାଙ୍କ ପାଖରେ ବସିଲା । ତାଙ୍କର ଗୋଡ଼ଟିଏ ଟାଣି ଘସିବାକୁ ଆରମ୍ଭ କରନ୍ତେ ସେ କହିଲେ, ଦେଖ ଏ ପାଗଳୀକୁ । ପିଲାକୁ ଗ୍ରନ୍ତ...

—ସେ ଶୋଇଛି । ମୋ'ର କଡ଼େ ନିଦ ଭାଙ୍ଗିଲାଣି । ତୁ ଯାଉନୁ ମା ? ନିଜେ ତ ଘାଣ୍ଟି ହେବୁ, ପୁଣି ମତେ ଦହଗଞ୍ଜ କରିବୁ ? ତମେ ଶୋଇଲ ବାପା, ରାତି କେତେ ହେଲାଣି ଜାଣିଛ ?

ଝିଅର ଆଗ୍ରହ ଭାଙ୍ଗିବାକୁ ତାଙ୍କର ମନ ହେଲା ନାହିଁ । ସେ ପୁଣି ଲମ୍ବ ହୋଇ ଶୋଇଲେ । ଗୋଡ଼ରେ ଟଗ୍ରର କଅଁଳ ବଳିଷ୍ଠ ହାତର ସ୍ପର୍ଶ ସତେକି ତାଙ୍କ ଦେହରେ ନୂଆ ଜୀବନ ସଞ୍ଚାର କଲା । କହିଲେ, ତୁ ମୋ'ର ସୁନା ଝିଅଟା । କେବେ ମୋ' କଥାରୁ ବାହାର ହୋଇନୁ । ଯାହା କହୁଛି ମାନୁଛୁ ।

—ତମେ ଆଶିର୍ବାଦ କର୍ଣ୍ଣିନ୍ତରେ ଶୋଇପଡ଼ ବାପା ! କେବେ ତମ କଥା ଅମାନ୍ୟ କରି ନାହିଁ, କି କେବେ କରିବି ନାହିଁ ।

—ଶୁଣିଲୁ, ଶୁଣିଲୁ ବୋଉ ?

ବୁଢ଼ୀ ଯିବାକୁ ଉଠୁଥିଲେ, ପୁଣି ବସିପଡ଼ି କହିଲେ, ଏହା କ'ଣ ମୁଁ ଜାଣେ ନାହିଁକିରେ ପୁଅ, ତୁ ଯାହା କହିବୁ ତା'ର ଅନ୍ୟଥା କରିବା ଝିଅ ସେ ନୁହେଁ ।

—ମୁଁ ଭାବୁଛି, କାଲି ସକାଳେ ଯାଇଁ ତୋ' ବୋଉକୁ ନେଇ ଆସିବି । ସେ ତା' ବାପଘରେ ବେଲଗଛିଆ ଗାଁରେ ନିଶ୍ଚୟ ଥିବ । ସେ ଆସିଲେ ଅରକ୍ଷିତାକୁ ଦେଖି ଭାରି ଖୁସି ହେବ । ତା'ର ଯତ୍ନ ନେବ । ଆମ ଘରେ ଗହଳ ଚହଳ ବଢ଼ିବ । ଶତ୍ରୁ ଶଙ୍କି ରହିବେ ।

ଟଗ୍ରର ହାତ ଟିକିଏ ଅଟକି ଗଲା । ସେ କହିଲା, ଭଲ ହେବ ବାପା ! ମତେ ଭାରି ଏକୁଟିଆ ଲାଗୁଛି । ମୁଁ ଏଠାକୁ ଆସି ଦେଖେଁ ତ ବୋଉ କୁଆଡ଼େ ଚାଲିଯାଇଛି ।

—ଚଇତନିଆଁର ଡରରେ । ତା'ର କିଛି ଦୋଷ ନ ଥିଲା ।

ବୁଢ଼ୀ କହିଲେ, ବେଲଗଛିଆରେ ସେ ନାହିଁ । ଥିଲେ ଥିବ ତା'ର ପୁଅ ପାଖରେ । ସେହି କବିରାଜ ଟୋକା ପାଖରେ । ସେ ତ ତା' ଆଗ ଗେରସ୍ତର ପୁଅ ।

କାର୍ତ୍ତିକ ଚନ୍ଦ୍ରଙ୍କ ଉଠୁଥିଲେ, ଟଗ୍ର କହିଲା, ଶୁଣିଲ ବାପା ଏ ଗାଆଁର ଲୋକେ କେମିତି ମୋ' ବୋଉ ନାମରେ ଅପବାଦ ରଟାଇଛନ୍ତି ? ମା ସେଇଆ ତମକୁ ଜଣାଇଁ ଦେଲା । ଏଠି ସମସ୍ତେ ଘରଭଙ୍ଗା ଲୋକ...

ବୁଢ଼ୀ ସତର୍କ ହେଲେ । କହିଲେ, ଚିହ୍ନିଲୁ ଲୋକଙ୍କ ଢଙ୍ଗରେ ପୁଅ ? ଏମିତି ଅପବାଦିଆ ପ୍ରଚାର ସେମାନେ କରନ୍ତି । ତାଙ୍କ କଥାରେ ପଡ଼ିଆରି ପାତିଲେ,

ମିଛରେ ମଣିଷ ନିଜ ହାତରେ ବାଳହୁଣ୍ଡାଇ ମରିବ । ଯେଉଁଦିନ ଶିମିଳିତଳ କିଆରି ପାଖରେ ଘଟଣା ଘଟିଲା, ନାଟୁଆ ପ୍ରାଣ-ବିକଳରେ ଆସି ଘରେ ଲୁଚିଲା । ଭୂ ତ ଜାଣୁ ମୁଁ ବିଛଣାଲାଗି ହୋଇଥିଲି, ଉଠି ବସି ପାରୁ ନ ଥିଲି । ଯାହା ଟଙ୍କାପଇସା ଗହଣାଗାଣ୍ଠି ସେ ରଖିଥିଲା ସବୁ ବୁଣ୍ଡେଇ ପୁଣ୍ଡେଇ ରାତିରେ କେତେବେଳେ କୁଆଡ଼େ ଗଲା କେହି ଜାଣନ୍ତି ନାହିଁ । ଆଉ ସେ ଫେରିଲା ନାହିଁ, କି ଖବର ଦେଲା ନାହିଁ ।

—କେମନ୍ତ ?

—ହଁ ରେ ପୁଅ !

ଟଭ କହିଲା, ଏଇଗୁଡ଼ା ଗପି ମୋ ବାପାଙ୍କୁ ଶୁଆଇ ଦେବୁ ନାହିଁ କି ମା ? ବୋଧ ଯାଇଥିବ ତା' ବାପ ଘରକୁ, ନୋହିଲେ ଆଉ କୁଆଡ଼େ ଯାଆନ୍ତା ? ତୁ ଦିନେ କହୁଥିଲୁ, ସେ କବିରାଜ କୁଆଡ଼େ ଅମୃତହସ୍ତା । ତା'ର ଦି' ଗୁରେଟି ବଟିକା ଖାଇଲେ ତୁ ଝାଙ୍କଟାଙ୍କ ହୋଇ ବସୁ । ତା' ବଟେଇଲା ଉଷୁକା ତୁ ଏବଯାଏ ଯୋଗି ହେଉନ୍ତୁ । ମୋ' ଦେହ ବିଗିଡ଼ିଗଲେ ଏବଯାଏ ସେଇଆ ଖାଉନ୍ତୁ, ଚେଙ୍ଗା ହୋଇ ଉଠନ୍ତୁ ।

ବୁଢ଼ୀ କହିଲେ, ନାହିଁ କଲେ ନର୍କରେ ପଡ଼ିବ । ଟୋକାର ରୂପ ଯେମିତି ସୁନ୍ଦର, ଚାଲିଚଳଣି, କଥାଭାଷା ବି ସେମିତି । ନାଟୁଆ ତାକୁ ଧର୍ମପୁଅ କରିଥିଲା । ପୁଅଠୁ ବଳି ସେନେହ କରୁଥିଲା ।

କାର୍ତ୍ତିକ କହିଲେ, ତା'ର ଧନଲୋଭ ନ ଥିଲା, ଏହା ମୁଁ ଜାଣେ । ନାଟୁଆ ତା' ମନକୁ ଫଳେ ପୁରସ୍କାର ମାହା ଦିଏ ସେ ଆନନ୍ଦରେ ନିଏ । ଓଜରଆପତ୍ତି କରେ ନାହିଁ । ଥରେ ଅଧେ ମୁଁ ଯାଇଛି । ହାତଯୋଡ଼ି ସେ ମୁଣ୍ଡ ହଲାଇ ଦେଇଛି ।

ସେଇଥିପାଇଁ ତ ବାପା, ଲୋକେ କହିଲେ, ସେ ମୋ ବୋଉର ପୁଅ । ହେଲେ ହୋଇଥାନ୍ତ ମ' ତାକୁ ତ ଦେଖି ନାହିଁ, ହେଲେ, ତା'ର ପରିକା ଧର୍ମଭାଇ ମୋ'ର ଲୋଡ଼ା । ତା'କୁ ବି ସଙ୍ଗରେ ଆଣିବ ବାପା । ଅରକ୍ଷିତକୁ ସେ ଦେଖିଥିବ । ପିଲାଟା କାହିଁକି ଶୋଇକରି ବେଳେବେଳେ ଚମକି ଉଠୁଛି । ଦାନ୍ତ ରଗଡ଼ୁଛି ।

—କେମନ୍ତ ?

ଟଭ କାର୍ତ୍ତିକଙ୍କର ବଳିଷ୍ଠ ହାତକୁ କାନ୍ଧରେ ଥାପି ତା'ର ବାହୁକୁ ମୋଡ଼ି ଦେଉଥିଲା । ଶୀତୁଳିଆ ରାତିର ସୁଲୁସୁଲିଆ ପବନକୁ ଉପେକ୍ଷା କରି ଟଭର ଦେହ ଝାଳେଇ ଉଠୁଥିଲା । ଲଲାଟର ସ୍ୱେଦ କାର୍ତ୍ତିକଙ୍କର ମୁହଁ ଉପରେ ବିନ୍ଦୁ ବିନ୍ଦୁ ହୋଇ ଖସି ପଡ଼ିଲା ।

କାର୍ତ୍ତିକ ଚମକି ଉଠିଲେ । କହିଲେ, ମୋ ମାଆଟା ଥକି ଗଲାଣି । ଦେହରୁ ଝାଳ ଗଡ଼ିଲାଣି । ଆଲେ, ତୋ' ବୋପାଟା ପଥର ବୋହି ଦେହକୁ ପଥର କରିଛି । ତୋ'ର କଅଁଳିଆ ପାପୁଲି ଧୂଳା ପରି ଲାଗୁଛି । ସେତିକି ଥାଉ । ଯା, ଶୋଇବୁ । ପୁଅ ଚମକିବ । —

କାର୍ତ୍ତିକ ହାତ ଓଟାରି ନେଲେ···

ଅଗଣା ଅନ୍ଧାରୁଆ ଦିଶୁଥାଏ । ଟୁକିର ଜେଜେମା ତାଙ୍କର ଶୋଇବାଘର ଭିତରେ ପଶିସାରିଥାନ୍ତି । ଟୁକି ତା' କୋଠରୀକୁ ଆସି କବାଟ ଆଉଜାଇଲା । ଆଲୁଅ କମାଇଲା । ମଶାରି ଟେକି ଭିତରେ ପଶିଲା । ଆଖିବୁଜି ହାତ ଯୋଡ଼ି ମୁଣ୍ଡରେ ଲଗାଇଲା ।

ବଡ଼ଠାକୁରଙ୍କ ସୁମରଣା କରି ସେ ନିବେଦିଲା, ମୋର ଆଉ କିଛି ବଳ ନାହିଁରେ କାଳିଆ ! ଆଗରୁ ଯାହା କରିବ ଭାବ ମୋ ଭାସିଲା ନାବରେ ହାଉଲି ପକାଉଛି, ଧ୍ରରେ ନଟିଆ, ମଙ୍ଗ ମୋଡ଼ି ଦେଉଛି । ବୋଉଟା ମୋ'ର ସେ-ପାରିର ଘାଟ କେମିତି ଜାଣିବ ? ଏବେ ହାଉଲି ଛାଡ଼ିଲି । ହାତ ଯୋଡ଼ିଲି । କୁଆଡ଼େ ମଙ୍ଗ ମୋଡ଼ୁଛୁ, ତତେ ଜଣା । କେଉଁ କୂଳ କିନାରରେ ଲଗାଇଲେ ଲଗା, ନଇଲେ ଅଧାନଈରେ ବୁଡ଼ାଇ ମାର । ତୋ' ଇଚ୍ଛା । ଏ ଜୁଆ ବଳଟିକ କାହିଁକି ଦେଇଛୁ ତତେ ଜଣା । ତା' କଥା ତତେ ଲାଗିଲା···

ଆଖିରୁ ଲୋତକ ପୋଛିଲା ନାହିଁ । ପୁଅକୁ କୋଳରେ ପୂରାଇ ଶୋଇଲା । ମନକୁ ଆସିଲା ଆଉ ଜଣେ ଲୋକ, ଚଇତନ ପାଣ୍ଡ । ମନକୁ ଆସିଲା ଗତରାତିର ଘଟଣା । ଟୁକି ଚଇତନ ପାଣ୍ଡଙ୍କର ସୁମରଣାକୁ ମନରେ କହିଲା, 'ମୋ ବାପା ତମକୁ ଘୃଣା କରନ୍ତି । ତମେ ମହତ ଲୋକ । ଥରେ ଆମ୍ଭମାନେ ଚନ୍ଦ୍ରାନ୍ଧକରି ମତେ ମଠହାଡ଼ କରିଥିଲେ । ମୋର ରକ୍ତମାଂସରେ ନିଆଁ ଜାଳିଥିଲେ । ମୋ'ଅଜାଣତରେ ମତେ କରିଥିଲେ ଦୋଷିଣୀ—

ଆଉ କାଳି ? ମୋ'ର ଉପାସୀ, ଆଶ୍ରିତ ଆତ୍ମା, ମୋ'ର ନିସାହାପଣିଆଁ, ଜେଜେମାଙ୍କର ଅବୁଝା ସ୍ନେହ, ନିକାଞ୍ଚନ ପରିବେଶରେ ମତେ ପାଗଳୀ କରିଥିଲା । ମୋ' ଦେହ ଓ ମନକୁ ତମ ଆଗରେ ବାଢ଼ିଦେଇଥିଲା । ଲାଜସରମକୁ ଆଡ଼େଇ ଦେଇଥିଲା—

ତମେ ମୋର ମନକୁ ନିଜର କରିଥିଲ । ଦେହକୁ ସାନ୍ତ୍ୱନା ଦେଇଥିଲ । କଳଙ୍କିନୀ କରିବା ଦୂରର କଥା, ମୋ ଛଟପଟ କଲବଲ ଦେହକୁ

ତମ ନିର୍ଭରପଣରେ ଶାନ୍ତ କରିଥିଲ, ତା'କୁ ତମର ଟାଣୁଆ ରକ୍ଷା କବଚରେ ବେଢ଼ାଇ ଦେଇଗଲ । ସେ କବଚ କେବେ ହୁଗୁଳିବ ନାହିଁ । —

ମୁଁ ତୁମର ହୋଇ ସାରିଛି । ମୋ' ଦେହର ଥାନ ତମ ଗୃହରେ, ଅବା ମଶାଣିଭୂଇଁରେ । ମୋ ପାଇଁ ତମର କେଉଁ ଅନିଷ୍ଟ ହେବ, ଏହା ମୁଁ କେବେ କରାଇ ଦେବି ନାହିଁ । ତମକୁ ସାକ୍ଷୀ ରଖି କହୁଛି ବଡ଼ ଠାକୁରେ, ଏହା ମୋର ଝିବାର ସତ୍ୟ ।

ମନର ଦୃଢ଼ତା ତାକୁ ସାନ୍ତ୍ୱନା ଦେଲା । ଟୁକି ନିଶ୍ଚିନ୍ତରେ ଶୋଇ ଆଖି ବୁଜିଲା ।

ଆଖି ଖୋଲିଲା ।

ଘରଭିତର ଆଲୁଅ ଦିଶୁଛି । ରାତି ପାହିଲାଣି । ମଶାରି ସେମିତି ପଡ଼ିଛି । ପାଖରେ ଅରକ୍ଷିତ ନାହିଁ । କାହାରି ସ୍ୱର ଶୁଭୁ ନାହିଁ । କେହି ଉଠି ନାହାନ୍ତି କି ? ପୁଅ ତେବେ ଗଲା କୁଆଡ଼େ ?

ମଶାରି ଟେକି ପଦାକୁ ଆସିଲା । ଘରକବାଟ ଠିଆମେଲା । ଅଗଣାରେ ଖରା ପଡ଼ିଲାଣି । ପିଣ୍ଡାରେ ତା'ର ବାପା ନାହାନ୍ତି । ସପ ଖଣ୍ଡିକ ଗୁଡ଼ାହୋଇ କାନ୍ଥକୁ ଡେରା ହୋଇଛି । କାନ୍ଥ କଡ଼ରେ ସଜାହୋଇ ରହିଛି ଶ୍ରେଟ ଶ୍ରେଟ କେତୋଟି କାଠ କଣ୍ଢେଇ । ଅଲଗୁଣିରୁ ଝୁଲୁଛି କାର୍ତ୍ତିକଙ୍କର ଜାମା । ଓଦା ଲୁଗା ଓ ଓଦା ଗାମୁଛା ଶୁଖା ହୋଇଛି । ବାଡ଼ିକବାଟ ମୁକୁଳା ।

ବାଡ଼ିରୁ ଶୁଭିଲା ଅରକ୍ଷିତର ପାଟି ଓ ହସ । ତା' ସଙ୍ଗେ ସଙ୍ଗେ କାର୍ତ୍ତିକଙ୍କର **ହସ** । ପଛେ ପଛେ ଗାଈର ବୋବାଳି, ବାଛୁରୀର ହମ୍ବାରଡ଼ି । **ଟୁକି ଭାବିଲା**, ଉଠୁ ଉଠୁ କେତେ ଡେରି ସତେ ହୋଇଗଲା । ଦିନେ କାଳେ ଏମିତି ହୁଏ ନାହିଁ । ତା'ର ବାପା ଭାବିବେ, ଟୁକିଟା ଅଳସୋଇ । ତା'ର ଜେଜେମା ବି କ'ଣ ବାଡ଼ିରେ ଅଛନ୍ତି ?

ଗୋଟିକିଆ ଶୁଭ-କାଉଟିଏ କାହୁଁ ଆସି ଚାଳ ଉପରେ ଏକଡ଼ ସେକଡ଼ ହେଉଛି । ଲମ୍ବେଇ ଲମ୍ବେଇ କେମିତିଆ ଲହଡ଼ିଆ ବକଳ ବୋବାଳି ଛାଡ଼ୁଛି । କ'ଣ ସେ କହୁଛି ? କି ଖବର କେଉଁଠୁ ଆଣିଛି ? ଟୁକି ବିରକ୍ତିଗଲା, ତା'ପାଇଁ କି ଖବର କିଏ ପଠାଇବ ? ଏ ସଂସାରେ କିଏ ତା'ର ଅଛି ?

ଟୁକି ବାଡ଼ିକୁ ଆସିଲା । ଦେଖିଲା, କଦଳୀବାଡ଼ି ପାଖରେ ଯେଉଁ କାକୁଡ଼ି **ଝାଡ଼**, ତା' ନିକଟରେ ତା' ବାପା ଠିଆ ହୋଇଛନ୍ତି । ଖାଲି ଦେହ, ସ୍ୱାସ୍ଥ୍ୟ

ଭରପୁର । ତାଙ୍କ କାନ୍ଧରେ ବସିଛୁ ଅରକ୍ଷିତ । ବେକର ଦୁଇକଡ଼ରେ ଦୁଇ ଗୋଡ଼ ଛାତି ଉପରକୁ ଲମ୍ବାଇ ଦେଇଛୁ । ଗୋଟିଏ ହାତରେ ତାଙ୍କର ଲଣ୍ଡିତ ମୁଣ୍ଡକୁ ଧରି ଆର ହାତରେ କାକୁଡ଼ି ମୁଠାଇ ଖେଳୁଛି ।

ଆନନ୍ଦ ଓ ନିରାନନ୍ଦର ଦ୍ୱନ୍ଦ୍ୱରେ ଟଗି ଟିକିଏ ରହିଗଲା । ଯାହା ନ କହି କୂଅ ମୂଳକୁ ଗଲା । କୂଅକୁ ଚାରିପାଖରୁ ଆବୋରି କରିଛି ପୁଣି ଚନୋଟି ବେକେ ଉଞ୍ଚର ଘାଡ଼ । ଗୁଡ଼ ଗୁଡ଼ିକା । କୁନ୍ଦୁରି, କଳରା ଓ ଖଗାଦନଅଁ କଖାରୁ ଲଟା । ଫୁଲ-ଫଳରେ ଭରପୂର । ଖଣ୍ଡେଦୂର ଗୁଡ଼ା ଧାଡ଼ିଏ ଅମୃତଭଣ୍ଡା ଗଛ । ପାଣିକଖାରୁ ଆକାରର ଫଳ । ତା' ଆଗରେ ମଟାଳ ମାଟିରେ ତଳେ ମାଡ଼ିଛି ତରଭୁଜ ଲଟା । କେତେ ଫଳ ଗଡ଼ୁଛି । ଡ଼େରରେ ଲଗା ହୋଇଥିଲା । ଫଳ ପାକଳ ହୋଇନାହିଁ । ଟିକିଏ ଦୂରରେ ବାଇଗଣ କିଆରି । ପାଣି ଦେଇ ହେଉ ନାହିଁ । କେବେ କେମିତି ଢ଼ାଳିବା କଥା । ତଥାପି, ଫୁଲ କସିରେ ଶୋଭା ଦିଶୁଛି ।

ଟଗି ତରତର ହୋଇ ନିତ୍ୟକର୍ମ ସାରିଲା । କାନିଏଁ ପିନ୍ଧି ଆର କାନି ବଦଳି ଖଣ୍ଡା ଭିତରକୁ ଆସିଲା । ଲୁଗା ପାଲଟି, କେଶରେ ପାନିଆଁ ମାରି ସଜାଡ଼ିଲା; ଓଦା ଶାଢ଼ୀ ଶୁଖାଇଲା । ମନେ ପଡ଼ିଲେ ଜେଜେମା । ତାଙ୍କ ଘରର କବାଟ ଆଉଜା ହୋଇଛି । ଏତେ ବେଳଯାଏ ଉଠି ନାହାନ୍ତି କାହିଁକି ? ଦେହ କ'ଣ ବିଗିଡ଼ିଲା ?

ଟଗି କବାଟ ଠେଲିଲା ।

ବୁଢ଼ୀ ଉଠି ବସିଥିଲେ । ପଦାକୁ ବାହାରି ନ ଥିଲେ । ଟଗିକୁ ଖାଲି ରହିଲେ । ଟଗି ତାଙ୍କ ଦେହରେ ହାତ ଥାପିଲା । ଉଷୁମ ଲାଗୁଛି ।

—ଇଲୋ ମା, ତତେ ଜର !

—ନାଇଁ ମ ! ତୋ' କଥା ଆଉ ଅରକ୍ଷିତ କଥା ଭାବିଭାବିକା ରାତିରେ ମୁଁ ଶୋଇ ନାହିଁ । ବଡ଼ିସକାଳୁ ଉଠି ମୋ' କାମ ସାରିଲି । କାଉଁନି ମୋ' ଆଗରୁ ବଛଣା ଗୁଡ଼ିଥିଲା । କେତେ କେତେ କଥା କହୁଥିଲା ଲୋ ମା । ତା'ର ଆକ୍ରୋଶ ତ ଚଇତନ ଉପରେ ।

—ତୁ କ'ଣ କହିଲୁ କି ?

—ଠାକୁରଙ୍କ ରାଣ, ମୁଁ ତୁଣ୍ଡ ଖୋଲି ନାହିଁ । ଭାବିଲି, କାଳେ କ'ଣ କହି ହୋଇଯିବ । ବେଶୀ ବୁଢ଼ୀ ହେଲାରୁ ମୋ ବୁଦ୍ଧି ଦାମ ହେଲାଣି । ଭଲ କରିବାକୁ ଯାଇଁପାଇଁ ହୋଇ କାଳେ ଓଲଟା ଫଳ ଫଳିବ ?

—କିଛି ନ କହି ଭଲ କରିଛୁ ।

—ହଁ ଯେ ମା, କାଳେ ସେ କବିରାଜ ଟେକା ତା ଜନମିଲା-ପୁଅ ନ ହୋଇ ଧରମପୁଅ ହୋଇଥିବ ? ଘଇତାର ବଳପାଇ କାଳେ ସେ ଅଲକ୍ଷଣୀ ପୁଣି

ଆସି ଏଠି ପହଞ୍ଚିବ ? ସେ ତ କାର୍ତ୍ତିକାକୁ ଔଷଧ କରୁଛୁ ! ମୋର ବଳବହପ ଆଉ ନାହିଁ । ତୁ ଚାଲିବୁ କେମିତି ?

—ତୁ ନିଶ୍ଚିନ୍ତ ରହ । ମୋ କଥା ଆଉ ମୋ ପୁଅ ଖବର ମୁଁ ବୁଝିବି । କାଳିଆ ମତେ ଯେତେବେଳେ ଯେଉଁ ବାଟ ଦେଖାଇବ ମୁଁ ସେହି ବାଟରେ ଗ୍ଲଲିବ । ମୋ କଥା ମୁଁ ବିଗିଲେ ସେ ବିଗିବ ନାହିଁକି ? ମୁନାବଢ଼ଉଣୀ, ସିଏ ଦିନେ ମୋ ବଉଳ ଥିଲି—

—ତା' କଥା ମତେ ଦିନେ କହୁଥିଲୁ ମା !

—ହଁ, ସେ ଯାହା କହେ, ସବୁ ଶାସ୍ତ୍ର-ପୁରାଣର ଲେଖା, ତେବେ ସେ ନିଜେ ମାନେ ନାହିଁ । 'ଗଜ-ଉଦ୍ଧାରଣ, ମୃଗୁଣୀ-ତାରଣ, ବସ୍ତ୍ର-ହରଣ,' ଦ୍ରୌପଦୀଙ୍କ ଲଜ୍ଜ୍ୟା ନିବାରଣ—

—ଜାଣିଛୁ ! ଯେତେବେଳଯାଏ ନିଜ ଉପରେ ଟିକିଏ ବି ଭରସା ରଖି ଉପର ମୁହଁରେ କାଳିଆକୁ ଡ଼ାକୁଥିବ, ସେ ବଳବଳ କରି ଗ୍ଲହିଁଥିବ, କିଛି କରିବ ନାହିଁ ।

—ଜାଣିଛୁଟି ? ତୋ ନିଜ ଉପରୁ ମୁଁ ଭରସାକୁ ଛୁଟାଇ ଦେଇଛି । ତା' ଉପରକୁ ଫୋପାଡ଼ ଦେଇଛି । କୁଆଡ଼କୁ ସେ ଟାଣୁଛି ଟାଣୁ । ସେଥିରେ ମୋ'ର ଖୁସି ।

—ମୋ' ସୁନାଟି ! ମୁଁ ଏବେ ନିଶ୍ଚିନ୍ତ ହେଲି । ତୋ' ବାପା ନାଟୁଗ୍ଲକୁ ଆଣିବାକୁ ଯିବବୋଲି ସଜ ହେଉଛି । ମତେ ଟଙ୍କା ମାଗୁଥିଲି । କହିଲି, କାହୁଁ ପାଇବ ?

—ଇଲେ ମା, ସେ ବାରଆଡ଼େ ବଗିଗ୍ଲ ବୁଲି ଦେଖୁଥିଲେ । ଅରକ୍ଷିତକୁ କାନ୍ଧରେ ବସାଇ କାକୁଡ଼ି ଖୋଉଥିଲେ । ଆସୁଛନ୍ତି । ପାଟି ଶୁଭୁଛି । ତୁ ବାହାରି ଆ । ସେ ଆଗ ଯାଆନ୍ତୁ, ସେଇଠୁ ତୋ ଖବର ବୁଝିବି ।

ଟଗ୍ର ହସ ହସ ହୋଇ ଅଗଣାକୁ ବାହାରିଲା । କାର୍ତ୍ତିକ ଆସିଲେ । ସେ ଅରକ୍ଷିତର ହାତ ଧରିଥିଲେ । ଦିନର ଆଲୁଅରେ ସୂର୍ଯ୍ୟ-କିରଣରେ ଧୂଆ ଉଜ୍ଜ୍ୱଳ ଅଗଣାରେ, ବାପ ଓ ଝିଅଙ୍କର ମୁହାଁମୁହିଁ ଭେଟ । ସ୍ନେହ ଓ ଭକ୍ତିର, ଯୁଗଟିଏ ପରେ ମିଳନ । ଆସ୍ଥା ଅନାସ୍ଥାର ଦୋଳନ । କାର୍ତ୍ତିକଙ୍କ ଆଖିରେ ତୃପ୍ତି ଓ ଓଠରେ ହସ । ଟଗ୍ରର ଆଖିରେ ଲୋତକ, ଓଠରେ ଅଜଣା ଆତଙ୍କର ଅଶଳା ବିଷାଦ ।

କାର୍ତ୍ତିକ କହିଲେ, ତୋର ପୁଅଟି ଭାରି ବିଚକ୍ଷଣ । ସେ ମତେ କିଣି ନେଲଣି । ମୋର ପୁଅ ହେବାକୁ ବି ମଙ୍ଗିଲଣି । କହୁଛି, ତା ବାପ କିଏ ଗୋଟାଏ ଝଗମଣି, କୁଆଡ଼ର ଯେ ସେ ତା' ବୋଉକୁ ଛାଡ଼ି ଦେଇଛି ।

ଟଗ୍ରର ଗ୍ଲତିରେ ଯେପରି କିଏ ନିଆଁ ହୁଳା ଗେଞ୍ଜି ଦେଲା । କହିଲା, ମୋ ଭାଗ୍ୟ ମତେ ଶୁଣାଉଛି । କିଏ ପିଲାଟା ମୁଣ୍ଡରେ ଏମିତିକା ଧାରଣା ପୂରାଇଲା ସେଥିକ

ମୋର ସ୍ୱସ୍ୱ ନାହିଁ କି ଛଳ ନାହିଁ । ଆହୁରି କେତେ କେତେ କଥା ତାକୁ କେଉଁ କୁଟଣୀମାନେ ଶିଖାଇବେ । ମୋର କି ବଳ ? କାନ ଖାଲି ଶୁଣିବ । ଦଇବ ମତେ ସହିବାକୁ ଜନମ ଦେଇଛି ।

ଟେଭି ଆଖିରୁ ଲୁହ ପୋଛିଲା ।

କାର୍ତ୍ତିକ କହିଲେ, ତାକୁ ତୁ ଭୁଲିଯା । ମୁଁ ଫେରି ଆସିଲିଣି । କେନ୍ଦୁ ତଳେ ଅବାଗିଆ ପଦେ କହିଦେଲେ ତା' ତଣ୍ଟି ଝୁଞ୍ଚିଦେବି । ହି, ବୁଲିବୁଲି ତୋ' ବାରି ଦେଖୁଥିଲି । ଭାରି ଖୁସି ହେଲି । ତୋ ବୋଉ ଦେଖିଲେ ଆହୁରି ଖୁସି ହେବ । ମୁଁ ଯିବାକୁ ବାହାରିଛି । ଖରାତେଜ ବଢ଼ିବ ।—

—ପେଟେ ଜଲଖିଆ ଖାଇ ଯିବ ବାପା !

—ଯାହା ଦେବୁ ଖାଇବି । ଟଙ୍କା କେତୋଟି ମତେ ଦେଇ ପାରିବୁ କି ମା ?

—କେତେ ଟଙ୍କା ଲୋଡ଼ା ? ବାରର ପରବା, ଜାତଜାତକା ବଢ଼ି, ଆଉ ବଳକା ଖୀର ବିକି କିଛି ଟଙ୍କା ରଖି ପାରିଛି ।

କାର୍ତ୍ତିକ ଭାବିଲେ । କହିଲେ, ମୋ ପାଖରେ ପାଞ୍ଚ ଦଶ ଟଙ୍କା ଅଛି । କାଲେ ନିଅଣ୍ଟ ହେବ । ଅଚ୍ୟୁତ ଥିଲେ ତାକୁ ମାଗିଥାନ୍ତି । ସେ ତ ନାହିଁ । ତୋ ସଞ୍ଚିଲା ଧନରୁ ନେବାକୁ ମନ ବଳୁ ନାହିଁ ।

ଟେଭିର ଜେଜେମା କହିଲେ, ନାଟୁଆ ଗଲାବେଳେ ସବୁ ଗୁଣ୍ଡେଇ ପୁଣ୍ଡେଇ ନେଇ ଯାଇଥିଲା । କଣାକଉଡ଼ି ବି ଛାଡ଼ିଯାଇ ନଥିଲା । ରୋଗଣୀ ବୁଢ଼ୀଟା ମୁଁ ପଡ଼ିଛି, ଚଣ୍ଡାଳୁଣୀ ଏଡ଼େ ଅଡଟ ଯେ—

ଟେଭି ମୁହଁ ବୁଲାଇ ବୁଢ଼ୀଙ୍କୁ କହିଲା, କାହିଁକି ଗତକଥା ମନେ ପକାଉଛୁ ? ସେ ରହିଥିଲେ, ଗାଁ ଲୋକେ ଯେମିତି ଉଲୁମୁଖା ହୋଇଥିଲେ, ତାକୁ କ'ଣ ହଲପଟା କରି ନ ଥାନ୍ତେ ? କିଏ ମୋ ବୋଉର ପିଠିରେ ପଡ଼ିଥାନ୍ତା ? ତତେ ଜର । ତୁ ଯା ଶୋଇବୁ । ବାପାଙ୍କର ଯାହା ଦରକାର ମୁଁ ଦେବି ।

କଅଁଳ ଗାଧୁଆବେଳ ନ ହେଉଣୁ କାର୍ତ୍ତିକ ଅନୁକୂଳ କରି ବାହାରିଲେ । ଟେଭିକୁ ଟଙ୍କା ଦଶଟି ମାଗିଥିଲେ । କିନ୍ତୁ ସେ କୋଡ଼ିଏ ଟଙ୍କା ଦେଲା । କହିଲା, ପାଖରେ ଥାଉ, କାଲେ ଦରକାର ପଡ଼ିବ । ଖର୍ଚ୍ଚ ନ ହେଲେ ଫେରି ଆସିବ ।

କାର୍ତ୍ତିକ ଏକମୁହାଁ ହୋଇ ଚାଲିଗଲେ ।

ଟଗ୍ର ଦାନ୍ତ କବାଟ କଲା । ଛାତିଭିତରେ ଜମିରହିଥିବା ଦୁଃଖ ମନର ଟାଣପଣକୁ ଦୋହଲାଉଥିଲା । ଅରକ୍ଷିତ ପିଣ୍ଡାରେ ବସି ଖେଳଣାଗୁଡ଼ିକ ଧରି ଖେଳୁଛି । ଅବୋଧ ନିର୍ମଳ ଶିଶୁ । ସ୍ନେହରେ ବଶ । ଶତ୍ରୁ ମିତ୍ର ଭେଦଭାବ ନାହିଁ । ପରମୁହୂର୍ତ୍ତର ଭାବନା ମନ ଛୁଏଁ ନାହିଁ ।

ତା' ପାଖରେ ଭୂମି ହୋଇ ବସିଛନ୍ତି ତାର ଜେଜେମା । ଶୁଖିଲା ଶେଥା ମୁହଁ ଫଣ ଫଣ ଦିଶୁଛି । ଟଗ୍ର ପିଣ୍ଡାତଳେ ଠିଆହୋଇ ତାଙ୍କୁ ଚାହିଁରହିଲା । ସେ କିଛି କହୁନାହାନ୍ତି ।

ଟଗ୍ର ମୁହଁ ଖୋଲିଲା, ମା ! ···

ବୁଢ଼ୀ ଦୀର୍ଘ ଶ୍ୱାସ ଛାଡ଼ିଲେ ।

—ତତେ ଭଲ ଲାଗୁ ନାହିଁ ମା ?

—ଆଲୋ ଟଗ୍ର ! ତୋ ବାପ ବାଇଆ ହୋଇଛି । ଭାବିଥିଲି, ଜନମ-ଦୁଖିଆଟା ତୁ, ତୋ ସୁଖ ଦେଖି ଖୁସିରେ ସେପୁରକୁ ଯିବ । ସେ ଅଲକ୍ଷଣା କାଳିଆ-ଭୁଆଟା ସେତକ କରେଇ ଦେବ ନାହିଁ । ହଉ ହେଲା । ତାହା ତା'ର ଇଚ୍ଛା । ମୋର ଆଉ ସ୍ପୃହା ନାହିଁ । ତୋ କଥା ସେ ବୁଝିବ । ମୁଁ ଯାଉଛି···

ଟଗ୍ର ଲୁହ ଛଳଛଳ ଆଖିରେ ତାଙ୍କ ପାଖରେ ବସିଲା । ଦେହରେ ହାତ ଦେଲା । ତାତି ବଢ଼ିଲାଣି । ଭୟଙ୍କର ସୂଚନା ନ ଦେଇ କହିଲା, ତୁ ଏଣୁ ତେଣୁ ଗୁଡ଼ାଏ ଭାବୁଛୁ । କୁଆଡ଼କୁ ଯିବୁ ?

—ଆଲୋ ଓଲମୀ, ବୁଝି ପାରୁନୁ ? ହେଇଟି ସେ ମତେ ଡାକୁଛନ୍ତି, ତୋ ଜେଜେ'ପା ମ ! କେତେଥର ତ ପାଖକୁ ଆଇଛନ୍ତି, ଡାକିଛନ୍ତି । ଟିକିଏ ରହ, ଟିକିଏ ରହ କହି ମନା କରିଦେଇଛି । ଏଥର ମନା କରିବି ନାହିଁ । ମୁଁ ହାରି ଯାଇଛି ଲୋ, ମୋ ସୁନା କଣ୍ଢେଇ ! ମୋ ଜାମ ସରିଛି । ତାଙ୍କ ପାଖକୁ ଯିବାକୁ ମୁଁ ହଁ-ଭରିଛି ।

ଟଗ୍ର ତା'ର ଜେଜେମା'ଙ୍କର ଦୁର୍ବଳ ମୁଣ୍ଡକୁ ନିଜର କାନ୍ଧ ଉପରକୁ ଆଉଜାଇ ଆଣିଲା । ବୁଢ଼ୀଙ୍କର ହାଡ଼ୁଆ ଦେହକୁ ଗୋଟିଏ ହାତରେ ବେଢ଼ାଇ କଇଁ କଇଁ ହୋଇ କାନ୍ଦି ଉଠିଲା । ସେହି କାନ୍ଦଣା ସ୍ୱରରେ କହିଲା, ମତେ ବି ସଙ୍ଗରେ ନେଇଯିବୁ ମା ! ସେ ନାଟୁଆ ପାଖରେ ମୁଁ ଦିନଟିଏ ଚଳିପାରିବି ନାହିଁ ।

ବୁଢ଼ୀ ତାଙ୍କର ତାତିଲା ହାତପାପୁଲିରେ ଟଗ୍ରର ପିଠି ଆଉଁସି ଦେଲେ । କହିଲେ, ସେମିତି କହନା···

—ତୋ' ମୁହଁ ଦେଖି ମୁଁ ବଞ୍ଚିଥିଲି, ଏ ଘରେ ଚଳପ୍ରଚଳ ହେଉଥିଲି । ନୋହିଲେ ଏ ଘରେ ମୋର କି ଅଧିକାର, କି ବଳ ଅଛି ? ପରଗୋଷ୍ଠୀଟା ମୁଁ—

—ଘରବାଡ଼ି ମିଶି ସବୁ ଜମି ମୋ' ନାଁରେ ।

—ମୋ' ବାପା ତୋ'ର ପୁଅ । ମୁଁ ତୋ'ର ପର । କାହା ବଳରେ ବାପ ସଙ୍ଗେ, ନାଟୁଆ ସଙ୍ଗେ ମୁଁ ଲଢ଼ିବ ? ନା, ସେ କଥା ତୁଣ୍ଡରେ ଧରନା । ଚଇତନ ଖାଇ କାଲି ସଞ୍ଜରେ କି ପୁନଅ ସକାଳେ ଫେରିବେ । କେମିତି ମୁଁ ତାଙ୍କ ମୁହଁକୁ ଅନାଇଁ ପାରିବ ? ତାଙ୍କ ପ୍ରତି ବାପାଙ୍କର କୋଧ ଊଣା ହୋଇ ନାହିଁ । ନାଟୁଆ ଆସିଲେ ତା' ଫୁଙ୍କାରେ ସେ କୋଧ ଆହୁରି ଜଳିବ । ବାପା କାଲେ ଚଇତାଇଙ୍କର କ'ଣ ଅନିଷ୍ଟ କରିବେ ? କାହିଁକି ମୋ ପାଇଁ ସେ ଦୁଃଖକଷ୍ଟ ଭୋଗିବେ ?

ବୁଢ଼ୀ ଉତ୍ତର ଦେଲେ ନାହିଁ । ମୁଣ୍ଡ ଟେକିଲେ । ଟଙ୍କର ଆଖିରୁ ଲୁହ ପୋଛି ଦେଲେ । କଣ୍ଢେଇ ଖେଳ ଗୁଡ଼ି ଅରକ୍ଷିତ ପାଖକୁ ଆସିଲା । କାବାକାବା ହୋଇ ବୁଢ଼ୀଙ୍କ ମୁହଁକୁ ଚାହିଁଲା । ସେ ଟିକେ ସତର୍କ ହେଲେ । ବୁଢ଼ୀ କହିଲେ,ଆଗତ ଚଢ଼େଇକୁ ବେସର ବାଟିବା ଦରକାର ନାହିଁ ଟଙ୍କା । କେଉଁପାଣି କେଉଁ ସୁଅରେ ଯାଉଛି ଦେଖ୍ । ମଣିଷର ଆଗୁଆ ବଗ୍ଗୁର ଉପରେ ଆସ୍ଥା ରଖିଲେ ହରବର ହେବା ଧାର । କେତେ ବଗ୍ଗୁର ଫସରଫାଟି ଯାଇଛି···

—ହଁ, ଲୋ ମା ।

—ମୋ' ମନ ମତେ କହୁଛି, କାର୍ତ୍ତିକା ଏକା ଫେରିଆସିବ । ନାଟୁଆ ମିଳିବ ନାହିଁ ।

—କାହିଁକି ମା ? ସେ ତା' ବାପଘରେ ଥିବ ।

ବୁଢ଼ୀ ମୁଣ୍ଡ ହଲାଇଲେ ।

—ନୋହିଲେ ତା ଧର୍ମ ପୁଅ, କି—

—ମୋ ମନ କହୁଛି ଲୋ ଟଙ୍କା, ସେ କବିରାଜ ଟୋକା ତା' ଜନ୍ମକଲା ପୁଅ । ତା' ନାକ, ଆଖି, ଓଠ, ତା' ମୁହଁର ଛାଟିକା ମୋର ମନେ ପଡ଼ୁଛି । ତୋ ନବ୍ ଛିଆ ବାପ ଯଦ୍ଦ ବାଇଆ ପଣରେ ସେ ଗାଁକୁ ଯିବ, ବଳେ ବୁଝିବ । ସେ ଆହୁରି କୋଧରେ ଜଳିବ ।

—କାହା ଉପରେ ?

—ନାଟୁଆ ତ ନ ଥିବ, ଆଉ କାହା ଉପରେ ?

—କେମିତି ଅନୁମାନ କରୁଛୁ ଯେ ନାଟୁଆ ନ ଥିବ ? ସେ କୁଆଡ଼େ ଯାଇଥିବ ?

—କେଜାଣି ? ମୋ' ମନ ତ କହୁଛି ସେ ନାହିଁ । ତୋ' ବାପ କୋଧରେ ଜଳିବ ପାଣୁଆ ନାହାକ ଉପରେ । ସେଇ ମଧ୍ୟସ୍ଥି ଟା, ଯିଏ ଶହେ ଟଙ୍କା ନେଇ ନାଟୁଆକୁ ଠିକ କରିଥିଲା ।

—ଶହେ ଟଙ୍କା !

—ହଁ ଲୋ ଟଗ୍ର ! ସେଇଥି ପାଇଁ ଶିମିଳିତଳ କଥାଣ ଗଲୁ । ତୋ ବାପ ଜେହେଲ ଖଟିଲୁ ।

—ପାଣୁଆଁ ନାହାକ ତ ନାହିଁ ।

—କାର୍ତ୍ତିକା ଜାଣିଲାଣି କି ନାହିଁ କିଏ ଜାଣେ ? ବଳେ ଜାଣିବ । ସେଇଠୁ ତା' ଘରର ନିଆଁ ଆହୁରି ତେଜରେ ଜଳିବ ଲୋ । ମୋ ଉପରକୁ ଚଢ଼ି ଆସିବ ମ । ନାତିଟିଏ ଆଶାରେ ମୁହିଁ ନିଆଁ ଲଗୀ, ତା'କୁ ଆଉଥରେ ସଂସାର କରିବାକୁ ବାଧ୍ୟ କରିଥିଲି । କୋଉ ଏବେ ସେ ନାତି ରହିଲା ?

—ତୋ' ଦୁଃଖ ପାଇଁ ମୁଁ ଏକା ଦାୟୀ···

—ତୋ ଜର ବଢ଼ିଲାଣି । ତୁ ଏଣୁ ତେଣୁ ଗପ ନାହିଁ । ମୋର କିଛି ଦୁଃଖ ହୋଇନାହିଁ । କିଏ ମୋ'ର କଣ କରି ପାରିବ ? ମୋ'ର ବଳ ବୟସ ଅଛି, ଅରକ୍ଷିତକୁ ମୁଁ ମଣିଷ କରି ପାରିବ । ତୁ ଭଲ ହୋଇଯା ।

ଅରକ୍ଷିତର କାବା-କାବା ମୁହଁରେ ହାତ ଦେଇ ଟଗ୍ର କହିଲା, ମୋ ଧନରେ, ତୁ କଅଣ ଶୁଣୁଛୁ ? ଜେଜେମା'ଙ୍କୁ ଜର ହେଲାଣି । ତାଙ୍କୁ ଶୁଆଇ ଦେଇ ଆସେଁ । ସେଇଠୁ ତତେ ଖୋଇଦେବ । ଜେଜେଙ୍କ ସଙ୍ଗେ ବର୍ଫ କ'ଣ ଖାଇଛୁ ପରି ! ଯା ବାପା, ଖେଳେଣା ଧରି ଖେଳୁଥା !

ନିଜକୁ ନିଜେ କହିଲା, କେତେ ପାଇଟି ବାକି ପଡ଼ିଛି । ରଥିଆ କେତେ-ବେଳେ ଆସିବ କେଜାଣି ? ଆଜି ତ୍ରୟୋଦଶୀ । ଅଚ୍ୟୁତ ମଉସା କାହିଁକି ଫେରିଲେ ନାହିଁ ? ରଥିଆ ନ ଆସି ପାରେ । କେତେବେଳ ହେଲାଣି ଲୋ ମା, ଗାଈଟି ଦୁହାଁ ହୋଇ ନାହିଁ । ଉପାସରେ ପଡ଼ିଛି···

ବୁଢ଼ୀଙ୍କୁ କହିଲା, ଚାଲ ମା, ଟିକିଏ ଶୋଇବୁ । ବାଉଳା ଚାଉଳା ହୋଇ ତୁ ଆଉ ଗପନା । ଦୁଧ ଦୁହିଁଲେ ଆଉଟିବ । ତତେ ଆଉ ପୁଅକୁ ପିଆଇବ । ଡ଼ାକ୍ତରଙ୍କ ପାଖକୁ କାହାକୁ ପଠାଇବ । ଆରେ ହଁ, ସେ ତ ଥିବେ । ତୋ' ବଟିକା ସରିଛି ?

ଟଗ୍ର ବୁଢ଼ୀଙ୍କୁ ଧରି ଉଠାଇଲା । ଧୀରେ ଧୀରେ ଚଲାଇ ତାଙ୍କ କୋଠରୀକୁ ନେଲା । ବିଛଣାରେ ବସାଇ କହିଲା, ତୁ ଶୋଇ ପଡ଼ କି, ଚାଦର ଘୋଡ଼ାଇ ଦେବି ।

ବୁଢ଼ୀ କହିଲେ, ଆଲୋ, ମୋ'ର କିଛି ହୋଇ ନାହିଁ । ଔଷଧ କି ହେବ ? ଲୋଡ଼ିକ ତ ନାହିଁ । କାହିଁକି କ'ଣ ଖାଇବି ? ତୁ ଯିବୁଟି, ପିଲାର ଖବର ଆଗ ବୁଝ । କ'ଣ କି, କାଲି ଘଡ଼ିପାହାନ୍ତାରେ ତୋ ଜେଜେ ମୋ କତିକି ଆଇଥିଲେ ଯେ—

—ପୁଣି ଗୁଡ଼ାଏ ଏଣୁ ତେଣୁ ଗପିବାକୁ ତୋ' ମନ ହେଲାଣି । ସପନଟାଏ ତ ଦେଖିଲୁ, ଆଉ କ'ଣ ? ତତେ ମୋ ରାଣ, ତୁନି ହୋଇ ଶୋଇବୁ, ଜଗନ୍ନାଥଙ୍କୁ ତୁ ସୁମରଣା କରିବୁ, ନୋହିଲେ ମୋ ମୁଣ୍ଡ ଖାଇବୁ ।

—ଛି, ଏଗୁଡ଼ା କି ଗପ ଲୋ ଝିଅ ! ହଉ ମୁଁ ଶୋଉଛି । ତୁ ଯିବୁଟି ମୋ ପାଖରୁ ?

ବୁଢ଼ୀ ଲମ୍ବ ହୋଇ ଶୋଇଲେ । ଝିଅ ତାଙ୍କୁ ଚଦର ଘୋଡାଇ ଦେଲା । ପଦାକୁ ଆସି କହିଲା, ଆ-ରେ ଅରକ୍ଷିତ, ଗାଈ ଦୁହିବା ।

ଦି' ପହରେ ।

ଏ ବର୍ଷ କାହିଁକି ଖରା ଅଧିକ ଟାଣ ହୋଇଛି । ଦେହରୁ ଗମ୍ ଗମ୍ ଝାଳ ନିଗିଡ଼ି ପଡ଼ୁଛି । ଖଟ ଉପରେ ଅରକ୍ଷିତ ଶୋଇଛି ଆରାମରେ । ଦେହର ଝାଳ ତା'କୁ ଶୀତଳ କରୁଛି ।

ଆର ଘରେ ଶୋଇଛନ୍ତି ଝିଅର ଜେଜେମା । କ୍ଷୀର ଅଧ ତାଟିଆଏ ପିଇଛନ୍ତି । ଆଉ କିଛି ତୁଣ୍ଡରେ ଦେବାକୁ ମନା କରି ଦେଲେ । ଝିଅ ତାଙ୍କର ପାଦ ଆଉଁସୁଛି । ବେଳେ ବେଳେ ଦେହ ପୋଛି ଦେଉଛି । ଅଦା ଓ ତୁଳସୀ ପତ୍ରର ରସରେ ମହୁ ମିଶାଇ ଝିଅ ତାଙ୍କୁ ଢ଼ୋକାଇ ଦେଇଥିଲା । ରଥିଆ, ଅବା ଆଉ କେହି ଯଦି ଆସି ପହଞ୍ଚନ୍ତି, ତା ହାତରେ ଔଷଧ ଆଣନ୍ତା ।

ଦୋଲ ଘଡ଼ି । ସମସ୍ତେ ନିଜ ନିଜ ଘରେ କାର୍ଯ୍ୟବ୍ୟସ୍ତ । ଗାଁ ମଝିରେ ଥିବା କଦମ୍ବଗଛ ତଳ ପଡ଼ିଆରେ ଠାକୁରମାନଙ୍କର ମେଳଣ ହେବ । ରତନପୁରର ମେଳନ ନାମଡ଼ାକ । ପଗୁଣ ଷାଠିଏ ମୂର୍ତ୍ତି ଠାକୁର ଆସନ୍ତି । ଚଇତନପାଣ୍ଡ ସବୁ ବରାଦ କରି ଯାଇଛନ୍ତି । ସେହି କଦମ୍ବ ତଳ ମେଳଣ ପଡ଼ିଆରେ ବରାଦ ପ୍ରକାରେ କାମ ଚାଲିଥିବ । ଲୋକେ ସେଇଠି ରୁଣ୍ଡ ହୋଇଥିବେ । କେଳବାହୁଡ଼ା କାର୍ତ୍ତିକ ମହାନ୍ତି କିବା ମଣିଷଟାଏ ଯେ ଲୋକେ ତାଙ୍କ ଘରକୁ ଧାଇଁ ଆସିବେ ?

ମରଦେ ମାଇପେ କେହି ସେଦିନ ତାଙ୍କ ଘରକୁ ଆସି ନାହାନ୍ତି । ମଣିଷ-ମରା ଜେହେଲ-ଖଟା କାର୍ତ୍ତିକ ଗୋଟାଏ ଭୟଙ୍କର ପାପୀ । ଭୟଙ୍କର ହୋଇ ଫେରି-ଥିବ । ଘୃଣାର ଜୀବଟିଏ । ଗାଁ ଲୋକଙ୍କ ଜାଣିବାରେ ସେ ପ୍ରାୟଶ୍ଚିତ କରି ନାହିଁ । ସାହିଭାଇଙ୍କୁ ବଖତେ ଖାଇବାକୁ ଦେଇ ଅଜାଡ଼ିଆ ଦୋଷ କଟାଇ ନାହିଁ । ତା' ଘରେ ପାଦ ଦେବା ଉଚିତ କି ଅନୁଚିତ, ଚଇତନ ପାଣ୍ଡ ସରପଞ୍ଚ ଆସି ପଞ୍ଚାୟତ ଡକାଇ ସ୍ଥିର ନ କଲେ କାର୍ତ୍ତିକ ମହାନ୍ତିଙ୍କ ଦୋଷ କଟିବ କି ନାହିଁ ସେ ବସ୍ତିର ଲୋକେ କେଜାଣି ପକାଇଥିବେ । ପାଣ୍ଡଙ୍କର ଫେରିବାଯାଏ ଅପେକ୍ଷା କରିଥିବେ ।

ସେଇଥି ପାଇଁ କାହାରି ଦେଖା ଦର୍ଶନ ମିଳୁ ନାହିଁ କି ? ଟଗ ମନେ ମନେ ବାଗୁରୁଥିଲା । ଜେଜେମାଙ୍କୁ ପଚାରି ବୁଝିବାକୁ ମନରେ ସାହସ ଠୁଳାଇ ପାରୁ ନ ଥିଲା । ସେ ଭୟଭୀତ ହେଉଥିଲା ।

ଗୋଟିଏ ବାଗୁର ତାର ମନକୁ ଆସିଲା । ଯାହା ସମ୍ଭବ ନୁହେ ସେଥିକୁ ଆଶା କରି ଅଧିକରୁ ଅଧିକ ମାନସିକ ଦୋଳନ ଓ ଦୁଃଖ ସହିବା କି ଲୋଡ଼ା ? ସେ ଯାହା ଥିଲା ସେଇଆ ହେବ । ଏଗୁଡ଼ାକ ତା'ର ଅଉ କି ପ୍ରୟୋଜନ ? ତାଙ୍କର ସ୍ନେହକୁ ସେ ଜୀବନ ଓ ମନର ଭୂଷଣ କରି ସାରିଛି । ତାକୁ କେହି ଦେଖିବେ ନାହିଁ, ଜାଣିବେ ନାହିଁ । ଭାଗୀ ହେବାକୁ ଆଶା କରିବେ ନାହିଁ । ଦୂର କରି ପାରିବେ ନାହିଁ । ସେ ନିଜେ ବି କେବେ ଛଡ଼ାଇ ନେଇ ପାରିବେ ନାହିଁ ।

କିନ୍ତୁ ଏଗୁଡ଼ାକ ?

ଟଗ ହାତକୁ ଚାହିଁଲା । ଚକଚକ ସୁନାର କାଚ । ସୁନ୍ଦର ଦିଶୁଛି ? ହଁ, ସେଇଆ । ମୂଲଆଡ଼ୀକୁ ଶୋଭା ପାଏ ନାହିଁ । ସେମିତି ଏ ବେକର ହାର । ବେକରେ ସାପଟିଏ ଗୁଡ଼େଇ ହେଲା ପରି ଲାଗୁଛି । ରାଧାକୃଷ୍ଣ ଯୁଗଳ ମୂର୍ତ୍ତି ଅଙ୍କା ପଦକଟି ତା'ର ଛାତି ଉପରେ ନାଗ-ଫଣୀଆଁକୁ ପ୍ରତି ମୁହୂର୍ତ୍ତରେ ଦଂଶୁଛି । କଳବଲିଆ କାମନାର ବିଷ ଆଶାରେ ଚହଟାଉଛି । ତା'କୁ ପାଗଳ କରାଉଛି । କାନର ଫୁଲ ଦୁଇଟି ବନିଛି କଙ୍କଡ଼ା ବିଛାର ଲାଞ୍ଜଡ଼ମରା ପରି ।

ଏସବୁ ତାର ଲୋଡ଼ା ନାହିଁ । ଉତାରି ଦେବ । ପୁଡ଼ା ବାନ୍ଧି ଫେରାଇ ପଠାଇବ ।

ଟଗ ବେକର ହାରଟି ବୁଲାଇ ଫାଶିଆ ଖୋଲିବାକୁ ଚେଷ୍ଟା କଲା । ଆଖିରେ ଢଳ ଢଳ ହେଲା ଲୁହ । ତା'ର ନିବିଷ୍ଟତାରେ ଆଘାତ ଦେଲା ବୁଢ଼ୀଙ୍କର ଗଳା ହଠାତ୍ [illegible] କାଶ ଓ ଗେହ୍ଲାଳିଆ ପଦଏ ଡ଼ାକ, ଟଗ ଲୋ !

ଟଗର ହାତ ଅଟକିଲା । ପଚାରିଲା, କ'ଣ ମା ?

—ତୁ କାହ୍ନୁକୁ କାହିଁକି ?

– ନାହିଁ ତ !

—ସପନଟିଏ ଦେଖିଲି ଲୋ !

—ଦିନ ବେଳରେ ସପନଟା ମା !

—ହଁ ଲୋ, ମତେ ସତ ପରି ଲାଗୁଥିଲା । ତୋ'ର କେମିତି ବାହାଘର ହେଉଛି । ତୋ ବାପା କାନ୍ଦି କନ୍ୟାଦାନ କରୁଛି । ତୋ' ବୋଉ ରକ୍ଷଣୀ ତତେ କୋଳରେ ବସାଉଛି । ତୋ' ଜେଜେ ବି ଅଛନ୍ତି । ସେ ଗ୍ରେଟ ପିଲାଟିଏ କାନ୍ଧରେ ବସାଇ ଏ ପାଖ ସେ ପାଖ ହେଉଛନ୍ତି । ବେଳେ ବେଳେ ତାକୁ ଗେଲ କରି ସେ ହସାଉଛନ୍ତି । ସେଇଟା ତୋ' ସାନ ଭାଇ !

ହାତ ପାପୁଲିରେ ଆଖି ପୋଛି ଝିଅ ପଚାରିଲା, ତୁ କ'ଣ କହୁଛୁ ? ମୋ' ଅରକ୍ଷିତ ? ସେ କୋଉଁଠି···

—ସମସ୍ତଙ୍କୁ ସିନା ମୁଁ ଦେଖିଛି । ମତେ ତ ଦେଖି ପାରୁ ନାହିଁ ? ଅରକ୍ଷିତକୁ ବି । କୋଉଁ ପିଲା କେତେ ଶୋଭାକାର । ରଜାଘର ପୁଅ ପରି ଦିଶୁଥିଲା । ସେ' ତ ମୋର ଚଇତନ !

—ସେପୁର ସପନ ଦେଖିଲୁ । ଆଗତ ଜନମର ।

—ହେଲେ ହେଇଥିବ । ଅନ୍ଧଅନ୍ଧେଇରୁ ଶୁଭିଲା ଯେ, ଅରକ୍ଷିତ ହେବ ପରା, ସେଇଆକୁ ନାଉ କରି ଧାଇଁଲି ନଈବନ୍ଧ ଉପରକୁ । ଦେଖିଲି, ତୋ' ଜେଜେ'ପା ଖଇକଉଡ଼ି ବିଞ୍ଚି ଆଗେ ଆଗେ ଚାଲିଛନ୍ତି । ତାଙ୍କ ପଛେ ପଛେ ମାଲ ଭାଇମାନେ କୋକେଇ ଉପରେ ବନ୍ଧା ଶବଟିକୁ ବୋହି ନେଉଛନ୍ତି ।

ଝିଅ ମୁରୁକେଇ ହସିଲା । କହିଲା, ଆଉ ଗପ ନା । ତୋ' ଜର ବଢ଼ିଲାଣି କି କ'ଣ । ଦେଖେ ?

ସେ ବୁଢୀଙ୍କ ଦେହରେ ହାତ ମାରିଲା । ଝାଳ ଜୁଡ଼ୁବୁଡ଼ୁ । ତାତି କମିଲା ପରି ତା'କୁ ଲାଗିଲା । କହିଲା, ଜର କମିଲାଣି ମା ! ତୋ'ର ଏ ଜୁଆରିଆ ଜର । ମାଡ଼ି ଆସେ, ପୁଣି ଆପେ ଛାଡ଼ିଯାଏ । ତୁ ଏବେ ଝାଡ଼ିଝୁଡ଼ି ହୋଇ ବସିବୁ । ମନା କରିବୁ ନାଇଁ, ଟିକିଏ କ୍ଷୀର ପିଇବୁ । ତୋ' ମନର ଅସମ୍ଭବ ଭାବନାଗୁଡାକ ରୂପ ଧରି ସପନରେ ତୋ' ଆଗରେ ଠିଆ ହୁଅନ୍ତି ।

ବୁଢ଼ୀ ଉତ୍ତର ଦେଲେ ନାହିଁ । ହାତଭରା ଦେଇ ଉଠି ବସିଲେ । କାନେଇଁ କହିଲେ, ଦାଣ୍ଡରେ କିଏ କାହିଁକି ଡାକୁଛି ଲୋ ଝିଅ ! ଧୀରେ ଧୀରେ କବାଟରେ ହାତ ପିଟୁଛି । ଅଚ୍ୟୁତ ସେମିତି ଡାକେ···

—ହଁ ମା । ସେଇ ହୋଇଥିବେ ।

ଅଚ୍ୟୁତ ଆସିଲେ ।

ତାଙ୍କ ଶଶୁର ଘର ଗାଁ ଓଗଳରୁ ସେ ଫେରିଆସିଥିଲେ । ଗାଧୁଆ ବେଳ ଟପି ଯାଇଥିଲା । କାର୍ତ୍ତିକଙ୍କର ଘରବାହୁଡ଼ା ଖବର ପାଇ ତାଙ୍କୁ ଭେଟିବାକୁ ସେ ତରତର ହୋଇ ଧାଇଁ ଆସିଛନ୍ତି । ପାଣି ଦି' ଗରା ଢାଳି ହୋଇ କଂସାଏ ପଖାଳ ଖାଇବାକୁ ଯାହା ବେଳ ଲାଗିଲା । ସେତକ ଡ଼େରି । ଖବର ପାଇ ଯେମିତି ଧୂଳି ଘରଘର ଗୋଡ଼ରେ ଆସିଥିଲେ ବି ତାଙ୍କ ସଙ୍ଗେ କାର୍ତ୍ତିକଙ୍କର ଦେଖା ହେଲା ନାହିଁ ।

ବୁଢ଼ୀଙ୍କ ଦେହର ହାଲ ଶୁଣି ସେ ତାଙ୍କର ପାଖରେ ବସିଲେ । ଟଗର ନୂଆ ଗହଣା, ଦାମିକା ଶାଢ଼ୀ ଅଥଚ ବିରସ ବଦନ ଦେଖି ଦିନ ସ୍ଥରେଟିରେ, ତାଙ୍କର ଅନୁପସ୍ଥିତିରେ ଘଟି ଯାଇଥିବା ଘଟଣାଗୁଡ଼ିକ ଅନୁମାନ କରିବା ତାଙ୍କ ପକ୍ଷରେ ସମ୍ଭବ ନୁହେଁ ବୋଲି ସେ ଜାଣିଲେ ।

ବୁଢ଼ୀ ଉଠି ବସିଲେ ।

ଟଗ ଜାଣେ, ଅଚ୍ୟୁତଙ୍କ ଉପରେ ତା'ର ଜେଜେମାଙ୍କର ଅଟଳ ବିଶ୍ୱାସ । କହିବାକୁ ଆରମ୍ଭ କଲେ ସେ ଯାହାସବୁ ଘଟିଯାଇଛି, ସବୁ ଗପିଯିବେ । ସେ ତାହା ଚାହୁଁ ନ ଥିଲା । ତାଙ୍କୁ ଆଗରୁ ସାବଧାନ କରିବାକୁ ସେ ବୁଢ଼ୀଙ୍କ ଦେହରେ ହାତ ଥାପି କହିଲା, ତୋ' ଦେହରେ ଏବଯାଏ ତାତି ଅଛି ମା ! ଏଣୁ ବେଶୀ ଗୁଡ଼ାଏ ଗପିଲେ ଜର ବଢ଼ିବ । ତୁ ତୁନି ହୋଇ ବସି ଶୁଣ ।

ବୁଢ଼ୀ କହିଲେ, ଅଚ୍ୟୁତ ମୋ'ର ପୁଅ ସମାନ । ତା'ଠାରୁ ଅଧିକ ଆପଣାର ଆମର କିଏ ଅଛି ?

—ମୁଁ ମନା କରୁ ନାହିଁ, କିନ୍ତୁ ମା, ତୋତେ କ'ଣ ଜଣା ନାହିଁ ଯେ ବାପା ଯାହା କରିବେ ସେଇଆ ହେବ ? ତାଙ୍କ ସଂସାର ସେ ଚଳାଇବେ । ଅନ୍ୟ କେହି ସେଥିକୁ ହାତ ଗଳାଇ ପାରିବେ ନାହିଁ । ମୋର ଆଉ ମୋ' ପିଲାଟିର ଭବିଷ୍ୟ ତାଙ୍କରି ଦୁଇ ମୁଠାରେ ଅଛି ।

ବୁଢ଼ୀ କହିଲେ, ମୁଁ ପାଟି ଖୋଲିବି ନାହିଁ ।

ଟଗ କହିଲା, ଶୁଣ ମଉସା, ବାପା ଜେଲରୁ ଖଲାସ ହୋଇ ପୁରୀ ଗଲେ । ସେଇଠି ଶୁଦ୍ଧି-ଶୌଚ ହେଲେ । ଭଗବାନ ରାଉ ଓ କପିଳ ଜେନାଙ୍କ ସଙ୍ଗେ ମନ୍ଦିରରେ ଦେଖା । ଗାଆଁର ଖବର, ପୁଣି ଆମର ହାଲଚାଲ ସବୁ ଶୁଣିଲେ । ସ୍ୱା ବି ଜାଣିଲେ ଯେ ଚଇତନ ପାଣ୍ଡଙ୍କ ସ୍ତ୍ରୀ ବିମଳା ମରିବା ଆଗରୁ କହି ଯାଇଥିଲେ—

ଟଗ କଥା ଅଟକାଇଲା ।

ଅଚ୍ୟୁତ କହିଲେ, ଶୁଣିଛି । ସ୍ୱା ବି ଜାଣେ, ଚଇତନ ସେଇ ଆଶା କରିଛନ୍ତି ।

—ଶୁଣ ମଉସା ! ବାପା କାଲି ଦିନଥାଉଣୁ ଗାଁକୁ ଫେରିଲେ । ରାତି ପାହାନ୍ତକେଯାଏ ଗାଆଁର କେଉଁମାନେ ସବୁ ତାଙ୍କୁ କ'ଣ କହିଲେ । ଘରକୁ ଆସିଲେ । ଚଇତନ ଭାଇ ତାଙ୍କ ପୁଅକୁ ବଡ଼ ଡାକ୍ତରଙ୍କୁ ଦେଖାଇବାକୁ ତିନି ଦିନ ହେଲା କଟକ ଯାଇଛନ୍ତି । ତାଙ୍କ ଉପରେ ବାପାଙ୍କ କ୍ରୋଧ କମି ନାହିଁ ।

—କେମିତି କମିବ ମା ? ପାଣ୍ଡଙ୍କ ମନରେ ଯାହା ଆଉ, ଯେଉଁ କାରସାଦି, କଲେ, ଯେମିତି ଜାଲଆତି କରି ଆମ ଜମି ମାଡ଼ି ବସିଲେ, ଆମକୁ ମାଡ ଖୁଆଇଲେ ଖୁନୀ କରାଇ ଜେଲ ଭୋଗାଇଲେ—

ବୁଢ଼ୀ ବାଧା ଦେଇ କହିଲେ, ସେଇ ଅଲକ୍ଷଣୀ ନାଟୁଆ ପାଇଁରେ ପୁଅ ! ସେଇଆକୁ ଖୋଜ ଠାବ କରିବାକୁ, ତା'କୁ ଏ ଘରକୁ ପୁଣି ଆଣିବା ପାଇଁ କାର୍ତ୍ତିକ ଆଜ ଯାଇଛି ।

ଅଚ୍ୟୁତ କହିଲେ, ସହରରୁ ଫେରିବେ ନା ନରକରୁ ଫେରିବେ ? ଶୁଣା ଶୁଣିରେ, ସେ କୁଆଡ଼େ ପଳେଇଛନ୍ତି ଯେ ତାଙ୍କର ପତ୍ତା ମିଳୁ ନାହିଁ । ସେ ତାଙ୍କ ବାପଘରେ ନାହାନ୍ତି କି ଧରମପୁଅ ବୋଲଉଥିବା କବିରାଜ ଘରେ ନାହାନ୍ତି ।

—ତୋ' ତୁଣ୍ଡ ସୁ-ତୁଣ୍ଡ ହେଉରେ ପୁଅ ।

—ମଉସା ଶୁଣିଲ୍ କଥା କହିଲେ । ଠାକୁରେ କରନ୍ତୁ, ବୋଉ ଫେରି ଆସୁ । ଆଲେ ମା, ତା'କୁ ନ ପାଇ ବାପା ଯଦି ଏକା ଫେରି ଆସନ୍ତି, ତାଙ୍କର ଭୁଲ ଧାରଣାକୁ ସେ ଠିକ୍ ବୋଲି ମଣିବେ । ସେ ଭାବିବେ, ଚଇତନ ପାଣେ ଗାଁ ଲୋକଙ୍କ ସଙ୍ଗେ ମିଶି ପିଟି ପିଟି ବୋଉକୁ ମାରି ଦେଇଛନ୍ତି ।

ବୁଢ଼ୀ ଡରୁଆ ସ୍ୱରରେ କହିଲେ, ହଁ ରେ ପୁଅ ଅଚ୍ୟୁତ । ହିଂସୁକା ଲୋକେ ତା' କାନରେ ବିଷ ଢାଳିଛନ୍ତି । ସେ ବାଇଆଙ୍କ ପରି ହେଉଛି । ସେଇଆ କାର୍ତ୍ତିକାର ଧାରଣା । ସେ ତ ରକ୍ତମୁହାଁ ହୋଇ ଫେରିଛି ।

ଅଚ୍ୟୁତ ସାନ୍ତ୍ୱନା ଦେବାକୁ କହିଲେ, ତମେ ବୃଥା ଅକାରଣ ଡରୁଛ । ସତେ ଯଦି କେଉଁଠି ସେ ନାଟୁଆଙ୍କୁ ଭେଟନ୍ତି, ନାଟୁଆ ଏ ଗାଆଁକୁ ନ ଆସେ । ପାଣେ କହୁଥିଲେ ତା' ନାଁରେ ହୁଲିଆ ଜାରି ହୋଇଛି । ତାକୁ ପୋଲିସି ଖୋଜୁଛି । ଯେଉଁଠି ଦେଖିବ ଧରି ନେବ ।

ଟଗ୍ରୀ କହିଲା, ବାପା ଏକଥା ଜାଣିଲେ ତାଙ୍କର କ୍ରୋଧର ନିଆଁ ଅଧିକ ଜଳିବ । କାହା ଉପରେ ସେ କି ଅଘଟଣ ସାଧିବେ କେଜାଣି ।

ଟଗ୍ରୀର ଆଖି ଛଳ ଛଳ ହେଲା ।

ଆରଘରୁ ଅରକ୍ଷିତର ଡାକ ଶୁଣି ଟଗ୍ରୀ ଧୀରେ ଧୀରେ ଅଚ୍ୟୁତଙ୍କ ପାଖରୁ ଉଠି ଚାଲିଗଲା । ଅଚ୍ୟୁତ ତା'କୁ ଚାହିଁ ରହିଲେ ।

ଶଶୁର ଘର ଗାଆଁରୁ ଫେରି ଘରେ ପାଦ ଥୋଉଣୁ ସେ ତାଙ୍କ ଘରଣୀଙ୍କୁ ବୁଝାଇ କହିଲେ ଯେ ତାଙ୍କର ଦୁଇଭାଇଙ୍କ ମଧ୍ୟରେ ପୁଣି ଯେଉଁ ଅମେଳ ହୋଇଥିଲା ସେତକ ସେ ତୁଟାଇ ଆସିଛନ୍ତି । ଯେଉଁ ଇଜମାଇଲ ପଡ଼ିଆଟା ପାଇଁ ଏତେ କାଣ୍ଡ ଘଟିଥିଲା ସେତକ ବଣ୍ଟାଇ ଯାଇଛନ୍ତି । ଆମ୍ବଗଛ ଏବଂ ବାଉଁଶବୁଦା, ଯେଉଁଥି ପାଇଁ ଏତେ ଅଶାନ୍ତି, ତାକୁ ହଣାଇ ସମାନ ଦୁଇଭାଗ କରିଛନ୍ତି ।

ତାଙ୍କର ଘରଣୀ ଆଶ୍ୱସ୍ତ ହୋଇ ରତନପୁରର ହାଲ ଯାହା ଶୁଣିଥିଲେ ସେତକ ଅନର୍ଗଳ ଗାଇଗଲେ । ସବୁ ଚଇତନ ପାଣ ଓ ଟଗ୍ରୀଙ୍କର ଘମଁକ କଥା ।

ଯିବା-ଆସିବା ସମ୍ବନ୍ଧ । ବାହାଘର ହେବାର ପ୍ରସ୍ତାବ । କେହି କାହାକୁ ନ କହିଲେ ମଧ୍ୟ, କପରି ସମସ୍ତେ ସମସ୍ତଙ୍କୁ ଜଣାନ୍ତି ଆଉ ଗୁପ୍ତ ଘଟଣା ସମସ୍ତଙ୍କ ଗୋଚରକୁ ଆସେ । ଟଗରର ଗହଣା, ଶାଢ଼ୀ, ଚେହେରା, କଥା, ଆଖିର ଲୁହ, ଅଚ୍ୟୁତଙ୍କୁ ସମଝାଇ ଦେଲା ।

ମଶିକୁଦର ଘଟଣା, ଯାହା ସେ ଭଉଁରୀଠାରୁ ଶୁଣିଥିଲେ, ଜାଣିବାକୁ କୁତୂହଳୀ ହୋଇ ଆଖିରେ ଦେଖି ଆସିଥିଲେ, ଟଗରକୁ କହିବେ କି ନାହିଁ ବିଚାରୁ ଥିଲେ । ଜାଣିବାକୁ ଟଗର ଆଉ ଆଗ୍ରହୀ ହେବ ନାହିଁ । ଦୁଃଖ ସହି ସହି ତା'ର ଧଇର୍ଯ ତୁଟିଥିଲା । ସ୍ନେହ ପାଇ, ଭବିଷ୍ୟଜୀବନର ସୁଖସପନ ଦେଖି ତା'ର ଆଶା ଉଜ୍ଜ୍ୱଳ ହୋଇଛି । ଚଇତନ ପାଣଙ୍କର ଆହ୍ଲାଦ ସେ ପାଇପାରିଛି ପରା !

ଯେଉଁ ପୁଅଟିକୁ ସେ ସଂସାରକୁ ଆଣିଛି ସେଇଟି ପାଣଙ୍କ ଦୟାରୁ ଅନାଥ ହେବ ନାହିଁ, ଏପରି ଧାରଣା ଟଗର ମନରେ ଦୃଢ଼ ହୋଇଛି । ନାଟୁଆ ଫେରିଲେ କେତେ, ନ ଫେରିଲେ କେତେ ? ଚଇତନ ପାଣଙ୍କ ଉପରେ ଜେଲ-ବାହୁଡ଼ା କାର୍ତ୍ତିକ ମହାନ୍ତି ଜୋରକଲେ ପାଣଙ୍କର ଦା ସେ କଅଣ କରି ପାରିବେ ? ପୁଣି, ତାଙ୍କ ଘରଣୀ ଟଗର ? ଟଗର ଏଘରୁ ଯାଇ ସେ ଘରେ ପାଦ ଥୋଇବାକୁ କେତେବେଳ ଲାଗିବ ? ଗୋଟାଏ ପରୁଡ଼ି-ମସିଣାର ଦାମ କେତେ ?

ଏହିପରି ବିଚାରଣା ମନକୁ ଆଣି ଅଚ୍ୟୁତ କହିଲେ, ଦୋଳ ପଡ଼ି ମାଉସୀ ! ଆମର ବଡ଼ ପରବ । ଗଦାଏ କାମ ବାକିଆ ପଡ଼ିଛି । ମୁଁ ଏବେ ଯାଉଛି ।

ବୁଢ଼ୀ କହିଲେ, ତତେ ମୁଁ ଅଟକାଇବି ନାହିଁରେ ପୁଅ । ବଞ୍ଚିବି କି ମରିବି ଜାଣେ ନାହିଁ । କଅଁଳାଗୀ ନାଟୁଆ ଯଦି କୁଆଡେ ପଳାଇଥାଏ, କାର୍ତ୍ତିକା ଯଦି ରକ୍ତମୁହାଁ ହୋଇ ଫେରେ, ତା' କୋପରୁ ତୁ ଚଇତନକୁ ବଞ୍ଚାଇବୁ ।

—ମୁଁ କୋଉ ମଣିଷରେ ଗଣା ? ଚଇତନ ସରପଞ୍ଚ, ପ୍ରତାପୀ ଲୋକ । ତମ ପୁଅ ତାଙ୍କର କ'ଣ କରି ପାରିବେ ? ପର୍ବତରେ ମୁଣ୍ଡ ପିଟିବା ହେବାର । ତେବେ ହଁ, ମୁଁ ତମ ପୁଅକୁ ମୋ ପ୍ରାଣପଣ ବୁଝାଇବି ।

—ମୁଁ ସେଇଆ ଚାହେଁ । ଅରେ ବାପ ଅଚ୍ୟୁତ, ସେ ଗୁମଣ୍ଡାଟା ଯଦି ଫେରେ ସେ ମୋ ନାତୁଣୀକୁ ଆଉ ତା' କଅଁଳା ବାଳୁଙ୍ଗକୁ ବାର ଦୁର୍ଦ୍ଦଶା କରିବ । ସେ ଦୁହିଁଙ୍କୁ କିଏ ଆଶ୍ରା ହେବ ।

—ମାଉସୀ, ଆମେ ଦହେଁ ଟଗରକୁ ଝିଅଠୁ ଅଧିକ ସ୍ନେହ କରୁଁ । ସେ ଯାହା ଚାହିଁବ ମୁଁ ସେଇଆ କରିବି । ତମ ପୁଅଙ୍କଠାରୁ ଛାଡ଼ିଲେ ପଛେ ଛାଡ଼ିବ । ସେ କ'ଣ କରି ପାରିବେ ? ତାଙ୍କ ଜମିତକ ମୋ' ଠାରୁ ଛଡ଼ାଇ ନେବେ, ଏଇଆତ ? ବହୁବାର ଭାଗଚାଷୀ ମୁଁ, ଜମି ନ ଛାଡ଼ିଲେ ସେ ଜମି ନେଇ ପାରିବେ ନାହିଁ ।

କିନ୍ତୁ ମୁଁ ନିମକହାରାମୀ କରିବ ନାହିଁ । ଜମି ଗ୍ରୁଡ଼ିବ । ସେଥିକି ଆମର ଦୁଃଖ ନାହିଁ । ମୋ' କାମ ମତେ ବଳାଇଲଣି ।

—ଜମି କାର୍ତ୍ତିକାର ନୁହେଁ । ଜମି ମୋ'ର । ଘର, ଘରବାଡ଼ି ସବୁ ମୋର । କାର୍ତ୍ତିକା ଯଦି ଭଲ ବୁଦ୍ଧି ନ କରେ, ନାଟୁଆ ଖଣ୍ଡାଳୁଣୀ ଯଦି ମୋ ନାତୁଣୀକୁ ଆଉ ତା ପୁଅକୁ କଷ୍ଟ ଦିଏ, ସବୁ ମୁଁ ମୋ ନାତୁଣୀକୁ ଦେଇଯିବି । ତୁ ଚୁପ କରିବୁ । ହେଲା ?

ଅଚ୍ୟୁତ ହସିଲେ । କହିଲେ, ତମେ ବେଶି ଗୁଡ଼ାଏ ଭାବ ନାହିଁ କି ଗପ ନାହିଁ । ଠାକୁରେ କରନ୍ତୁ, ଆମର ଆଶା ପୂରଣ ହେଉ । ଚଇତନ ସରପଞ୍ଚଙ୍କର ଗଙ୍ଗାରୁ ଗଉଡ଼ମ ଜମି ପଡ଼ିଛି । ସମ୍ପତ୍ତି ଯେ କାହିଁରୁ କେତେ ।

—ଜଗନ୍ନାଥେ ଜାଣନ୍ତି । କାର୍ତ୍ତିକା ବାଇଆ ହୋଇଛି । ସେ କଣ କରାଇ ଦେବ ? ନାଟୁଆ ଆସିଲେ କଥା ସରିଲା । ଅଉ, ଏ ଓଲମୀ ଟୋକୀଟାର ଅପବାଦକୁ ପ୍ରାଣେ ଡ଼ର । ମୋ ଅନ୍ତେ, ସେ ହସି ହସିକା ପଛେ ବାଳୁତ ପିଲାକୁ ଜହର ଖୋଇ ନିଜେ ଜହର ଢ଼ୋକିବ ରେ

ଅଚ୍ୟୁତ କାନରେ ହାତ ଦେଇ କହିଲେ, ଛି ଛି, ଏମିତିକା ଅସନା କଥା ତୁଣ୍ଡରୁ ବାହାର କରନା । ଟୋକୀ ଗଲା କୁଆଡେ ? ମଣିକୁଦର ତା' ଶଶୁରଘର ସମ୍ପତ୍ତି ଯିବ କୁଆଡ଼େ ? ମୁଁ ସେଠାକୁ ଯାଇଥିଲି ।

ଅରକ୍ଷିତକୁ ଷୀର ପେଇ, ପୋଷାକ ପିନ୍ଧାଇ, ତା'ର ହାତ ଧରି ଟୋକୀ ଆସି ପଛରେ ଠିଆ ହେଲା । ବୁଢ଼ୀ କହିବାର ସେ ଶୁଣିଲା, ମେ ଚୁଲିପଶା ଝିଅଆଟା କ'ଣ ମଲାଣି ?

ଟୋକୀ ପଛରୁ ପାଟି କରି ଉଠିଲା, କାହିଁକି ତା'ର ଅଶୁଭ ମନାସୁଛୁ ମା ? ସେ ଭଲ ହୋଇ ଯାଉ । ଠାକୁରେ ତା'କୁ ଭଲ ବୁଦ୍ଧି ଦେଉନ୍ତୁ । ହଁ ଲୋ ମା ! ସେ ସଂସାର କରୁ । ମଣିକୁଦର ଖୁଣ୍ଟିଆ ବଂଶର ନାଁ ନ ବୁଡ଼ୁ । ମତେ ସେ ଗ୍ରୁଡ଼ିଛି । ହଉ ହେଲା । ନିଜର ପୁଅକୁ ଦେଖିବାକୁ ନ ଆସିଲା ତ ନାହିଁ, ସେ ପିଲାକୁ ପୁଅ କଲେ ମହାନ୍ତି ବଂଶର ନାଁ ଏ ଗାଆଁରେ ରହିବ । ମୋ' ବାପାର ରକତରୁ କାଣିଚାଏ ତା ଦେହରେ ଅଛି । ତେଣିକି ମୋ କଥା ମୁଁ ବୁଝିବି ।

ଅଚ୍ୟୁତ କହିଲେ, ମଣିକୁଦର କେତେ ଲୋକଙ୍କ ମୁହଁରୁ ଶୁଣିଲି, ନିଜେ ଭଉଁରା ବାଉସା ବି କହୁଥିଲେ ଲୋ ମା, କବିରାଜଙ୍କ ଔଷଧରେ ଝିଅବାବୁ ଟିକିଏ ଭଲ ଅଛନ୍ତି । କାଶ କମିଛି । ଖଙ୍କାରରେ ରକତ ପଡ଼ୁ ନାହିଁ । ବିଛଣାରୁ ଉଠି ସେହି ଘର ଭିତରେ, ଅଗଣାରେ, ବାଡ଼ରେ ଟିକିଏ ବୁଲାବୁଲି କଲେଣି ।

ଝଛ ଦ୍ୱାରବନ୍ଧର ଅନ୍ୟ ପାଖରେ ଅଚ୍ୟୁତଙ୍କ ଆଗରେ ବସି ଦୁଇ ହାତ ଯୋଡ଼ି ମୁଣ୍ଡରେ ଲଗାଇଲା । ଛାତିକୁ କୋହ ଉଠୁଥିଲା । କ'ଣ ପଚାରିବାକୁ ମନ କରୁଥିଲା, ମୁହଁ ଖୋଲି ପାରିଲା ନାହିଁ । ମନେ ମନେ ଠାକୁରଙ୍କୁ ସୁମରଣା କଲା । ଜଣାଣ କଲା—ହେ କାଳିଆ, ଝରିଆକୁ ଭଲ କରିଦେ । ହେ ସର୍ବେଶ୍ୱର ମହାଦେବ, ନାଗର ଦିନ ତମ ମୁଣ୍ଡରେ ପାଣି ଢାଳାଇଥିଲି, ଜଣାଣ କରିଥିଲି, ତମେ ଗୁହାରି ଶୁଣିଛ ।

ଅଚ୍ୟୁତ କହିଲେ, ଝରିବାବୁ କେବେଠାରୁ ଉଣ୍ଡେଇ ଖାଉ ନାହାନ୍ତି । ମଦର ନାଁ ଧରୁ ନାହାନ୍ତି । ଶିବବାବାଙ୍କ ଡେଉଁରିଆଟାକୁ ମଠରେ ଫୋପାଡ଼ି ଦେବାକୁ ଭଅଁରିକୁ ଦେଇଥିଲେ । ସେ ସେଇଆ କଲା ।

ଝଛ ପଚାରିଲା, କାହିଁକି ମଉସା ?

—ମୁଁ ପଚାରିଲାରୁ ଭଅଁରି କହିଲା, ଝରିବାବୁ ବୁଝିଲେଣି ଯେ ସେ ବାବାଜୀ ଆଉ ତା' ଚେଲା ଠକ ଥିଲେ । ମିଛ ଡେଉଁରିଆ ଦେଇ ଟଙ୍କା ସୁନା ଠକି ନେଉଥିଲେ ।

—କେମିତି ବୁଝିଲେ ?

—ସେ ଦୁଇଟାଙ୍କ ସଙ୍ଗରେ, ଆଉ ସେମିତିଆ କେତେ ଠକବାବା କେଉଁଠି ସବୁ ଧରା ହୋଇ ଜେଲରେ ଅଛନ୍ତି । କୋଉ ଖବର କାଗଜରେ କୁଆଡ଼େ ଛପା ହୋଇଥିଲା । ପୋଲିସ କେତେଥର ଆସି ମଣିଭଦ୍ର ମଠକୁ ଖାନ୍‌ତଲାସ କରିଗଲା । କ'ଣ ସବୁ ନେଇ ଯାଇଛି । ବଟ ଦଣ୍ଡପାଟ, ନାରଣ ନବସିଂହା, ଗଦେଇ ଷଡ଼ଙ୍ଗୀ, ଡମ୍ବରୁ ମହାରଣାଙ୍କ ଘର ସମେତ ଝରିବାବୁଙ୍କ ଘର ଖାନତଲାସ କରି କେତେ [illegible] ଜିନିଷ ଜବତ କରି ନେଇଛନ୍ତି । ଖାଲି ଝରିବାବୁଙ୍କ ଛଡ଼ା ଆଉମାନଙ୍କୁ ଥାନାକୁ ନେଇଥିଲେ । ସମସ୍ତେ ଜାମିନରେ ଫେରିଛନ୍ତି । ଖାଲି ନାରଣ ନବସିଂହା, ଆଉ ଡମ୍ବରୁ ମହାରଣା କୁଆଡ଼େ ଏବଯାଏ ହାଜତରେ ଅଛନ୍ତି ।

ବୁଢ଼ୀ ପଚାରିଲେ, ହଇରେ ପୁଅ, ସେ ଗାଡ଼ପଶା ଝରିଆକୁ ଧରି ନ ନେଲେ କାହିଁକି ?

ଅଚ୍ୟୁତ କହିଲେ, ତାଙ୍କ ଘରେ କିଛି ନ ଥିଲା । ଓଲଟି ସେ ସତ କଥା କହିଲେ । ପୋଲିସ ତାଙ୍କ ନାଁ ସାକ୍ଷୀ ତାଲିକାରେ ପକାଇଛି ।

ଝଛ ପଚାରିଲା, କିଏ ତାଙ୍କର ସେବା କରୁଛି ? କିଏ ତାଙ୍କପାଇଁ ପଥି ରାନ୍ଧି ଦେଉଛି ? ଧନ କୁଆଡ଼ୁ ଆସୁଛି ?

—ଝରିବାବୁ କୁଆଡ଼େ ଆଉ ଦି' ମାଣ ଜମି ବିକି ସାରିଲେଣି । ଭଅଁରିକୁ ସେମିତି ଦଶ ଗୁଣ୍ଠ ଜମି ଲେଖି ଦେଇଛନ୍ତି । ସେଇ ଭଅଁରି ଆଉ ତା' ଝିଅସା

ତାଙ୍କର ସେବା କରୁଛନ୍ତି । ଦିନେ କବିରାଜ ତାଙ୍କ ଘରେ ପଥ୍ୟ ରନ୍ଧାଇ ପୁଅ ହାତରେ ପଠାଇ ଦେଉଛନ୍ତି । ଝିଅବାବୁଙ୍କ ଅବସ୍ଥା ଭଲ ଆଡ଼କୁ ଆସୁଥିବାର ଦେଖି ଏବେ ଗାଁର ଆଉମାନେ ବି ତାଙ୍କ ପାଖକୁ ଯିବାକୁ ଆରମ୍ଭ କଲେଣି ।

—ସୁନାଦେଇ ବଡ଼ଉଣୀ ?

—ଉଅଁ ସେ ତା' କଥା ବି କହୁଥିଲା । ସେ ଦୁ' ଏକର ଜମି ରେଜେଷ୍ଟ୍ରୀ କରାଇ ନେଇଥିଲା । ଆଉ ତିନି ଏକର ପାଇଁ କ'ଣ କାଗଜ ଲେଖେଇ ନେଇଛି । ଦୁଇ, ତିନି ଥର ବାବୁଙ୍କୁ ଦେଖିବାକୁ ଆସିଥିଲା । ବାବୁ ତା'କୁ ପାଖ ପୁରେଇଲେ ନାହିଁ ।

ଟିକି ପଚାରିଲା, କାହିଁକି ସେ ଅଲକ୍ଷଣୀ ତାଙ୍କୁ ଦେଖିବାକୁ ଆସିଥିଲା ? ଏତେପର କରି ତା' ମନରେ ଆଉ କ'ଣ ଅଛି ମତଲବ ?

ଟିକି ଡର ଡର ଆଖିରେ ଅରକ୍ଷିତକୁ ଚାହିଁଲା । ପିଲାଟି କଣ୍ଢେଇ ସଜାଡ଼ି ପିଣ୍ଡାର ଗୋଟିଏ ପାଖରେ ଚୁମାଚାମା ଖେଳୁଥିଲା ।

ବୁଢ଼ୀ ଚିହିଁକି ଉଠି କହିଲେ, ତତେ ମରଣ ହେଉରେ କୁଲାଙ୍ଗାର ! ଟିକିକୁ ସେ ଦୋଷବୁଣୀ, ଧୂଆଁବାଣ ମାରି ଏତେ ହିନିବସ୍ଥା ଦିଆଇଲା ।

ଅଚ୍ୟୁତ କହିଲେ, ଝିଅବାବୁ ଜାଣିଲେଣି । ଦୀପ ଲିଭିଲା ବେଳକୁ ତେଜରେ ଜଳିଲା ପରି ସେ ଭଲ ହୋଇ ଆସୁଥିବେ । କିଏ ଜାଣେ ?

ଟିକି ପ୍ରତିବାଦ କଲା, ନାଇଁ ନାଇଁ, ସେ ଭଲହୋଇ ଯାଉ । ମତେ ନ ପଚାରିଲେ ନାହିଁ, ପିଲାକୁ ପଛେ ନ ଲୋଡ଼ୁ, ତା ସଂସାର ସେ କରୁ ।

ବୁଢ଼ୀ କହିଲେ, ସେ ଛତରଖିଆର ଶୁଭ ମନାସୁଛୁ, ହଇ ଲୋ ଫୁଲେଇ ? ସେ ଥିଲେ ନ ଥିଲେ ତୋ'ର କି ଯାଏ । ଅରକ୍ଷିତର କି ଥାଏ ? ମୁଁ ତ କହିବି, ସେ ଥିଲେ, ତୁ ରାଜରାଣୀ ହ ପଛେ, ସେ ତୋ'ର କାଳ ହେବ । କିଏ ଜାଣେ, କେବେ ଦିନେ ଆସି ତୋ' ଦୁଆରେ ମୂଳ ଲଗିବ, ନୋହିଲେ ଆଉ ପାଞ୍ଚଟା ଭଖାରୀଙ୍କ ସଙ୍ଗେ ମୁଠିଏ ଭିକ, କି ମୁଢ଼ିଏ ଚୋରାଣି ପାଇଁ ଛେଲୁଆ ପାତିବ । ସେଇ ଲୋ, ସେଇ ତୋ' ଆଡ଼କୁ ଆଙ୍ଗୁଠି ଦେଖାଇ ଡାକବକେଇ କହିବ, —ଏଇଟା ମୋର ମାଇପ ଥିଲା, ତମେ ସମସ୍ତେ ଶୁଣ, ଦୋଷବୁଣୀ ହେଲାରୁ ତାକୁ ମୁଁ ଘରୁ ତଡ଼ିଲି । ତମେ ସମସ୍ତେ ଶୁଣ···

ଟିକି ଗରଜି ଉଠିଲା, ମା, ତୁ ଚୁପ୍ ହ ! ତତେ ଯେତେ ନେହୁରା ହେଉଛି, ତୁ ମାନୁନୁ । ଖାଲି ଏଣୁ ତେଣୁ ବକୁଛୁ । ଏଇ ମଉସା ମତେ ଯଦି ମିଛ କହି ନ ଥାନ୍ତେ, ମୁଁ କାହିଁକି ଏ ଘରେ ପାଦ ଥୋଇଥାନ୍ତି କହିଲୁ ? ମୋ' ମନ ହଜିଲା କେହି ଦିନେ ଖୋଜି ନ ଥିଲା । ଝିଅଆର ସବୁ ଅତ୍ୟାଚାର ସହିଥାନ୍ତି । ସେଇଠି ମୁଁ

ମରବା ଯାଏ ମାଟି କାମୁଡ଼ି ପଡ଼ିଥାନ୍ତି । ସେ ଯଦି ଆଗ ମରିଥାନ୍ତା ଲୋ ମା, ଏ ଦୁନିଆଁ ରେ ସହସ୍ର ବିଧବାଙ୍କ ପରି ମୋ ପୁଅର ବୋହୂ ପିଠିରେ ବୋଝ ଦୁଃଖ ଧନ୍ଦା କରି ଚଳିଥାନ୍ତି । ଅଚଳ ହୋଇଥିଲେ କୋଉ କୂଅ ପୋଖରୀରେ ଆଶ୍ରା ନେଉ଼ିଥାନ୍ତି । ଏ ଗାଆଁ ଦାଣ୍ଡ ମାଡ଼ନ୍ତି କାହିଁକି ?

ବୁଢ଼ୀ ବ୍ୟସ୍ତ ହୋଇ କହିଲେ, ମୁଁ ବାଉଳା ଧରିଲଣି ଲୋ, ମୋ' ସୁନା କଣ୍ଢେଇ । ଠାକୁରେ ଝିଅଆକୁ କୋଟିପରମାୟୁ ଦେଉ । ମୋ ଧନକାଳ ସହଳ ସହଳ ସରୁ । ହେ ଠାକୁରେ, ହେ ଜଗନ୍ନାଥେ—

ବୁଢ଼ୀ ବାଇଆଣୀଙ୍କ ପରି ମୁଣ୍ଡ ହଲାଇଲେ । ସପ ଉପରେ ଲେଟି ପଡ଼ିଲେ । ତକିଆ ଉପରେ ମୁଣ୍ଡ ଥାପି ଆଖି ବୁଜିଲେ । ମୁଦିଲା ଆଖିରୁ ଲୁହଧାର ଝରି ଆସିଲା । ଦୁର୍ବଳିଆ ଗୁଡ଼ ଥରାଇ କୋହ ଉଠିଲା । କହିଲେ, ମୋ ମାଆଟା, ମୋ ସୁନାଟା, ମୋର ବୁଦ୍ଧି ବାମ ହେଲାଣି । ମତି ଭରମିଲାଣି । କଅଣ ମୋ ପୋଡ଼ା ପାଟିରୁ ବାହାରି ପଡ଼ୁଛି । ଆଉ ମୋ ପାଟି ଖୋଲିବ ନାହିଁ ।

ଟଗ୍ର ଉଠି ଠିଆ ହୋଇଥିଲା । କୋହ ଗୁପି ସେ ସ୍ତୋଷଘର ଆଡ଼େ ଗଲା । କଣ୍ଢେଇ ଖେଳ ଗ୍ରନ୍ଥ ଅରକ୍ଷିତ ଯାଇ ତା'ର କାନ ଧରି ଠିଆ ହେଲା । କଳବଳ କରି ତା ବୋଉକୁ କେବଳ ଅନାଉଁ ଥିଲା । ଅଚ୍ୟୁତ ଟଗ୍ର ପାଖକୁ ଆସିଲେ । ଅରକ୍ଷିତକୁ ଟେକି ଗୁଡ଼ରେ ଜାକିଲେ । କହିଲେ, ଗ୍ରଇ ଲେଉଟିଲାଣି । ମୁଁ ଯାଏ ମା ! ତୁ ସତ କହିଲୁ । ଧନେ ତୋ' ମାଉସୀ ଏଇଆ କହି ମତେ ଆକଟୁଥିଲେ । ଆଜି ମୁଁ ବୁଝିଲି ମା, ତୋ' ଦୁଃଖ ପାଇଁ ଏକା ମୁଁ ଦାୟୀ ।

—ନାହିଁ ମଉସା । କେହି ଦାୟୀ ନୁହେ । ମୋ ପୂର୍ବ-ଜନମର କରମଫଳ ମତେ ଯେଣେ ମନ ତେଣେ ଓଟାରି ନେଉଛି । କିଏ କ'ଣ କରିବ ? ସବୁ କାଳିଆର ନାଟ । ସେ ଦଳଦଳ କରି ସୃଷ୍ଟିଛି । ଆମର ଗୋଟିଏ ଜନମ ତା'ର ଷଣେ ହେବ କି ନ ହେବ । ତା ଖେଳ ତ 'ଷଣ ଷଣକେ ଆନ' । ତମର କି ଦୃଷ ? ମୋର କି ଦୃଷ ? ମୋ ପାଟିରୁ ଦୁଃଖରେ କଅଣ ବାହାରିଗଲା । ମନରେ ଘେନିବ ନାହିଁ ମଉସା ।

ଅଚ୍ୟୁତ କହିଲେ, ତୋ' ତୁଣ୍ଡରୁ 'ମଉସା ଡ଼ାକ ମୁଁ ଆଉ ଶୁଣିବି ନାହିଁ । ବ୍ରାହ୍ମଣ ଘରର ଝିଅକୁ ଚଣ୍ଡାଳବୁଢ଼ା ଧରମ-ଝିଅ କଲେ ଦୋଷ ଲେଖେ ନାହିଁ । ଆଜିଠାରୁ ତୁ ମୋ'ର ଧରମ-ଝିଅ ହେଲୁ । ହଁ, ସେଇଆ । କାର୍ତ୍ତିକ ମହାନ୍ତିଙ୍କ ଲେଖାରେ ଟଗ୍ର ହଜିଛି । ମୁଁ ତ ଗୋଟାଇ ନେଇଛି ! ନାଟୁଆ ଫେରୁ କି ନ ଫେରୁ ମୋର କି ଯାଏ ? କାର୍ତ୍ତିକା ମହାନ୍ତିଙ୍କୁ ମୋ'ର କି ଖାତର ,? ମାନିଲେ ଦେବତା ନ ମାନିଲେ ପଥର । ଚଇତନବାବୁ ଫେରନ୍ତୁ । କାର୍ତ୍ତିକ ଫେରନ୍ତୁ । ମୋ' କଥା

ସେ ମାନଲେ କାମ ସୁରୁଖୁରୁରେ ହେବ । ନ ମାନଲେ ନାହିଁ । ମୋ' ଅଗଣାରେ ବେଦୀ ପଡ଼ିବ । ବାଇଦ ବାଜିବ । ମୋ' ଝିଅର ବାହାଘର । ହଁ— ।

ଝଣ୍ଟୀ ମୁଣ୍ଡ ନୋଇଁଲା, ଅଚ୍ୟୁତଙ୍କର ବାମ୍ପୁଆ ଛଳ ଛଳ ଆଖି ଝଣ୍ଟୀର ଆଖିରୁ ଲୁହ ଗଡ଼ାଇଲା । ଅଚ୍ୟୁତ ପୁଣି କହିଲେ, ମୋ'ର ଏ ନାତିଟିକୁ ନେଇଯାଉଛୁ ମା ! ମୋ' ଘରେ ଖେଳିବ । ସଞ୍ଜ ହେଲେ ତୋ' ବୋଉ, ମାନେ ଗ୍ରାହାମ ବୋଉ, ସ୍ୱାକୁ ନେଇ ଆସିବେ । ତାଙ୍କ ଝିଅକୁ ସଙ୍ଗୋଳ ଯିବେ ।

ଚାଲରେ ନାତି, ଆମ ଘରକୁ ଯିବା । ଆମ ସାହିରେ ତୋ' ପରକା କେତେ ପିଲା ଅଛନ୍ତି । ତାଙ୍କ ସଙ୍ଗରେ ଖେଳିବୁ । ସଞ୍ଜ ହେଲେ ତୋ' ଆଈଙ୍କ ସଙ୍ଗେ ଫେରିବୁ । ହେଲା ?

ଅରକ୍ଷିତ କାଖରୁ ଓହ୍ଲାଇଲା । ଅଚ୍ୟୁତଙ୍କର ଗୋଟିଏ ଆଙ୍ଗୁଠି ଧରି ଚାଲିଲା ।

ଝଣ୍ଟୀ ଆଖିରୁ ଲୁହ ପୋଛିଲା । ପିଣ୍ଡାରେ ଝୁଲୁଥିବା ଅଲଗୁଣିକୁ ଧରି ଅଗଣାକୁ ଚାହିଁ ରହିଲା । ବସ୍ତରିଲା, ନବରଙ୍ଗିଆ କାଳିଆ ପୁଣି କି ଲୀଳା ଲଗାଇବାକୁ ମନ କଲଣି । ଭେଳିକ ଲଗାଇଲଣି । 'ଧୁଡୁକୁ-ନାଚ' । ମତେ ମୋ'ର ନାଟ କରିବ', ନା ? ହଉରେ କାଳିଆ । ନାଚିବ, ଭଲ କରି ନାଚିବ । ହସିବ, କାନ୍ଦିବ । ଲାଜ ସରମକୁ ତୋର ଉପରକୁ ଫୋପାଡ଼ି ଦେବ । ମାନ-ଅପମାନକୁ ଦେହରେ ମଳି କରିବ । ସେଇଆ ହେଉ ।

ମୁଁ ଅଚ୍ୟୁତ ବେହେରାଙ୍କର ଧରମଝିଅ ! କାର୍ତ୍ତିକ ମହାନ୍ତିଙ୍କ ଝିଅ ଝଣ୍ଟୀ ମରିଛି । ତା' ସଙ୍ଗେ ତା'ର ଜୀବନରେ ଘଟିଲା ଘଟଣାଗୁଡ଼ାକ ବି ଜଳପୋଡ଼ି ପାଉଁଶ ହୋଇଛି । ମଣିକୁଦ କ'ଣ ସେ ଜାଣେ ନାହିଁ । ଶୁଣିଛି, ସେଇଟା ଗୋଟାଏ ଗାଁ । ଏ ଗାଆଁର, ଆହା ମା ଛେଉଣ୍ଡ ଝିଅଟିଏ, କଅଣ ତା'ର ନାଆଁଟି···

ବୁଢ଼ୀଙ୍କର ଡ଼ାକରେ ଝଣ୍ଟୀର ତଦ୍‌ଗତ ଭାବନାର ସପନସଉଧ ଅଜାଡ଼ି ହୋଇ ପଡ଼ିଲା । ଚଳବଳେଇଲା ପରି ଝଣ୍ଟୀ କଡ଼ପାଟିକର ଜବାବ ଦେଲା, ଯାଉଛି ମା, ଦାଣ୍ଡ କବାଟଟା କିଳି ଦେଇ ଆସେ—

ଦାଣ୍ଡ କବାଟରେ ହାତ ଦେଉଣୁ ସେ ଦେଖିଲା, ପଞ୍ଝାଏ ମାଇପେ ତାଙ୍କର ଘର ଆଡ଼କୁ ମୋହିଁ ଆସୁଛନ୍ତି । ଆଗେ ଆଗେ ଚାଲିଛନ୍ତି ଯୋଡ଼ିକାଉଁଳା ହୋଇ ଭଗବାନ ସ୍ୱାଇଁଙ୍କ ସ୍ତ୍ରୀ କୁମୁଦନୀ, ଆଉ କପିଳ ଜେନାଙ୍କ ଘରଣୀ ସୁବାସୀ ।

ଝଣ୍ଟୀର ହାଲୁକା ଶୁଖିଲା । କାହିଁକି ସେମାନେ ଏକଯୋଟ ହୋଇ ଅବେଳାରେ ଆସିଛନ୍ତି । ସେ ବୁଝିପାରିଲା ନାହିଁ । ଏତେବେଳଯାଏ ଖିଆ ଲୁଚ ନାହିଁ ।

ବୁଢ଼ୀଙ୍କର ଡ଼ାକ କାନରେ ବାଜିଲା, ଆଲୋ ଟେଖି !

ଟେଖି ଉତ୍ତର ଦେଲା, ଯାଉଛି— ।

ସେ ଦାଣ୍ଡ କବାଟ ପାଖରୁ ଦୁ' ଖୁଣ ଖେପାରେ ବୁଢ଼ୀଙ୍କ ପାଖରେ ମିଳିଲା । ସେ ବସିଥିଲେ । ତାଙ୍କ ଦେହରେ ହାତ ଦେଇ ଦେଖିଲା, ଜର ନାହିଁ; ଜଳୁ ସେ କପାଳ ବକଲିଆ ଆଖିରେ ଗୁହିଁ ରହିଛନ୍ତି । କହିଲେ, ପଦାକୁ ଯାଇଥାନ୍ତି ଯେ, ମୁଣ୍ଡ ତ ବୁଲାଇ ଦେଉଛି, ଛାତି ଥରୁଛି । ପାଣି ମହାଏ ଦେ । ଆଗ ମତେ ଧରି ପଦାକୁ ନେଲୁ—

ଟେଖି କହିଲା, ମୋ କଥା ତୁ ବେଶୀ ଗୁବୁଛୁ । ଏଥି ତେଣୁ ଗୁଡ଼ାଏ ଗପୁଛୁ । କାଲିଠୁ ଖାଇନୁ । ସେ ବଟିକାଔଷଧ ଜର ଉଣାକରେ ଯିନା ବାଇବଛ କରେ । ଘୋଳଦହିରେ କାଗେଜ ଚପୁଡ଼ି ଗିଲାସେ ପିଇଲେ ଭଲ ହୋଇଯିବୁ ।

ବୁଢ଼ୀ କହିଲେ, ଆଗ ମତେ ଧରି ପଦାକୁ ନେ, ସେଇଠୁ ଯାହା ଦେବୁ ପିଇବ ।

—ମାଆ ଲୋ, ଗଦାଏ ମାଇପେ ଆମ ଘରକୁ ଆସୁଛନ୍ତି । କାହିଁକି ଆସୁଛନ୍ତି ମୁଁ ଅନୁମାନ କରି ପାରୁଛି । ତାଙ୍କ ଟାପରା କଥାର ମୁଁ ଠିକଣା ଜବାବ ଦେବି । ତତେ ମୋ' ରାଣ, ତୁ ଖାଲି ଶୁଣୁଥିବୁ । ପଦେ କଛି କହିବୁ ନାହିଁ । ହେଇଟି, ସେମାନେ ଆସିଗଲେ । ହୁଁ, ଅଚ୍ୟୁତ ମହସା ପୁଅକୁ ସଙ୍ଗରେ ନେଇ ଯାଇଛନ୍ତି । ଖୋଜକୁ ନାହିଁ··· ।

ଟେଖି ବୁଢ଼ୀଙ୍କର ହାତ ଧରି ଉଠାଇଲା ।

ଖଞ୍ଜାଭିତରକୁ ଗାଁ ମାଇପେ ପଶିସାରିଥିଲେ ।

ସେମାନେ ଅଗଣାରେ, ବୃନ୍ଦାବତୀଙ୍କ ଚଉରା ଆଗରେ ବସିଲେ । ଟେଖି ମସିଣା ଦୁ' ଖଣ୍ଡି ପାରି ଦେଇଥାଏ । ସେ ଖାଲି ହସହସ ହେଉଥାଏ । ସେମାନଙ୍କର ଚର୍ଚ୍ଚା କରିବାକୁ ଏପାଖ ସେପାଖ ହେଉଥାଏ । ଘୋଳଦହି ପାଣିରେ ଚିନି ମିଶାଇ ସେମାନଙ୍କୁ ଦେଉଥାଏ । ପାଚିଲା କଦଳୀ ଦୁ' ଗୁରିଫେଣା ଆଗରେ ଥୋଇ ଦେଇଥାଏ ।

—ବାରିର ଫଳ । ଟିକଏ ଟାଣ ପାଚିଲା । ଖାଅ ମ ! ଆଉ କ'ଣ ଦେଇ ପାରିବ ? ଅବେଳାରେ କୁଆଡେ ସବୁ ମାଡ଼ିଆସିଲ ?

କୁମୁଦନୀ କହିଲେ, ତମକୁ ଦେଖିବା ପାଇଁ । ଆଉ ତ ପଦାକୁ ବାହାରୁନ ଟେଖି ? ନୂଆବୋହୂ ପରି କଣରେ ଲୁଚି ରହୁଛ ଯେ ?

—ଦୋ-ସୀମାରେ ଠିଆ ହୋଇଛି ମ ଭାଉଜ ! ପାଦକେ ଝିଅପଣିଆଁ । ଆର ପାଦକ ବୋହୂପଣିଆଁ । ବାପା ଫେରିଲେଣି । ବୋଉକୁ ଆଣିବାକୁ ଗଲେଣି ।

ଦହେଁ ଫେରଆସିଲେ ହୁଲହୁଲି ପଡ଼ିବ । ସେଇଠୁ ବୋହୂପଣରେ ତମ ସଙ୍ଗେ ସାଙ୍ଗ-ସରସା ।

ଜଣେ ପଗ୍ଭରିଲା, ତମ ବାଛୁରୀଟି କାହିଁ ?

—ଚରିବାକୁ ଯାଇଛୁ ।

—ଆଉ ଜଣେ କାହାକୁ କହିଲେ, ଦରବୁଢ଼ୀ ଚଇତନ ସରପଞ୍ଚଙ୍କର କପାଳ କେଡ଼େ ଭଲ ଗୋ ଦେଖୁଛ ! ଗାଈବାଛୁରୀ ଏକ ସଙ୍ଗେ ନିଜ ଗୁହାଳକୁ ଅଡ଼େଇ ନେବେ ।

ଟଗ୍ରି ହସି ଉଠିଲା । ସେମାନଙ୍କ ଦୃଷ୍ଟି ଓଟାରିଲା । ମୁଣ୍ଡରୁ ବସନ ଖସି ପଡ଼ୁଥାଏ । ଗ୍ରୀବ ଉପରେ ସୁନା ହାରସହି ପଦକଟି ଦୋହଲି ଚକଚକ ଦିଶୁଥାଏ । କାନଫୁଲର ଝଟକ, ହାତ କାଚର ଝୁମୁଝୁମୁ ଗାଁବୋହୂମାନଙ୍କୁ ଅଲପ ତାଟକା କରୁଥାଏ ।

ଖୁସିବାସିଆ, ଅବା ଚିକିଏ ଭଲରେ ଚଳିଲା ବୋହୂଟିମାନେ ସକାଳୁ ଗ୍ରୀବ ପହରକଯାଏ ଖଟିଖଟି ଲୋଟଣୀ ପାଗ୍ଭ । ଅଗ୍ଭବ ଅସୁବିଧା ଲାଗି ରହିଥାଏ । ଗୁମାନ-ଭୂଷଣୀସ୍ନେ । କାହୁଁ ପାଇବେ ଏମାନ ? ଗେରସ୍ତମାନଙ୍କ ସୁଆଗ ତାଙ୍କର ସମ୍ବଳ-ସମ୍ପଦ । ଅମୂଲମୂଲ ସେ ସମ୍ପଦ ତାଙ୍କର ଗରବ ।

ସେହି ସମ୍ପଦରୁ ବଞ୍ଚିତା ଟଗ୍ରି । ବଡାଭ଼ଡା, ଅଖୋଜା, ଅଲୋଡ଼ା ଗାଁ ଝିଅଟି । ଅଚ୍ୟୁତ ବେହେରାଙ୍କର ଆଶ୍ୱାସନାରେ ସେ ଭସ୍ମ ତେଜିଥିଲା । ଚଇତନ ପାଣଙ୍କର ସ୍ନେହ ଓ ଉପହାର ଅଦୂର ଭବିଷ୍ୟତର ସୁଖ-ସପନ ମନରେ ଆଣ୍ଡା ଥାପିଥିଲା ।

ହସ ରୋକ ସେ କହିଲା, ବୋଲକରା ପୋଷା ଗାଈଟି ମ ଭାଉଜେ, ଗୁହାଳ ଚାଲିସି । ତା'କୁ ଅଡ଼େଇ ନେବା ଲୋଡ଼ା ହେବ ନାହିଁ । ଆ ଡାକିଲେ ସେ ଆପେ ଧାଇଁଯିବ । ବାଛୁରୀଲାଗି ସେ, ବାଛୁରୀତ ପଛେ ପଛେ ଧାଇଁବ ।

ସମସ୍ତେ ଅବାକ୍ ହୋଇ ଟଗ୍ରିର କଥା ଶୁଣିଲେ । କଏ କ'ଣ ବିଗ୍ଭରୁଥିଲା କେଜାଣି, କୁମୁଦନୀ ଗ୍ଭବୁଥିଲେ, ସେଇ ଝିଅଟା, କାନ କାଟିଲେ ଯାହାର ତୁଣ୍ଡରୁ ବଚନ ବାହାରୁ ନ ଥିଲା, ସେ କେମିତି କଥା କହି ଶିଖିଲା ! ଲାଜ-ସରମ ପଛକୁ ଫୋପାଡ଼ି ଦେଇଛୁ । କେତେ ମୁହାଁସରେ ମୁହଁକୁ ବଲଦଲ କରି ଗ୍ଭହିଁ ନାଁ-ପକେଇ କାର୍ତ୍ତିକା-ଦାଗୀର ଝିଅଟା ଜବାବ ଦେଉଛୁ । ପଦେ ଟାଣ କରି ହାଣିବାକୁ ମନ କଲେ କଅଣ କହିବେ ବିଗ୍ଭରୁଣୁ, ଏକାଥରେ ଦୁଇଟି ପାଟକପୁରା ପାଚିଲା କଦଳୀ ଗ୍ଭଞ୍ଚି ଗୋଟିକରୁ ଗ୍ଭେପା ଛଡ଼ାଇ ପାଟିରେ ଭରିଲେ ।

ତାଙ୍କ ମନକଥା ବୁଝିଲା ପରି ସୁବାସୀ ପଗ୍ଭରିଲେ, ଏ ସବୁ ଅପୂର୍ବ-ଅମୂଲ୍ୟ ଦରବ କୋଉଠି ଲୁଗ୍ଭଇ ରଖିଥିଲ ଗୋ ? ତମ ସୁନା ଦେହକୁ ଖାସା ମାନୁଛୁ । କୋଉ ରାଜାଘର ବୋହୂ ପରି ଦିଶୁଛ ।

ଆଉମାନେ ପୁଣି ହସି ଉଠିଲେ । ଝଭା ସେମାନଙ୍କ ସଙ୍ଗେ ଯୋଗ ଦେଲା । ହସ ଥମାଇଁ ସେ ଉଠି ଠିଆହେଲା । ମୁହଁ ପୋଛି, ଗମ୍ଭୀର ହୋଇ କହିଲା, ଜାଣିଥିବ ତ ଭାଉଜ, ଗରିବ ଘରର ଝିଅଟା ମୁଁ, ଦିନେ ରାଜରାଣୀ ହୋଇଥିଲି । ମୋ' ଗୋଡ଼ରେ ହାତରେ ପାଣି ଲାଗୁ ନ ଥିଲା । ଯେଉଁମାନେ ଜାଣିନ, ଶୁଣିନ, କାହାକୁ ହେଲେ ପଚାରି ବୁଝିବ । ମଣିକୁଦର ଫଗୁଖୁଣ୍ଟିଆ କ'ଣ ଥିଲେ । ତାଙ୍କର ପୁଅ, ମୋ' ଅରକ୍ଷିତର ବାପ କେମିତି ଚଳୁଥିଲା । ଖେଳା କରୁଥିବାବେଳେ, ଅସୁସ୍ଥ ପାଇଁ ସେମାନେ ବନା ବସ୍ତିରେ ଯାହା ଫୋପାଡୁଥିଲେ, ଦାନ ଦେଉଥିଲେ, ସେଥିରେ ନ ଥିଲା ଲୋକେ ଘର କରିସାଇଥିଲେ । ସେଇ ଘରର ଗେଲବସରିଆ ବୋହୂ ମୁଁ ହୋଇଥିଲି ।

ଝଭାର ଆଖିରୁ ଲୁହ ଝରିଲା ।

ସେମାନେ ଆଶ୍ଚର୍ଯ୍ୟ ହୋଇ ଚାହିଁଲେ ।

କୁମୁଦନୀ କହିଲେ, ଏବଯାଏ ଭୁଲି ପାରିନ ? ପୁଣି ରାଜରାଣୀ ହେବାକୁ ବସିଛ ।

ଝଭା କହିଲା, ଅଙ୍ଗେଲିଭା ଅନୁଭବ, କେମିତି କିଏ ପାସୋରି ପାରିବ ଭାଉଜ ? ମୋ' ପରି ନିର୍ଲଜ୍ଜା ହୋଇ ମୁହଁରେ ସିନା କହି ପାରିବ ନାହିଁ, ଜଣଜଣ କରି ମନରେ ହେଜ ।

ତୁନି ହୋଇ ଝଭା ଆଖି ପୋଛିଲା । ପୁଣି କହିଲା, ମୋର କି ଚାରା ? କାହାର ଭାଗ୍ୟ ଉପରେ କାହାର ହାତ ଅଛି ଗୋ ? ରାଜରାଣୀ ଝଭାର ଦୁର୍ଦ୍ଦଶା ଆଖି ଆଗରେ ଦେଖିଛ । କେଡ଼େ ହଟହଟା । ପୁଣି ରାଜରାଣୀ ହେବାକୁ ଯାଉଛ ପରା, କ'ଣ ଦେଖିବାକୁ ଜାଣିବାକୁ ଏକଯୋଟ ହୋଇ ଅବେଳାରେ ଅଧାଧିଆଁ ଆସିଛ ? ଯାହା ମନରେ ଆଉ ଯେଉଁ ସନ୍ଦେହ କଲବଲ ଘଲବଲ ହେଉଛି ମନ ଖୋଲି ପଚାରୁନ ? କପଟ ନ ରଖି କହିବି ।

ଟିକିଏ ଅପେକ୍ଷା କରି ଝଭା ପୁଣି କହିଲା, ଭାଉଜମାନେ ଗୋ, ଦରବୁଢ଼ୀ ହେବାକୁ ଯାଉଛି, କାହାକୁ ବିଶ୍ୱାସ, କାହାକୁ ଅବିଶ୍ୱାସ ଏତକ କ'ଣ ମୁଁ ଶିଖି ନାହିଁ ? ଜଣକ ଉପରେ ମୋ'ର ବିଶ୍ୱାସ । ସେଇ ଜଣକ ଉପରେ ମୋ'ର ସବୁ ଦାବୀ । ସବୁ ଅଧିକାର । ଉଠ୍ କହିଲେ ସେ ଉଠେ, ବସ କହିଲେ ସେ ବସେ ।

ସୁବାସୀ ଭରସିଲା, ଆମେ ଜାଣୁ ଗୋ ଝଭା ! ସମସ୍ତେ ଆମେ ଭାରି ଖୁସି । ତମକୁ ଶଙ୍ଖୋଳିବାକୁ ଆସିଥିଲୁ । ସେ ଜଣକ ଆମ ସରପଞ୍ଚ ଚଇତନ ପାତ୍ର ।

ଝଭା ହସହସ ହେଲା, କହିଲା ମୁଁ ଜାଣେ ତମେ ସେଇଆ କହିବ । ଆଗୁଆ ଶଙ୍ଖୁଳା ? ଭଲ କଲ ଆଇଲ । କାଲି କ'ଣ ହେବ କିଏ ଜାଣେ ? ଉପରେ

ଦାଇବ ଅଛି । ତାଙ୍କୁ କେହି ଦେଖି ନାହିଁ । ଭକ୍ତ ମୂର୍ତ୍ତି ଧରି ସେଇ ବସିଛି ବଡ଼ ଦେଉଳରେ । କାଳିଆ ଜଣକ ବଡ଼ ହର୍ତ୍ତା । ଜନେ କରୁଛି ସେ କେହି ଜାଣୁନାହିଁ । ସମସ୍ତେ ଜାଣନ୍ତି ସେହି କରାଉଛି । ମର୍ମିଷ ବସ୍ତ୍ରର ଫସରଫାଟେ । ସେ ବୃଝେ, ସବୁ ବସ୍ତ୍ରରଣା କ୍ଷଣ କ୍ଷଣକେ ଆନ ହୁଏ । ସେଇ କରେ ଗୋ ସନ୍ତାନମାନେ ! ସେ କାଳିଆ ଉପରେ ବିଶ୍ୱାସ ଅଛି । ଜନ୍ମ ଦାବୀ କାହାର, ଅଧିକାର ବା କାହାର ? ସେତକ ଅଛି ପ୍ରାଣ ଉପରେ ।

ଟଙ୍କା ଜାକ ଗୁଡରେ ହାତ ମାନି କହିଲା, ବୁଝିଲ, ମୋର ସେ ଜଣକ ପ୍ରା'ଣ ଭିତରେ ଲୁଚିଛି !

ବୁଢ଼ୀ ଦହି ପାଣି ପିଇ ଆଶ୍ୱସ୍ତ ହୋଇଥିଲେ । ଖରା ଲୁଚି ଯାଇଥିଲା । ବନର ଆଲୁଅ ମହଲଣ ହୋଇ ଆସୁଥିଲା । ଶୀତଳ ପବନ ଦେହକୁ ଭଲ ଲାଗୁଥିଲା । ଟଙ୍କାର ଆକଟ ମାନ ବୁଢ଼ୀ ଚୁମା ରହୁଥିଲେ । ଟଙ୍କାର କଥା ଶୁଣୁଥିଲେ । ତା' ଢଙ୍ଗ ତାଙ୍କୁ ଭଲ ଲାଗୁନଥିଲା । ଟଙ୍କାର ଶେଷ କଥା ଶୁଣି ସେ ମୁହଁ ଖୋଲିଲେ, ଆଲୋ ଓଲମୀ ଟଙ୍କା ! ଯେଉଁଟା ତୋ' ଭିତରେ ଅଛି ସେ ତୋ'ର ଯେ, ତାକୁ ତ ନଚାହୁଁ ସେଇ କାଳିଆ । ମତେ ଆକଟି ଥିଲୁ, ଜନେ ପୁଣି କ'ଣ ଗର୍ଭଗ୍ଲାନିଛୁ ? ତୋ'ଠେଇଁ ସେମାନଙ୍କର ଭାରି ଶରଧା ! ତତେ ଦେଖିବାକୁ, ଶ ଝୋଳିବାକୁ ଆସିଥିଲେ । କେତେ ଭାଗ୍ୟର କଥା । ସେମାନଙ୍କୁ ମୁଁ କଇଲଣ କରୁଛି । ତୁ ଅଇଲୁ , ମତେ ଧରି ଧରି ନେ, ବାଶକ ଯିବ ।

ସେମାନେ ଉଠିଲେ । ବୁଢ଼ୀଙ୍କର ଦେହ ଭଲ ନାହିଁ ଜାଣି ସମସ୍ତେ ପଦେ ପଦେ ପଚାରିଲେ । ଗତଗାଡ଼ର ପେଗ୍ଗୁବୋବାଳ, ଆଉ ଭେରଣ୍ଡାଡ଼ାକ ସୁମରଣା କଲେ । ସେମାନେ ତରତର ହୋଇ ବଦାୟ ନେଲେ । ମଣିଲେ, ଏଇ ମୁଣ୍ଡଟା ଖସିବ; ତାଙ୍କ ମୁହଁରେ ଯମ ରଜାର ଦୂତମାନେ ଶୀତଳ ହାତ ବୁଲାଇ ଦେଲେଣି; ପେଜୁଆ ପେଜୁଆ ଆଖିଡ଼ୋଳାରେ ଜୀବନଶିଖାର ଆଲୁଅ ହଲହଲ ହେଲାଣି । ଏଇ ରାତିରେ ଲଭିବ ଗୋ ! ସହଳ ଗ୍ଲଳ—

ତ୍ରୟୋଦଶୀର ଜହ୍ନ ମଥାନ ଉପରକୁ ଉଠିଲାବେଳକୁ ଟଙ୍କା ଘରକାମ ଶେଷ କରିଥିଲା । ତା'ର ଜେଜେମା'ଙ୍କର ଯତ୍ନ ନେଇ ତାଙ୍କୁ ପିଣ୍ଡାରେ ବସାଇ ଗୋଡ ଆଉଁସି ଦେଉଥିଲା । ଅଚ୍ୟୁତ ଯାହା କହି ଯାଇଥିଲେ ମନଖୁସିରେ ବୁଢ଼ୀଙ୍କ ଆଗରେ ପ୍ରକାଶ କରିଥିଲା ।

ବୁଢ଼ୀ ଅତି ଆନନ୍ଦରେ ପାଟି କରି ହସିଲେ । କହିଲେ, ଏତେ କଥା ତା' ମନରେ ଥିଲା ? ଠାକୁରେ ବଡ଼ ଲୋକ ! ଆସୁ ସେ ରାହାବାଲୀ ନାତୁଣୀ, ଆଉ କି ଡର ? ମଲେ ତ ତରିଯିବି ଲୋ ଝିଅ ! ନ ମଲେ ତୋ'ରି ପାଖରେ ଆଶ୍ରା ନେବି । ଅରକ୍ଷିତ ଆଉ ଅଲେଖ ଦୁଇ ନାତିଙ୍କି ଖେଳାଇବି ।

ଝିଅ ହସିଲା । ତା'ର ଜେଜେମା ତା'କୁ ବଡ଼ବଡ଼ ଆଖି କରି ଚାହିଁଲେ । କେଡ଼େ ବେଗୀ ସେ ନିଜେ ସଫା ସୁତୁରା ହୋଇ ଅଚ୍ୟୁତ ବେହେରାଙ୍କର ଧର୍ମଝିଅ ହେବ ବୋଲି ନିଜକୁ ସଜାଇଛି । ଚଇତନ ଯେଉଁ ସୁନ୍ଦରିଆ ଶାଢୀ ଓ ଜାମା ଦେଇଥିଲେ, ତା'କୁ ପିନ୍ଧିଛି । ଗହଣା ତ ଦେହରେ ଅଛି । ଆଖିରେ କଜଳ । କପାଳ ମଝିରେ ଗୋଲା-ସିନ୍ଦୂରର ଗ୍ଲେଟ ବିନ୍ଦୁଟିଏ । ଖାସା ମାନୁଛି । ଆରେ, ପାଦରେ ବି ଢ'ଗାର ସରୁ ଅଳତା !

—ନଠେଇ କରି କ'ଣ ଏମିତି ଦେଖୁଛୁ ମା ?

—ଡତେ ଲୋ ଝିଅ, ମୋ' ଆଖିର ଶୋଷ ମାରୁଛି । ଏବେ ବୁଝିଲି । ସେଇ ଝରସଖି ମାଇପିଗୁଡ଼ାଙ୍କୁ କାହିଁକି ଏତେ କଥା କହିଲୁ । ଡର କାହାକୁ ? ରାଜାଘର ବୋହୂ ମୋ ଝିଅ ସୁନ୍ଦରୀ ମୁଣ୍ଡ ଟେକି ରତନପୁର ଦାଣ୍ଡରେ ଚାଲି ଯାଉଥିବ । ସେଇମାନେ ଲୋ, ଯେଉଁମାନେ ବାଆଁରେଇ ହୋଇ କ'ଣ ବଘଟଣ ଦେଖି ନଗରନାଉଳୀପଣରେ ଅପବାଦ ରଟାଇବାକୁ ଶିଖାଶିଖି ହୋଇ ଆସିଥିଲେ, ସେଇମାନେ ମୋ' ଝିଅର କଡ଼ରେ, ପଛରେ ଚାଲିଥିବେ । ତୁଣ୍ଡରେ ପାଟଘର ନୂଆ ବୋହୂଟିର ଖୋଲାହାତର ପରଶଂସା ।

ଝିଅ ହସିହସି ଦୋହଲିଲା । କହିଲା, ପୁଣି ତୁ ବକବକ ହେବାକୁ ମନ କଲୁଣି ? କାହା ମନ କଥା କିଏ ଜାଣେ ? ଯାହା ତୁ ମୋ' ଆଗରେ କହୁ, ଯେତିକି ମନେ ପଡ଼ିଲା, ତାଙ୍କୁ କହିଦେଲି । କାଲି ମୋ' କପାଳରେ କଅଣ ଅଛି, ମୁଁ ଜାଣେ ନାହିଁ । ଆଜିକା ଟାଣ ମୁଁ ଛାଡ଼ନ୍ତି କାହିଁକି ?

—ତୁ ଭଲ କଲୁ ମା ! କାହା ଗୋଠରେ ଅନ୍ୟ କେହି ଧୂଆଁ ଦେବେ ନାହିଁ ।

—ହଉ, ତୁ ତୁନି ହ । ସଞ୍ଜ କେତେବେଳୁ ହେଲାଣି । ପିଲାଟା ଏତେବେଳ-ଯାଏ ଫେରିଲା ନାହିଁ । ଦାଣ୍ଡକୁ ଥରେ ଚାହିଁଦେଇ ଆସେ । ସେ ନ ଥିଲାରୁ ସତେ ଲୋ ମା, ଘରଟା ଆଜି କେମିତି ନିଛାଟିଆ ଲାଗୁଛି ।

ଅନେକ ବେଳଯାଏ ଝିଅ ଦାଣ୍ଡ ପିଣ୍ଡାରେ ଏକା ଏପାଖ-ସେପାଖ ହେଲା । ତଳକୁ ଓହ୍ଲାଇ ଚାରିଆଡ଼କୁ ଚାହିଁଲା । ସୁନ୍ଦର ଜହ୍ନ-ରାତି । ଆକାଶ ନିର୍ମଳ । ରହି-ରହି ଶୀତଳ ପବନ ବହୁଛି । ଗାଁ ଦାଣ୍ଡଆଡ଼ୁ ଭାସିଆସୁଛି ପିଲାଙ୍କର କୋଳାହଳ । ଝାଞ୍ଜ-ମୃଦଙ୍ଗର ଶବଦ । କିଏ ପୁଣି ତୂରୀ ଫୁଙ୍କୁଛି ତୁହାକୁ ତୁହା । ଗାଁ-

ଲୋକଙ୍କୁ ଡାକ ଶୁଭୁଛି । କିନ୍ତୁ, ସେ ଦୂରର ଡାକ କେଜାଣି କାହିଁକି ଟେଭିର ମନରେ ବିକଳଆଭାବ ଆଣୁ ଛି ।

ଟେଭି ଖଞ୍ଜା ଭିତରକୁ ଫେରି ଆସିଲା । ଦେଖିଲା, ତା'ର ଜେଜେମା ସେହି ପିଣ୍ଡା ଉପରେ, ବାହୁରେ ମୁଣ୍ଡ ଥାପି ତଳେ ଶୋଇପଡ଼ିଛନ୍ତି । ସେମିତି ଶୋଇବା ତାଙ୍କର ଅଭ୍ୟାସ । କିନ୍ତୁ, ଦେହ ପୂରା ଭଲ ହୋଇ ନାହିଁ । ଜର ଓହ୍ଲାଇଥିଲେ ବି ସେ ଅତି ହାଲିଆ ଦିଶୁଛନ୍ତି । ଆଉ ଔଷଧ-ବଟିକା ଦେବ କି ନ ଦେବ ବିଚାରିଲା । ପାଖରେ ବସି ଆଲୁଅଟି ଅଧିକ ତେଜିଲା । ସ୍ଥିର କଲା, ସେ ଉଠିଲେ ତାଙ୍କୁ ପଚାରି ଯାହା କରିବ ।

ମନେ ପଡ଼ିଲା, ଗାଈଟି ଦୁହାଁ ହୋଇନାହିଁ । ଇଥିଆ ତା' ବୋଉଙ୍କ ସଙ୍ଗରେ ଆସିବାକୁ ଅଟକି ଯାଇଥିବ । ବେଶୀ ଡେରି ହୋଇନାହିଁ ତ, ସେ ଅପେକ୍ଷା କରିବ । ଆଜି କେତେ ଏକାଏକା ଲାଗୁଛି । ମଣିକୁନ୍ଦର ନିକାଞ୍ଚନ ଚଳଣି ମନକୁ ଆସୁଛି ଆଉ ସେହି ଚଳଣି-ସାଥିରେ ଯୋଡ଼ା ଯେତେଯେତେ ଘଟଣା । ହସ, କାନ୍ଦ, ଉତ୍ତେଜନା !

ଛି, କାହିଁକି ସେଗୁଡ଼ା ମୁଣ୍ଡ ଭିତରକୁ ପଶିଆସୁଛି ଆଜିପରି ଶୁଭ-ଦିନରେ ? ସେ ଉଠିଲା । ମୁଣ୍ଡ ହଲାଇ ସେଗୁଡାକୁ ଫୋପାଡ଼ିଲା ପରି ମଣିଲା । ନିଜ ଶୋଇବାଘରେ ପ୍ରବେଶି ଆଲୁଅ ତେଜିଲା । ଚାହିଁଲା ଚାରିଆଡ଼କୁ, ପୁଣି ନିଜକୁ । ଏଇ ଖଟ ଉପରେ ସେ ବସିଥିଲେ । ଏଇଘରେ ଟେଭି ମଡହରା ହୋଇଥିଲା, ନିଜକୁ ସମର୍ପି ଦେଇଥିଲା । କହିଥିଲେ, ତୁ ମୋ'ର ହୋଇସାରିଲୁ । କହିଥିଲେ, ମତେ ତୋ' ପାଖରେ ସମର୍ପି ଦେଇଛି— । ଫେରିଆସିବେ ସେ ଆସନ୍ତାକାଲି ସଞ୍ଜ ଆଗରୁ । ନୋହିଲେ ପୁନେଇଁ ସକାଳେ । ଏତେ ଶୀଘ୍ର କ'ଣ ତା' ବାପା ଫେରିବେ ଯେ—

ତଥାପି ଟେଭି ସତର୍କ ହେଲା । ଏଇ ଘରେ ତ ନାଟୁଆ ରହିବ ! ଯଦି ସେ ଫେରେ, ନୋହିଲେ ରହିବେ ଏକା ତା' ବାପା । ସେହି ମୁହୂର୍ତ୍ତରେ ମନକୁ ଯେଉଁ ଭାବନା ଆସିଲା, ସେ ତରତର ହୋଇ କାମରେ ଲାଗିଲା । ସଜଡ଼ାସଜଡ଼ି ! ଟିଣ ବାକ୍ସଟି ତା'ର ନୁହେଁ । ଥିଲା । ନିଜେ ସେ ଆଉ ଗୋଟିଏ ବାକ୍ସ କିଣିବାକୁ କେବେ ମନ କରି ନଥିଲା । ପରିଶ୍ରମ କରି ନିଜେ ଅର୍ଜିଥିବା ଧନ, ପୁଣି ଯେଉଁ ଧନ ତାର ଜୀବନ-ସର୍ବସ୍ୱ,—ନୁହେ ତ ଆଉ କ'ଣ ? ଆଜି ନ ହେଲେ କାଲି ତ ହେବ ? —ତାକୁ ଦେଇଥିଲେ, ସେତିକ ଲୁଚାଇ ରଖିବ କେଉଁଠି ?

ଆଖି ପଡ଼ିଲା ନିମୀଳି ପେଡ଼ିରେ । ସେଇଟି କେବଳ ତା'ର । ବେଶ୍ ବଡ଼ । ତାଲା ବି ପଡ଼ି ପାରିବ । ସେ ଗୋଟିକ ତା'ର ବହୁ-ବର୍ଷର ସାଙ୍ଗ । ବେତଫାଳରେ ବୁଣା । ତା'ର ଭିତରେ ତା' ଧନ ସେ ଲୁଚାଇ ରଖିବ ।

ସେଇଆ କଲା ।

ଘର ଝରକା ମଇଳା କଣକୁ ଆଉଜାଇଲା । ପଦାକୁ ଆସିଲା । ତା'ର ଉପସ୍ଥିତି ଅନୁଭବ କରି ବୁଢ଼ୀ ପଚାରିଲେ, ଟେଭି କଲେ, ପୁଅ ଆଇଲା ?

—ନାହିଁମ ମା ! ତୁ ବ୍ୟସ୍ତ ହୁଅନା । ସେ ଆଜି ପଦାରୁ ଫିଟିଛି । ମଉସାଙ୍କ ପରି ସାଙ୍ଗ ପାଇଛି । ସେ ନିଶ୍ଚେ କଦମ୍ବଦାଣ୍ଡକୁ ଯାଇଥିବ । ତତେ ଉଠାଇ ବସାଇବି ?

—ମୁଁ ନିଜେ ଉଠି ପାରିବି ଯେ ।

ବୁଢ଼ୀ ହାତ ଭରା ଦେଇ ଉଠିଲେ ।

ଟେଭି କହିଲା, ଘରଟି ସଜାଡ଼ୁଥିଲି । ବାପା ଫେରିଲେ ସେଇଠି ରହିବେ । ରଥିଆ ଆସିବ କି ନାହିଁ, ମୁଁ ଗାଈ ଦୁହିଁ ଆଣେ । ଉଷୁମ କଲେ ତୁ ପିଇବୁ । ଅରକ୍ଷିତ ନିଶ୍ଚେ କିଛି ଖାଇଥିବ । ମନ ହେଲେ ସେ ଦୁ' ଢୋକ ପିଇବ ।

—ଆ, ତୁ ?

ଟେଭି ଜବାବ ନ ଦେଇ ଘର ଭିତରୁ ଆଳୁଅ ଆଣିଲା । ଦୁଧଠେକ ଧରି ବାଡ଼ିଆଡ଼ ଗୁହାଳକୁ ଗଲା । ମନ ଚଙ୍ଗ ଚଙ୍ଗ । ନିକାଞ୍ଚନ ପରିବେଶ ଯାହାର ଜୀବନର ଅତି ଆପଣାର, ସେହିପରି ଥିଡରେ, ଜୋଛନାଧୂଆ ନିର୍ମଳ ସନ୍ଧ୍ୟା ପହରରେ, କପରି ଗୋଟାଏ ଅବୋଧ ବିଷର୍ଣ୍ଣଭାବ ମନତଳେ ଓଲଟପାଲଟ ହେଲା । ଡରଡ଼ର ଲାଗିଲା ।

ଗାଈ ଦୁହଁା ସର ସର ଆସୁଛି, ଅଗଣାରୁ ପାଟି ଶୁଭିଲା । ବୁଢ଼ୀ ଡାକ ଛାଡ଼ୁଥାନ୍ତି, ଆଲୋ ଟେଭି ! ଅରକ୍ଷିତ ପାଟି କରୁଥାଏ, ଦେଖ ମା ମୋ ଖେଳଣା । ମାଉସୀ ମନକୁ ମନ କହୁ ହେଉଥାନ୍ତି, ଚାହାସିଆ ପାଇଁ ଡେରି ହେଲା ମା—

ଟେଭି ଜାଣିଲା, ସେମାନେ ଆସିଲେଣି ।

ଅଚ୍ୟୁତଙ୍କ ସ୍ତ୍ରୀ ଧୀରା । ଟେଭି ତାଙ୍କୁ ମାଉସୀ ଡାକେ । ବୁଢ଼ୀଙ୍କୁ ସେ ଓଲଗି ହେଲେ । ଛୋଟ ପୁଡ଼ାଟିଏ ତାଙ୍କ ଆଗରେ ଥୋଇ ଅଗଣାରେ ଠିଆ ହେଲେ ।

ସାଧାରଣ ସ୍ୱାସ୍ଥ୍ୟର ମାଇପିଟିଏ । ବେଶୀ ଉଚ୍ଚ ନୁହନ୍ତି । ଦେହର ରଙ୍ଗ ଶ୍ୟାମଳ । ଈଷତ୍ ଲମ୍ବାଳିଆ ମୁହଁଟି ହସ ହସ । ବୟସ ଚାଳିଶି ସେପାଖ । ପିନ୍ଧିଛନ୍ତି ହଳଦିଆ ରଙ୍ଗର ତନ୍ତବୁଣା ଶାଢୀ । କାନରେ ସେହି ପୁରୁଣା କାପ ହଳକ । ନିଚ୍ଛା ସୁନାରେ ଗଢ଼ା । ଝଟକ ନାହିଁ । ନାକରେ ସୁନାର ଛୋଟ ଦଣ୍ଡି । ସୂତାରେ ଗୁନ୍ଥାଗୁଡ଼ିକା ଗୁଚ୍ଛା ହୋଇଥିବା କଣ୍ଠିର ମାଳ ଘଣ୍ଟିକା ତଳକୁ

ଗୁଖଣ୍ଡେ ଗୁଡ଼ ଝୁଲୁଛି । ହାତରେ ପିନ୍ଧିଛନ୍ତି ଚଉଡ଼ା ଚଉଡ଼ା ନେଳିଆ କାଚ । ଦୁଇ ବାହୁରେ ଚଡା କୃଷ୍ଟା ହୋଇଛି ।

ଟଶ୍ର ମନ ଖୁସିରେ ଗୁନ୍ଧିରହିଲା । ଭାବିଲା, ଏଇ ତାର ମାଉସୀ, ପିଲା-ଦିନେ ଯେମିତି ଦେଖିଥିଲା ସେମିତି । ସବୁବେଳେ ମନରେ ଭରପୂର ସ୍ନେହ । ତୁଣ୍ଡରେ ଆହା-ପଦ । ଟଶ୍ରକୁ ଧରମ-ଝିଅ କରିବାକୁ ଆସିଛନ୍ତି । ଯେଉଁ ମାଉସୀଙ୍କର ହାତ ଆଉଁସା ତା'ର ନୋଳାଫଟା ଦେହର ପୀଡ଼ା ଲାଘବ କରେ, ଛଳ ଛଳ ଆଖି ମନର ତାପ ଶୀତଳାଏ, ସେଇତ ଆସିଛନ୍ତି । ଆଜଠାରୁ ସେ ତାଙ୍କୁ ବୋଉ ବୋଲି ଡାକିବ ।

ସେଇ ବୋଉ ତା'ର ମନକାମନା ପୂରଣ କରିବେ । ଅତୀତକୁ ଭୁଲାଇ ତାକୁ ନୂଆ-ସଂସାରରେ ଥାପିବେ । ରତନପୁରର ନାମଡାକ ପାଣ୍ଡଘର ପୁଅଙ୍କୁ ଜୋଇଁ କରି ତାଙ୍କର ଭଙ୍ଗା ସଂସାରକୁ ନୂଆକରି ଗଢ଼ିବେ । ବାଣକବାଟ କଲା, ହାତରେ ଦୁଧଠେକ ଧରି ଟଶ୍ର ଠିଆହୋଇ ଦେଖୁଥିଲା, ଉଲ୍ଲସିତ ମନରେ ଭାବୁଥିଲା ।

ପିଣ୍ଡା ଉପରେ ଗୁଡ଼ିଏ ମାଟି କଣ୍ଢେଇ ରଖି ଅରକ୍ଷିତ ଖେଳୁଥିଲା । ପାଖରେ ଠିଆ ହୋଇ ରଥିଆ ଦେଖୁଥିଲା । ଟଶ୍ରର ମାଉସୀ ତା'ର ଜେଜେମା'ଙ୍କୁ ଡେରି ହେବାର କାରଣ ବୁଝାଇ କହୁଥିଲେ—ସନ୍ନ୍ୟାସିଆର ବାପା ଗାଆଁ ଲୋକଙ୍କ ସଙ୍ଗେ ସଙ୍କ ନ ହେଉଣୁ ଚାଲିଗଲେ । ଆମ ଗାଁ ଠାକୁରେ ସାତ ପହରକ ପରେ ମେଳଣକୁ ଯିବେ । ଦୁଇଟି ବିମାନ ବୋହିନେବାକୁ ସରପଞ୍ଚ ଯେଉଁମାନଙ୍କୁ ବରାଦ କରିଥିଲେ, ସେମାନେ ଟଙ୍କ ନାହାନ୍ତି । କେତେ ବାହାନାରେ ଅନ୍ତରବସିଛନ୍ତି । ସରପଞ୍ଚ ସିନା କାଲି ସନ୍ଧ୍ୟାକୁ ଫେରିବେ, ଆଜ ଅନ୍ୟ ଗାଁ ମେଳଣକୁ ଠାକୁରେ ଯିବେ କେମିତି ? ସେ କହିଲେ ସେମାନେ ମଙ୍ଗିବେ । କେତେବେଳେ ଫେରିବେ କେଜାଣି ?

ସେ ପୁଣି କହିଲେ 'ଅରକ୍ଷିତକୁ କାନ୍ଧରେ ବସାଇ ରଥିଆ ଗଲା ଠାକୁର ଦାଣ୍ଡକୁ । ମୁଁ ଗୁନ୍ଧି ବସିଥିଲି । ସେ ଫେରିଲାରୁ ଥଇଲି । ନାତିକୁ ଖୋଇଦେଇ ଆଣିଛି ' ଭାରି ବୁଢ଼ିଆ । ଅନ୍ୟମଣ ନାହିଁ । ଠାକୁରେ ତାକୁ ଆଇସ ଦେଉନ୍ତୁ ।

ଟଶ୍ର ରୋଷଘରେ ପଶି ଦୁଧଠେକ ଶିକାଉପରେ ରଖି ତା' ଉପରେ ସରା ଘୋଡ଼ାଇଲା । ଭାବିଲା, ଉଷୁମ କରିବାକୁ ବେଶୀବେଳ ଲାଗିବ ନାହିଁ । ଧୀରୁ ମାଉସୀ ଠିଆଟା ହୋଇ ଗପୁଛନ୍ତି ଯେ ! ଟଶ୍ର ତରତର ହୋଇ ପାଖକୁ ଆସିଲା ।

ଧୀରୁ ଖୁସି ହୋଇ କହିଲେ, ହେଇଟି ମୋ ଝିଅ ଆସିଲାଣି । ଘରଟି-ଯାକର କାମ ସମ୍ଭାଳିଛି । ଆରେ ରଥିଆ, ତୁ ଚଣ୍ଡାଳ ଧଅସି ଆସିଥିଲେ ଟଶ୍ର କାହିଁକି ଗୁହାଳରେ ପଶିଥାନ୍ତା ?

ରଥିଆ କହିଲା, ମୋର କି ଦୋଷ ? ଠାକୁରଦାଣ୍ଡରୁ ପିଲାକୁ ବୁଲାଇ-ଆଣିବାକୁ ତୁ ବରଗିଲୁ, କଣ୍ଢେଇ କିଣିଦେବାକୁ ପଇସା ଦେଲୁ । ଯେତିକି ଚୁନାକୁ ସେତିକି ପିଠା ହ'ନ୍ତା କି ନାହିଁ କହିଲ ଅପା ? ଯେତେ ଜାତିର ମାଟିକଣ୍ଢେଇ ସବୁଥିରୁ ଗୋଟାଏ ଲେଖାଁ କିଣିବାକୁ ତୋ' ନାତି ଜିଦ୍ ଧରିଲା । କେଉଁଟା ନେବ, କେଉଁଟା ଫେରାଇବ ? ସେତିକି ଠିକ୍ କରିବାକୁ ଏତେ ଡେ଼ରି ।

ଟଗର ହସି ହସି କହିଲା, ଏଡ଼େ ଅଜଟିଆ ?

ତା' ମାଉସୀ ଧୀରେ କହିଲେ, ପିଲା ମନ ତ ! ହଉ, ତୁ ଏବେ ଯା'ରେ ରଥିଆ । କେତେ କାମ ଘରେ ବାକିଆ ପଡ଼ିଛି । ଚାହାସିଆ ଗରଗର ହେଉଥିବ । ହ' ଘଡ଼ି ଗୁଡ଼ା ତୁ କି ଚାହାସିଆ ଏଠିକି ଆସିବ । ତୋ ବାପା କେତେବେଳେ ଫେରିବେ କେଜାଣି ? କେହି ନ ଆସିଲେ ନାହିଁ, ମୁଁ ଏକା ଚାଲିଯିବି ଯେ ।

ଟଗର ସେହି ପିଣ୍ଡାରେ ଆଉଖଣ୍ଡେ ମସିଣା ଅଧାଖୋଲି ପାରିଦେଲା । ଅଚ୍ୟୁତ ବେହେରାଙ୍କ ସ୍ତ୍ରୀ ଧୀରେଦେଇ ବସିଲେ । ଟଗର ହାତ ଧରି ପାଖରେ ବସାଇଲେ । ତା'ର ମୁହଁକୁ ଚାହିଁ ବୁଢ଼ୀଙ୍କୁ କହିଲେ, ସେଇ ବଡ଼ଘରକୁ ଏଇ ମା'ଟି ମୋର ମାନିବ । ଦୁଃଖ ଯିଏ ସହିଥାଏ, ଦୁଃଖୀ, ରଙ୍କୀ ଅଭାବୀଙ୍କ ଦୁଃଖ ସିଏ ଏକା ବୁଝିବ ।

ବୁଢ଼ୀ କହିଲେ, ମୁଁ ମରିବି କି ବଞ୍ଚିବି ଜାଣେ ନାହିଁ । ପିଲାଟିଦିନରୁ ସେ ତା ମାଆକୁ ହରାଇଲାରୁ ତୁ ତୋ ଶକ୍ୟ ଅନୁସାରେ ତା'କୁ ଆଶ୍ରା ଦେଇଛୁ, ମାଆ-ମରଣର ଦୁଃଖ ଭୁଲାଇଛୁ । ଆଜିଠାରୁ ସତକୁ ସତ ସେ ତୋ'ର ଝିଅ ହେଲା ଲୋ !

—କେବେ ସେ ମୋର ଝିଅ ହୋଇ ନ ଥିଲା ଯେ ? ଚାହାସବାପା ମତେ କହୁଥିଲେ । ମୁଁ ଶୁଣି ହସିଦେଲି । କଥାରେ ଅଛି, 'ମା' ନ ଦେଖିଲେ ମାଉସୀ ଦେଖ । ଏକା ପେଟରୁ ଜନମ ନ ହେଲେ ନାହିଁ, ଟଗର ହେତୁ ହେଲାଦିନରୁ ମୁଁ ତା'ର ସେଇ ମାଉସୀ । ପୁଅ ଦୁଇଟି ତ ଜନମି ନ ଥିଲେ, ସେ କାଳ ମୋର ଆଗ । ମୁଁ ଗୋଡ଼ ପାତିଦିଏ । ସାନ୍ତାଣୀ, ମୋର ରଙ୍ଗିଣୀ ନାନୀ ମୋ କୋଡ଼ରେ ଝିଅ-ବକଟକୁ ଶୁଆଇଦିଅନ୍ତି । ଆହା, କାହିଁ ରହିଲେଟି ?

ବୁଢ଼ୀ କହିଲେ, ମନେ ପଡ଼ୁଛି ଲୋ ! ଏବଯାଏ ତୁ ବି ଝୁରି ହେଉଛୁ···

—ସେଇ ଛୁଆଟିର କେତେ ଧୂଅମୂତ ମୋ ଜଙ୍ଘରେ ଭେଦିଛି । ମତେ ବଡ଼ ଭଉଣୀର ସ୍ନେହ ଦେଇଥିଲେ ଯେଉଁ ରଙ୍ଗିଣୀ ନାନୀ, ସରଗପୁରରେ ଥାଇ ସେ ଚାହିଁ ରହିଛନ୍ତି । କେମିତି ତାଙ୍କର ସେନେହ ମୁଁ ଭୁଲି ପାରିବି ? କେମିତି ତାଙ୍କର ଋଣ ମୁଁ ଶୁଝିବି ? ଟଗର ମଉସା ମତେ ଯାହା କହିଲେ ମୋ ମନ ଘେନିଲା ନାହିଁ ।

ବୁଢ଼ୀ ଚମକି ଉଠିଲେ । ପଚାରିଲେ, କାହିଁକି ଲୋ ଧୀରେ ?

—ବୁଝିଲ ନାହିଁ କି ମା ? ଲୋକଦେଖାଣିଆଁ ଧରମଝିଅପଣ ଭଗାରିହସା । ଝିଅର 'ମାଉସୀ' ଡାକ ମୋ ଛାତିରେ ଗଞ୍ଜାଡ଼ା ଗାର ଟାଣି ଯାଉଛି । ମଣିଷ ଚିହ୍ନି ଚିହ୍ନିକରୁଥିବାର ପାଟି ଖୋଲିଲାଦିନରୁ ତା'ର ସେଇ ଡାକ । କିଏ ସେ ଗାରକୁ ଲିଭାଇ ପାରିବ କହ ? 'ବୋଉ' ଡାକିଲା ବେଳକୁ ଝିଅର ପାଟି ଖନି ବାଜୁଥିବ । ଲାଜ ଘୋଟି ଆସୁଥିବ । କାହିଁକି ଏଡ଼େ କାଳବଳ ? ତା' ତୁଣ୍ଡର ପଦେ 'ମାଉସୀ' ଡାକ ମୋ କାନକୁ ଖିରି ମିଠା ଲାଗେ । ସେହି ଡାକ ପଦକ ମୋ' ଛାତିରେ ଲାଗେ ।

—ତେବେ ଲୋ ଧୀରା ··· ?

—ମୁଁ ସବୁ ଯୋଗାଡ଼ କରିବି । ଆମେ ଜାଣୁ, ସେ ନାଟୁଆ ବାପୁଣୀ ଘର ଥାଏ ସେ କେବେ ଫେରିବ ନାହିଁ । ସେ ଫେରୁ ବା ନ ଫେରୁ, କାର୍ତ୍ତିକସାଆନ୍ତେ ମଙ୍ଗିଲେ ମଙ୍ଗନ୍ତୁ ନ ମଙ୍ଗିଲେ ନାହିଁ, ମୋର କି ଥାଏ ବା ! 'ମା' ନଥିଲାକୁ ମୋପରିକା ତା'ର ମାଉସୀ ଅଛନ୍ତି ! ହଳିଆ-କାଳିଆ ପରି ଦି' ଖିଇ ରହାସ-ରଥିଆ ଅଛନ୍ତି । ମୁଁ କରତା, ବଳିଆର ଭୁଜ ତା' ମଉସା । ଆଙ୍ଗୁଠି ଦେଖାଇଲେ ପର୍ବତ ଟାଳିଦେବେ, ହଁ ।

ଧୀରା ପୁଣି କହିଲେ, ତଇତନ ସରପଞ୍ଚ କାଲି ଫେରନ୍ତୁ । ତାଙ୍କ ସଙ୍ଗେ ପଦେ କଥା ସେ ହେବେ । ଏଇ ଦିନ ବାର ତିଥି କଥା । ପଞ୍ଚୁଦୋଳ ଭିତରେ ବାହାଘର ହେବ । କାଲି ଗୁରୁ ପୁନେଇଁଦିନ । ସଜ ମଙ୍ଗନ, ସଜ ବାହା ।···

କେଉଁଠି ବେଦି ହେବ, କୁଣିଆଁ ମଇଜ କେଉଁଠି ବସିବେ, କେଉଁଠି ଖିଆ ହେବ, ସବୁ ଆମ୍ଭେ ବନ୍ଧରଣା କରି ସାରିଛେ । ମୋ'ର ପ୍ରଥମ କର୍ମିତ୍ୟଟି ! ଶାଗ-ପାଣିରେ ସମସ୍ତଙ୍କୁ ତୋଷିବି । ବାଇଆ କୁକୁର ପରିକା ପରା ହେଉଛନ୍ତି ସେ କାର୍ତ୍ତିକ ସାଆନ୍ତେ, କେମିତି ଆମ ଗଉଡ଼ଙ୍କର ନଉଡ଼ି ବେଢା ଡେଇଁ ସେ ପଦାକୁ ଆସିବେ ? ରହାସବାସା ବାହା ମୋଡ଼ିଛନ୍ତି, ହଁ ।

ଧୀରା ହସୁଥିଲେ ।

ଝିଅ ମୁହଁ ଶୁଖାଇ ଆଖି ଛଳଛଳ କରୁଥିଲା ।

ଅରକ୍ଷିତ କଣ୍ଢେଇ ଖେଳ ଗୁଡ଼ି ଝିଅ ପିଠିରେ ନାଉ ହୋଇ ତା'କୁ ହସାଇଲା । ଝିଅ ତା'ର ହାତ ଧରି ଆଗରେ ବସାଇଲା ।

ଅରକ୍ଷିତ ଅଳି କଲା, ରଥମାମୁଁ ମତେ ବେଙ୍ଗବାଇଦ ଆଉ ପେଢାଳି ଦେଲେ ନାହିଁ । ଦେଲନ୍ତି ଦେଲେ ନାହିଁ । ତୁ ଦେ ବୋଉ···

ଟୋଷ୍ଣ କହିଲା, କାଲି ସକାଳେ କଣା ହେବ ।

ଧୀରା ତାକୁ କୋଳକୁ ଟାଣି ନେଲେ । ତା' ମୁହଁରେ ଗେଲ କରି କହିଲେ, କାଲି ସକାଳେ ତତେ ସେ ସଙ୍ଗରେ ନେଇଯିବ ଯେ ତୋ'ର ଯାହା ମନ ତୁ କିଣି ଆଣିବୁ । ହେଲା ?

ଟୋଷ୍ଣ କହିଲା, ରଥିଆ ତତେ କେତେ କଣ୍ଢେଇ କିଣି ଦେଇଛୁ । ତୋ ଅଜା ଯେଉଁ କଣ୍ଢେଇ ସବୁ ଆଣିଥିଲେ ସେଇ ଘରେ ସଜାଇ ରଖିଛୁ । ମୋ' ସୁନା ପୁଅଟି, ଯା' ଖେଳିବୁ ।

ଅରକ୍ଷିତ ଧୀରାଙ୍କ କୋଳରୁ ଉଠି ପୁଣି ତା'ର ଖେଳନା ପାଖକୁ ଚାଲିଗଲା । ଆଜି ତା' ଆଖିକୁ ନିଦ ନାହିଁ । ସେ ଖାଲି ଖେଳିବାକୁ ଚାହେଁ ।

ଧୀରା ଷ୍ଟ୍ରେଟ ପୁଡ଼ାଟି ଖୋଲିଲେ । ଯେଉଁ ରଙ୍ଗକନାରେ ବାନ୍ଧିଥିଲେ ସେଇଟି କୋଡ଼ରେ ଥୋଇ ଧୋବ ଶାଢ଼ୀ ଖଣ୍ଡିଏ କାଢ଼ିଲେ । ଟୋଷ୍ଣର ହାତକୁ ବଢ଼ାଇ କହିଲେ, ହେଇଟି ନେ, ବଦୁର ଘରର ଶାଗଭାଜି ପରି ମଣିବୁ ଲୋ ମା ! ସ୍ୱାମୀ ଭଲ ଶାଢ଼ୀ ବଣିକାଣ୍ଡି ତନ୍ତ୍ରଘରେ ନ ଥିଲା । ଆଜିପର୍ଯ୍ୟ ଦିନେ କେମିତି ଖାଲି ହାତରେ ମୋ ଝିଅକୁ ଦେଖିବାକୁ ଆସନ୍ତି ?

ବୁଢ଼ୀ କହିଲେ, ତୋ' ସେନେହର ମୂଲ୍ୟ କିଏ କଳନା କରି ପାରିବ ? ଏଇ ଖଣ୍ଡି ଟୋଷ୍ଣର ପାଟପଡ଼ନ !

ଟୋଷ୍ଣ ଆଗ୍ରହ-ଆନନ୍ଦରେ ଶାଢ଼ୀ ଖଣ୍ଡି ଗ୍ରହଣ କଲା । କାନ୍ଧରେ ପକାଇଲା । କହିଲା, ମାଉସୀ ଲୋ, ମୋ' ବୋଉ ବଞ୍ଚିଥିଲା ବେଳେ ମୋ' ପାଇଁ ନୂଆଲୁଗା କିଣି ଦେଉଥିଲା । ପର ଘରକୁ ଗଲା ପରେ, ଆଉ ଯେଉଁ ଜଣକୁ ଦେଖି ମୋ' ବୋଉର ସ୍ନେହ ଫେରି ପାଇଲା ପରି ମଣୁଥିଲି, ଦୋଳ, ଦଶରା, ସାବିତ୍ରୀ, ରାମନବମୀ, ଏମିତି ସବୁ ପୁଣ୍ୟପର୍ବରେ ସେ ବାଛି ବାଛି ମୋ' ପାଇଁ ଶାଢ଼ୀ ଆଣୁଥିଲେ, ନିଜ ହାତରେ ମତେ ପିନ୍ଧାଇ ଦେଉଥିଲେ । ସେ ମଣୁଥିଲେ ଲୋ ମାଉସୀ, ମୁଁ ତାଙ୍କର ସାନ ଝିଅଟିଏ । ପିନ୍ଧି ଜାଣେ ନାହିଁ, ଖାଇ ଜାଣେ ନାହିଁ । ଆଠ ନଅ ବର୍ଷ ତଳେ ମୋ' କୋଳରେ ମୁଣ୍ଡ ରଖି ସେ ସ୍ୱର୍ଗକୁ ଚାଲିଗଲେ । ସେଇ ମୋର ଶାଶୁଠାକୁରାଣୀ···

ଟୋଷ୍ଣର ଜେଜେମା ଆକଟି କହିଲେ, ଆଜିପର୍ଯ୍ୟ ଖୁସିରାତରେ ବିଗତ କଥା ମନେ ପକାଇବା ଭଲ ନୁହେଁ ଲୋ ଟୋଷ୍ଣ !

- କିଏ ମନେ ପକାଉଛୁ ? ତାଙ୍କୁ ମନରୁ ପୋଛି ଦେଇଛୁ । ଅରକ୍ଷିତ ପିଲା ଦି' ଚାରି ମାସର ହେଲା ଦିନୁ, ଯେବେ ନିଧାର୍ଯ୍ୟ ଜାଣିଲି ଯେ ସେଇ ଅଲକ୍ଷଣା-ଗାଁ'ରେ ଆଉ ମୋ ପାଦ ପଡ଼ିବ ନାହିଁ, ମୁଁ ତା'ଙ୍କୁ ପାଣି ଆଞ୍ଜୁଳେ କେବେ ଦେଇ ନାହିଁ । ସ୍ୱର୍ଗପୁରରେ ସେ ଦିନେହେଁ ଶୋକରେ ଛଟପଟ ହେଲେ ମୋର କି ଯାଏ ? ତାଙ୍କ ଅକଲ୍ୟାଣ ଯାହାଉପରେ ତେଣେ ପଡ଼ିବାର ପଡ଼ୁଥାଉ ।

ବୁଢ଼ୀ କହିଲେ, ସେଇଆ । ଆମର କି ଥାଏ ? ସେ ଗାଁରୁ ତାଙ୍କ ବଉଁଶର ନାଁ ଲୁଚୁ । ତୁ ସେଇ ସପନର ସଂସାର କଥା ମନକୁ ଆଉ ଆଣନା ।

— ମୁଁ ଆଣୁ ନାହିଁ ମା । ଆପେ ଆପେ ତାଙ୍କର ଶୋଷେଇଲା ଆତ୍ମା ମୋ' ମୁଣ୍ଡ ଭିତରକୁ ପଶି ଆସିଲା । ତା'ଙ୍କୁ ମୁଁ ତଡ଼ି ଦେଲିଣି । କାହିଁକି ଆସିଲା କି, ମୋ' ମାଉସୀଙ୍କର ସ୍ନେହ ସେମାନଙ୍କ ସ୍ନେହକୁ ପଛକୁ ବିଗତକୁ ଠେଲିଦେଲା । ଏଇ ଶାଢ଼ୀ ପିନ୍ଧି ପୁନେଇଁ ଦିନ ମୁଁ ଦିଅଁ ଦରଶନ କରିବି ।

ଧୀରା ବିଭୋଳ ହୋଇ ଛଳଛଳ ଆଖିରେ ଝଷର ଚିବୁକରେ ହାତ ଦେଲେ । କହିଲେ, ଶୁଣ ମ ମା ! ତମର ମୁଁ ଝିଅ ସମାନ । ପାଠ ତ ପଢ଼ି ନାହିଁ, ଶାସ୍ତ୍ର ପୁରାଣର ଗହନ ବିଷୟ ଜାଣିବି କାହୁଁ ? ନାଟ, ସୁଆଙ୍ଗ ଦେଖିଛି । ଗୀତ ଶୁଣିଛି । ବଚନିକା ଶୁଣିଛି । ଠାକୁର ଠାକୁରାଣୀମାନଙ୍କର କଣମଣ କଥା ଆଉମାନଙ୍କ ତୁଣ୍ଡରୁ ଶୁଣିଶୁଣି ଅଳପ କିଛି ମନେ ରହିଛି । ଯେତେ ଯାହା ଗୋଟେଇ ଘୁଟେଇ ସେଇ ମନରେ ସାଇତିଛି ଗୋ ମା, ସବୁ ଗୋଟାଏ ଆଡ଼େ, ଆଉ ହେତୁ ପାଇଲା ଦିନରୁ ଅଙ୍ଗେ ଲଗାଇଲା ଅନୁଭବ ଯେ ଅନ୍ୟ ଗୋଟାଏ ଆଡ଼େ । ମନରେ ତ ଭାବୁଛି, ବୁଝି-ଥାଉଣୁ କାଏ ତାକୁ ଝାଡ଼ିଝୁଡ଼ି ସଫା କରିବ ? ତେଣିକି ଚାହିଁବ ନାହିଁ ବୋଲି ଯେତିକି ଭାବୁଛି, ସେତିକି ସେ ଘୋରତେଇ ହୋଇ ଆଗକୁ ଆସୁଥିବ ପରା ।

ବୁଢ଼ୀ କହିଲେ, ହଁ ଲୋ ଧୀରା । ମୋ'ର ଏଇ ଶେଷ ବେଳରେ, କେବ-କେବକାର, ଏମିତିକି ମୋ ନଙ୍ଗଳା ବେଳର କେଉଁ ଅନୁଭବ ବିଜୁଳି ମାରିଲା ପରି ଝକ୍ କରି ଆଖି ଆଗରେ ଦିଶିଯାଏ । ଥରେ ନୁହେଁ, କେତେ ଥର···

—ସେଇଆ ଗୋ ମା ! କାମରେ ମନ ଦେଲେ ସେଗୁଡ଼ାକ ମନକୁ ଆସେ ନାହିଁ । ଝଷ ନୂଆ ସଂସାର କରିବ, ତେବେ ଯାଇଁ ବାରବରଷର ଅଙ୍ଗେ ନିଭେଇଲା ଜଦର୍ଥନା ମନରୁ ପୋଛି ନ ହେଲେ ନାହିଁ, ସେଇ ମନରେ ପୋତିହୋଇ ରହିବ । ଏଇ ପଞ୍ଚୁଦୋଳ ଭିତରେ, ତା' ବିତିଲାଯୁଗକୁ ଆମର ଗୋବର ଖାତରେ ଧସାଇ ଦେବା···

ଧୀରା ତା'ର ମୁଣ୍ଡ ଆଉଁସି ଦେଲେ ।

ଝଷର ଆଖି ଓଦେଇ ଆସୁଣୁ ସେ କଣେଇଁ ଚାହିଁଲା ଅରକ୍ଷିତକୁ । ପିଲାଟି ଏବଯାଏ ଖେଳୁଛି । ବାରବରଷର ଯେଉଁ ସୁମରଣା ପିଲାଟିକୁ ବେଢ଼ାଇ ଧରିଛି ।

ଧୀରା କହିଲେ, ଆଲୋ ଝଷ ! କ୍ଷୀରଟିକେ ଥୋଇଦେଇ ଆସିଛି ମା, ଯାଆ, ଆଉଟି ଦେ । ଅରକ୍ଷିତକୁ ପିଆଇବୁ । ତୋ' ଜେଜେମା ଦି ଢୋକ ପିଇଲେ

ଦେହକୁ ହତ କରିବ । ଟାଣ ଆଉଟା କରିବୁ ନାହିଁ । ଆଲୋ, ଦରୁଡାଷୀରରେ ପାଣି ଆଞ୍ଜୁଳାଏ ନ ପକାଇଲେ ଗାଈର ଚେର ଶୁଖିଯିବ । ଜାଣୁଛି ?

ଜାଣେ ମାଉସୀ, କହି ଟଗ୍ ଶାଢ଼ୀଖଣ୍ଡି ଧରି ଉଠିଲା । ଦୀର୍ଘଶ୍ୱାସ ଗ୍ରହ ପାଖ କୋଠରୀ ଭିତରେ ପଶିଲା । ଖଟ ଉପରେ ଶାଢ଼ୀଟି ଥୋଇ ଭୂମିଡାକ ଠିଆ ହୋଇ ରହିଲା । ମୁଣ୍ଡରେ ତା'ର ଭାବନା ନ ଥିଲା । କ'ଣ ସବୁ ଘଟିଯାଉଛି, କେମିତି ସେ କୁଆଡକୁ ଓଟାରି ହୋଇ ଯାଉଛି ବସ୍ତୁରିବାକୁ ମନ କଲାନାହିଁ । ଧୀରେ ଧୀରେ ଘରୁ ବାହାରି ସେ ଟିପେଇ ଟିପେଇ ଗୋପଶାଳକୁ ଗଲା ।

ଷୀରହାଣ୍ଡି ଚୂଲି ଉପରୁ ଉତାରି ତଳେ ରଖିଲାବେଳକୁ ଅଗଣାରୁ ରଥିଆର ପାଟି ଶୁଭିଲା । ସେ କହୁଛି, ବାପା ଆସିଥିଲେ ମ ବୋଉ, ତାଙ୍କ ସଙ୍ଗେ ଆହୁରି ଦି ଗ୍ରରି ଜଣ । ଜାମା ପିନ୍ଧି, ଠେଙ୍ଗା ଧରି ବାପା ସେମାନଙ୍କ ସଙ୍ଗରେ ଗୁଲିଗଲେ । ଖାଇବାକୁ ତାଙ୍କର ତର ନ ଥିଲା । ସେମାନେ ଦି' କୋଶ ବାଟ ଚଇଁପାଲ ଗାଁ ଯିବେ ।

—କାହିଁକି ରେ ପୁଅ ?

—ଚଇଁପାଲଆ କହୁଛନ୍ତି, ତାଙ୍କ ଠାକୁର ସାତ ନମ୍ବରରେ ଯିବେ । ସେ ନମ୍ବରଟି ଆମ ଗାଆଁର । ତାଙ୍କ ନମ୍ବର କୁଆଡ଼େ ସତର ।

—ଫଉଜଦାରୀ କରିବେ ?

—ନାଇଁ ଲେ ବୋଉ ' ଉତାଖବର ତ, ସତ କି ମିଛ ବୁଝିବେ । ସତ ହୋଇଥିଲେ ଆମ ନମ୍ବର ଦେଖାଇବେ । ନ ମାନିଲେ, ସେଇଠୁ ଯିବେ ଥାନାକୁ । ସରପଞ୍ଚ ତ ନାହାନ୍ତି । ତାଙ୍କର ଫେରିବାକୁ ଉଛୁର ହେବ । ଖାଇ ରଗରଗ ହେଉଛି । ତତେ ଡ଼କାଇ ପଠାଇଛି ।···

ଟଗ୍ ପଦାକୁ ଆସିଲା ।

ତା'ର ଧୀର ମାଉସୀ ଅଗଣାକୁ ଓହ୍ଲାଇଥିଲେ । ସେ କହିଲେ, ମୁଁ ଏବେ ଯାଉଛି ଲୋ ଟଗ୍ । ବେଳ ମିଳିଲେ ନିଜେ ଆସିବି । ନୋହିଲେ, ରଥିଆ ଆସିବ । ତା ସଙ୍ଗରେ ଯିବୁ ମା ! ଆରେ ରଥ, ମୋ' ନାତି କହୁଛି, ତା'କୁ ଭୁ ପେଁକାଳି, ବେଲୁନ୍, ବେଙ୍ଗବାଇଦ କିଣି ଦେଲୁ ନାହିଁ । ତା ମନରେ ଭାରି ଦୁଃଖ । ସେତକ ନ ପାଇଲେ କ'ଣ ସେ ଆଜି ଶୋଇବ ? ଝିଅକୁ ମୋ'ର ହଇରାଣ କରିବ ।

—ତା'ର ସବୁ କିଣିବାକୁ ମନ । ପଇସା ଅଣ୍ଟିଲା ନାହିଁ । ମୁଁ କ'ଣ କରିବି ବୋଉ ?

ଟଗ୍ କହିଲା, କାଲି କଣାହେବ ।

ଅରକ୍ଷିତ ରଥିଆର ହାତ ଧରିଲା । କହିଲା, ସେଇ କଣ୍ଢେଇଯାକ ନେଇଯା । ମୋତେ ବେଙ୍ଗବାଇଦ କିଣି ଦେ ।

ଧୀର୍ କହିଲେ, ହୁଁ ରେ ବାଇଆ ! ଆଜ ରାତିରେ ସେ ଆଣିଦେବ । ତୁ ଅଳଟ ହବୁ ନାହିଁ । କ୍ଷୀର ପିଇ ତୁନି ହୋଇ ଯା ଶୋଇପଡ଼ ।

ରଥିଆ କହିଲା, ଠାକୁରଙ୍କ ବିମାନ ଉଠିବାଯାଏ ତା' ଉଠାଦୋକାନ ଖୋଲାଥିବ । ମୁଁ ଆସି ତତେ ଡ଼ାକ ଉଠାଇବି । ତୁ ଏକା ଉଠିବୁ, ଏଁ -- ?

ସେ ଦହେଁ ବିଦା ହୋଇଗଲେ ।

ଗାଁଆଡ଼ୁ ଲୋକ ଗହଳର ମିଶାମିଶି ସ୍ୱର ସଙ୍ଗେ ସଙ୍ଗେ ବାଇଦ-ବାଜଣା, ତୁରି ପେଏଁ କାଳର ଶବଦ ବି କାନରେ ବାଜୁଥିଲା । ଟଗିର କ୍ଲାନ୍ତ ଆଖିପତାକୁ ଗ୍ରାଇନଦ ଘୋଟି ଆସୁଥିଲା ।

କେତେ ସୁଖସପନର ମନଉଲ୍ଲାସୀ ଦୃଶ୍ୟ ଭସି ଯାଉଥିଲା ଆଖିତଳର ଆଗତ ଜୀବନର ସୁଆଙ୍ଗ-ଦାଣ୍ଡରେ ।

ଆସନ୍ତାକାଲର ସଞ୍ଜଆଗରୁ ତା' ମନର ମଣିଷ ଫେରି ଆସିଥିବେ । ଫଗୁଣର ଶେଷଦିନ ପୁନେଇଁ ରାତିରେ, ମଉସାଙ୍କ ଘର ବାହାବେଦୀରେ ତାଙ୍କ ହାତ ସଙ୍ଗେ ବନ୍ଧାହେବ ଟଗିର ହାତ । ଶଙ୍ଖ, ମହୁରି, ଢୋଲବାଇଦ ବାଜୁଥିବ । ବାଣ ଫୁଟୁଥିବ । ରତନପୁରର ଅଧେ ମଣିଷ, ସ୍ତ୍ରୀ ଓ ପୁରୁଷ ରୁଣ୍ଡ ହୋଇଥିବେ ମେଲଣ ଦାଣ୍ଡରେ । ରଥିଆର ପାଖରେ ଥିବ ଅରକ୍ଷିତ । ମେଲଣ ଦେଖୁଥିବ । ବେଙ୍ଗବାଇଦ ଓ ବେଲୁନ କିଣୁଥିବ । ମଧୁଆର କାନ୍ଧରେ ଅଲେଖ । ଅରକ୍ଷିତର ପାଖେ ପାଖେ ।

ମଉସାଙ୍କ ଘରେ ବାକି ଅଧେ ଲୋକ ବାହାଘର ଦେଖୁଥିବେ । ସ୍ତ୍ରୀମାନଙ୍କର ହୁଳହୁଳିରେ ପୁନେଇଁରାତି ଥରଉଠୁଥିବ । କନ୍ୟାଦାନ କରୁଥିବେ ରାଧୁସାମନ୍ତରା, ତା'ର ଧରମବାପା ! ରାତି ପାହିଲା ବେଳକୁ ତା'ର ନୂଆ ଘର, ନୂଆ ସଂସାର ହୋଇ ସାରିଥିବ ।

ନୂଆଘରେ, ତା' ପୁରୁଣା ନାଆଁକୁ ପଛକୁ ଫୋପାଡ଼ି ତା'ର ଧରମବାପା ରାଧୁ ସାମନ୍ତରା ଆଉ ତାଙ୍କର ସ୍ତ୍ରୀ ବୃନ୍ଦାବତୀ ଗେଲବସରିଆ ନାଆଁ ଦେଇଥିବେ । ତାଙ୍କ ସପ୍ତମ ଝିଅ, ଶେଷ ଝିଅ ସେ 'ସାବିତ୍ରୀ', ଯିଏ ଅଚ୍ୟୁତ ବେହେରା ଆଉ ଧୀର୍ ଗଉଡୁଣୀଙ୍କର ଧରମ ଝିଅ ଲୋ ସୁନ୍ଦରୀ । କାର୍ତ୍ତିକ ମହାନ୍ତିଙ୍କ ପ୍ରଥମ ସ୍ତ୍ରୀରତ୍ନା ରଙ୍ଗଣୀ ଦେଈଙ୍କ ପେଟରୁ ଜନମ ।

ପାଣିଧାର ଚଉପାଢ଼ୀରେ ସାବିତ୍ରୀର ପାଳକ ବାପା ରାଧୁସାମନ୍ତରାଙ୍କ ପାଖରେ ବସିଥିବେ ତା'ର ସ୍ୱାମୀ, ଦିବ୍ୟ ପୁରୁଷ ଚଇତନ ପାତ୍ର । ତା'ର ହାତଟିଏ ଧରି ପାଳିକା ବୋଉ ବୃନ୍ଦାବତୀ ତା'କୁ ପାଖକୁ ନେଉଥିବେ । ଶାଶୁଶ୍ୱଶୁର ତ ନାହାନ୍ତି,

ତାକୁ ଚଳାଇବ କଏ ? ସେମାନେ ଆସିଛନ୍ତି । ଝିଅକୁ ସାତ ଧନ ଚଳାଇବେ । ପରଘର ମଙ୍ଗାଇ ଫେରସିବେ ।

ସାବଣୀର ସର୍ବାଙ୍ଗରେ ଗହଣା । ମୁଣ୍ଡରେ ଓଢଣା !

ଚନ୍ଦ୍ରପାଢ଼ୀ ତଳେ ଠିଆ ହୋଇଛନ୍ତି କାର୍ତ୍ତିକ ମହାନ୍ତି । ତାଙ୍କ ପାଖରେ ନାଟୁଆ ! କାର୍ତ୍ତିକ ମହାନ୍ତି ଗରଜି ଉଠୁଛନ୍ତି, ତମେ ମୋ ଝିଅ ଟୋକୀକୁ ସ୍ନେହ କରଛ । ମୋ ଶତ୍ରୁକୁ ବାହା କରେଇଛ ସାନ୍ତସ !

ସାଁତସ ହସୁଛନ୍ତି । କହୁଛନ୍ତି, ସ୍ରେ ମୋ ଝିଅ 'ସାବଣୀ' । ତମ ଟୋକୀକୁ ମଣିକୁଦରେ ଦେଇଛ ପସ୍ତ, ଯାଅ ସେଇଠି ଖୋଜିବ ।

କାର୍ତ୍ତିକଙ୍କ ହାତରେ ଦାଢ଼ୁଆ କଟୁରି ଚକ୍‌ଚକ୍ କରୁଛି । ପଗ୍ଗରୁଛନ୍ତି, ମୋ ନାତି ଅରକ୍ଷିତକୁ କେଉଁଠି ଲୁଚ୍ଚାଇଛ ?

—ଯାଅ ଖୋଜିବ ସେଇ ମଣିକୁବରେ ।

—କେମନ୍ତ !

କାର୍ତ୍ତିକ ମହାନ୍ତି କଟୁରି ଟେକୁଛନ୍ତି । ଗରଜି କହୁଛନ୍ତି, ତମ ଦୁହିଁଙ୍କୁ ହାଣିବ ।

ପଛରୁ ଧାଇଁ ଆସୁଛନ୍ତି ଅଚ୍ୟୁତ ବେହେରା । ହାତରେ ତେଲପସ୍ତ ଠେଙ୍ଗା । ଠେଙ୍ଗା ଟେକ କାର୍ତ୍ତିକଙ୍କ ହାତରେ ପାହାର ଦେଉଣୁ ତାଙ୍କ କଟୁରି ନଇଁ ଆସୁଛି । ଅଚ୍ୟୁତଙ୍କ କାନରେ, ହାତ ଉପରେ ପଡୁଛି । ରକ୍ତ ଛୁଟିଛି ପିଚକାରି ମାରଲା ପରି —

ଟୋକୀର ଗ୍ରାଇକାଦ ଭାଙ୍ଗୁଛି । ସେ ଚତ୍କାର କରି ଉଠି ବସୁଛି । ଲଣ୍ଠନର କ୍ଷୀଣ ଆଲୁଅରେ ଦେଖି ପାରୁଛି—ଅରକ୍ଷିତ ନିଶ୍ଚିନ୍ତରେ ଶୋଇଛି । ମଶାରି ଟଙ୍ଗା ହୋଇ ନାହିଁ । ଆରଘରୁ ବୃଦ୍ଧୀଙ୍କର କାଶ ଶୁଭୁଛି ।

ଦେହ ପୁଣି ଅଧିକ ବଗିଡ଼ଲା କି ? ପିଲାକୁ ଶୁଆଉଣୁ ତା'ର ଆଖିପତା ମାଡ଼ି ହୋଇଗଲା । କବାଟ ଖୋଲା ଅଛି । ବାହାର କାମ ସରି ନାହିଁ । ଆଉଟା କ୍ଷୀର ଦହି-ହାଣ୍ଡିରେ ରଖି ନାହିଁ ।

କେଡ଼େ ଅସମ୍ଭବ ସପନ ଦେଖୁଥିଲା !

କାହିଁକି ମଣିଷ ସପନ ଦେଖେ ? ଦେଖିଲା, ଶୁଣିଲା, ଚନ୍ତିଲା କଥା, ପୁଣି ସମ୍ଭବ ଅସମ୍ଭବ କେତେ ଆଶା ସବୁ ମିଶି, ଫେଣ୍ଟାଫେଣ୍ଟି ହୋଇ ମନରେ ଥାଏ । ତା'ର ଭିତରୁ ଏଇ ସପନଗୁଡ଼ାକ ଜନମ ଲଭନ୍ତି, ଲଟାନ୍ତି । କୁଆଡେ କୁଆଡେ ମାଡ଼ଯାଆନ୍ତି ଲୋ ମା ' କେତେ ଡଙ୍କ । କେଉଁ ଡ଼ଙ୍କରେ କି ଫୁଲ ଫୁଟେ, କି ଫଳ ଫଳେ । ବିଷ କି ଅମୃତ । ଜାତି ଜାତିକା କେତେ ରଙ୍ଗର ରବରବେଲୁନ୍ ପରି । ହାତରୁ ଛୁଟିଲେ ଆକାଶକୁ ଉଠେ, ଅଦୃଶ୍ୟ ହୁଏ । ଆଘାତ ପାଇଲେ ଫୁଟେ, ଶବଦ କରେ, ମରଣରଡ଼ି ।

ଝଷର ଅଶଳ ସ୍ବଭର ସ୍ପନ୍ଦନ ସ୍ବାଭାବିକ ହେଲା । ସେ ପଦାକୁ ଆସିଲା । ଆଲୁଅ ଲେଭିଲା । ବୁଢ଼ୀଙ୍କୁ ଘୁଞ୍ଚିଦେଇଆସିବାକୁ ତାଙ୍କ ଘରର ଦ୍ୱାରବନ୍ଧ ପାଖରେ ପାଦ ଦେଉଣୁ ବୁଢ଼ୀ କହିଲେ, କେଡ଼େ ବେଗି ଛୁଟ୍ କରି ଶୋଇ ପଡ଼ିଲୁ ଲୋ, ଡ଼ାକିଲି ଯେ ଶୁଣିଲୁ ନାହିଁ ।

—କାହିଁକି ଡ଼ାକୁଥିଲୁ ? ରାତି କେତେ ହେଲାଣି ?

—ନଦୀ ତ ଏତେ ଜଲଦି ହୁଅନ୍ତା ନାହିଁ, ସବୁ ଶୁନ୍‌ଶାନ୍ ହେଲାରୁ ମତେ ଆଜି କାହିଁକି ଭାରି ଏକୁଟିଆ ଲାଗିଲା । ଭାବିଲି, ଉଠେଇବି ନାହିଁ । ହାଲିଆ ହୋଇ ପଡ଼ି ଯାଇଛୁ । ପଦ୍ମରକଆ ବାଲୁଆ ଏବେ ବୋବେଇଲେ । ସେଇ ଭେରେଣ୍ଡାଟା ପୁଣି ବୋବାଉଥିଲା ଯେ—

—ପିଲାର ମୁଣ୍ଡ ଟେକି ଦେଇଥାନ୍ତି ।

—ସେଇଥି ପାଇଁ ଡାକୁଥିଲି । ପୁଣି ଭାବିଲି, ଶୋଇଥାଉ, ସେଇଟା ମତେ ଡାକି ଗୁଡ଼ୁଛି । ତୁ ପୁଣି କ’ଣ ସପନ ଦେଖୁଥିଲୁ କି ଝଷ, ବାଳବାଳଉଥିଲୁ ଯେ— !

ଝଷ ଉତ୍ତର ଦେବାକୁ ଅଙ୍ଗ୍‌ଅଙ୍ଗ୍ ହେଉଥିଲା । ଶୁଣିଲା, ପୁଣି କିଏ ଦାଣ୍ଡ-କବାଟ ବାଡେଉଛି । ଡାକୁଛି । ଝଷ ଜାଣେଇଲା ।

—କିଏ ଡାକୁଛି ଲୋ ଝଷ ?

—ଅପା ପଦ ଶୁଭୁଛି । ରଥିଆ ହୋଇଥିବ । କାଲି ସକାଳେ ଆସି଼ଲେ ହୋଇ ନ ଥାନ୍ତା ? ପୁଅ ଶୋଇ ପଡ଼ିଲାଣି । ମାଉସୀଙ୍କର ସେଇଁ କଥା । ପଠାଇ-ଥିବେ ପେଁକାଳି, ବେଙ୍ଗବାଇଦ, ବେଲୁନ—

ଝଷ କବାଟ ଖୋଲିବାକୁ ହାତରେ ଆଲୁଅ ଧରି ଦାଣ୍ଡକୁ ଗଲା । ବୁଢ଼ୀ ହାତଭରାଦେଇ ଉଠିଲେ । ତାଙ୍କ ଘରର ଆଲୁଅ ଲେଭିଲେ । ଭାବିଲେ, ଶୋଇଲା-ପିଲାର ଘର ଅନ୍ଧାର ରଖିବା ଉଚିତ ନୁହେଁ । ଟିକିଏ ବଡ଼ ହେଲାଣି ଯେ, ଗେହ୍ଲାରେ ବଢ଼ିଛି, ଅନ୍ଧାରଗୁଡ଼ୁଗୁଡ଼ିକୁ ଡରେ ।

ପିଲାଘରର ଦ୍ୱାରବନ୍ଧ ସେପାଖେ ଆଲୁଅ ରଖି ସେ ଦାଣ୍ଡଆଡେ ଘୁଞ୍ଚି ରହିଲେ ।

ରଥିଆ ନୁହେଁ ଭଅଁରୀ—

ତଳେ ମୁଣ୍ଡ ଲଗାଇ ସେ ଓଲଗି ହେଲା । ଝିଅକୁ ଦେଖି ସେ ଦୋଦୋଚନ୍ଥା ହେଉଥିଲା ପରି ! ନିଜର ପରିଚୟ ସେ ଆଗ ଦେଲା ।

କାଠପିତୁଳା ପରି ଝିଅ କବାଟ ଫାଳକୁ ଆଉଜି ଠିଆହୋଇ ରହିଲା । ପଦଟିଏ କଥା ଆପେ ଆପେ ତା' ତୁଣ୍ଡରୁ ଖସିଗଲା, ଭଅଁରୀ ! ଥରଉଠିଥିବା ସ୍ୱରରେ ବିସ୍ମୟ ଓ ଭୟ ।

ଭଅଁରୀର ବୟସ ବଢ଼ିଛି । ଢେଙ୍ଗାଳିଆ ଦିଶୁଛି । ମୁଣ୍ଡରେ ବେତାଏ ବାଳ । ମୁହଁରେ ରୁଢ଼ । ଦେହରେ ଅଧା ହାତର ଖଇରିଆ ଜାମା । ହନୁହାଡ଼ ବାହାରିଛି । ଥକଲ ଆଖି । ଆଣ୍ଠୁଯାଏ ଗୋଡ଼ ଧୂଳି ସରସର । ସେ କହୁଛି ତା'ର କଥା, ଝିଅର କାନକୁ ବାଜୁଛି—!

—ପାଞ୍ଚ ଦିନ କାଳ ନିଧି ବେହେରାଙ୍କ ପଛରେ ଟଙ୍କା ଧରି ଗୋଡ଼ାଇଥିଲି । ପରବ ବେଳ । ତାଙ୍କର ତର ନାହିଁ । ଶେଷକୁ ନେହୁରା ହେଲି । ବାବୁ କହିଲେ, ଦି' ଗୁଣ ଭଡ଼ା ଦେ । ଆସିବା ଯିବା ପାଇଁ ସେ ଆଗତୁରା ଦି'କୋଡ଼ି ଟଙ୍କା ଧଇଲେ—

ବୁଢ଼ୀ ଡାକ ଛାଡ଼ିଲେ, କିଏ କଲେ ? ଦାଣ୍ଡରେ ଠିଆହୋଇ ରାତିଟାରେ କିଏ ସେ କ'ଣ ଗପୁଛି ?

ଭଅଁରୀ କହି ଚାଲିଥାଏ—ତା' ପୁଅ କ'ଣ ଆସିବାକୁ ମଙ୍ଗିଲା କି ? ଆମରି ଗରଜ । ମୁଁ ଆସିଲି । ମୋ ଟିକି ପୁଅକୁ ଜର । ନ ଆସିଲେ ନ ଚଳେ । ବଳଦ ଦୁଇଟା ବୁଢ଼ା ହେଲେଣି । ବଳ କମିଲାଣି । ପାଞ୍ଚଣ ମାଡ଼କୁ ପିଠେଇ ଦେଉଛନ୍ତି । ଧିମେଇଁ ଧିମେଇଁ ଗଣି ଗଣି ପାଦ ପକାଉଛନ୍ତି ।

ବୁଢ଼ୀ ପାଖକୁ ଆସୁଣୁ ପାଟି କଲେ, ଆଲୋ ସେ କିଏ ବା ? ଜବାବ କାହିଁକି ଦେଉନୁ ?

ଭଅଁରୀ ଟିକିଏ କାନେଇଁ ପୁଣି କହିଲା, ଗାଧୁଆ ବେଳ ଗଡ଼ି ଯାଇଥିଲା ଆମେ ବାହାରିଲୁ । ବାଟରେ ଦି' ଜାଗାରେ ବଳଦଙ୍କୁ ଖୋଇ ପେଇ ଚାଙ୍ଗା କରିଛନ୍ତି । ଏବେ ଖୋଉଛନ୍ତି । ସଞ୍ଜ ହୋଇ ନ ଥାଏ, ଆମେ ଗୋଟିଏ ଗାଁରେ ପେଟେପେଟେ ଖାଇ ଆସିଛୁଁ । ସହଳ ସହଳ ବାହାରି ପଡ଼ିଲେ ସକାଳ ନ ହେଉଣୁ ପହଞ୍ଚିଯିବା ।

ବୁଢ଼ୀ ପାଖକୁ ଆସିଲେ । ଆରଫାଳକ କବାଟରେ ହାତଭରା ଦେଇ ଠିଆ ହେଲେ । ପଚାରିଲେ, ତୁ କିଏ ରେ ପୁଅ ? କେଉଁଠୁ ଆସିଛୁ ?

—ମୁଁ ତ ଭଅଁରୀ ମାଉସୀ ! ମଣିକୁଦରୁ ଆସିଛି । ଖବର ନେଇ ଆସିଛି ସେ—

ବୁଢ଼ୀ ପାଟି କରି କାନ୍ଦିକି ଉଠିଲେ, ଆ-ହା ! ନିଜ କରମ ଦୋଷରୁ ଏଡ଼େ କଲବଲ ହୋଇ ତୁ ସେପୁର ଗଲୁ ରେ, ମୋ' ଝିଅମଣି !

ଭଅଁରି କହିଲା, ଶୁଣ ମ, ଶୁଣ ମ ମାଉସୀ !

ବୁଢ଼ୀଙ୍କର କୁମ୍ଭୀର କାନ୍ଦଣା ପୁଣି ଶୁଭିଲା, ମରି ଡରିଲୁ ତୁ ନରକ ଯିବାରେ—

ଭଅଁରି କହିଲା, ବାବୁ ତ ଭଲ ଅଛନ୍ତି; ତମେ କାହିଁକି ବ୍ୟସ୍ତ ହେଉଛ ? ଏଇ ଯାଆନ୍ତାଣୀଙ୍କୁ, ଆଉ ତାଙ୍କ ପୁଅକୁ ନେବାକୁ ସେ ଗାଡ଼ି ପଠେଇଛନ୍ତି । ହେଇ କ'ଣ ଘର ଆଗରେ ଗାଡ଼ି ଥୁଆ ହୋଇଛି ।

—ହଇ ରେ ଚୂଲିପଶା, ତା' ମୁହଁରେ ନିଆଁ ଦେବାକୁ ମୋ' ଅନ୍ଧର ନଉଡ଼ି ଅରକ୍ଷିତକୁ ନେବାକୁ ଆଇଛି ଅକ୍ରୂର ହୋଇ ? ମୋ' ନାଉଣୀ ଟିକି କ'ଣ ସେଠିକି ଯିବ···

କ'ଣ କହିବାକୁ ବସିଥିଲେ କହି ପାରିଲେ ନାହିଁ । ନିଧିବେହେରା ପିଣ୍ଡା-ତଳେ ଅଳ୍ପ ଦୂରରେ କାନେଇଁ ଥିଲେ । ଲମ୍ବପାହୁଣ୍ଡ ପକାଇ ପାଖକୁ ଆସିଲେ । ହାତ ଯୋଡ଼ି ଜଣାଇଁଲେ, ଆରେ ଭଅଁରି ! ଏବେ ବୁଝିଲୁ କାହିଁକି ମୁଁ ଆସିବାକୁ ଟାଳଟୁଳ କରୁଥିଲି ? ହଇରେ, ସେ ଝିଅବାବୁ ମରିବାକୁ ବସିଛି ବୋଲି ତା' ବୁଦ୍ଧି ବାମ ହୋଇଛି । କିଏ ତା' ମୁଣ୍ଡରେ ପୂରାଇଛି ଯେ ତା' ପୁଅ ଯଦି ତା' ମୁହଁରେ ନିଆଁ ଦିଏ ଯେତେ ପାପ ସେ କରିଛି ଖଣ୍ଡନ ହେବ । ସେ ଗତିମୁକ୍ତି ପାଇବ । ସେଇଥିପାଇଁ—

ଟିକି ଚମକି ଉଠିଲା । ନିଧି ବେହେରାଙ୍କୁ ପଚାରିଲା, ସତେ କି ବେହେରାଏ ?

—ମତେ ଜଣା ନାହିଁ ମା ! ଲୋକଙ୍କ କହିବା କଥା । ପାଞ୍ଚ ବରଷ ହୋଇ-ଯିବ ପରା, ଯେବେ ମୁଁ ତମକୁ ଆଣି ଏଠି ଛାଡ଼ିଲି । ଝିଅବାବୁ ନିଜେ କହୁଥିଲେ, ଦୁଃଖ କରୁଥିଲେ । ଶୁଣାଶୁଣିରେ ଆମେ ଜାଣିଛୁ ପିଲାଟି ପେଟରେ ଥିଲା । ଏବ-ଯାଏ ପଚାରି ନାହାନ୍ତି । ତାଙ୍କର ଗଲାଅଇଲା ବେଳେ ଏତେ ସ୍ନେହ କୁଆଡୁ ଗଲା ପଡ଼ିଲା ?

ବୁଢ଼ୀ କହିଲେ, ଗାଡ଼ି ଆଇଲା ଆଗରୁ ସେଇ କଥା ଥରେ ସେ ପୋଡ଼ା-ମୁହାଁକୁ ପଚାରିଲୁ ନାହିଁ ରେ ପୁଅ ?

—ମୋ'ର କି ଗରଜ ? ଦି' ପାଖର ଭଡ଼ା ମୁଁ ଆଗତୁରା ନେଇଛି । ତେବେ ଶାହାସ୍ତ-ପୁରାଣ କଥା ଯେମିତି ଆଉମାନଙ୍କ କାନରେ ବାଜିଛି, ମୋ କାନରେ ବି ବାଜିଛି । କ'ଣ କି, ପୁତ୍ ବୋଲି ଯେଉଁ ନରକ, ସେଠି ଆଣ୍ଠୁକୁଡ଼ା ହୋଇ ମରିବା ଲୋକ କେତେ ଯୁଗ କଷ୍ଟ ପାଏ । ଝିଅବାବୁ କ'ଣ ଶୁଣି ନ ଥିବେ ? ସେଇଥି-ପାଇଁ—

ଭଉଁରୀ ପ୍ରତିବାଦ କଲା, ହଇ ହୋ ବେଦେଶ୍ୱର, ତମେ ହୁକ ଡ଼ବଲ ଭଡ଼ା ନେଇଛ । ଗାଡ଼ି ବୋହିବା ତମର କାମ । ପରଘର କଥାରେ ମୁହଁ ଖୋଲି କଜଳ-ପାତିଆ ଭଲଲୋକ କରୁଛ କାହିଁକି ?

ବୁଢ଼ୀ ଗରଜିଲେ, ସେ ପୁଅ ନାଙ୍କରୀ କହୁନାହିଁ ।

ବେଦେଶ୍ୱର କହିଲେ, ହେଇଟି ଦେଖ୍‌ରେ ବାଉଣ୍ଡି ଟୋକା ! ମୁଁ କାନ ବୁଜିଛି । ମୋ' କାଇଲି ମାନୁଛି । ଖାଲି ଏତିକି କହୁଛି, ସ୍ୱେ ବୋହି ଆସିଲା ପରେ ଗାଆଁରେ କୋଉ ଲୋକଟା ତା'କୁ ପ୍ରଶଂସା ନ କରୁଛି କହ ? ଧନ୍ୟ ଧନ୍ୟ ପ୍ରଶଂସା ଏବଯାଏ । ଯେଉଁ ଶଳାଏ ଚନ୍ଦା ଚଟାଇ ଥିଲେ, ସେମାନେ ଆଜି ଜେଲ୍‌ରେ । ମଠ ପୋଡ଼ା ହେଲା ଲଙ୍କାପୋଡ଼ି ପରି । ମୁଇଁ ସେ ହନୁମାନ । ଭାବଲି, ମୁକ୍ତ ମାଇଲେ ସିବ ସବୁ—

ଟିଭି ପଚାରିଲା, ମଠ ପୋଡ଼ା ହେଲା ?

—ହିଁ, ଲୋ ମା ! ପୁଣି ଦଳେ ଗାଁ ଟୋକା ଯାଇଁ ସେଠି ମେଳା ମଉଚ୍ଛବ କଲେ । ମଦ, ଗଞ୍ଜେଇ ଖାଇଲେ । ବମ୍ ଭୋଲି କହି ସ୍ୱେର ଚମାର କଲେ । ତା' ଭିତରେ ମୋ' ପୁଅଟା ପଶିଲା । ପେଟରୀ ଖୋଲି ଟଙ୍କା ପଇସା ଦ'ଥର ସ୍ୱେର କଲା । ଗାଁରେ ଗ୍ୱାଲେଣି ପଡ଼ିଲା । ସେଥିରେ ପୁଣି ଯୋଡ଼ାଏ ଦଳ ।

ଅତିଭକ୍ତିଆ ଧାପାଦିଆ ଦଳେ କହିଲେ, ମଠର କି ଦୋଷ ? ନୂଆ ବୁଢ଼ା-ବାବାଜୀର କି ଦୋଷ ? ନିଜ ପିଲାଙ୍କୁ ଜାବତ କରି ଅଟକାଅ । ପୁଅଟାକୁ ଦ'ଥର ପିଟି ପିଟି ଦରମରୀ କଲି । ତଥାପି ସେ ମାନିଲା ନାହିଁ ଲୋ ମା !

ଝିରବାବୁ କଥା ମନେ ପଡ଼ିଲା । ଉଠିଲି ତ ଗ୍ରତିଅଧିଆ । ମୁହଁରେ କଲା ବୋଲି ହେଲି । ଭୂତ ବେଶ ସାଜିଲି । ଗଲି । କଲକଲା ରଡ଼ି ଗ୍ରୁଡ଼ିଲି । ବାବାଜୀକୁ ଘୋଷାଡ଼ି ଆଣିଲି । ଆଉ ଯିଏସବୁ ଥିଲେ, ଗୋଟାଏ ଗୋବୁ ହାଡ଼ରେ ତାଙ୍କୁ ଛେଚିଲି । ଯିଏ ଯୁଆଡ଼େ ପଳାଇଲେ । ସେଇଠୁ ମୋ' କାମ ସାରି ଏକା ଦଉଡ଼ାକେ ଯାଇଁ ନଇରେ ।

ଟିଭି ପଚାରିଲା, ଲୋକେ ଜାଣିଲେଣି ବେଦେଶ୍ୱର ?

—ଜାଣିଲେଣି । ଅଧେ କହୁଛନ୍ତି, ଭଲ କାମ କଲା । ଟାଉଟରିଆ ଦଳକ କହୁଛନ୍ତି, ଶଳାକୁ ଜେଲ୍ ଦିଅ । ପୁଲିସ ଆସି ମତେ ବାନ୍ଧି ନେଲା । ମା' ଲୋ, ଯୋଉ ମାଡ, ମୋ' ସାତ ଜନମର ଦେହ-ମଜଦି ଗ୍ରୁଡ଼ିଗଲା । ମୋ'ର ଏକା ଭ୍ରୁ-ରୁ-ଡ଼ ।

କହିଲି, ମୁଁ ଗାଆଁରେ ନ ଥିଲି । ଶଗଡ଼ ବାହି କାନ୍ତିବାଟି ଅର୍ଜୁନ ଦାଉଙ୍କ କାମ ଉପରକୁ ଦ' ଦିନ ଆଗରୁ ଯାଇଥିଲି, ଫେରିଲି ଦ' ଦିନ ପରେ । ମଣି ଚଉଧୁରୀ, ବକିଲ ନନ୍ଦ, ଅନାଦି ମହାପାତ୍ର, ଏମିତି ଗାଆଁର ଅଧେ ଲୋକ ମୋ'

ପକ୍ଷ ଧଇଲେ । ଗାଆଁରେ ସେଇ ବସ୍ତୁରୀ ହୋଇଥିଲା । ମତେ ସେ ବୁଦ୍ଧି ବଢେଇ ଦେଇଥିଲେ । ମୁଁ ଖଲାସ । ତେବେ, ଅଣ୍ଟାରେ ଟିକିଏ ଦରଜ ରହି ଯାଇଛି ।

—ନିଧି ମଉସା, ମୁଁ ତମକୁ ଜୁହାର କରୁଛି । ଛଅଟି ବରଷ ଆଗରୁ ଯଦି ଏ କାମ କରିଥାନ୍ତ !

—ଟୋକି ଆଖିର ଲୁହଧାର ଦେଖି ନିଧି କହିଲେ ସାପ ଲାଙ୍ଗୁଡ଼ରେ ଗୋଡ଼ ନ ପଡ଼ିଲେ ସେ ଚେଟ ହାଣେ ନାହିଁ ଲୋ ମା ! ମୋ' ପୁଅଟା ଚେଟ ଥିଲା । ଲେଡ଼ଗୁଡ଼ କହୁଣୀକୁ ବୋହି ଯାଉଛି । ଝିକାଝୁଣୀ ବେଶରେ ତୁମକୁ ଗୁଡ଼ି ଯାଉଥିଲା । ଗାଆଁର ଅଘୋର-ଦୁଆରୀ ସମସ୍ତଙ୍କ ତୁଣ୍ଡରେ ତମର ପ୍ରଶଂସା—ବୋହୂଟାଏ ଥିଲା ଟୋକି ! ସହୁଛି, ସହୁଛି, ସହୁଛି । ତୁଣ୍ଡ ଖୋଲି ନାହିଁ । ଛତରା, ଲମ୍ପଟିଆ, ମଦୁଆ ଝରବାବୁର ସେବା କରିବାରେ ଟିକେ ହେଳା କରି ନାହିଁ । ସମସ୍ତେ କହୁଛନ୍ତି ଲୋ ମା—

—ଆଉ କହନା ମଉସା !

—କହୁଛନ୍ତି, ତମ ପରିକା ସତୀ ସୁଲକ୍ଷଣୀ ଖରପାର ସିଏ ନାନ୍ଦା ରଟାଏ, ମାଡ଼ମାର ଘରୁ ତଡ଼େ···

—ତମେ ଗୁଣୀ ହ ମଉସା ! ବହୁତ କଥା କହିଲଣି ! ନିଜ କାମ ନିଜେ କର । ମୁଁ ମୋ' କଥା ବିଗୁରଣା କରିବି । ଯିବ ଯଦି ମତେ ନେଇଯିବ । ନ ଗଲେ, ଗାଡ଼ି ଫେରାଇ ନିବ । ତମେ ଦହେଁ ଆଗ ଖାଇପିଇ ସୁସ୍ଥ ହୁଅ । ବଳଦ ଦିଓଟି ଟିକିଏ ନିଶ୍ୱାସ ମାରନ୍ତୁ । ବାଉଆଡ଼େ କୂଅ ! ଖଞ୍ଜା ଭିତରେ ବାଟ । ତମେ ଦହେଁ ଭିତରକୁ ଆସ । ଆରେ ଭଅଁରା, ମୁଁ ତତେ ପାଣି କାଢ଼ି ଦେବି ।

ଟୋକି ତା'ର ଜେଜେମାଆଙ୍କର ବାହୁ ଧରି କହିଲା, ମୋ' ସଙ୍ଗରେ ତୁ ଆ । ତୋ' ଦେହ ଥରୁଛି । ତୁ ଧୀରେ ଧୀରେ ଆ ।

ଟୋକି ସଙ୍ଗରେ ଆସୁଣୁ ଅଗଣାରେ ବୁଢ଼ୀ ପଚାରିଲେ, ତୁ କଅଣ କରିବୁ ମା ?

—ଜାଣେ ନାହିଁ ।

—ତୋ' ମାଉସୀକୁ ପଚାରିଲେ ସେ ବୁଦ୍ଧି ବତାନ୍ତା । ରଥିଆ ଆସିବ କି ନାହିଁ କେଜାଣି । କାହା ହାତରେ ଖବର ପଠାଇଲେ ସେ ଧାଇଁ ଆସନ୍ତା । ଭଅଁରା, ନୋହିଲେ ସେ ନିଧିଆ···

—ତୁ ଶୋଇବୁ କି ଏଇ ପିଣ୍ଡାରେ ଟିକିଏ ବସିବୁ କହିଲୁ ? କାହାରକୁ କାହା ପାଖକୁ ପଠାଇବା ଦରକାର ନାହିଁ । ମାଗିଆଣିଲା ବୁଦ୍ଧି ପନ୍ତାଇବାର କାରଣ ହୁଏ । କେତେଥର ତୋ' ମୁହଁରୁ ଶୁଣିଛି ଲୋ ମା, ଆପଣାର ବୁଦ୍ଧିରେ ପଛେ ଘାସ କାଟିବ, ପର ବୁଦ୍ଧିରେ ଘୋଡ଼ା ଚଢ଼ିବ ନାହିଁ ।

ସେହି କୋଲ୍ଲନାଧୁଆ ଅଗଣାରେ ।

ନିର୍ମଳ ଆକାଶ ତଳେ । ଧୀର ପବନ ବହୁଥାଏ । ଦୂରରୁ "କଦମ୍ବ-ଦାଣ୍ଡ ମେଳଣ ପଡ଼ିଆ ଆଡ଼ୁ 'ବାଇଦବାଜଣା, ଘଣ୍ଟ, ଘଣ୍ଟା, ତୂରୀ, ଭେରୀର ମିଶାମିଶି ଶବଦ ଭାସି ଆସୁଥାଏ । ନିଧି ଓ ଝିଅ ଦହେଁ ଗୁଣ୍ଡି ଗୁଣ୍ଡି ବସିଥାନ୍ତି । ପିଣ୍ଡାଉପରେ ଝିଅର କେଜେମା ବସିଥିଲେ । ପଚାରିଲେ, ସେ ପୋଡ଼ାମୁହାଁ ଚଲାବୁଲା କରି ପାରୁଛି ? ତା' ରୋଗ ଭଲ ହେଲାଣି ?

ଭଉଁରି କହିଲା, ସେଇଠି ଟିକଏ, ସେଇ ଦୁଆରେ ଏପାଖ ସେପାଖ ହେଉଛନ୍ତି । ସେତିକରେ ହାଲିଆ । ପଛ ଧାଡ଼ି ଘର ଭାଙ୍ଗି କୁଡେଇ ହୋଇପଡ଼ିଛି । ଦୁଆରୁ ଅଧେ ମାଡ଼ି ବସିଛି । ଅଲପ ଥାନ । ଆଉ ଯିବେ କୁଆଡ଼େ ? ଦୁର୍ବଳ ହୋଇଛନ୍ତି ତ! କବିରାଜ କହିଲେ ଭୟ ନାହିଁ ଯେ, ତେବେ ଅସାଧ ରୋଗ; ଧୀରେ ଧୀରେ ନିଶ୍ଚେ ଭଲ ହେବ, ପୁଣି ତାଙ୍କର ପୁରୁଣା ଦେହ 'ଫେରି ଆସିବ ।

ଝିଅ ପଚାରିଲା, ପୁରୁଣା ଦେହ ଫେରିବ ?

ନିଧି କହିଲେ, ଉଷୁନା ଧାନ ଗଜା ହେବା କଥା । କବିରାଜ ଝଙ୍କା ଓଝାର ବଟିକା ଗିଳଉଛି ।

ଭଉଁରି କହିଲା, ତମ ଗୋଡ଼ ତଳେ ପଡ଼ୁଛି ବେହେରାଏ, ଚୁପ ହୁଅ । କେବେ ତ ତମର ପାଦ ସାଆନ୍ତଙ୍କ ଅଗଣାରେ ପଡ଼େ ନାହିଁ, ତମେ କଅଣ ଜାଣିଛ ଯେ କହିବ ? ଆମେ ଦ' ପ୍ରାଣୀ ତାଙ୍କର ସେବା କରୁଛୁ । ମୁଁ ଜାଣେ ନାହିଁ, ତମେ ବେଶୀ ଜାଣିଛ ?

—ହଉରେ ବାପ, ତୁ କହ । ତୁ ଦଶଗୁଣ୍ଠ ଅଉଲ କସମର ଜମି ପାଇଛୁ । ସେଥିପାଇଁ ଜୀବନରେ ପାଣି ଛଡାଇ ସେବା କରୁଛୁ । ତାଆଁ ରୋଗ ବୋଲି ଆଉ କେହି ପାଖ ପଶୁ ନାହାନ୍ତି । ସେ ରୋଗ ଧରିଲା ତ ଜାଣ ଯମ ବେକରେ ଫାଶ ଲଗାଇଲା । ଯେବେ ତା' ମନ, ଯୋଷାର ନେବ । କବିରାଜ କ'ଣ ରଖିପାରିବ ?

ବୁଢୀ କହିଲେ, ତମ ଗାଡ଼ି ତମେ ଫେରାଇ ନିଅ ନିଧି ! ମୋ ନାରୁଣୀ ଯିବ ନାହିଁ କି ତା ପୁଅକୁ ସେ ନେବ ନାହିଁ । ମୋ'ର ଏ ହିଁ ବାର ସତ୍ୟ !

ନିଧି ବେହେରାଙ୍କ ପଛେ ପଛେ ଭଉଁରି ବାରିଆଡକୁ ଗଲା । ଝିଅ ଆଲୁଅ ଧରି ପଛରୁ ଦେଖାଇଲା । କୂଅ ମୂଳରେ ଆଚମନ ସାରି ଭଉଁରି କହିଲା, ତମ ବଳଦ ଦୁଇଟା ଟାଣି ପାରୁ ନାହାନ୍ତି । ସେଇଥିପାଇଁ ଖାଲିଗାଡ଼ିଟା ଫେରାଇ ନେବାକୁ ବୁଦ୍ଧି ଧାଡ଼ି ଉପରେ ପଡ଼ି ଏଗୁର ଗପୁଛ । ଖାଲିଗାଡ଼ି ଫେରିଯିବାର ଶୁଣିଲେ କ'ଣ ହେବ ଜାଣିଚ ?

—କ'ଣ ହେବ ?

—ଠକ୍ କର ସାଆନ୍ତଙ୍କର ପ୍ରାଣ ଗ୍ଲଡ଼ିଯିବ ।

—ଯିବ ତ ଜଲଦି, ନ ହେଲା ଟିକଏ ଆଗରୁ ଯିବ । ତା' ବୋଲ ରଜାଘର କେମାକୁ ନେଇ ତୁ କ ଅବସ୍ଥାରେ ପକାଇବୁ ? ତନ ପୁରରେ ତତେ ଠାବ ମିଳିବ ? ହଇରେ, ଝଗବାବୁ ଗ୍ଲଡ଼ପଣ ନ ଦେଇ ଆହୁରି ନିଦାରୁଣ କାମ କଲା; ମଣିକୁଦରେ କଏ ଏ କଥା ନ କହୁଛି ? ଶୁଣିଲୁ ତ ଗାଁ ମୁଣ୍ଡରେ ଏଇ ରତନପୁରରେ କ'ଣ କହୁଥିଲେ ସେ ଗୋସେଇଁ, ଯାହାକୁ ତୁ ବାଟ ପଗ୍ଲରି କାର୍ତ୍ତିକ ମହାନ୍ତଙ୍କ ଠାବ ବୁଝୁଥିଲୁ ? ଏ ଝିଅ ଚଇତନପାଣି ସରପଞ୍ଚଙ୍କ ବାହାହେବ । ରାଜରାଣୀ ହେବ । ସବୁ ଠିକ୍ ଠାକ ।

—ଶୁଣିଛୁ, ମୋ'ର ବିଶ୍ୱାସ ହେଉ ନାହିଁ ।

—ଦେଖିଲରୁ ବିଶ୍ୱାସ ହେଉଛି ? ପୁଣି ଯାଇ ଲକ୍ଷ୍ମୀ ପଗଳା ଝିଅଟି ବାଉ ଅବସ୍ଥାରେ ପଡ଼ିବ ? ତତେ ନିକଳ ଲଗୁନି ?

ଭଅଁରା କହିଲା, ହେଲ, ଫେରିଯିବା । ତମେ କହିଲାରୁ ମୋ' ହାଲୁକ ଲାଗୁଛି । ମନ ପାପ ଛୁଉଁଛି ।

ଟଗ୍ଲ ଶୁଣୁଥିଲା । ପାଖକୁ ଆସିଲା । ପଗ୍ଲରିଲା, ଘଟଣା କ'ଣ ସତ ସତ କହୁନୁ କାହିଁକି ? ଯେଉଁ ଗେରସ୍ତ ପାଞ୍ଚ ବର୍ଷ ହେଲା ଆମର ମଲା ହଜଲା ଖୋଜ ନାହିଁ, ଆଜ କୋଉ ସାହସରେ, କୋଉ ଆଶାରେ ସେ ଅଲନ୍ଦୁକ ଗାଡ଼ି ପଠାଇଛୁ ମତେ ନେବାକୁ ? ପୁଅଟା ପାଇଁ କ'ଣ ପଠାଇଛୁ ? ସବୁ ତ ସାରିଛୁ, ମୋ' ପୁଅ ସେଠି କ'ଣ ଖାଇ ବଞ୍ଚିବ ?

ନିଧି କହିଲେ, ମୁଁ ସେଇଆ କହୁଥିଲ ଯେ ଭଅଁରା ବିଗୁଡ଼ୁଛୁ ।

ଭଅଁରା କହିଲା, ନାଇଁ ଅପା, ଖାଲିଗାଡ଼ି ଫେରିଯିବ । ତମକୁ ନେଇ କାନ୍ତାରରେ ପକାଇବ ନାହିଁ । ପାଞ୍ଚଦିନ ହେଲା ସବୁବେଳେ ସେ ତମକୁ ମନେ-ପକାଇ କାନ୍ଦୁଛନ୍ତି । କହି ହେଉଛନ୍ତି, ସେ କ'ଣ ଥରେ ଆସିବ ? ମୋ' ପୁଅକୁ ଟିକଏ ମତେ ଦେଖାଇନେବ ? ମତେ କହିଲେ, ଆରେ ଭଅଁରା, କବିରାଜଙ୍କ ମନବୋଧିଆ କଥାରେ ମୋ'ର ଆଉ ବିଶ୍ୱାସ ନାହିଁ । ଏଇ ଦିନେ ଦୁଇ ଦିନ ଭିତରେ ମୁଁ ଗ୍ଲଲିଯିବ । ଥରେ ଖାଲି ପୁଅଟାର ମୁହଁକୁ ଗ୍ଲହିଁ ଦେବ । ମୋ'ପଗଳା ପାପୀଟା କ'ଣ ତୋ'ର ଲକ୍ଷ୍ମୀଅପାର ମୁହଁକୁ ଅନେଇଁ ପାରିବ ? •ନାଇଁ ରେ, ସେ ସତୀର ଆଖିର ଆଲୁଅ ଥରେ ଦେଖିଲେ ମୋ ପାପ ଖଣ୍ଡନ ହେବ ।

ଟଗ୍ଲର କୋହ ଉଠିଲା । ସେ କହିଲା, ବେହେରାଏ, ତମେ ତ ମୋ' ବାପ ସମାନ । ସେଥିପାଇଁ ତମ ବିଗ୍ଲରରେ ଯାହା ଭଲ ତମେ ମନଖୋଲି କହିଲ । ମୋ' ମନରେ ଦୁଃଖ ନାହିଁ । ତମେ ଟିକଏ ଦାଣ୍ଡକୁ ଯାଆ । ଯାହା କରିବାର, ଯାହା କହିବାର ମୁଁ ବଳେ ଭଅଁରା ହାତରେ ଖବର ପଠାଇବି । ଆଉ—

ଟଗ୍ରି ଆଲୁଅ ଧରି ପଛେ ପଛେ ଗଲା । ବାରିକବାଟ କିଳିଲା । ନିଧି ବେହେରାଙ୍କ ଦାଣ୍ଡରେ ଗୁଡ଼ କବାଟ ଆଉଜାଇଲା । ଫେରି ଆସିଲା ପିଣ୍ଡାକୁ, ତା' ଜେଜେମା'ଙ୍କ ପାଖକୁ ।

ଭଅଁରି ଅଗଣାରେ ପିଣ୍ଡା ପାଖରେ ଠିଆ ହୋଇଥିଲା ।

ଟଗ୍ରି ତା'ର ଜେଜେମା'ଙ୍କୁ କହିଲା, ଶୁଣିଲୁ ମା, ଭଅଁରି କ'ଣ କହୁଛି । ବାଉଁଶ ପିଲାଟି ହେଉ ପଛେ, ତା'କୁ ମୁଁ ଝାଡ଼ କରିଥିଲି । ମାତବର୍ଷିକାଳ ସେ ଆଉ ତା' ମା ମୋର ଯାହା ଭରସା ହୋଇଥିଲେ । କହରେ ଭଉ !

କୂଅମୂଳର କଥା ଭଅଁରି ପୁଣି ପ୍ରକାଶ କଲା । ସେ ଆହୁରି କହିଲା, ସାଆନ୍ତେ କହିଲେ, ଯେଉଁ ଗାଡ଼ିରେ ସେ ଆସିଥିବେ ସେହି ଗାଡ଼ିରେ ଫେରିଯିବେ । କହିବୁରେ ଭଅଁରି, ତାଙ୍କୁ ମୁଁ ମୋଟେ ଅଟକାଇ ରଖିବି ନାହିଁ । କାହିଁକି ରଖିବି ? କଅଣ ତା'ଙ୍କୁ ଦେବାକୁ ମୋ'ର ଅଛି କି ?

—ହଇରେ, ତା' ସମ୍ପତ୍ତିବାଡ଼ି ?

—ବନ୍ଦିବସ୍ତା କରି ବେଶୀ ଉଡ଼େଇ ଦେଇଛନ୍ତି । ଶଳାଏ ତାଙ୍କୁ ମଦ ଗଣ୍ଡେଇ ଖୋଇ, ଖରାପ ଘରେ ପୂରେଇ ଠକି ନେଇଛନ୍ତି । ଗୋଟାଏ ଖାନକୀକୁ ଏଇ ରକ୍ତ-ବାନ୍ତି ରୋଗ ହେଉଥିଲା । ସେ ତ ମଲାଣି ।

—ହା ତାକୁ ମରଣ ହେଉ ! ଛି ! ଶୁଣିଲୁ ଟଗ୍ରି !

—ସେମିତି କହନା ମା ! ତା' ପାପର ଫଳ ସେ ଭୋଗୁଛି । ତୋର କି ଥାଏ ? ତୁ କାହିଁକି ଅକଲ୍ୟାଣ କରୁଛୁ ? ମୋ'ର କି ଥାଏ ? ସେ ମୋ'ର ଗେରସ୍ତ ନୁହେଁ, କି ମୁଁ ତା'ର ଘରଣୀ ନୁହେଁ । ଠାକୁରେ ତା'କୁ ଆଇଷ ଦିଅନ୍ତୁ । ସେ ଯଦି ମରିରେ—, ମାନେ ତା'ର ଯଦି କ'ଣ ହୋଇଯାଏ, ମୋ' ସୁନ୍ଥାରେ ସିନ୍ଦୂର ନାହିଁ ଯେ କିଏ ଲିଭେଇବ ।

—ଯିତ ଲୋ ଟଗ୍ରି ।

—ଆଲୋ ମା ! ସେ ତା' ପୁଅକୁ ଦେଖିବାକୁ ମନ କରିଛି । ଥରେ ଦେଖୁ, ସେଇଠୁ ତା'ର ଯାହା ହେବାର ହେଉଥାଉ ।

—ଏଁ, କ'ଣ କହିଲୁ ?

—ମୋ' ମାଆ ଲୋ ! ଅରକ୍ଷିତଟି ତା' ବାପ ନାଁ ଜାଣିଛି । ଯିଏ ପଚାରିଲେ କହି ଦେଉଛି । ହିଂସୁକା ଲୋକେ ପଚାରି ଦେଉଛନ୍ତି, ହଇରେ ଦେଖିଛୁ ? କହିଲୁ ତା'ର କେଇଟା ଗୋଡ଼, କେଇଟା ଶିଙ୍ଗ ? ସେ ଆସି ମତେ ପଚାରୁଛି । ଜିଦ ଧରୁଛି ।

—ମତେ ବି ପଚାରୁଥିଲା ଲୋ !

— ଥରେ ସେ ତା' ବାପକୁ ବୁଝିଦେଇ ଆସୁ ?

ଆଲୋଚନାରେ ବାଧା ଦେଇ ଭଅଁରୀ କହିଲା, ସମ୍ପତ୍ତି କଥା ପଚାରୁଥିଲ ମା, ମୁଁ ଅଧା କହୁଛି—

ବୁଢ଼ୀ କହିଲେ, ତା' ସମ୍ପତ୍ତିରୁ ଆମକୁ କ'ଣ ମିଳିବ ରେ ପୁଅ ? ମୋ' ନାତୁଣୀ ଭୋଗ କରିବ ନାହିଁ କି ତା' ପୁଅ ଅରକ୍ଷିତ ସେଥିରେ ଥୁକିବାକୁ ଯିବ ନାହିଁ ।

ଟେଭି କହିଲା, ସେ କ'ଣ କହୁଛି ଶୁଣ ମା !

ଭଅଁରୀ କହିଲା, କପୂର ଯାଇ କନା ମହନ୍ତୁ । ତ' ମାଣ ଜମି ଏବେ ବିକି ହେଲା । ଦୋ'ଫସଲ ଛଅ ମାଣ ଭାଗଚାଷ ଦିଆ ହୋଇଛି । ଯେଉଁ ଏଗାର-ମାଣିଆଁରେ ଖାଲି କୋଳଥ ଛୁଞ୍ଚା ହେଉଥିଲା, ତା ପାଖେ ପାଖେ ନାଳ ଖୋଳା ହେଉଛି । ସେ କୁଆଡ଼େ ଅସଲ ଦୋ'ଫସଲ ଜମି ହେବ, ସେଥିରେ ସୁନା ଫଳିବ । ଅଳପ ଟଙ୍କା ଦେଇ ସେତକ କିଣି ନେବାକୁ ବାବୁଙ୍କୁ ଲୋକେ ଫୁସୁଲାଉଥିଲେ । ବାବୁ ମନା କରିଦେଲେ ।

ବୁଢ଼ୀ ପଚାରିଲେ, ସତେ ?

ଭଅଁରୀ କହିଲା, ତାଙ୍କର ଜୀବନ ସିନା ଯାଉଛି କି ଆଉଛି, ମତି ଥିର ଅଛି । ମତେ କହିଲେ, ମୁଁ ତ ମରିବି, ଯେଉଁ ଛୁଆଟା ଖୁଣ୍ଟିଆ ବଂଶର ନାମ ରଖିବ, ସେ ଚଳିବ କେମିତି ? ସେ କ'ଣ ମୂଲ ଲାଗିବ ? ହାତୀ ବଣରେ ବଢ଼ିଲେ ରଜାର । ତା' ଯୁଙ୍ଗ ପୁରୁଷର ଜମି, ଘରବାଡ଼ି ସବୁ ତା'ର । ଟେଭି ଜମା ସମ୍ପତ୍ତିର କାଗଜ ପତ୍ର ଦେଇଯିବି । ପିଲା ବଡ଼ ହେଲେ, ତା' ମନ ଯାହା ହେବ ସେ କରିବ । ଥରେ ତାକୁ ଦେଖିବି, ଏତିକି ମୋର ଆଶା । ଏମିତି କହିଲେ ।···

ଟେଭି ତୁନି ହୋଇ ଶୁଣୁଥିଲା ।

ବୁଢ଼ୀ କହିଲେ, ତୁ ଛତରା ବାଉଶ-ଟୋକା ମୋ' ନାତୁଣୀକୁ ଭୁଲାଇ ସେଠାକୁ ନେବା ପାଇଁ ଅନ୍ତୁର ପଣରେ ଆସିଛୁ । ତାହାମିଛ ଗୁଡ଼ାଏ ଗପୁଛୁ କି ? ହଇରେ ଅଲକ୍ଷଣା ?

ଟେଭି କହିଲା, ମତେ ଭୁଲେଇବ ଭଅଁରୀ ? ହଁ, ସେ ଟିକିଏ ସିଆଣା ହେଲାଣି । କାନ କାଟିଲେ ଦଉଡ଼ ତୁଣ୍ଡରୁ ବାହାରୁ ନ ଥିଲା । ସେ କଥା କହି ଶିଖିଲାଣି । ହେଲେ, ଯାହା କହୁଛି ସତ ଲୋ ମା ' ଏଗାରମାଣିଆଁ ଜମି ତାଙ୍କର ଥିଲା । ମୁଁ ଜାଣେ, ମୁଁ ଦେଖିଛି, ଅସଲ ପାଞ୍ଚ ମାଣ ଜମି ସୁନା ବଢ଼ଉଣୀ ତା'କୁ ମଦ ଖୋଇ, ଗଞ୍ଜେଇ, ଅଫିମ ଟାଣି ଠକି ନେଲାଣି ପାଖରେ ଶୁଆଏ ବୋଲି—

ବୁଢ଼ୀ କହିଲେ, ହା' ତା ମୁହଁପୋଡ଼ୁ···

ହାତଯୋଡ଼ି ଭଅଁରୀ କହିଲା, ଡମ୍ବରୁ ମହାରଣା ଅକାମୀ ହୋଇ ଏବେ ଘରେ ଅଛି । ଠକ ବାବାଜୀ ପଳାଇଲା ଦିନରୁ ଆମ ଗାଆଁରେ ଆଉ ଭୂତ ପ୍ରେତ, ଚଣ୍ଡୀ

ସ୍ୱମନ୍ତ୍ରୀଙ୍କର ଉତ୍ପାତ ନାହିଁ । ସୁନାବଢ଼ଉଣୀର ପି'ଶାଶୁ ମଲାଦିନୁ ତାର ଗରବ ଗଲାଣି । ଦି'ମାଣ ଜମି ସେ ରେଜେଷ୍ଟ୍ରୀ କରି ନେଇଥିଲା । ବାକି ତିନି ମାଣ ପାଇଁ ବାବୁଙ୍କଠୁଁ ଖାଲି କରି ସାଦା କାଗଜରେ ଲେଖେଇ ନେଇଥିଲା । ସେ ଲେଖାକୁ ତା' ସିନ୍ଦୁକରେ ରଖିଥିଲା । ବାବୁ ଦିନେ ଥର ମଢରେ ମତେ କହିଲେ । ଭାରି ଦୁଃଖ କଲେ । ତମକୁ ସୁମରି କାନ୍ଦିଲେ ।

—ଅପା ଲୋ, ମା ବାସୁଳେଈଙ୍କ ନାଁ ଧରି ମୁଁ ଦିନେ ଭୂତ ବେଶ ଧରିଲି । ରାତି ଅଧରେ ସ୍ଥଳ ଚଢ଼ି ସୁନା ଘରେ ପଶିଲି । ହାତରେ ଗୋରୁହାଡ଼ ଧରିଥାଏ । ସେମାନେ ମୂର୍ଚ୍ଛା ଗଲାପରି ଶୋଇଥିଲେ । ଘରେ ପଶି ସିନ୍ଦୁକର ତାଲା ଖୋଲିଲି, ସୁନାର ଅଣ୍ଟାରୁ ଚାବି ନେଲି । ସେ ଭକ୍ରମୋଡ଼ି ହେଲା । କିଛି ଜାଣି ପାରିଲା ନାହିଁ । ଲଣ୍ଠନ ତ କମା ହୋଇଥିଲା, ଘରଭିତରେ ପଶି ଆଲୁଅ ତେଜିଲି । କନାରେ ଗୁଡ଼ା ହୋଇଥିବା କାଗଜ ତାଡ଼ାକ ଆଣିଲି । ପୁଣି ସିନ୍ଦୁକ ବନ୍ଦ କଲି, କବାଟ କିଳିଲି । ଯେଉଁଠି ଚାବି ଥିଲା, ତା' ପାଖରେ ରଖି ଆଲୁଅ କମେଇଲି । ମାରି ଚମ୍ପଟ୍ ।

ଟଗର ଆଖି ଖୋସି ହୋଇ ପଡ଼ିଲା । ଦୁଃଖ ମିଶା ଭୟରେ ସେ ଚିତ୍କାର କରି ଉଠିଲା, ଗ୍ୱେର କଲୁ !

—ଆମର ସବୁ ଜିନିଷ, ଆଉ କେତେ କ'ଣ, ଟଙ୍କା ପଇସା ସବୁ ତା' ସିନ୍ଦୁକରେ ଅଛି । ବାସୁଳେଈମା ଜାଣନ୍ତି, ମୁଁ କାହିଁରେ ହାତ ଦେଇ ନାହିଁ । ଦେଇଥିଲେ ମୋ ମୁଣ୍ଡ'ନା ଫାଟିଯିବ ।

—କାହିଁକି ଏ ବୁଦ୍ଧି କଲୁ ରେ ବାଇଆ ! ତା'ର ପିଲା ତିନୋଟି କ'ଣ ଖାଇ ବଞ୍ଚିବେ; ଆହା !

—ସେଥିକୁ କିଏ ଲଗା ? ଲୋକେ କହୁଛନ୍ତି···ଛି, ମୋ' ଜିଭ ଓଲଟୁ ନାହିଁ । ତମ ଆଗରେ କେମିତି ସେ ଅମଣା କଥା ମୋ' ପାଟିରୁ ବାହାରିବ ? ସେ ଯାଇ ସେଇ ଡକେଇତ, ଠକ ଶିବ-ବାବାଜୀଠଉଁ ଟଙ୍କା ଆଣୁ । ନିଜେ ପୋଷି ହେଉ, ପିଲାଙ୍କୁ ତା'ର ପୋଷୁ ।

ଯାଆନ୍ତେ ସେହି ତିନି ମାଣ ଜମି କଥା ଖାଲି କହୁ ହେଲେ । ମୋ' ଆଣ୍ଠୁକୁ ଭିଡ଼ା ଦେଇ ବସିଥା'ନ୍ତି । କାଶି କାଶି ନସ୍ୟାନ୍ତ ହେଉଥାନ୍ତି । ଖଙ୍କାରରେ ରକ୍ତ ପଡ଼ିଲା । କହିଲେ, ମରିବି ରେ ଭଉଁରି, ଟଗିକୁ ତ ତଡ଼ି ଦେଇଛି, କେଉଁ ଭରସାରେ ତା'କୁ ଆସିବାକୁ ଖବର ପଠାଇବି ? ଛୁଆକୁ ନେଇ କେମିତି ସେ ଆସିବ ? ନିଜ ମନକୁ ତ ସେ କେବେ ଆସିବ ନାହିଁ ?

ଟଗର ଆଖିରୁ ଲୁହ ଗଡ଼ିଲା ।

ବୁଢ଼ୀ କହିଲେ, ମଲା ବେଳେ ହନୁ ସତ କହେ । ତୁ କାହିଁକି ଆଖିରୁ ଲୁହ ଝରାଉଛୁ ? ତୋ' ପିଲାଟି ଶୋଇଛି । ଅମଙ୍ଗଳ କଥା !

ଟଗର ଆଖିରୁ ଲୁହ ପୋଛିଲା । ଦେଖିଲା, ଭଅଁରା କାନ୍ଦୁଛି । ପଥରରୁ ପାଣି ଝରୁଛି । ଗାମୁଛାରେ ଆଖିରୁ ଲୁହ ପୋଛୁଛି ।

ବୁଢ଼ୀ ବିଚଳିତ ହେଲେ । ତାଙ୍କର ଶୁଖିଲା ଗାଲ ତଳକୁ ବେଦନାର ଅଶ୍ରୁ ଭେଦିଲା । ସେ ବଳବଳେଇଲା ପରି ବାହୁନିଲା ସ୍ୱରରେ ଶରେଇ କାନ୍ଦିଲେ, ମୋ ଝିଅମଣିରେ ! ମୋ ଆଇସ ନେଇ କାଳିଆ ଠାକୁରେ ବଞ୍ଚାଇ ରଖନ୍ତୁ ରେ ! ମୋ' ଅରକ୍ଷିତ ବାପଛେଉଣ୍ଡ ନୋହୁ ରେ—

ଭଅଁରା କହିଲା, ଶୁଣ ବୁଢ଼ୀ ସାଆନ୍ତାଣୀ, ମୁଁ ସେଇ ରାତିରେ ବାଦନା-ଭୂତ ସାଜି ହେଲି । କାଗଜପତ୍ର ଦେଖିଲେ, ଖୁବ ଖୁସି ହେଲେ । କହିଲେ, ଆରେ ହଁ' ମାଣେ ରେଜେଷ୍ଟ୍ରୀ ହୋଇଛି । ସେତକ ସେ ନେବ । ଲେଖି ତ ପାରୁ ନାହିଁ, ଟଗର ଯଦି ଥରେ ଆସନ୍ତା ତାକୁ କହିଦେଇଯାନ୍ତି । ସେ ମୋ କଥା ଭାଙ୍ଗନ୍ତା ନାହିଁ ରେ ଭଅଁରା ! କେବେ ଭାଙ୍ଗି ନାହିଁ ।

ଟିକିଏ ରହି ଭଅଁରା ପୁଣି କହିଲା, ହଇନେ ମୋ' ମନକୁ କହିଲା, ଯିବି କି ସାଆନ୍ତେ, ତମ ନାଁ କହି ଅପାଙ୍କୁ ଆଉ ଟିକି ପୁଅକୁ ନେଇ ଆସିବି ? ବାବୁ ମୁଣ୍ଡ ହଲାଇ ଦେଲେ । ତାଙ୍କର ଶୁଖିଲା ଆଖିରୁ ଲୁହ ଝରିଲା, ବୁଢ଼ୀ ସାଆନ୍ତାଣୀ ! ହେଇଟି ଉପରେ ଧର୍ମ, ତଳେ ଧରଣୀ, ତାଙ୍କୁ ସାକ୍ଷୀ ରଖି କହୁଛି । ସେ କହିଲେ—ମୋ' ଟଗରକୁ, ଆଉ ମୋ' ପୁଅକୁ ମୁଁ ମରୁବେଳେ ମନେ ପକାଉଛି । କହି ଯାଇଥିଲା, ଡାକିଲେ ସେ ଆସିବ । ଡାକିବାକୁ ଡର ମାଡ଼େ । ମୋ'ର ଏ ରୋଗ ଡ଼ଆଁ ରୋଗ, କାହିଁକି ତାଙ୍କୁ ଯମ-ମୁହଁକୁ ଡାକିବି ରେ ?

—ସେଇଆ ମୁଁ କହି ଆସିଥିଲି ମା ! ଆଜି ବୁଝୁଛି, କାହିଁକି ମତେ ସେ ଟାଣ କଥା, ଅପମାନିଆ କଥା କହି ପାଖରୁ ବିଦା କରିଥିଲା । ମୋ' ପେଟରେ ଛୁଆ ଅଛି ଜାଣି, ମୋ' ଜୀବନକୁ ତା' ଜୀବନରୁ ଅଧିକ ସେରନ୍ତା ମଣିଥିଲା । ସେତେ-ବେଳେ ସେ ଜାଣି ପାରିଥିଲା କି କ'ଣ···

ବୁଢ଼ୀ କହିଲେ, ନାଇଁ ଲୋ ଟଗର ! ସେ ରୋଗ ପାଞ୍ଚ ବରଷ ସତାର କରେ ନାହିଁ । ତେବେ କେଜାଣି, କବିରାଜଙ୍କ ଓଷଦର ଗୁଣ ହୋଇଥିବ ।

ଭଅଁରା କହିଲା, ଦେଖିବାକୁ ବାବୁ ଉଚ୍ଛନ୍ନ ହେଉଛନ୍ତି । କହିଲେ, ଥରେ ସେ ଦୁହିଁଙ୍କୁ ଚାହିଁ ଦେବ । ଟଗରକୁ ମୋ' ମନ କଥା ପଦେ କହିଯିବ ।

ବୁଢ଼ୀ ପଚାରିଲେ, କ'ଣ ତା'ର ମନ କଥା ?

ଭଅଁରା କହିଲା, ଦମଛଡ଼ା ସେ ଆଉ କାହାରିକୁ କହିବେ ନାହିଁ ଅପା ! ତାଙ୍କ ଡାକରା ପାଇ ତମେ ପୁଅକୁ ନେଇ ତାଙ୍କୁ ଥରେ ଦେଖାଦେବାକୁ ଯିବ, ଏ

ବିଶ୍ୱାସ ତାଙ୍କର ନାହିଁ । ସେଇଥିପାଇଁ କି କ'ଣ, ସେ କହିଲେ, ନ ଆସିଲେ ଗାଡ଼ି ଫେରାଇ ଆଣିବୁ ।

ଟେଙ୍ଗ ବିଚଳିତ ହେଲା ନାହିଁ । ଦୁଇ ହାତରେ ମୁହଁ ଘୋଡ଼ାଇଲା । ମୁଣ୍ଡ ଅଳପ ନୁଆଁଇଲା । ମନେ ମନେ ବଡ଼ଠାକୁରଙ୍କୁ ସୁମରି, ଅଭିମାନରେ ତାଙ୍କୁ ନୀରବ ଭାଷାରେ କହିଲା, କ'ଣ ତୋ' ମନରେ ଅଛିରେ କାଳିଆ, ତତେ ଜଣା । ତୋ' ହାତର ଖେଳ-କଣ୍ଢେଇ ମୁଁ, ଆଉ କେମିତି ନଚାଇବୁ ନଚା ।

ବୁଢ଼ୀଙ୍କର ସନ୍ଦେହ ଗଭୀର ହୋଇଗଲା । ଧଇସ ଟେଳାଇଲା । କହିଲେ, ହଇରେ ପୁଅ, ଏ ନଅ ବେହେରା ପରବ ଦିନଟାରେ ତା' ଗାଡ଼ି ପୁଣି ଫେରାଇ ଆଣିବାକୁ ରାଜି ହେବ ?

—ସେ ଭାରି ଅର୍ଥ ଲୋଭୀ । ବେଶୀ ଟଙ୍କା ଦେଲେ ମାନିବ । ନ ମାନିଲେ ନାହିଁ । ଯେଉଁଠୁ ହେଲେ ଗାଡ଼ି ଠିକଣା କରିବ । କାହା ଲାଗି କେଉଁ କାମ କେଉଁଠି କେବେ ଅଟକି ରହେ ନାହିଁ ମା !

ଟେଙ୍ଗ ମୁଣ୍ଡରୁ ହାତ କାଢ଼ି ଉଠି ଠିଆ ହେଲା । ଅଗଣାକୁ ଓହ୍ଲାଇ ଆକାଶକୁ ଚାହିଁଲା । ଜଗ୍ଯୋଦଶୀର ଚନ୍ଦ ମୁଣ୍ଡ ଉପରକୁ ଆସି ନାହିଁ । କେତେ ରାତି ହେବ କେଜାଣି । ଭଉଁରୀକୁ କହିଲା, ମୁଁ ଯିବାରେ ଭଲ ! ଏତେ ରାତିରେ ନଅ ବେହେରା କ'ଣ ଗାଡ଼ି ଛାଡ଼ିବେ ?

—ମୁଁ ବେହେରାଙ୍କୁ ପଚାରେ । ସେ ଓଡ଼ବାର ଲୋକ ନୁହନ୍ତି । ସକାଳ ଛାଡ଼ିଲେ ରାତି ପାହିଲା ବେଳକୁ ଗାଡ଼ି ମଣିକୂଟ ଧରିଥିବ । ବାବୁଙ୍କ ପାଖରେ ରହିବାକୁ ମୋ' ଦ' ପୁତୁରାଙ୍କୁ ଜଗାଇ ଆସିଛି ।

ଭଉଁରୀ ଦାଣ୍ଡକୁ ଗଲା ।

ଟେଙ୍ଗ ତା'ର ଜେଜେମା'ଙ୍କ ପାଖକୁ ଆସି କହିଲା, ତାତିଲା କଡ଼େଇରେ ଜୀଅନ୍ତା ମାଛ ପଡ଼ି ଛଟପଟ ହେଲା ପରି ମୁଁ ହେଉଛି । ତୁ ବତାଇ ଦେ, ମୁଁ କ'ଣ କରିବି ।

—ମୋ' ପାଇଁ ତୁ ଚିନ୍ତା କରନା । ଆଜି ରାତିରେ ନ ଆସିଲେ କାଲି ସକାଳେ ରଥିଆ ଆସିବ । ତୁ ଫେରିବା ଯାଏ ସେ ମୋ' ଖବର ବୁଝିବ । ନାଟୁଆ ମିଳିଲେ ତା'କୁ ସଙ୍ଗରେ ଧର, ନ ମିଳିଲେ ଏକା ଏକା କାଲିକି ବି ଫେରି ଆସିବୁ ଯେ । ମୁଁ ତା'ର ମା । ମତେ କ'ଣ ସେ ଫୋପାଡ଼ି ଦେବ କି ?

—ମାଆ ଲୋ, ତତେ ଘଡ଼ିଏ ଗ୍ରାନ୍ତ କୁଆଡ଼େ ରହିବାକୁ ମୋ' ମନ ହେଉ ନାହିଁ । କ'ଣ କରିବ ? ଝରିଆର ଆଶା ନ ମେଣ୍ଟାଇଲେ ମୁଁ ବଞ୍ଚିଥିବାଯାଏ ତା'ର ପ୍ରେତ ମତେ ଗୋଡ଼ାଇଥିବ ।

—ସତେ ଲୋ ଝିଅ !

—ଶୁଣ ମା ! ଏଇ ପିଲାଟା ଦିନେ ବଡ଼ ହେବ । ନିଶ୍ଚେ ସବୁ ଶୁଣିବ । ମୋ' ପ୍ରତି ତା'ର କି ଧାରଣା ହେବ କହିଲୁ ?

—କଲିକାଳିଆ ପିଲା । ଖରା ବୁଦ୍ଧିଆ । ଓଳିଆରୁ ପଡ଼ି ଗଲା । କେତେଥର ମତେ ତା' ବାପ କଥା ପଚାରିଲାଣି । ତା' ବାପାକୁ ସେ ଦେଖିବାକୁ ଚାହୁଁଛି । ଥରେ ଦେଖାଇ ଆଣ ମା— !

ଉଆଁସ ପଦାରୁ ଆସି ଖବର ଦେଲା, ଯେତେବେଳେ ତମେ ବାହାରିବ ନିଧି ବଳଦ ଯୋଚିବେ । ସେ ଗାଡ଼ି ଚଲାଇବେ, ମୁଁ ଦଣ୍ଡା ଧରିବ । ଅଧ ବାଟରେ ଅଦଳ ବଦଳ ହେବ । ହଁ ଅପା, ଫେରାଇ ଆଣିବାକୁ ସେ ରାଜି । ଦି' କୋଡ଼ି ଟଙ୍କା ସେ ନେବେ ।

— ଗାଡ଼ି ସଜାଡ଼ିବାକୁ ତୁ କହି । ପିଲାଟିକୁ ସଙ୍ଗରେ ନେଇଯିବି । ତା'ର ଚାଲିବାକୁ ଯେମିତି ଅସୁବିଧା ନ ହୁଏ ସେଥିର ଯୋଗାଡ଼ କରିବୁ ତ !

ଝିଅର ଜେଜେମା ଅରକ୍ଷିତର ପାଖକୁ ଆସିଲେ । କାନ୍ଦର କୋହ ଉଠୁଥିଲେ ବି ସେ କାନ୍ଦିଲେ ନାହିଁ । ଶୋଇଲା-ପିଲାର ମୁଣ୍ଡ ଆଉଁସି ମନେ ମନେ କହୁ ଦେଉଥିଲେ, ଖୁଣ୍ଟିଆ ବଂଶର ସବୁ ସମ୍ପତ୍ତି ତୁ ପାଇବୁରେ ଧନ ! ତା' ବଂଶର ନାଁ ବୁଡ଼ାଇ ମହାନ୍ତି କୁଳର ନାଁ ରଖିବୁ । କାନ୍ଥିକା ତତେ ପୁଅ କରିବ । ଠାକୁରେ ତତେ କୋଟି ପରମାୟୁ ଦିଅନ୍ତୁ ।

ଝିଅ ଉଆଁସ ହାତରେ ଗାଡ଼ି ଭିତରକୁ ଦରକାରୀ ଜିନିଷ ବୁହାଉଥିଲା । ପିଲାଟି ପାଇଁ ଯେତିକି ଦରକାର ସେତିକି । ବାପ ଆଣିଥିବା କଣ୍ଢେଇଗୁଡ଼ିକ ପୁଡ଼ାରେ ବାନ୍ଧି ପଠାଇ ଦେଲା । ଭାବିଲା, ବାପର ଏତିକି ସ୍ନେହ ସେ ଫୋପାଡ଼ିବ ନାହିଁ ।

ବୁଢ଼ୀ ପଦାକୁ ଆସିଲେ । ଝିଅକୁ କିଛି ପଚାରି ପାରୁ ନ ଥିଲେ । ଝିଅ ବି କିଛି କହି ପାରୁ ନ ଥିଲା । ଦୁହିଙ୍କର ମନ ଭିତରେ ବିକଳ ସ୍ୱରରେ ବିଦାୟ ବେଳର କାନ୍ଦୁରା-ମହୁରୀ ବାଜୁଥିଲା ।

ଅଳପ ଟଳିଲା ପାଦରେ ଝିଅ କୋଠରୀ ଭିତରେ ପଶିଲା । କବାଟ କଲା । ସେହି କବାଟ ଉପରେ ମୁଣ୍ଡ ଥାପି ସେ ଫୁଁ ଫୁଁ ହୋଇ କାନ୍ଦି ଉଠିଲା । ଆଖିର ଲୁହ

ଓ ଗ୍ରନ୍ଥର କୋହ ସେ ଅକାଡ଼ ନିଃଶେଷ କଲା । ଆଖି ପୋଛି ହାତ ଯୋଡ଼ି ସେ ଜଣାଣ କଲା—ପୁଣି ଯେଉଁ ରୂପରେ ଯେଉଁ ବେଶରେ ମତେ ନଗ୍ନଇବାକୁ ନେଉଛୁ ମୁଁ ସେଇଆ ହେବ । ଆଉ କାହିଁକି ଏ ସାଜ, ରେ ଛତରା କାଳିଆ !

କିଛି ସମୟ ପରେ ଝିଅ କବାଟ ଖୋଲିଲା । ସେ ହସୁଥିଲା ।

ବୁଢ଼ୀ ପାଖକୁ ଆସିଲେ । ଝିଅକୁ ଚାହିଁ ସେ ପାଟି କରି ଉଠିଲେ, ତୁ ଏ କି ବେଶ ସାଜିଛୁ ଲୋ ବାଇଆଣୀ ? କେଡ଼େ ଅଭେକାଙ୍କ ପରି ଦିଶୁଛୁ ଲୋ ମା !

ଝିଅ ହସିଲା । କହିଲା, ଏଇ ବେଶରେ ମୋ ବାପା ଦିନେ ମତେ ଶଶୁର ଘରକୁ ପଠାଇଥିଲେ । ମନେ ନାହିଁ କି ? ଏଇ ବେଶରେ ସେ-ଘରୁ ଆସି ମୁଁ ଏଠି ଶରଣ ପଶିଥିଲି । ମୋ'ର କିଛି ବଦଳି ହୋଇ ନାହିଁ । ଯାହାର ସ୍ନେହକୁ ପେଟରେ ଧରି ମୁଁ ଆସିଥିଲି ତାଆରି ପାଖକୁ ଫେରି ଯାଉଛି । ସେଇ ସ୍ନେହଟିକୁ ମୁଁ କୋଳରେ ବସାଇ, ଗ୍ରନ୍ଥରେ ଧରି, ତା'କୁ ଦେଖାଇବାକୁ ଯିବି ।

ବୁଢ଼ୀ କାବା କାବା ହୋଇ ଚାହିଁ ରହିଲେ ।

ପୁଣି ଝିଅର ଆଖିରେ ଲୁହ ଛଳ ଛଳ ହେଲା । ସେ କହିଲା, ସିଏ ମୋ' ଦେହକୁ ଦାମିକା ଲୁଗାଜାମାରେ ବେଢ଼ାଇ ହେବାକୁ ସେସବୁ ଦେଇଥିଲେ, ତା' ସଙ୍ଗକୁ ଅଙ୍ଗରେ ମଣ୍ଡିବାକୁ ଗହଣା, ତାଙ୍କର ସ୍ନେହ ପୁଣି ତା' ପଛରେ ଲୁଚିଥିବା ବିମଳା ଭାଉଜଙ୍କର କରୁଣାକୁ ମୋ ଗ୍ରନ୍ଥ ତଳେ ସମ୍ଭାଳି ରଖିଛି । ସଙ୍ଗରେ ନେଇ-ଯିବି । ସେତକ ମୋ' ଜୀବନର ଅମୂଲ୍ୟନିଧି । ଜିନିଷଗୁଡ଼ିକ ବାନ୍ଧି ପୁଡ଼ା କରି ରଖିଛି । ତୁ ନେ— ।

—ମୁଁ କ'ଣ କରିବି ?

—କାଲି ସନ୍ଧ୍ୟାରେ ଅବା ପୁନେଇଁ ସକାଳେ ସେ ଫେରିବେ । ରଥିଆ ହାତରେ ତାଙ୍କୁ ଡ଼କାଇ ପଠାଇବୁ । ସବୁ କଥା କହିବୁ । ଫେରାଇ ଦେବୁ ।

—ତୁ କ'ଣ ଫେରିବୁ ନାହିଁ ? ତୋ ମୁହଁ ନ ଦେଖି ମୁଁ ଝୁରିଝୁରି ମରିବି ? ଅରକ୍ଷିତକୁ ତୋ' ବାପକୁ ପୁଅ କରାଇ ଦେବୁ ନାହିଁ ?

—ମନ କଷ୍ଟ କରିବୁ ନାହିଁ ମା, କହିବି ?

—କହ ।

—ଖୁଣ୍ଟିଆ କୁଳର ପୁଅକୁ ଦଳେବଳେ ମୋ' ବାପର ହାତରେ ଗୁଣ୍ଡି ଦେବାର ଅଧିକାର ମୋର ନାହିଁ । ନାଟୁଆ ଯଦି ଫେରେ, ମୋ' ପୁଅର ରକ୍ତ ପିଇ ତା' ଜୀବନ ଶୋଷି ଖାଇବ ।

—ନାଇଁ ଲୋ ଝିଅ !

—ମୋ' ଫେରିବା କଥା ପଚାରୁଛୁ ଯେ, ତୁ ନିଜେ ବିଚାର କର । ବାପା କ'ଣ ଦିନେ ମୋତେ ଖୋଜିଥିଲେ ନା ଲୋଡ଼ିଥିଲେ ? ମୋର ଅଶରଣ ପଡ଼ିଥିଲା ।

ମୋତେ ଝିଅ ଉତ୍ତି ଦେଇଥିଲ । ସେଥିପାଇଁ ବାପଘରେ ଶରଣ ପଶିବାକୁ ମୁଁ ଆସିଥିଲି । ଏଇଆ ମୁଁ କହେ ।

ସତେ କ'ଣ ସେଇଆ ? ନାଇଁ ଲୋ ମା ! ସେଇଠି ମାଟି କାମୁଡ଼ି ପଡ଼ି ରହି-ଥାନ୍ତି । ଆହୁରି ଆହୁରି ଦୁଃଖ ସହିଥାନ୍ତି । ମଲେ ପଛେ ମରିଥାଆନ୍ତି । ତତେ ଦେଖିବାକୁ ମୁଁ ଧାଇଁ ଆସିଥିଲି । ତତେ ଦେଖି ମୋ ମନ ବଦଳିଲା । ତତେ ଏକା ଛାଡ଼ି ଫେରିଯିବାକୁ ଇଚ୍ଛା ହେଲା ନାହିଁ । ବାପା ତ ଫେରି ଆସିଲେଣି—

ବୁଢ଼ୀ ବସିପଡ଼ିଲେ । କପାଳରେ ହାତ ଦେଇ ବାହୁନିବାକୁ ଆରମ୍ଭ କଲେ, ହାଁ ମୋ' ସୁନା କଣ୍ଢେଇ···

ଟଗ୍ ନଇଁପଡ଼ି ବୁଢ଼ୀଙ୍କର ପାଟିରେ ହାତ ଦେଇ କହିଲା, ମୋ' ଗୁଣ, ରୁ ରୁନୀ ହ । ପିଲା ଉଠିବ । ମୁଁ କ'ଣ କହୁଛି ଆଗ ଶୁଣ । ମୁଁ ଫେରିବ ଯେ,—

ବୁଢ଼ୀ ରୁନ୍ଧା ହୋଇ ପଚାରିଲେ, ଫେରିବୁ ?

—ଫେରିବ ଲୋ ମା, ଠାକୁରଙ୍କୁ ସାକ୍ଷୀ ରଖି ନିୟମ କରି କହୁଛି । ଯାହାଙ୍କର ସ୍ନେହକୁ ଛାତିରେ ପୂରାଇ ମୁଁ ଯାଉଛି, ଯେବେ ସେ ମତେ ଡ଼ାକିବେ, ମଣିକୁଦରୁ ପନମାନରେ ଆଣିବେ, ମୁଁ ନିଶ୍ଚେ ଏ ଗାଆଁକୁ ଫେରିବ । ହେଲେ ଏ ଘରକୁ ତ ଫେରିବ ନାହିଁ ? ଏ ଘର, ଏ ସମ୍ପତ୍ତି ସବୁ ତୋ'ର । ମୋ ଜେଜେ ଅରଜି ଥିଲେ । କିନ୍ତୁ ମା, ତୋର ଯିଏ ଗଡ଼ମୁକୁଟର କାରଣ, ତୋର ପେଟରୁ ଜନମ ମୋ' ବାପା, ତାଙ୍କ ସଙ୍ଗେ ବାଦ କରିବାକୁ ମୁଁ ଏ ଘରକୁ ଫେରିବ ?

—ବାଦ କାହିଁକି କରିବୁ ? ତୋ' ବାପା ତତେ ଆଉ ତୋ' ପୁଅକୁ କେଡ଼େ ଭଲ ପାଏ ତୁ ନିଜେ ଦେଖିଲୁ । ଅନୁଭବ କଲୁ । ସେ କ'ଣ ତତେ ହେଲା କରି ପାରିବ ? ତତେ ଫୋପାଡ଼ି ଦେବ ?

ଟଗ୍ ଆଖିରୁ ଲୁହ ପୋଛିଲା । ଦୀର୍ଘଶ୍ୱାସ ଛାଡ଼ି କହିଲା, ଦେଖିଲୁ ତ ମା, ତୋ ପୁଅ ପୁଣି ନାଟୁଆକୁ ଆଣିବା ପାଇଁ ବାଇଆଙ୍କ ପରି ଧାଇଁ ଯାଇଛନ୍ତି ।

— ତାକୁ ପାଇବ ଯେ ଆଣିବ !

—ନ ପାଇଲେ ନାହିଁ, କିନ୍ତୁ ମୁଁ ଜାଣିଲି ମୋ' ଅପେକ୍ଷା ତାଙ୍କର ନାଟୁଆ ପ୍ରତି ସ୍ନେହ ଅଧିକ । ଭଲ କଥା ମା, ମୋ ମନରେ ସେଥିକୁ ଦୁଃଖ ନାହିଁ । ନାଟୁଆ ଆସୁ । ସେ ସୁଖରେ ରହିବେ । ତାକୁ ନ ପାଇ ହତାଶ ହୋଇ ଫେରିଲେ ସେ ବାଇଆ କୁକୁର ପରି ସମସ୍ତଙ୍କୁ କାମୁଡ଼ି ଗୋଡ଼ାଇବେ । ତାଙ୍କ ଲେଖାରେ ମୁଁ ମରିଥିଲି । ତାଙ୍କ ଲେଖାରେ ପୁଣି ମୁଁ ମରିବ । ଏ ଘରେ ମୋ' ସଙ୍ଗେ ଦେଖା ତାଙ୍କର ସପନ ହେବ । ସେଇଆ ହେଉ ।

ନିଷ୍ଫଳ ଓ ନିର୍ବାକ୍ ହୋଇ ଯେଉଁ ସ୍ନେହମୟୀ ଜେଜେମା'ଟି ପାହାଚ ପାଖର ଦାଣ୍ଡ-ପିଣ୍ଡାରେ ବସି ତାର କଥା ଶୁଣୁଥିଲେ, ତାଙ୍କରି ଆଗରେ ତଳେ ମୁଣ୍ଡ ଲଗାଇ

ସେ ଓଲଟି ପଡ଼ିଲା । ଗୁଡ଼ଭିତରୁ ହାବୁକାଇ ଉଠୁଥିବା କୋହକୁ ଅଟକାଇ ସେ ଦାଣ୍ଡକୁ ଟଳ ଟଳ ହୋଇ ଓହ୍ଲାଇ ଆସିଲା । ଟିକଏ ଦୂରରେ ରଖାହୋଇଥିବା ବଳଦଗାଡ଼ି ପାଖରୁ ଅରକ୍ଷିତର ଡାକ ଶୁଭିଲା—ବୋଉ, ଜଲଦି ଆ—

ତ୍ରୟୋଦଶୀର ଜହ୍ନ ମଥା ଉପରେ ଉଜ୍ଜ୍ୱଳ ଦିଶୁଥାଏ । ଖଣ୍ଡିକ ଖଣ୍ଡ ପାତଳ ମେଘର ଉହାଡ଼ରେ ତା'ର ଲୁଚକାଳି ଖେଳ ବେଳେ ବେଳେ ଜୋଛନାଧୁଆ ପ୍ରକୃତିକୁ ମହଲ କରୁଥାଏ । ରହି ରହିକା ଶୀତଳ ପବନ ଉଷୁମ ଦେହକୁ ଆଉଁସି ଦେଉଥାଏ । ସେ ଆଗେଇ ଚାଲୁଥାଏ ।

ପାଞ୍ଚଟି ବରଷ ସୁଖ-ଦୁଃଖରେ କଟିଥିଲା ଯେଉଁ ଜନମିଲା ଘରେ, ଯେଉଁଠି ଆନନ୍ଦ-ଉତ୍ତେଜନା, ଆଶା-ଦୁରାଶାର ଦୋଳିରେ ସେ ଦୋହଲିଥିଲା, ତୋଳିଥିଲା କେତେ ଆକାଶ-କୁସୁମ, ସେହି ଘର, ଆଉ ତା'ର ସ୍ନେହମୟୀ ଜେଜେମା'ଙ୍କୁ ପଛ କରି ଆଗେଇ ଯାଉଥାଏ । ଗୋଡ଼ ଛନ୍ଦିବାନ୍ଧି ହେଲେ ବି ଫେରି ଚାହିଁବାକୁ ତା'ର ସାହସ ହେଉ ନ ଥାଏ ।

ସବୁ ବିସ୍ମରଣୀ କ୍ଷଣ କ୍ଷଣକେ ତ ଆନ ହେଉଛି, କିଏ ଜାଣେ ଆରପାଦ ପକାଉଁ ପୁଣି କେଉଁ ବିସ୍ମୟ ସେ ଅଜଣାପୁରୁଷ ମନରେ ପୂରାଇବ, ଭେଳିକି ଲଗାଇବ ? କୁଆଡ଼କୁ ପୁଣି ଅଡ଼େଇ ନେବ ? ପୁଣି ଆଶା-ଦୁରାଶା ଆଲୁଅ-ଛାଇ, ହସ-କାନ୍ଦର ଦୋଳି ଖେଳାଇବ ? ସେ ବିସ୍ମିଳା, ପବନଉଡ଼ା ଶିମିଳିତୁଳାରୁ ସେ ଛିଅ ଟିକିଏ । ଉଡ଼ି ଯାଉଛି, ଉଡ଼ି ଯାଉଛି, ନିଜର ଚାରା ନାହିଁ ।

ଗାଁ ଦାଣ୍ଡଆଡ଼ୁ ଧଅସି ଆସୁଛି କିଏ ? ଗାଡ଼ି ପାଖରୁ ପେଁକାଳି ବାଜିଲା । ତା' ସଙ୍ଗକୁ ବେଙ୍ଗବାଇଦ । ଅରକ୍ଷିତ ତା' ପାଖକୁ ଛୁଟିଗଲା ।

ରଥିଆ ଆସିଛି । ହାତରେ ଧରିଛି ଦିଓଟି ରଙ୍ଗ-ବେଲୁନର ସୂତା । ସେ ଦିଓଟି ମୁଣ୍ଡ ଉପରେ ଖଣ୍ଡେ ଦୂରରେ ଧୀର ପବନରେ ଏକଡ ସେକଡ଼ ହୋଇ ଉଡୁଛନ୍ତି ।

ରଥିଆ ଖେଳଣାଗୁଡ଼ିକ ଅରକ୍ଷିତକୁ ଧରାଇ ଦେଲା । ସେଇକୁ ପଚାରିଲା, ନାଟୁସ୍ରି ଆସିଛନ୍ତି କି ?

ସେ କହିଲା, ନାହିଁରେ ଭାଇ; କେହି ଆସି ନାହିଁ । ମତେ ନେବାପାଇଁ ମଣିକୁଦରୁ ଅରକ୍ଷିତର ବାପା ଗାଡ଼ି ପଠାଇଛନ୍ତି ।

—ତୁ ଏ କି ବେଶ ପୁଣି ଧରିଛୁ ? କାହିଁକି ତୁ ପୁଣି ସେ ଯମପୁରକୁ ଯିବୁ ? କିଛି ବିଘଟନ ଘଟିଛି ? ଘଣ୍ଟା । ଆମର କି ଥାଏ ? ଗାଡ଼ି ଫେରିଯାଉ ।

ଟଙ୍ଗ ଉତ୍ତର ଦେବାକୁ ଥଙ୍ଗଥଙ୍ଗ ହେଲା । ତାର ପାଦ ଚଳିଲା ନାହିଁ । ଅରକ୍ଷିତ ମନଖୁସିରେ ପେଁକାଳି ଫୁଙ୍କୁଥିଲା । ବେଙ୍ଗବାଇଦ ବଜାଇ ଟଙ୍ଗ ଓ ରଥିଆଙ୍କର ବୃଶ ପାଖରେ ଘୂରି ବୁଲୁଥିଲା । ଟଙ୍ଗ ମୁହଁ ବୁଲାଇ ପଛକୁ ଚାହିଁଲା । ଦେଖିଲା, ତାର ଜେଜେମା ସେମିତି ଚୁପହୋଇ ପିଣ୍ଡାଉପରେ ବସିଛନ୍ତି ।

ଆତୁର ମନ ଦୁର୍ବଳ ହୋଇ ଆସୁଥିଲା ।

ନିଧି ବେହେରା ଗାଡ଼ି ପାଖରୁ କହିଲେ, କାଳିଆ ବଳିଆ କେତେବେଳରୁ ଯୋଗ୍ଯ ହେଲେଣି । ଯିବାକୁ ଉଛନ୍ନ । ଡେରି କରନା ମା ! ମୋ' ନିଶ୍ୱାସ ପବନ ଡାହାଣ ପୁଡାରେ ବହୁଛି । ଏଇ ଶୁଭ ବେଳ ।

ଟଙ୍ଗ ରଥିଆର କାନ୍ଧରେ ହାତ ଥାପିଲା । ଗେହ୍ଲେଇ କରି କହିଲା, ସୁନା-ଭାଇଟିରେ, ତୋ' ସେନେହ କ'ଣ ଭୁଲି ପାରିବ ? ଯାଉଛି ରେ, କିଛି ବିଘଟଣ ଘଟି ନାହିଁ । ସବୁକଥା କ'ଣ ତତେ ବୁଝାଇ କହିପାରିବ ? ଶୁଣୁନୁ, ଗାଡ଼ିଆଳ ଉଛନ୍ନ ହେଲେଣି ? ଜେଜେମା କହିବେ । ତାଙ୍କୁ ତୋ' ଜିମାରେ ଛାଡ଼ିଯାଉଛି ରେ ଭାଇ । ବୁଧେଇକୁ ଆଉ ତା ବାଛୁରୀକୁ ଭୁଲିବୁ ନାହିଁ ।

ରଥିଆକୁ କାକୁସ୍ଥ କରି ଟଙ୍ଗ ଆଖିରୁ ଲୁହ ପୋଛିଲା । ମନବଳ ଫେରାଇ ଆଣି ସେ ପୁଣି କହିଲା, ଏ ଗାଆଁକୁ ଫେରିଲେ ଫେରିବ ସିନା ରେ ଭାଇ, ମୋ ମଉସାଙ୍କୁ ଖାଲି ଏତିକି କହିବୁ, 'ମୋ' ଗାଆଁକୁ ମୁଁ କେବେ ଫେରିବ ନାହିଁ ?

—କାହିଁକି ଲୋ ଅପା ?

—ସେ ବୁଝିବେ ରେ ବାଇଆ ! ବୁଝିବେ ତ ମୋ' ମାଉସୀ ! ତାଙ୍କୁ କହିସିବାକୁ ମୋ'ର ବେଳ ନାହିଁ ରେ ! ମୋ ଜେଜେମା କହିବେ; ହଁ, ସେ କହିବେ । ଯାଉଛି ?

ଅରକ୍ଷିତ ପାଖରେ ଥିଲା । ପେଁକାଳି ଫୁଙ୍କୁଥିଲା । ଟଙ୍ଗ ତାକୁ ଦୁଇ ହାତରେ ଉଠାଇ ଛାତିରେ ଧରିଲା । ଗାଡ଼ିପାଖକୁ ଆଗେଇଗଲା······

ଗମ୍ଭୀର ବାଟ । ନିର୍ଜନ ରାତି । ଆଲୁଅ ଛାଇରେ ହଜିଗଲା ଥିବ । ଆଶା ଦୁରାଶାରେ ଦୋହଲି ଯାଉ । ବାଟୁଳା ଯାତ । କାଳିଆ ବଳିଆ ଭିଡ଼ି ନେଉଛନ୍ତି । ଥକିଲା ଗୋଡ଼ର ଧିମେଇଁ ଚାଲି । ତଥାପି ଚକ ଗଡ଼ୁଛି, ଗାଡ଼ି ଚାଲିଛି, କ୍ଷଣେ ହେଲେ ଅଟୁନାହିଁ ।

ନଥି ବେହେରା ଗାଡ଼ି ଚଳାଉଛନ୍ତି । ଘୁମେଇଲା ରାତିରେ ବଳିବଳେଇଲା ପରି ଲହରିଆ ସ୍ୱର ମେଲି ଦେଉଛନ୍ତି—'ସେ-ରାମ ଯେ ଲକ୍ଷ୍ମଣ ହୋ-ଗଲେ ଯେ ମୃଗୟା କରି-ଇ···, ହ,-ହଅରେ କାଳିଆ, ହାଉଲେ, ହାଉଲେରେ ବଳିଆ । ଦଣ୍ଡା ଆଣ୍ଠେ ଧରରେ ଭଅଁରା । ଆଗରେ ଗଡ଼ାଣି । କାଦୁଆ-ନାଳ । ସେଇଠୁ ବଙ୍କା-ଉଠାଣି । ହାଁ, ହାଁ-ଆଁ । ଡାଇଆଁ ମୋଡ଼, ଡାଇଆଁ— । ହାଉଲେ, ହାଉଲେରେ ବଳିଆ— । ଓହୋ, ବେଙ୍ଗ-ବାଇଦ ବଜାନାରେ ବାବୁ, ବଳଦ ହୁରୁଡ଼ୁଛନ୍ତି । ଯେଣେ ତେଣେ ଗାଡ଼ି ଘୋଷାଡ଼ି ନେବେ—

ଟେଣ୍ଡି ଅରକ୍ଷିତର ହାତ ଧରିଲା । କହିଲା, ଥାଉରେ ଧନ ! ତୋ' ଆଖିକି କ'ଣ ନିଦ ନାହିଁ ? ଆ' ମୋ କୋଳକୁ । ଦେଖିଲୁ, ଗାଡ଼ି କେମିତି ଦୋହଲୁଛି ?

ଟେଣ୍ଡି ଅରକ୍ଷିତକୁ କୋଳରେ ବସାଇଲା । ଗେଲ କରି ପୁଣି କହିଲା, ଆଖି ବୁଜି ଶୋଇପଡ଼ । ରାତି ପାହିବ, ସକାଳ ହେଲେ ତୋ' ନିଦ ଭାଙ୍ଗିବ । ଦେଖିବୁ ମଣିକୁଦ ଗାଁ !

—ଆମ ଗାଁ !

—ହଁ ରେ ହଁ । ତୁ ଆଖି ବୁଜିଲୁ—

—ସେଠି ମୋର ବାପା ଅଛନ୍ତି ?

—ହଁ, ଅଛନ୍ତି ।

—ତାଙ୍କ ନାଁ ମୁଁ ଜାଣିଛି, କହିବି ? ଶ୍ରୀ ଝରମଣି ଖୁଣ୍ଟିଆ । ମୋ ନାଁ କହିବ ?

—ତୁ ଶୋଇବୁ ନାହିଁ ? ତୋ ନାଁ ମୁଁ ଜାଣେ ।

—ମୋ ନାଁ ତ ଅରକ୍ଷିତ ଖୁଣ୍ଟିଆ । ଜେଜେମା କହୁଥିଲେ, ମୋ ନାଁଟା ସେ ଦେଇଛନ୍ତି । ତା'ଙ୍କ ସଙ୍ଗରେ ଆଣିଲୁ ନାହିଁ । ଆସିବାକୁ ସେ କାନ୍ଦୁଥିଲେ ।

ଟଙ୍କ ଦୀର୍ଘଶ୍ୱାସ ଛାଡ଼ିଲା । ସ୍ଲେଟ ନାଳର ପଙ୍କରେ ଗାଡ଼ିର ଚକ ଅଳପ ଗଳିଗଲା । ବଳଦ ହାଲିଆ ହୋଇ ଠିଆ ହୋଇଗଲେ । ଗାଡ଼ି ଅଟକିରହିଲା ।

ନିଧି ତଳକୁ ଓହ୍ଲାଇ ବ୍ୟସ୍ତ ହେବାକୁ ଲାଗିଲେ । କହିଲେ, ଆରେ ଭଉଁରି, ଦଣ୍ଡା ଆଣ୍ଟେ ଧରି ସମ୍ଭାଳି ପାରିଲୁ ନାହିଁ, ଗାଡ଼ି ଗୁଳା ଛାଡ଼ି ଅବାଟରେ ଗଡ଼ିଲା ।

—ଗଡ଼ାଣିଆଁ ବାଟରେ ଭଡ଼ି ନେଲେ ତ···

—ସେଇ ମଲୁଆ କାଳିଆଟାର ଢଙ୍ଗ ଦେଖିଲୁ ରେ ପୁଅ ! ବେଳକାଳ ଭଣ୍ଡି ସେ ସେମିତ ହରବର କରେ । ଦ' ପାହାର ଖାଇଲେ ଯାଇଁ ଚେତବ । ଆ ତା' କଡ଼କୁ···

ନିଧି କାଳିଆର ପିଠିରେ ସତକୁ ସତ ଦୁଇ ପାହାର ଦେଲେ । ଗାଳି ଉଚାରିଲେ, ଗୋସେଇଁଖିଆ ପେଖନା କାଢ଼ୁଛୁ । ସେଇଠୁ ନିଧିଙ୍କ ମୁହଁରୁ ଗୁଡ଼ାଏ ଅବୋଧ ଶବଦ ବାହାରିଲା । ପାଞ୍ଚଣି ପାହାରର ଶବଦ ଶଣି ହେଲା ନାହିଁ । ଗାଡ଼ି ଗୁଳା ଧରିଲା । ଧୀରେ ଧୀରେ ଉଠାଣି ବାଟରେ ଆଗେଇଲା ।

ନିଧି କହିଲେ, ଦେଖିଲୁ ଭଉଁରି, ମାଡ଼କୁ ଶଳା ମାହାଦେବ ଛାଡ଼ନ୍ତିଁ । ସେ' କାଳିଆ ବଳେଇବ ? ବାଟ ଅଧେରୁ ଅଧିକ ଟାଣି ଆଣିଲେଣି । ଏବେ ଧୀରେ ଘୁଞ୍ଚେ ଚାଲନ୍ତୁ । ସକାଳ ବେଳକୁ ଗାଁ ଧରିବା ।

ଟଙ୍କ କହିଲା ଅରକ୍ଷିତକୁ, ତୁ ଅମାନିଆଁ ହେଲୁଣି । ଆଖି ବୁଜିଲେ ନିଦ-ମାଉସୀ ତତେ ଶୁଆଇ ପକାଇବ ।

—ଶୋଇବି ଯେ ତୁ ଆଗ କହ, ମୋ' ବାପା କ'ଣ ଅଲେଖାର ବାପାଙ୍କ ପରିକା ?

—ବଳେ ଦେଖିବୁ ।

—ମତେ ସେ କ'ଣ ଦେବେ ?

—ଯାହା ମାଗିବୁ ସବୁ ଦେବେ । ଆଉ ଏଣୁ ତେଣୁ ପଚାର ନା । ମୋ' ସୁନା ପୁଅଟି, ଆଖିବୁଜ ଶୋଇପଡ଼ ।

ଟଙ୍କ ଅରକ୍ଷିତର ମୁଣ୍ଡଟିକୁ ଛାତିକି ଆଉଜାଇ ଧୀରେ ଧୀରେ ଥାପଡ଼ାଇବାକୁ ଲାଗିଲା । ଦୋହଲା-ଗାଡ଼ିରେ ଦୋଳି ଝୁଲିବାର ଆନନ୍ଦ ପାଇ ପିଲାଟି ତା' ମାଆର କୋଳରେ ଛୁଟ୍ କରି ଶୋଇପଡ଼ିଲା ।

ଶୋଇଲା ପିଲାକୁ ମନେ ମନେ ସେ କହିଲା, ମୁଇଁ ଚଣ୍ଡାଳୁଣୀ ଖାଲି ଗୋଟାଏ ଅନ୍ ପାଇଁ ତୋ' ହେଉଣା ବାପକୁ ଛାଡ଼ି ଚାଲି ଆସିଲିରେ ଧନ ! ମୁଁ

ଅପ୍ରାଧ କରିଛି । ତା' ପାଖେ ପାଖେ ରହି ଆସନ୍ତୁ, ଆଦ୍ରର ଅଧିକ ମହିଆସନ୍ତୁ । କେଜାଣି ହେଲେ ତା' ମନ ବଦଳି ଯାଆନ୍ତା ।

ଅବଶ ଆଖି ହଁଓଟିର ପତା ମୁଦିହୋଇ ପଡ଼ୁଥାଏ । ମନରେ ଭାବନା ପଶିପାରୁ ନ ଥାଏ । ଠାକୁରଙ୍କୁ ଖାଲି ସୁମରଣା କରି ଗୋଟିଏ ମାଗୁଣି ସେ କରୁଥାଏ, ଶୁକୁଟା ସେମେଟାକରି ଝିଅଆକୁ ବଞ୍ଚାଇ ରଖିବେ କାଳିଆ, ନୂଆ ସଂସାର ମୋ'ର ଲୋଡ଼ା ନାହିଁ । ଖାଲି ଏଇ ଦେହଟାର ସୁଖ ପାଇଁ ବାପ ପାଖରୁ ପୁଅକୁ ମୁଁ ଦୂରେଇ ରଖିବ ନାହିଁ । ଏଇ ମୋ'ର ଯଥାର୍ଥ ବଚନ ।

ସମସ୍ତେ ସେମାନେ କରୁଣ ଆଖିରେ ଚାହିଁ ରହିଛନ୍ତି । ବିଳାପ କରୁଛନ୍ତି ପରି ! ନୀରବ ଭାଷାରେ ଅଭିମାନ କରି କହୁଛନ୍ତି, ଦେଖ ଆମର ଅବସ୍ଥା । ପାଞ୍ଚ ବର୍ଷ ତଳେ ଛାଡ଼ି ଯାଇଥିଲୁ, ଘରର ଘରଣୀ, ଝୁଣ୍ଟିଆ-କୂଳର ଲକ୍ଷ୍ମୀ । ପଛ ଧାଉଡ଼ି ଘରର ଚାଳ ଲୋକେ ବୋହି ନେଇଛନ୍ତି । ଓଜ୍ର, ଶେଣୀ, ଭଙ୍ଗାକାନ୍ଥ ତଳେ ପୋତି ହୋଇଛି । ଠାଏ ଠାଏ ମାଟିକୁଦ । ଗ୍ରେଟ ଗ୍ରେଟ ହୁଙ୍କା । ଗୋଷଘରର କାନ୍ଥ ପଡ଼ିଛି । ବଡ଼ବଡ଼ୁଆ ଆସ୍ଥାନ ମାଟିରେ ମିଶିଲାଣି । ଚାଳ ମାଡ଼ି ବସିଛି । ଝାଟି-ମାଟିରେ ଆବୋର । ସେଇଠି ଘୋଡ଼େଇ । କିଏ ବା କରିବ ?

ତୁଳସୀ ଚଉରା ଠିଆ ହୋଇଛି । ଗଛ ନାହିଁ । ବାଉଁଟି ମେଲି । ଅରମା ବଢ଼ିଥିଲା, ଶୁଖି ଶୁଖି ଡ଼ାଙ୍ଗ ରହିଛି । କିଅଟି ଯେମିତି ଥିଲା ସେମିତି ଅଛି । ପାଖର ବଉଳଗଛ ଝଙ୍କାଳିଆ ହୋଇ ବଢ଼ି ଉଠିଛି । ସେଇଟି ଅକ୍ଷତ । ସେଇଟି ପ୍ରଫୁଲ୍ଲ ।

ସବୁ ଖାଁ-ଖାଁ ଲାଗୁଛି । ଉଦୁଉଦିଆ ଦି ପହର । ପବନ ବହୁଛି ତୁହାକୁ ତୁହା । ବିବିଧ ଡ଼େଙ୍ଗାଳିଆ ଗଛ ଓ ଝଙ୍କାଳିଆ ବଉଳଗଛର ପତ୍ର-ମର୍ମର ଟଗିର କାନରେ ବାଜୁଛି, ବିକଳ ବାହୁନା ପରି ।

ସମସ୍ତେ ସେମାନେ ଅଭିଯୋଗ କରୁଛନ୍ତି, ସହିଲୁ ନାହିଁ, ରହିଲୁ ନାହିଁ ? ନିଶାଖୋର, ଧରମଦ୍ର, ବିବେକହୀନ ଗେରସ୍ତକୁ ଛାଡ଼ି ଚାଲିଗଲୁ ? ଆମେ କେବଳ ତାର ନଥିଲୁ, ତୋ'ର ବି ଥିଲୁ । ଅଧାବାଇଆଟା, ନିଜ ଅବିବେକପଣ ପାଇଁ ବହୁ ଦୁଃଖ କଷ୍ଟ ସହୁଛି । ନିଗୁଟିଆ ଲକ୍ଷ୍ମୀଛଡ଼ା ଘରେ ମାହା-ସୋଦର ନ ଥାଇ ନିଜ ଘରେ ନିଜେ କଇଦ ହୋଇ ସେ ବେଳ କଟାଇଛି । ପାଞ୍ଚଟି ବରଷ ତଳେ ସେ ଝୁରିଛି, ଖାଲି ଝୁରିଛି, ଝୁରୁଛି……

ଟଗି ନିଜ ଭାବନାରେ ଚମକି ଉଠିଲା । ଝିଅଆର ନିଦ ଭାଙ୍ଗିଲା କି ? ଖୋଜୁଛି କି ଆଉ ?

ସେ ବାଉ ଧାଇଁକରି ଘରକୁ ନିକଟକୁ ଧାଇଁଗଲା । ଗୋଡ଼ ଟେକି ଘର ଭିତରକୁ ଗଲା । ପଲଙ୍କ ଉପରେ ଝିଅଟା ସେମିତି ଆଖି ବୁଜି ଚିତ୍ ହୋଇ ଶୋଇଛି । ଯେଉଁ ଦରସଫା ଗୁଦରିଟିକୁ ସେ ଯୋଡ଼ାଇ ଦେଇଥିଲା, ସେମିତି ସେ ଯୋଡ଼ା ହୋଇଛି । ହାଡ଼, ଚମ, ଶିରାଦନ୍ତର ଦେହଟି ବିଛଣାରେ ମିଶିଯାଇଛି । ଛାତି ଉପରର ଚଦର ଅଳ୍ପ ଉଠୁଛି ପଡୁଛି । ଦେହରେ ଜୀବନର ସୂଚନା । ତକିଆ ଉପରେ ହାଡୁଆ ମୁହଁ । କପାଳ ଉପର ଶିରା ବାଉ ଦେଉଛି । କୋରଡ଼ିଆ ଆଖି ମୁଦ ହୋଇଛି । ଆହା, ଠାକୁରେ ଜାଣନ୍ତି କବିରାଜଙ୍କର ଚିକିତ୍ସା ସୁଚିକିତ୍ସା ହେବ କି ନ ହେବ ।

ଖବର ପାଇ ବସିଲାଠାରୁ ସେ ଉଠି ଆସିଥିଲେ । ସାଠିଏ ବର୍ଷର ବୟସ୍କ ଲୋକ । ଗୌର ତନୁ । ମୋଟା ସୁନ୍ଦର ଦେହ । ଯେ ସୁଦର୍ଶନ ଆକୃତି । ଗମ୍ଭୀର ମୁହଁରେ ଉଜ୍ଜ୍ୱଳ ଆଖି । ସେହି ମୁହଁରେ ଟେଣ୍ଡ ନିର୍ଭୟର ପରିଚୟ ଅନୁଭବ କରିଥିଲା । ତଳେ ମୁଣ୍ଡ ଲଗାଇ ସଜଳ ଆଖିରେ ଓଳଗି ହୋଇଥିଲା । ତାଙ୍କ ସଙ୍ଗରେ ଖଞ୍ଜା ଭିତରକୁ ଆସିଥିଲେ ମନ୍ତ୍ରୀ ଚଉଧୁରୀ, ବନମାଳୀ ନନ୍ଦ ଓ ଅର୍ଜୁନ ଦାସ । ଟେଣ୍ଡ ସେମାନଙ୍କୁ ମଧ୍ୟ ପ୍ରଣାମ କଲା ।

ତା' ନିର୍ଦ୍ଦେଶରେ ଅରକ୍ଷିତ ବି ସେମାନଙ୍କୁ ଓଳଗି ହେଲା । ପିଲାକୁ ଦେଖି ସେମାନେ ଖୁସି ହୋଇ ହାତ ବଢ଼ାଇଲେ । ଲାଜୁଆ ପିଲାଟା ଟେଣ୍ଡର ପଛରେ ଲୁଚିଲା ।

ନନ୍ଦେ କହିଲେ, ଠାକୁରେ ତା'କୁ ଦୀର୍ଘାୟୁ କରନ୍ତୁ । ସୁନ୍ଦର ହୋଇଛି । ଚଉଧୁରୀ କହିଲେ, ଖୁଣ୍ଟିଆ ପୁଅ, ତା' ଆଖି କହୁଛି ସେ ବିଚକ୍ଷଣ ହେବ । ଦାସ କହିଲେ, ତା' କପାଳକୁ ଦେଖ । ତା'ରି ହାତରେ ଏ ଘର ପୁଣି ହସି ଉଠିବ । କିନ୍ତୁ ଆଶ୍ଚର୍ଯ୍ୟ, ଏମିତିଆ ମୁହଁ କେବେ କେଉଁଠି ଦେଖିଲା ପରି ମନେ ହେଉଛି ?

କବିରାଜ କହିଲେ, ସହସ୍ର ଥର ଦେଖିଛ ହେ ଦାସେ ! ଅବିକଳ ଶ୍ରେଷ୍ଠ ପଣ୍ଡା ଖୁଣ୍ଟିଆ । କେତେ ବର୍ଷ ତାକୁ ହେଲା ମା ?

ଟେଣ୍ଡ କହିଲା, ଶିବଚତୁର୍ଦ୍ଦଶୀଠାରୁ ତା'କୁ ପାଞ୍ଚ ବର୍ଷ ଗଲାଣି ।

—ଆଚ୍ଛା । ଶିବଙ୍କର ଦୟାରୁ ତା'ର ଜନମ । ଭାରି ଭାଗ୍ୟବାନ୍ । ନାଁ କ'ଣ ଦେଇଛୁ ?

—ମୁଁ ଦେଇ ନାହିଁ । ବାପଘରେ ଜନ୍ମ । ସେଠି ମୋ' ଜେଜେମା ତା'କୁ ସେ ଅରକ୍ଷିତଟା ବୋଲି ସେହି ନାମରେ ଡାକୁଥିଲେ । ତା'ର ନାଁ ଦିଆ ହୋଇ ନାହିଁ ।

—ଆଲୋ ବାଇଆଣୀ, ଖୁଣ୍ଟିଆଘର ପୁଅ କାହିଁକି ଅରକ୍ଷିତ ହେବ ? କର୍ପୂରର ଯାଇ କନା ପଡ଼ିଛି । କିନ୍ତୁ, ସେହି କନାର ମୂଲ୍ୟ ତ ଲକ୍ଷେ ଟଙ୍କା ! କ'ଣ କହୁଛ ହେ ନନ୍ଦେ ?

—ନା’ ନୁହେ କ’ଣ । ମୁଁ କହୁଛି, ଶିବଙ୍କର ପ୍ରସାଦରୁ ତା’ ଜନମ । ତା’ ନାଁ ଶିବପ୍ରସାଦ ଦେଲେ ଭଲ ।

ଦାଈ କହିଲେ, ଭଲ ନାଁଟିଏ ··

ଟଗି କହିଲା, ଆପଣମାନଙ୍କ କଥା କ’ଣ ଅନ୍ୟଥା ହେବ ? ତା’ ବାପାଙ୍କୁ ବଞ୍ଚାନ୍ତୁ କବିରାଜେ ! ଆପଣଙ୍କ ଯଶ ରହିବ । ଆଜି ସକାଳେ ମୋ ଆସିବା ଆଗରୁ କାଶି କାଶି ସେ କୁଆଡ଼େ ପୋଷେ ହେବ ଲହୁ ଉଗାଳି ଥିଲେ । ମୁଁ ଦେଖି ନାହିଁ । ମୁଁ ପହଞ୍ଚିଲା ବେଳକୁ ଭଉଣୀର ବଡ଼ପୁତୁରା ଗଞ୍ଜିଆ ସଖା ସହିତେ ତା’କୁ ବାରଆଡ଼ ଅରମା ଖାଟରେ ପକାଇ ଘର ପରିଷ୍କାର କରି ଦେଇଥିଲା ।

ଆତ୍ମୀୟେ କହିଲେ, ଗଞ୍ଜିଆ ମତେ ସେ ଖବର ଦେଇଛି । ଏ ରୋଗ ସେଇଆ । ତେବେ, ଡରିଲେ କି ଦୁଃଖ କଲେ ଲାଭ ନାହିଁ । ଜଣାପଡ଼ିଲା ଦିନରୁ ଝରିବାବୁଙ୍କୁ ବହୁତ ଆଗରୁ ବଡ଼ଡାକ୍ତରଖାନାକୁ ନେଇଯିବା ଉଚିତ ଥିଲା । ବଳେଇ ପଡ଼ିବାରୁ ମୁଁ ଜାଣିଲି । ଭଗବାନ ଭରସା । ହାଉଲେ ହାଉଲେ ଭଲ ହେବ । ଯେଉଁ ବଟିକା ପଠାଇଥିଲି, ସେଇଆକୁ ଖୁଆଅ । ପିଇବାକୁ କ୍ଷୀର ଦିଅ । ···

—ବଟିକା ଗିଳୁ ନାହାନ୍ତି କି କ୍ଷୀର ଢୋକୁ ନାହାନ୍ତି । ମୁଁ ଆସି ପହଞ୍ଚିଥିଲି ବେଳକୁ ଖଟ ପଡ଼ି କେତେ ଦିନ ହୋଇଥିଲା । ସେତିକିବେଳୁ ରହିରହିକା ସେ ଖାଲି କାନ୍ଦିଉଠୁଛନ୍ତି ।

—ହେଉ, ମୁଁ ଦେଖେ···

କଅଁଳଗାଧୁଆ ବେଳ । ସେଇ ଦାଣ୍ଡଘରେ ବିକଳ ନନ୍ଦେ କହିଲେ, ବୁଝିଲ ଚଉଧୁରୀଏ, ଯେ ଝରିବାବୁ ସେ ଟଗିପରିକା ସବସୁନ୍ଦରୀ ସତୀ ବୋହୂଟିକୁ ଯେଉଁ ବାରଯନ୍ତ୍ରଣା କରିଥିଲା, ଶେଷକୁ ଅସଜ ଝିଅଟାକୁ ମାଡ଼ ମାରି ଘରୁ ତଡ଼ି ଦେଲା, ଆମ ଘରଣୀଙ୍କଠଉଁ ଶୁଣିଛି···

—ହଁ ନନ୍ଦେ, ଗେରସ୍ତ ହୋଇ ଘରଣୀ ନାମରେ ଅପବାଦ ବି ଦେଲା ହୋ ! ଲାଜକା ନାଶ କ’ଣ କହିବେ, ଆମ ଘରଆଡ଼େ ଧୀରେ ବି କହୁଥିଲେ । ଜାଣିଲ ନା ଦଉ —

—କିଏ ନ ଜାଣେ ? ଛଇଲୀଠଉଁ ଶୁଣିଛି ! ଲେଉଟଗୁଡ଼ କନ୍ଦୁଣୀକୁ ବୋହିଲାବେଳେ ଚଣ୍ଡାଳ ଅନୁତାପ କରୁଛି ।

ସେମାନେ ଦାଣ୍ଡଘରେ ହିଁ ରହିଲେ । ଭଲମନ୍ଦ ଆଲୋଚନା କରୁଥିଲେ । ଟଗି କାନରେ ଯେତିକି ପଡ଼ିଲା ସେତିକି । କବିରାଜଙ୍କ ସଙ୍ଗେ ସେ ଝରିଆ ଥିବା କୋଠରୀରେ ପଶିଥିଲା । ଶିବପ୍ରସାଦ, ଜେଜେମାନେ ଯେଉଁ ନୂଆ ନାମ ଦେଇଛନ୍ତି, ତା’ର ଅଧିକାଂଶ ପିଲାଟି, ଟଗିର ସିନ୍ଥି ଧରିଥାଏ । ପଲଙ୍କର ପଛ

ବାଡ଼ାକୁ ଆସନ୍ତି, ପିଠି ତଳେ ତକିଆ ଭିଡ଼ି ଦେଇ, ଝଣଆର କଙ୍କାଳ ଆଖିବୁଜି ପଡ଼ିଥାଏ ।

କବିରାଜଙ୍କର ସ୍ୱର ଶୁଣି ସେ ଆଖି ଖୋଲିଥିଲା । ଧୀରେ ଧୀରେ ଥରଥର ହାତ ଯୋଡ଼ି ନମସ୍କାର କଲା ।

କବିରାଜ ହସ ହସ ହେଲେ । କହିଲେ, ଖୁବ୍ ଭଲ ଅଛ ଝଣବାବୁ !

ସେ ନାଡ଼ି ଦେଖିଲେ । ଆଖିପତା ଟେକି ଦେଖିଲେ । ପୁଣି କହିଲେ ବଡ଼ ପାଟିରେ, ଖୁବ୍ ଭଲ ଅଛ । ସେଇ ଦର୍ଶିକା ଦିନକୁ ତିନୋଟି କରି ଆଉ ଦିନ ଦିନ ଖାଇବାକୁ ପଡ଼ିବ । ତା' ପରେ ପରୀକ୍ଷା କରି ମୁଁ ଔଷଧ ବଦଳାଇବି ।

କବିରାଜେ ଆଶ୍ୱାସନା ଦେଇ ବିଦାୟ ନେବା ଆଗରୁ ଦାଣ୍ଡ ଦ୍ୱାର ପାଖରେ ଅଟକି ଗଲେ । ବକଳ ନନ୍ଦେ, ମଣି କାଉଁଧୁଣି ଓ ଅର୍ଜୁନ ଦାସ ଦାଣ୍ଡକୁ ଓହ୍ଲାଇ ଖଣ୍ଡେ ଦୂରରେ କ'ଣ ଆଲୋଚନା କରୁଥିଲେ ।

କବିରାଜ ଅଶ୍ରୁମୁଖୀ ଟେଭିକୁ କହିଲେ, ଅବସ୍ଥା ତୁ ନିଜେ ଦେଖୁଛୁ ମା ! ଚିକିତ୍ସା କରାହେଉଛି, ଯାହା ଠାକୁରଙ୍କର ଇଚ୍ଛା । ଆଇଷ ନ ଥିଲେ ହରବ୍ରହ୍ମା ରଖି ପାରିବେ ନାହିଁ । ଆଇଷ ଥିଲେ ସ୍ୱୟଂ ନାରାୟଣ ବି ନେଇପାରିବେ ନାହିଁ ।

—ମୁଁ କି ବୁଦ୍ଧି କରିବି କହ !

—ଆମେ ଆଶ୍ଚର୍ଯ୍ୟ ହେଉଛୁ, ପାଞ୍ଚବର୍ଷ କାଳ ତତେ ନ ଖୋଜି ନ-ପୁଛି ଏବେ ସେ ଡକାଇ ଆଣିଲା କାହିଁକି ? ତୁ ବି ଆସିଲୁ କାହିଁକି ? ଓଲଙ୍ଗ ଗାଆଁର ଲୋକଙ୍କ ତୁଣ୍ଡରୁ ଆମେ ଅନ୍ୟ ପ୍ରକାର ଶୁଣୁଥିଲୁ । ଖୁସି ହୋଇଥିଲୁ ମା !

ଟେଭିର ହୃତ୍କମ୍ପ ହେଲା । ସେ ପୁଣି ପଚାରିଲା, ମୁଁ ଏବେ କଅଣ କରିବି ?

—ସେବା । ରୋଗୀକୁ ଯଥାସମ୍ଭବ ଏକୁଟିଆ ବିଶ୍ରାମ ନେବାକୁ ଛାଡ଼ିଦେବୁ । ବେଶି ରଜପଷ ହୋଇ ରୋଗୀ ପାଖରେ ଘାଣ୍ଟି ହେବା ତୋ'ର ମୋଟେ ଉଚିତ ନୁହେଁ । ପିଲାଟିକୁ ସେ ଘରକୁ ଛାଡ଼ିବା କଦାପି ଠିକ୍ ହେବ ନାହିଁ । କ'ଣ ତା' ନା—?

—ଆପଣମାନେ ତ ଆଜ୍ଞା ଦେଲେ···

—ହିଁ, ଶିବପ୍ରସାଦ । ଖୁଣ୍ଟିଆ ବଂଶର କୁଳପ୍ରଦୀପ । ତା'କୁ ଟିକିଏ ଦୂରେଇ ରଖିବୁ ।

ବାରଆଡ଼େ ବଉଳଗଛର ତଳେ ବସି ଟେଭି ଘଟଣାକୁ ମନେ ପକାଉ-ଥିଲା । ତା'ର ଭିତରୁ, ଦୋ'-ଦୋ' ପାଣିଆ ମନ, କବିରାଜଙ୍କର ଆତଙ୍କ ବୋଳା ଉପଦେଶ, ଆଉ ଏହି ଲକ୍ଷ୍ମୀଛଡ଼ା ଘରର ପରିବେଶ ସମସ୍ତେ ଯେପରି ତା'କୁ ଡ଼ରାଇ-ଥରାଇ କହୁଥିଲେ, ଆଲୋ ସାହାସିନୀ, ବାଇଆ ବାତୁଳ ଘର ତ ପଳାଇ ଆସିଲୁ, ନିଜକୁ ନିଜେ ଅଠାକାଣ୍ଡିଆରେ ପକାଇ ଛଟପଟ ହେଲୁ, ନିଜକୁ ଓ ପିଲାଟିକୁ ମହା-ବିପଦର ଆଁ-ଭିତରୁ ଏବେ ବଞ୍ଚାଇବୁ କିପରି ?

ପଳା, ପଳା, ପଳା,···
କୁଆଡ଼େ ? କୁଆଡ଼େ ?···

ସବୁ ବାଟ ସେ ରୁନ୍ଧ ଆସିଛୁ । ଅଲକ୍ଷଣା ଝିଅ ତା' ଉପରେ ଶେଷ ଆକ୍ରୋଶ ସାଧିବାକୁ ହକାର ଆଣିଛୁ । ବୃଦ୍ଧପଣା ବାଉସାଟୋକାଟା ଗଅଁସ ଗୋଟାସ୍ତ୍ରାଏଁ ଆପଣାର ହୋଇ ତା'କୁ ଭୁଲାଇ ଆଣିଛୁ । ଗଲା କୁଆଡ଼େ ? ତା'ର ଦେଖା ଦର୍ଶନ ନାହିଁ ।

ଭଅଁ ସର ସାନ ପୁରୁଷ, ଏଗାର ବାର ବର୍ଷର ପିଲା ସନ୍ଧ୍ୟାର ପାଖରେ ଦାଣ୍ଡ ଘରେ ଟଙ୍କା ତାର ପୁଅକୁ ଗ୍ରାନ୍ତ ଆସିଥିଲା । କସ୍ମେଟିଗୁଡ଼ିକ ଧରି ସେ ଖେଳୁଥିଲା । ସେ ତା'ର ପେ-କାଳି ଫୁଙ୍କିବାକୁ, ବେଙ୍ଗବାଜା ବଜାଇବାକୁ ଉଚ୍ଛନ୍ନ ହେଉଥିଲା ।

ଟଙ୍କାର କାନରେ ପେଁକାଳିର ଶବଦ ବାଜିଲା । ସେ ଲଣ୍ଡଭଣ୍ଡ ହୋଇ ବାଗ୍ଆଡ଼ୁ ଧାଇଁଆସିଲା । ତା'କୁ ସେ ବାରଣ କରିବ । ଶବଦରେ ରୋଗୀର ନିଦ ଭାଙ୍ଗିବ ।

ରୋଗୀଥିବା କୋଠରୀର କବାଟକୁ ଧୀରେ ଧୀରେ ଠେଲି ଭିତରକୁ ପ୍ରବେଶିଲା । ସତେ, ଝିଅ ହଲଚଲ ହେଉଛି । ଆଖି ଖୋଲିଛି । ହାତ ଭରା ଦେଇ ଉଠିବାକୁ ଚେଷ୍ଟା କରୁଛି । ଟଙ୍କା ପାଖକୁ ଯାଇ ତାକୁ ଉଠାଇ ବସାଇଲା । ତା' ଦେହର ତାତ ଅନୁଭବ କଲା । ମନକୁ ମନ କହିହେଲା, ଜର !

ଝିଅ ମୁଣ୍ଡ ହଲାଇ ନାହିଁ କଲା । ମୁହଁ ଖୋଲି କହିଲା, ତାତ ବରାବର ରହିଛି । ଏ ରୋଗର କୁଆଡ଼େ ଏଇଆ ଲକ୍ଷଣ । ପେଁକାଳି କିଏ ବଜାଉଛି ?

—ଚଗଲାଟା, ତମର ପୁଅ । ମନା କରିବାକୁ ଯାଉଥିଲି ।···

—ନା, ମନା କର ନା । ମନ ଖୁସିରେ ବଜାଉ । ମୁଁ ତା'ର କିଛି କରି ନାହିଁ । ଅଳିଅର୍ଦ୍ଦୋଳି ସହି ନାହିଁ । ସ୍ତ୍ରେହଟି ବର୍ଷ ମୁଁ ତା'କୁ ଝୁରିଛି । ଜାଗି ଜାଗି ସପନ ଦେଖିଛି ଟଙ୍କା । ସେହି ସପନରେ ତାକୁ କୋଳରେ ଧରିଛି । ତା' ମୁହଁରେ ଚୋକ ଦେଇଛି ।

ଟଙ୍କା ପଲଙ୍କ ଉପରେ ବସି ତଳକୁ ଗୋଡ଼ ଲମ୍ବାଇଲା । ଝିଅର ଗୋଡ଼ ଆଉଁସି ପଚାରିଲା, କ୍ଷୀର ଦି' ଢୋକ ପିଇବ ନାହିଁ ? ଔଷଧ ଯାଇଁ ସଙ୍ଗରେ ପିନା ଖାଇବ ।

ବେଙ୍ଗବାଜାର ବାଜି ଉଠିଲା । କାନ ଅଡ଼ା ପକାଇଲା । ଝିଅ କାନେଇଲା, ପଚାରିଲା, କିଏ ସେ ?

—ସେଇ ତମର ପୁଅ । ଚଗଲା ହୋଇଛି । ମୋ' ଜେଜେମା'ଙ୍କର ମୁହଁବଢ଼ା । ତାଙ୍କର ଡ଼ରରେ ତା'କୁ ଆକଟ କରିପାରେ ନାହିଁ । ବାପ ଓ ଜେଜେଙ୍କ ନାମ ସିନା ଜାଣେ, ଦେଖିବାକୁ ସେ ଅଜଟ ଲଗାଏ । ଦେଖି ନାହିଁ ତ, ବାପର ସ୍ନେହ ଓ ଶାସନ ଜାଣେ ନାହିଁ । ତାକୁ ମନା କରି ଦିଏଁ ।···

— ଆଉ ଟେଣ୍ଟ ! ସେ ମନ ଖୁସିରେ ଖେଳୁ । ତା' ଖେଳ ମୁଁ ଦେଖି ନାହିଁ, ଆଉ ତ ଦେଖିବ ନାହିଁ, ମୁଁ ଜାଣି ପାରଲିଣି—

—ଛି, ସେମିତି କହନା । କବିରାଜ କହିଗଲେ, ତମେ ଭଲ ହୋଇଯିବ, ପୁଣି ତମର ଆଗଦେହ ଫେରପାଇବ ।

ଝରଆର ହାଡ଼ୁଆ ମୁହଁରେ ଖେଳିଗଲା ହସ । କହିଲା, ଗୁରବର୍ଷ ହେଲା ତାଙ୍କର ସେଇ ଏକା କଥା । ଭଲ ହେବାକୁ ମୁଁ ଅପେକ୍ଷା କରିଥିଲି । ତୋ' କଥା ମାନି ମୁଁ ରହିଥିଲି । ତତେ ଆଣିବାକୁ ନିଜେ ଯାଇଥାନ୍ତି, ନେଇ ଆସିଥାନ୍ତି । ବଞ୍ଚିବାର ଆଶା ମୋର ତୁଟିଲା । ତେଣୁ ଗାଡ଼ି ପଠାଇଲି··· ।

—ମୁଁ ଚଣ୍ଡାଳୁଣୀ ନିଜେ ନ ଆସିଲି ଯାହା ।

—ଆସିଲୁ ତ, ମୋ' ମନକାମନା ପୂର୍ଣ୍ଣହେଲା । ପୁଅଟିର ମୁହଁ ମୁଁ ସପନଆ ଅନୁମାନରେ ଦେଖୁଥିଲି । ଅବିକଳ ତୋ'ର ମୁହଁ । କିନ୍ତୁ, ସେ ଆହୁରି ସୁନ୍ଦର । ତା'ର ପାଇଁ ବଞ୍ଚିବାକୁ ମୋ'ର ମନ ହେଉଛି ଟେଣ୍ଟ !

—ବଡ଼ ଠାକୁରେ ମୋ' ଗୁହାରି ଶୁଣିବେ । ତମେ ଝାଡ଼ିଝୁଣ୍ଡି ହୋଇ ଉଠିବ । ଏହା ନିଶ୍ଚୟ ହେବ ।

—ସତେ ଲୋ ଟେଣ୍ଟ, ନୂଆକରି ଆଜ ଦେଖିଲାପରି ମୁଁ ମଣୁଛି । ନୂଆ କରି ଜୀବନ ଆରମ୍ଭ କରିବାକୁ ମୋର ଆଗ୍ରହ ହେଉଛି···

—ସେଇଆ ହେବ ।

—ନାଇଁ, ନାଇଁ ଲୋ ଟେଣ୍ଟ, ମୋ' ବୋଉ ମତେ ଛାଡ଼ିଯିବ ନାହିଁ । ମୋ' ଦୁଃଖ ସେ ସହିପାରୁନାହିଁ । ସେଦିନରୁ ନିତି ମୋ' ପାଖକୁ ସେ ଗୁଲିଆସୁଛି । ମତେ ସେ ଡ଼ାକୁଛି, ମତେ ଆଉଁସି ଦେଉଛି । ତୁ କହିବୁ ସପନ, ମୁଁ କହିବି ସତ୍ୟ···

—ମଣିଷ ରୋଗରେ ପଡ଼ିଲେ ସେମିତିକା କେତେ କେତେ ସପନ ଦେଖେ । ମିଛିମିଛିକା ରୂପ । ମନର ଧାରଣା । ତମେ ଆଉ ଗପ ନା' । କ୍ଷୀର ଦି' ଢୋକ ପିଇବ ନାହିଁ ?···

—ଆଣ ।····

ଟେଣ୍ଟ ମନ ଖୁସିରେ ଉଠି ଆସିଲା । ତରତର ହୋଇ ଭଙ୍ଗା ରୋଷଘରର କବାଟ ଖୋଲିଲା । ଚୁଲି ଉପରେ କ୍ଷୀର ହାଣ୍ଡି ଘୋଡାହୋଇ ରଖା ହୋଇଥିଲା । ପଶି ଯାଉଣୁ ସେ ଚମକି ଉଠି ଦି' ପାଦ ଘୁଞ୍ଚେଇ ଆସିଲା । ଚୁଲି ପାଖରୁ ଦି' ତିନି ହାତ ଅନ୍ତରରେ ମାଟିଆ ରଙ୍ଗର ବୁଢ଼ା ଗୋଖର ସାପ ମୁଠୁଣିଏଁ ଉଞ୍ଚରେ ଫଣା ଟେକିଛି, ଜିଭ ଲହଲହ ।

ସେ ପାଟି ଖୋଲିଲା ନାହିଁ । ଗୋଡ଼ରୁ ମୁଣ୍ଡଯାଏ ତା'ର ଦେହ ଥରି ଉଠିଲା । ପାଟି ଅଠାଅଠା । ଭାବିଲା, ସ୍ଥାନଟା କେଡ଼େ ଭୟଙ୍କର ବିପଦଆ ହୋଇଛି । କେଉଁ ବାଟରେ ସେ ପଶିଲା ? ଏ ପ୍ରଶ୍ନର ଉତ୍ତର ସେହି ମରଣର ଦୂତ ନାଗ ହିଁ ଦେଲା ।

ସେ ଫଣା ନୁଆଇଁ ବାଉକଣ୍ଡର ଝାଟିମାଟି-କାନ୍ଥ ତଳର ଫାଙ୍କବାଟେ ଗଲା ଧୀରେ-ଧୀରେ ପଦାକୁ ଚାଲିଗଲା ।

ଟଗ୍ରି ଭାବିଲା, ଶ୍ରେଷ୍ଟ ପିଲାଟିକୁ ଧରି କିପରି ସେ ଏହି ଅରମା ଭୁଇଁରେ ଚଳିବ ?

ଟଗ୍ରିର ମନ ଖୁସି ଯେ ସେ ଝିଅଆକୁ ଅଧବେଲାଏ ଷୀର ଢୋକାଇ ପାରିଛି । ସେ ତା'ର ମୁହଁ ପୋଛି ଦେଲା । ଲମ୍ବାଳିଆ ଅଠା ଅଠା ଅଢ଼ୁଆ କେଶକୁ ପାନିଆଁରେ ଧୀରେ ଧୀରେ ସଜାଡ଼ି, ପଛ ପାଖକୁ ଓଲଟାଇ କୁଣ୍ଡାଇ ଦେଲା । କାନ ଡେରିଥାଏ ଶିବପ୍ରସାଦର ପାଟିତୁଣ୍ଡ ଓ ବେଲେ ବେଲେ ପେଁକାଳି, ଆଉ ବେଙ୍ଗ-ବାଇଦ ଉପରେ । ଗୁଡ଼ ଦକ ଧକ । ଚଞ୍ଚଳ ପିଲାଟା । ଦାଣ୍ଡରୁ ଧାଇଁ ଆସି ବାଉପଟକୁ ଚାଲି ଯିବ ନାହିଁ ତ ?

ଯତକୁ ଯତ ସେ ଧାଇଁ ଆସିଲା । ଟଗ୍ରି ଅସ୍ତବ୍ୟସ୍ତ ହୋଇ ଝିଅଆପାଖରୁ ଆସି କୋଠରି ବାହାରେ ତା'ର ହାତ ଧରି ଅଟକାଇଲା । କହିଲା, ତେଣିକି ଯାଆନା । ବାଉଆଡ଼କୁ ଯିବୁ ନାହିଁ ରେ, ସେଠି ଗୋଟାଏ ବୁଢ଼ା ନାଗସାପ ଦେଖିଲି । ବହୁତ ବଡ଼ ।

ଅରକ୍ଷିତ କହିଲା, ତତେ କିଏ ଖୋଜୁଛି । ଗ୍ରାକଆ ତା'କୁ ମନା କରି-ଦେଲା ।

—ଖୋଜିଲେ ଖୋଜୁ, ମୁଁ ଯାଇ ପାରିବି ନାହିଁ । ତୋ' ବାପାଙ୍କ ପାଖରେ ମୁଁ ଅଛି । ଆ, ଭିତରକୁ—

ଟଗ୍ରି ତା'ର ହାତ ଧରି ଘରଭିତରକୁ ନେଲା । ପଲଙ୍କ ପାଖରେ ଠିଆ କରାଇଲା । ପିଲାଟି ଏଥର ତା'ର ବୋଉର ପଛରେ ଲୁଚିଲା ନାହିଁ । ରୋଗଣା ବାପାର ହାଡ଼ୁଆ ମୁହଁକୁ ବଲବଲ କରି ଚାହିଁ ରହିଲା । ସେ ହତାଶ ହୋଇଥିଲା । ସେ ବାପା ତା'କୁ କାଖ କରି ପାରିବ ନାହିଁ । ଖେଳାଇ ନଚାଇ ପାରିବ ନାହିଁ । ଖେଳଣା କି ଆମ୍ବ କିଛି କିଣି ଦେବନାହିଁ । ସେ'ର ଭଙ୍ଗା ଘର, ଅରମା ଡ଼ିହ । ସେଥିରେ ନାଗସାପ ଅଛି । ତା' ବାପା ଅଲେଖର ବାପାଙ୍କ ପରି ନୁହେଁ ।

ଟଗ୍ରି କହିଲା, ତୋ' ବାପାଙ୍କ ଦେହ ଭଲ ନାହିଁ ରେ ଧନ ! ସେ ଭଲ ହୋଇ ଯିବେ । ତେବେ କାଖ କରିବେ । ବୁଲାଇ ନେବେ । ତୁ ଯାହା ମାଗିବୁ ସବୁ ଦେବେ । ସେ ତୋ'ର ସୁନାବାପ । ତୁ ତାଙ୍କର ସୁନାପୁଅ । ନୁହେଁ କି ଧନ ?

ଅରକ୍ଷିତ ଉତ୍ତର ଦେଲା ନାହିଁ । ଟଗ୍ରା ତାର ଚଗୁଳ ଧରି ମୁଣ୍ଡଟିକୁ ସାମାନ୍ୟ ଟେକିଦେଲା । କହିଲା, ଧନ ରେ, ତୁ ଆଉ ସେ ପେଁକାଳି ଫୁଙ୍କିବୁ ନାହିଁ । ସେ ବାଜା ଶୁଣିଲେ ବୁଢା ନାଗଟି ପୁଣି ଆସିବ ।

ଝିଅ ନିଜଭଳି ଆଖିରେ ଅରକ୍ଷିତକୁ ଗୁହିଁ ରହିଥିଲା । କଙ୍କାଳର ମୁହଁରେ ହସିଲା ଭଳି ଫିକା-ପାଣିଚିଆ ରଙ୍ଗ ବୋଲି ହୋଇଥିଲା । ସେ ରଙ୍ଗ ହଜିଗଲା ।

ସେ କହିଲା, ଗୋଟାଏ ନୁହେଁ, ଆଉ କେତେ ସାପ, କ'କ' ଜାତିର, ଭଙ୍ଗା ଜହ୍ନରେ ଅଛନ୍ତି । କେତେ ଥର ଦେଖିଛି । ପିଲାକୁ ଧରି ତୁ କୋଉଠି ରହିଛୁ ? ସାମନାର ଦ'ବଖରାରେ ଆଳୁଚମାଳୁତ କେତେ କ'ଣ ଏଣୁତେଣୁ ଭରତି । ଗୁହାଏ ମୁମ, ଧାନ, ମୁଗ, ବିରି ଓଳିଆ । ମୂଷା ଗାତ ପଣ ପଣ । ଅସଂଖ୍ୟ ମୂଷା । ତାଙ୍କୁ ଖାଇବାକୁ ସାପଗୁଡ଼ା ଆସୁଛନ୍ତି । ସଫା କରିବାକୁ ମୋ'ର ଶକତ ନାହିଁ । ଭଉଁରୀକୁ ବେଳ ମିଳୁ ନାହିଁ—

ଟଗ୍ରା କହିଲା, ଆଜି ଚତୁର୍ଦ୍ଦଶୀ, କାଲି ଦୋଳପୂନେଇଁ, ସେଇଠୁ ହୋଇ ଯେ···

ତା' କଣ୍ଠରେ କଥା ଅଟକିଲା । ମନ କ୍ଷଣକରେ ଛୁଟିଗଲା ରତନପୁରକୁ । ସନ୍ତପୁଜା ଚଇତନଭାଇ ଫେରି ଆସିବେ । ଆଗରୁ ଅଚ୍ୟୁତ ମହନ୍ତି ସବୁ ଶୁଣିଥିବେ, ସବୁ ଜାଣିଥିବେ । କେଜେମା ଗହଣାର ପୁଡ଼ା ତାଙ୍କୁ ଫେରାଇ ଦେବେ । କିଏ କାହାକୁ କ'ଣ ପଗ୍ଗରିବେ ? ନିଜର ମୁଣ୍ଡ ଥିର ନ ଥିବାରୁ କାହାକୁ ସେ କ'ଣ କହି ଆସିଛି । ତା'ର ମନେ ନାହିଁ । କି ବିଗ୍ଗର ସେମାନେ କରିବେ ? ଉଚ୍ଛନ୍ନ ହୋଇ ଚଇତନ ପାଣେ ନିଜ ଗାଡ଼ିରେ ତା'କୁ ନେବାକୁ ଆସିବେ କି ? ସଙ୍ଗରେ ଥିବେ ମହନ୍ତି !

କି ବୁଦ୍ଧି କରିବ ? ରୋଗୀ ସ୍ୱାମୀକୁ ସାପସଣିଭଣ ଜଗୁଟିଆ ଥାନରେ ଫୋପାଡ଼ି ସେ ଗ୍ଗଲଯାଇ ପାରିବ ? ହିପୁରରେ ତା'କୁ କିଏ ଠାବ ଦେବ ? ଦୁନିଆଁର ଲୋକେ, ପିଲାରୁ ବୁଢ଼ାଯାଏ, ତା' ଆଡ଼କୁ ଆଙ୍ଗୁଠି ଦେଖାଇ କ'ଣ କହୁଥିବେ ?

—କ'ଣ କହୁଥାଲୁ ଟଗ୍ରା, ତୁନି ରହିଲୁ ଯେ !

ଟଗ୍ରା ଚହିଙ୍କି ଗୁହିଁଲା । କହିଲା, ହୋଲି ସରିଲେ ଯାଇଁ ମୂଲିଆ ମିଳିବେ । ଘରଦ୍ୱାର ସଫା କରାଇବି । ନଇଁଲା ଗ୍ଗଳକୁ ଉଠାଇବି । ବାଡ଼ିପାଖ ପରିଷ୍କାର କରାଇବି । ଏ ଘର ପୁଣି ହସି ଉଠିବ । ବିପଦ ଭୟ କଟିଯିବ ।—

—ଠିକ ଧନ ! ଠିକ ଗ୍ଗଠ !

—କ'ଣ ହେଲା ? ଦାଣ୍ଡ ଘରେ ପିଲାକୁ କୋଡ଼ରେ ପୁରାଇ ମୁଁ ଆଡୋରି ଶୋଇବି । ତମେ ଚିନ୍ତା କର ନାହିଁ । ତମ ପୁଅକୁ ନୋହିଲେ ମୁଁ ଜଗି ବସିଥିବି । ମୋଟେ ତିନୋଟି ରାତି ମ, ଆଖିର ପଲକ ପଡ଼ିଲା ପରି କଟିଯିବ ।

ଝିଅା ଭୂମି ରହିଲା । କ'ଣ ଚିନ୍ତା କରୁଥିଲା । କାଶିବାକୁ ଲାଗିଲା । ସୁତରେ ଦଉଡ଼ି ଦୁର୍ବଳ ହାତ ଗୁଡ଼ି ମୁହଁ ବିକୃତ କଲା । ଟେଙ୍କା ଅରକ୍ଷିତକୁ ସୁତ ପଲଙ୍କ ଉପରକୁ ଉଠିଲା । ଝିଅାର ପିଠି ଆଉଁସି ଦେଲା । ଅତି କଷ୍ଟରେ ଝିଅା ତା'ର କାଶର ତୋଡ଼ ଅଟକାଇ ଧଇଁସଇଁ ହୋଇ ସଳଖି ବସିଲା । କିଛି ସମୟ ପରେ ଟିକିଏ ସୁସ୍ଥ ଅନୁଭବ କଲା । କାରୁଣ୍ୟ ପିଲାଟିଆଡ଼କୁ ଝକଝକିଆ ଆଖିରେ ଚାହିଁଲା । କହିଲା, ମୋ' ବାପାରେ, ତୁ ଯା' । ସଦାରେ ସେଇ ରଜିଆ ପାଖରେ ଖେଳୁଥା ।

ଟେଙ୍କା କହିଲା, ଯା' ଧନ ! ବାର ଆଡ଼କୁ ଯିବୁ ନାହିଁ । ମୁଁ ଜାଣେ ତତେ ଭୋକ କଲାଣି । ଏଠୁ ଗଲେ ତତେ ଚୂଡ଼ା କଦଳୀ ଖୁଆଇ ଦେବ ।

ଅରକ୍ଷିତ ଘରୁ ବାହାର ଦାଣ୍ଡକୁ ଛୁଟି ପଳାଇଲା ।

ଝିଅା କହିଲା, ରାନ୍ଧିବାକୁ ବେଳ ପାଇଲୁ ନାହିଁ । ସୁବିଧା ନାହିଁ । ପିଲାଟିକୁ ଉପାସ ରଖିଲୁ । ନିଜେ ଉପାସ ରହିଲୁ ?

—ତମେ ଚିନ୍ତା କର ନାହିଁ । ରାତିକ ମୁଁ ବଳେ ରାନ୍ଧିବ । ପିଲାକୁ ଯାହା ହେଲେ ଖୋଇଛି ।

—ଧନ ଧନ ! ମୋ' ପାଇଁ ଧନ ଧନର ଯନ୍ତ୍ରଣା ! ସହି ପାରିବ ? ରହି ପାରିବ ? ଟେଙ୍କା, ତୁ ଆସିବୁ ବୋଲି ମୋ'ର ବିଶ୍ୱାସ ନ ଥିଲା । ତତେ ସୁତପଣ ଦେଲି ବୋଲି ନ କହି ତା' ଠାରୁ ଆହୁରି ନିଷ୍ଠୁର କାମ କରିଥିଲି । ତୁ ଅନ୍ୟ ସଂସାର ନ କରି ମତେ ଚାହିଁ ବସିଛୁ ? ଆସିଛୁ, ସେତିକି ମତେ ମୋ' ରୋଗ-ଯନ୍ତ୍ରଣାରୁ ବଳି ଅଧିକ କଷ୍ଟ ଦେଉଛି ।—

ଟେଙ୍କା ତା'ର ପାଦରେ ମୁଣ୍ଡ ଥୋଇ ଅଶ୍ରୁ ଢାଳିଲା । ମୁଣ୍ଡ ଉଠାଇ ଅଶ୍ରୁଭରା ଆଖିରେ ତା' ମୁହଁକୁ ଚାହିଁ କହିଲା, ସେପରି କହନା । ତମ ପାଖରୁ ଦିନଟିଏ ମୁଁ ଅଲଗା ରହି ନାହିଁ ମ ! ତମର ପୁଅ ଏଇ ଯୌବ-ପ୍ରମାଦ ଅରକ୍ଷିତ ଭିତରେ ମୁଁ ତମକୁ ଦେଖୁଥିଲି । ତମେ ବହୁତ ଗପିଲଣି । ଆଉ ଗପନା । ସୁନା ପିଲାପରି ଶୋଇ ପଡ଼ିଲ ଟିକିଏ ?

—ଶୋଇବି । କେତେ ତ ଶୋଇବି, କିଏ ମୋ'ର ନିଦ ଭାଙ୍ଗି ପାରିବ ? ଗପିବାକୁ ମୋ'ର ବେଳ କାହିଁ ?

ଝିଅା ହାତ ଅଣ୍ଡାଳି ତକିଆ ତଳୁ ଚାବି ମୁଠିକ ଆଣିଲା । ଟେଙ୍କାର ହାତରେ ଥୋଇଲା । କହିଲା, ନେ ରଖ । ଖାଲିପଡ଼ିଥିବା ସିନ୍ଦୁକ ଓ ସେଇ ଆବର୍ଜନାଭରା ଘର ଦି' ବଖରାର ଚାବି । ସେଇ ବଡ଼ ଚାବିଟି, ଯହିଁରେ ସୂତା ବନ୍ଧା ହୋଇଛି, ସେଇଟା ସେ ହଳଦିଆ ଟିଣ-ବାକ୍ସର । ସେଇଥିରେ ପୂର୍ବ-ପୁରୁଷଙ୍କ ସମ୍ପତ୍ତିରୁ ଯେତିକି ବାକି ଅଛି ତା'ର ପଟ୍ଟା, ପାଉତି ଅଛି । ବିକଲା ଭୂଇଁର କିଛି ଟଙ୍କା ବି ଅଛି ।

—ମତେ କାହିଁକି ଦେଉଛ ?

—ଆମର ପୁଅ ଶିବପ୍ରସାଦର ସେତକ ସମ୍ବଳ । ଯାହା ଅଛ ସେତକରେ ସେ ସୁଖରେ ଚଳବ ଟଗ ! ଏଗାରମାଣିଆଁ ସୁନାଥାଳ ହେବାକୁ ଯାଉଛ । ମଣି ଚଉଧୁରୀ, ବକଲ ନନ୍ଦ, ଅର୍ଜୁନ ଦାସ, କବିରାଜ, ଆଉ ଅନ୍ୟମାନେ ସମସ୍ତଙ୍କର ତା' ଉପରେ ଆଖି । କାହାର କଥାଁ ଲ କୁହା ଶୁଣିବୁ ନାହିଁ ଲୋ, ମୋ' ପର ସମସ୍ତଙ୍କୁ ବିଶ୍ୱାସ କରିବୁ ନାହିଁ । କେଉଁ କାଗଜରେ ଟିପଚହ୍ନ ଦବୁ ନାହିଁ କି ଦସ୍ତଖତ କରିବୁ ନାହିଁ । ସେତକ କଲେ ପିଲାଟି କେବଳରେ ଜାଣି ରୁ ଛୁରୀ ଚଲାଇବୁ ।...

ଏଇଥିପାଇଁ ତତେ ମୁଁ ଡ଼କାଇଥିଲ । ତୁ ଏଥର ଯା' ଟଗ, ପିଲାର ଯତ୍ନ ନେ । ମୁଁ ଯାହା କହିବାର କହି ସାରିଛ । ଏଣିକ ଶୋଇବ । ନିଶ୍ଚିନ୍ତରେ ଶୋଇ ପାରିବ ।...

ଝିଅ ଧୀରେ ଧୀରେ ଗୋଡ଼ ଲମ୍ବାଇଲା । ଟଗ ତା'କୁ କଣେଇଁ ଶୁଆଇଲା । ପଦାକୁ ଆସି କବାଟ ଆଉଜାଇଲା । ଆଖିରୁ ଲୁହ ପୋଛୁଁ କବିରାଜଙ୍କର ଆଶ୍ୱାସନା ତା'ର ମନେ ପଡ଼ିଲା—ଝିଅ ଖୁବ୍ ଭଲ ଅଛ । ଧୀରେ ଧୀରେ ସେ ଆରୋଗ୍ୟ ହେବ । ଆଗର ଦେହ, ଆଗର ସ୍ୱାସ୍ଥ୍ୟ ଫେରିପାଇବ ।

—୧୯—

ଦାଣ୍ଡପିଣ୍ଡାରେ ସୁନା ବଢ଼ଉଣୀ ଅପେକ୍ଷା କରିଥିଲା । ତା' ସଙ୍ଗରେ ଆସିଥିଲେ ତା'ର ଦୁଇ ପୁଅ । ବଡଟିର ନାମ ଶିବଚରଣ । ସାନଟିର ନାମ ଟଗକୁ ଜଣା ନାହିଁ । ବଡ଼କୁ ଆଠ ବର୍ଷ ହେବ । ସାନଟିକୁ ପାଞ୍ଚ । ପିଣ୍ଡା ଉପରେ ସେମାନେ ଅରକ୍ଷିତ ସଙ୍ଗେ କଣ୍ଢେଇ ଖେଳୁଥିଲେ । ପାଖରେ ଗଙ୍ଗିଆ ଠିଆ ହୋଇଥିଲା । ସୁନା ଟିକିଏ ଦୂରରେ ବସି ଗୁହିଁ ରହିଥିଲା ।

ଟଗକୁ ଦେଖି ସେ ଉଠିଲା । ପାଖକୁ ଆସିଲା । ତଳେ ମୁଣ୍ଡ ଲଗାଇ ଓଳଗି ହେଲା ।

ଟଗ ମଣିଲା, ସେ ଉପହାସ କରୁଛ । ଦ' ପାଦ ପଛେଇ ଆସିଲା । ସୁନା ଉଠି ଠିଆ ହେଲା । ଆଗ ବଳପଡ଼ି ହସହସ ହୋଇ କହିଲା, ଖବର ପାଇ ଦେଖିବାକୁ ଧାଇଁ ଆସିଲି ସାଆନ୍ତାଣୀ ! ପୁଅ ଦିହେଁ ବି ଆସିଛନ୍ତି । ଝିଅକୁ ତା' ବାପ ପାଖରେ ଛାଡ଼ି ଆସିଛୁ । ଭାରି ଆଦରିଛ । ଆରେ ଟୁନା-ମୁନା, ମା'ଙ୍କୁ ଓଳଗି ହୁଅ । ଆସ ରେ—

ସେ ଦିହେଁ ଆସିଲେ । ତାଙ୍କ ପଛରେ ଅରକ୍ଷିତ ।

ଟୁନା ମୁନାଙ୍କୁ ଅନୁକରଣ କରି ଅରକ୍ଷିତ ବି ତଳେ ମୁଣ୍ଡ ଲଗାଇଲା ।

ଟଗ ହସିଲା । ସଙ୍ଗେ ସଙ୍ଗେ ତା'ର ମୁହଁରେ କେଉଁ ବିଷାଦର ଅସ୍ପଷ୍ଟ ଛାୟା ଘୋଟିଗଲା । ସେ ଦେଖିଲା, ସୁନାଦେଈର ରୂପ ଓ ଦେହ ପୂର୍ବପରି ରହିଛ ।

ଆଗପରି ସେ ଗହଣା ନାଇଛି । ପିନ୍ଧିଥିବା ପରିଷ୍କାର ଧୋବ ଶାଢ଼ିଟି ବି ସୁନ୍ଦର, ଦାମିକା । ମୁଣ୍ଡରେ ବଡ଼ସିନ୍ଦୂରର ଠୋପା । ଆଖିରେ କଜଳ । ପିଲା ଦିଓଟି ସୁନ୍ଦର ଓ ସ୍ୱାସ୍ଥ୍ୟବାନ୍ ହୋଇଛନ୍ତି । ତାଙ୍କ ପାଖରେ ଅରକ୍ଷିତ । ସୁନାର ବଡ଼ପୁଅ ଟୁନ୍ନାର ସାନଭାଇ ପରି ସେ ଦିଶୁଛି ।

ସୁନା କହିଲା, ଟୁନ୍ନାକୁ ତମେ ଦେଖି ଯାଇଥିଲ । ତା' ନାଁ ଶିବଚରଣ । ସେ ସ୍କୁଲରେ ପଢ଼ୁଛି । ମୁନ୍ନାର ନାଁ ମୁଁ ଦେଇଛି ଶିବଶରଣ । ଝିଅଟା ଆହୁରି ସୁନ୍ଦର ହୋଇଛି । ତା' ବାପର ଜୀବନ । ତା ନାଁ ଶିବାନୀ ।

ଟେଭି କହିଲା, ମୋ' ପୁଅର ନାଁ ମୋ ଜେଜେମା ଦେଇଛନ୍ତି, ଅରକ୍ଷିତ !

—ଖୁଣ୍ଟିଆଙ୍କ ପୁଅ ଅରକ୍ଷିତ କାହିଁକି ହେବ ? ଯାହାଙ୍କର ଦୟାରୁ ସେ ଜନମ, ତାଙ୍କରି କଲ୍ୟାଣ ନାଁ ଧରିବେ ଆମର ନିକମା ଆନ୍ତେ । ଏ ଗାଆଁରେ ଜନ୍ମ ହୋଇଥିଲେ ମୁଁ ଦେଇଥାନ୍ତି, ସେଇ ନାଆଁଟି—ଶିବକଲ୍ୟାଣ ।

—ଶିବପ୍ରସାଦ ନୁହେଁ, ଶିବକଲ୍ୟାଣ ?

—ଏକା କଥା । ପଥରକୁ ଦେବତା ମଣି ବିଶ୍ୱାସରେ ପୂଜିଲେ ଫଳ ମିଳେ । ତା'କୁ ଯେଉଁ ଦେବତା ବୋଲି ମଣିବ, ସେଇ ଦେବତାଙ୍କର ପ୍ରସାଦ ବା କଲ୍ୟାଣର ଫଳ ମିଳିବ । ସେ ପଥରକୁ କିଏ ତୁଠରେ ପକାଇ ଗୋଡ଼ ଘଷିହେଉ, ତା' ଉପରେ ଲୁଗା କାଚୁ, କେଉଁଠି ନେଇ ତଳିରେ ବେସର ବାଟୁ, କଟୁରି ଘଷୁ ସେଥିରେ ଭକ୍ତର କି ଯାଏ ? ଆମେ ଶିବଶଙ୍କର ମହାଦେବଙ୍କୁ ଭକ୍ତି କରିଥିଲୁ । ଲୋକଟି ସ୍ୱର୍ଗରୁ ଅଇଲା କି ନରକରୁ ଅଇଲା, ଆମର କି ଯାଏ ? ଆମେ ଫଳ ପାଇଛୁ । ଆମର ସ୍ତ୍ରୀଜନ୍ମ ସାର୍ଥକ ହୋଇଛି ।

—ବା-ଉ-ଳି !

—ନା, ମୁଁ ସୁନାଦେଇଉଣୀ । ତମେ ମୋ'ର ସାଆନ୍ତାଣୀ । ଯିଏ ଯେଉଁ ଗଛରେ ଫଳିଛି ସେ ସେଇଆ । ଖୁଣ୍ଟିଆ କୁଳରେ ଜନମ ଏଇ ଶିବକଲ୍ୟାଣ ଆମର ଟିକି ସାଆନ୍ତ । ଦେଖିବାକୁ ଆସିଥିଲି । ଶିବଶଙ୍କର ତା'ର ମଙ୍ଗଳ କରିବେ ।

—ସାଆନ୍ତେ କେମିତି ଅଛନ୍ତି ?

—ଆଜି ତ ଆଇଲି, କେମିତି ଜାଣିବି ? ତାଙ୍କୁ ଶୁଆଇ ଆସିଛି । ଖାଲି କହୁଛନ୍ତି, ସେ ଥାକିବେ ନାହିଁ ।

ଟେଭିର ଆଖିରେ ଲୁହ ଛଳଛଳ ହେଲା ।

ସୁନା କହିଲା, ଯେଉଁଦିନୁ ମୁଁ ଜାଣିଲି ଯେ ଖବରକାଗଜରେ ପଢ଼ିଥିବା ଶିଅଳୁଣୀ ଘରେ ସେ ଆତଯାତ, ତାଙ୍କୁ ମୁଁ ଘରେ ଥାନ ଦେଲି ନାହିଁ । କେମିତି ତମକୁ କହି ପାରନ୍ତି ? ଲେଡ଼ିଗୁଡ଼ କହୁଣୀକୁ ଗଡ଼ି ଗଲଣି ।

—ଉଃ ବିଶ୍ୱାସଘାତକ !

—ଜାଣିଥିଲି, କେହି ତାଙ୍କୁ ସୁଧାରି ପାରିବେ ନାହିଁ । ସମସ୍ତେ ତାଙ୍କୁ ଠକି ନେଉଥିଲେ । ମୋ'ର ବି ଲୋଭ ହୋଇଥିଲା । ଅନ୍ୟର ଦୁର୍ବଳତା ଜାଣିଲେ, ଅବିବେକୀ ପଣ ବୁଝିଲେ, ସମସ୍ତେ ବିଶ୍ୱାସ-ଘାତକ ହେବାକୁ ମନ ବଳାନ୍ତି ।

—ତୁ ଏଇଆ ସବୁ କହିବାକୁ ଆସିଥିଲୁ ? ତୋ' ସଙ୍ଗେ ଠିଆ ଠିଆ ଗପ କରିବାର ବେଳ ଏ ନୁହେଁ ।

ସୁନା ଅପଦସ୍ଥ ହେଲା ପରି ମରିଗଲା । ଥାଁ ଥା ମା ମା ହୋଇ କହିଲା, କେତେ-ଥର ଝିଅବିବୁଙ୍କ ପାଖକୁ ମୁଁ ଆସି ବାହୁଡ଼ୁଛି । ସେ ମୋତେ ପାଖ ପୁରାଇ ଦଉନ୍ତି ନାହିଁ । ସେ ବାଉଗା ଟୋକା ଭଅଁରୀ ମତେ ଦାଣ୍ଡରୁ ଘଉଡ଼ି ଦିଏ ।

—କାହିଁକି ତୁ ଆସୁ ?

—ସେଇ ଭଅଁରୀ ମୋ' ଘରେ ପଶି ବାକ୍ସ ଖୋଲି ମୋ'ର ହ'ମାଣ କିଣା ଜମିର କବଲା, ଆଉ ତିନି ମାଣ ଜମିର ରହଣ-ବନ୍ଧକ ଲେଖା ଚୋରି କରି ଆଣିଛି । ବାବୁଙ୍କୁ ଦେଇଛି । ମୁଁ ମାଗିବାକୁ ଆସେ ।

—କେମିତି ଜାଣିଲୁ ?

—ଯେଉଁ ବାଉରିମାନଙ୍କୁ ସେ ଜମି ଚଷିବାକୁ ଦେଇଥିଲି, ସେମାନେ ଫସଲ ଦେବାକୁ ମନା କରିଦେଲେ । ସେମାନଙ୍କଠାରୁ ଖବର ବୁଝିଲି । ତମେ ଦୟା କର ସାଆନ୍ତାଣୀ ! କେଡ଼ିକି ଅନାଥଁ, ଦେଖ କେମିତି ସେ ତିନିହେଁ ଏକାଠି ବସି ଖେଳୁ-ଛନ୍ତି ! କ'ଣ ଖାଇ ଝୁନ୍ନା, ମୁନ୍ନା ଆଉ ଶିବାଣୀ ବଞ୍ଚିବେ ? ଭଗବାନ ଜାଣନ୍ତି, ତମେ ଜାଣ, ମୁଁ ବି ଜାଣେ, ସେ ତିନିହେଁ ଠିକ ସାଆନ୍ତ ଶିବକଲ୍ୟାଣର ଭାଇ ଭଉଣୀ । ସେମାନଙ୍କର ବାପ ଚୋଟା ହୋଇ ଅକର୍ମଣ୍ୟ । ତମେ ଦୟାକଲେ ମୁଁ ସେ କବଲା ଓ କାଗଜପତ୍ର ପାଇ ପାରିବି ।

ଝିଅ ଚମକି ହେଲା । ତା'ର ମନର ଭାବନା ବୁଝିଁଲା ପରି ସୁନା ହାତଯୋଡ଼ି ଅନୁନୟ କଲା, ତମେ ଦୟା ନ କଲେ ସେ ପିଲା ତିନୋଟି ବଞ୍ଚିବେ କିପରି ସାଆନ୍ତାଣୀ ? ତମେ ମୋତେ ମୋ'ର ଋଣ ଶୁଝିଦିଅ । ମୋର ଏତିକି ମାଗୁଣି ।

—ତୋ'ର ଋଣ ?

—ହଁ, ମୋ'ର । ଶିବକଲ୍ୟାଣର ମୂଲ୍ୟ । ତମେ ତା'କୁ ପେଟରେ ଧରିଥିଲ ସତ, କିନ୍ତୁ କାହା ପାଇଁ ? ଟିକିଏ ମନେ ପକାଅ । ମତେ କେତେ ଲଙ୍ଘାଇଛ । ଅପମାନ ଦେଇ ଘରୁ ତଡ଼ିଛ । ସେସବୁର ମୂଲ୍ୟ ତମର ପୁଅରତ୍ନର ପାଦନଖକୁ ସମାନ ହେବ ନାହିଁ ।—

ଝିଅ ଶଙ୍କିତ ହେଲା । ଧୀର କଣ୍ଠରେ କହିଲା, ବଉଳା, ତୋ' କଥାର ସତ ମିଛ, ତାଙ୍କର ଯେଉଁ ଅବସ୍ଥା ସେଥିରେ ତାଙ୍କୁ ମୁଁ ପଚାରି ପାରିବି ନାହିଁ । ତାଙ୍କ ଟ୍ରଙ୍କ ଖୋଲି, ଯଦି ସେ ସବୁ ଥାଏ, କିପରି ମୁଁ ଚୋରି କରି ଆଣି ତତେ ଫେରାଇ

ପାରିବ ? ତୁ ବି କେତେକ ଟିକିଏ ଶୁଝି ଦେଖ୍ । ଶିବକଲ୍ୟାଣ କ'ଣ ତୋର ପୁଅ ପରି ଦିଶୁ ନାହିଁ ? ତୋ' କଥା ମୋର ମନେ ରହିଲା ବଉଳ ! ତୁ ଏବେ ଯା । ମୋ'ର କର୍ତ୍ତବ୍ୟ ମୋତେ କରିବାକୁ ଦେ । ସେମାନେ ଖେଳୁଛନ୍ତି ତ ଖେଳୁଥା'ନ୍ତୁ । ହେଇଟି ଭଉଁରୀ ଆସୁଛି । ମୁଁ ଯାଏଁ—

ଟେଗି ମୁହଁ ବୁଲାଇ ଦାଣ୍ଡ ଘରକୁ ଆସିଲା ।

ଝିଅଆ ଆଗ ପରି ଶୋଇଛି । ଆଖି ବୁଜିଛି । ନିଶ୍ୱାସର ବେଗ ବଢ଼ିଛି । ବଦାକାଠିଆ ଛାତି ଉଠୁଛି ପଡ଼ୁଛି । ପେଟ ଲାଗିଛି କଙ୍କାଳରେ । ବେଳେବେଳେ ଖରନିଶ୍ୱାସ ଛାଡ଼ୁଛି । ହାତଗୋଡ ହଲଉଛି ।

ଟେଗି ଦେଖିଥିଲା । ଦ୍ୱାରବନ୍ଧ ପାଖରେ କଡ଼େଇ ଠିଆ ହୋଇ ଭଉଁରୀ ବି ଦେଖୁଥିଲା । ବାହାରେ ଡ଼ାହାଣିଆଁ ଖପ୍ପର ମହଲ ଆଖି । ଫୁଲୁ ଫୁଲିଆ ପବନର ଥରଥର ଆଲୋଡନରେ ବାଡ଼ିରେ ଥିବା ଗଛ ଗହଳର ପତ୍ରଗୁଡ଼ିକ ହଲହଲ ହେଉ-ଥିଲେ, ସତେକି ସେମାନେ ଚତୁର୍ଦ୍ଦଶୀର ଉଦ୍ଧୁମ ଦିନକୁ ବିଦାୟ ଦେବାକୁ ବ୍ୟାକୁଳ, ନିର୍ମଳ ଜହ୍ନ ଓ ଶୀତଳ ପବନର ଶାନ୍ତିହର ପରଶ ପାଇଁ ଉଚ୍ଛନ୍ନ । ଟେଗି ଝରକାଆଡ଼ୁ ତା'ର କ୍ଳାନ୍ତ ଆଖି ଝିଅଆ ଉପରକୁ ଫେରାଇ ଆଣିଲା । ଶାନ୍ତିରେ ସେ ଶୋଇଛି । ହାତର ଆଙ୍ଗୁଠିଗୁଡ଼ିକ ଥରୁଉଛି ।

ଟେଗି ମୁହଁ ବୁଲାଇଲା । ପାଖକୁ ଆସିବାକୁ ମୁଣ୍ଡ ହଲାଇ ଭଉଁରୀକୁ ଠାରିଲା । ନିଜେ କଡ଼େଇଗଲା । ଦୃଷ୍ଟି ପକାଇଲା ସେହି ହଳଦିଆ ବାକସରେ, ଯହିଁରେ ତା' ପୁଅ ଶିବକଲ୍ୟାଣର ଭବିଷ୍ୟତ୍ ଲୁଚି ରହିଛି, ଆଉ ସୁନାବଉଉଣୀର ଉଦ୍ଦେଶ୍ୟ । ସିଏ ନିଘଞ୍ଚ ସତ୍ୟ ପ୍ରକାଶ କରିଗଲା ! କୃତଜ୍ଞତାରେ ନୁହେଁ, ଅଜଣା ଗୋଟାଏ ଭୟରେ ହେବ ପରା, ଯାହାକୁ ସ୍ନେହ ପୁଣି ତା'ର ବଉଳର ଆସନରେ ବସାଇବାକୁ ମନ କରିଥିଲା, ସେ ତା'ର ତ଼ରତ଼ର ଆଗ୍ରହ ପାଖରୁ ଆଡେଇ ଯାଇଥିଲା ।

ଟେଗି ଅଣ୍ଟାରେ ହାତ ମାରି ଝିଅଆର ଚାବି ମୁଠିକ ପରଖିଲା । ଭାବିଲା, ବାକ୍ସ ଖୋଲି ସୁନାର କବଲା ଓ କାଗଜପତ୍ର କାଢ଼ିବ । ସେହି ଭଉଁରୀ ହାତରେ ଫେରସ୍ତ କରିବ । ଚାବିରେ ହାତ ଦେଉଣୁ ଟେଗିର ମନେ ହେଲା, କିଏ ଯେପରି ତା'ର ହାତଧରି ଅଟକାଇ ଦେଉଛି । ଝିଅଆ ! ହଁ, ଝିଅଆ । ସେମିତି ସେ ଶୋଇଛି । ପଲଙ୍କ କଡରେ ଭଉଁରୀ ଠିଆ, ସେ ବି ଶୁଝିଛି ।

ନିଜକୁ ସେ ନିଜ ଘରେ ସ୍ୱୈରଣୀ ମଣିଲା । ଭଉଁରୀପାଖକୁ ଫେରି ଆସିଲା ।

ତୁମ୍ଭ ତୁମ୍ଭ ଭଅଁରୀ କହିଲା, ଶୋଇଛନ୍ତି, ଶୋଇଥାନ୍ତୁ । ମୁଁ ସବୁ ଠିକ୍ କରି ଆସିଛି ଅପା, ସେଇଥିପାଇଁ ମୋ'ର ଡେରି ହେଲା ।

ଭଅଁରୀ ଘରଭିତରୁ ପଦାକୁ ବାହାରିଲା । ତା' ପଛେ ପଛେ ଝଣ୍ଟ । ସେ କବାଟ ଆଉଜାଇଦେଲା । କାନରେ ବାଜିଲା ପେଁ-ଜାଲି ଓ ବେଙ୍ଗ-ବାଇଦର ଶବଦ, ସଙ୍ଗେ ସଙ୍ଗେ ପିଲା ଟହଳିଙ୍କର ହୋ-ହୋ ହୁରି ଓ ପାଟି !

ସେମାନେ ମିଶିଗଲେଣି । ପରସ୍ପରକୁ ଆପଣାର କଲେଣି । ଝପ୍ରମଣି ଖୁଣ୍ଟିଆଙ୍କ ପୁଅ ଗୁନ୍ନା ଓ ଡମ୍ବରୁ ମହାରଣାଙ୍କର ଦୁଇ ପୁଅ ଟୁନ୍ନା ଓ ମୁନ୍ନା । ଡମ୍ବରୁ ବାଜିଲା ପରି ଶୁଭୁଛି ବେଙ୍ଗ-ବାଜା । ଭେଣ୍ଟା ପରି ସେ ପେଁ-ଜାଲି । କୈଳାସପୁରରୁ ଆସିଲା ପରି ତ ଲାଗୁଛି ସେହି ଶବଦ । ବୁଢ଼ା ନାଗଟି ଧାଇଁ ଆସିବ କି, ଫଣା ଟେକିବ ?

ଝଣ୍ଟ ଅଗଣା ଆଡ଼କୁ ଡରଛଗୁହାଣୀ ପକାଇ ଦାଣ୍ଡ ଘରକୁ ଆସିଲା । ପଚାରିଲା, କ'ଣ ଠିକ୍ କରି ଆସିଛୁ ଭଅଁରୀ ?

ଘପଖଣ୍ଡି ଅଲପ ଖୋଲି ଝଣ୍ଟ ସେହି ଦାଣ୍ଡ ଘରର କଡ଼ପଟ କାନ୍ଥକୁ ଆଉଜି ବସିଲା । ଗୋଡ ଲମ୍ବାଇ, ହାତ ଉପରକୁ ଟେକି ଅଲସ ଭାଙ୍ଗିଲା । ମୁଣ୍ଡର କେଶ ମୁକାଳି ଆଙ୍ଗୁଠିରେ ସାଉଁଳି, ପୁଣି ଗଣ୍ଠି ପକାଇଲା । ହାଇ ମାରି କହିଲା, ଭାଇ ରେ; ସକାଳେ ପହଞ୍ଚିଲା ବେଳଠାରୁ ଏତେବେଳଯାଏ ମୋ' ଗୋଡ଼ ଖାଲି ଘୂରୁଛି । ଆଖି ମାଡ଼ି ମାଡ଼ି ପଡ଼ୁଛି । ଦେହ ହାତ ଦରଜ । ବିଛଣା, ପେଡ଼ି, ପୁଡ଼ା ଦୁଇଟି, ହେଇ ଦେଖ, କେମିତି କଣରେ ଗଦା ହୋଇଛି । ପିଲାଟିକୁ ନେଇ ଏଇ ଘରେ ମୋର ରହଣି । ଖଟ୍ଟାର ଅରମା ଭିତରେ ସାପ ।

ଆଗରେ ବସି ଭଅଁରୀ କହିଲା, ସଫା କରିବାକୁ ବେଳ ମିଳୁ ନାହିଁ । ସାଆନ୍ତଙ୍କର ମୋ ଛଡ଼ା କାହାରି ଉପରେ ବିଶ୍ୱାସ ନାହିଁ । ମୂଲିଆ ମଜୁରିଆଙ୍କୁ ବି ସେ ଏ ଘରେ ପଶିବାକୁ ଦିଅନ୍ତି ନାହିଁ । ମୋ' ଉପରେ ବି କି ବିଶ୍ୱାସ ? ସେଇ ଭୂଲିଆ ଘରର ଭୂବି ମୋ' ହାତକୁ ଦିଅନ୍ତି ନାହିଁ । ସେଠି ପଣପଣ ମୂଷା ।

—ଆଜି ମୋ' ହାତକୁ ସେ ଭୂବି ବଢ଼ାଇ ଦେଇଛନ୍ତି ।

—ମୋ' ଜାଣିବାରେ ତମକୁ ଡ଼କାଇ ଆଣିବାର ସେଇଟା ଗୋଟାଏ କାରଣ । କହୁ ଅପା, ତମେ ଫେରିବ କିପରି ? ନନ୍ଧି ବେହେରାଙ୍କ ଗୋଡ଼ତଳେ ପଡ଼ି ତାଙ୍କୁ ମୁଁ ମନାଇ ପାରିଛି । ସେ ଗାଡ଼ି ଦେବେ । ହଳେ ବଳଦ ଭଡାରେ ଆଣିବେ । ତାଙ୍କ ପୁଅ ଗାଡ଼ି ହାକିବ । ମୁଁ ଦଣ୍ଡା ଧରିବି । ଆଜି ରାତିରେ ଗଲେ ରାଜି, ନ ହେଲେ ପୁଣି ଯାଇଁ କାଲି ଦୋଳ ପୁନେଇଁ ରାତିପାହାନ୍ତାରେ । ସେତିକି ଭଡ଼ା । ଯାହା ତମରି ଇଚ୍ଛା ।

—ତାଙ୍କର ଅବସ୍ଥା ତ ଦେଖିଲୁ । କେମିତ ତାଙ୍କୁ ଛାଡ଼ି, ତାଙ୍କ ପୁଅ ଆଉ ସମ୍ପତ୍ତି ସଙ୍ଗରେ ନେଇ ପଳାଇବ ରେ ଭାଇ ?

—ଲୋକେ କ'ଣ କହିବେ ?

—ମୋ' ମନ ମତେ ମୁଁ ବଞ୍ଚିଥିବାଯାଏ କପଣ ଦଣ୍ଡ ଥିବ ରୁ ବିଗୁର କର । ମୋ ପୁଅ ଅରକ୍ଷିତ, ତା'ର ନୂଆ ନାଁ ଆଜ ବଜଲ ନନ୍ଦେ ଦେଇଥିଲେ ଶିବ ପ୍ରସାଦ; କନ୍ତୁ ବଉଳ ସୁନାଦେଈ ସେ ନାଁ ଟିକଏ ବଦଳାଇ ଦେଲା, କହିଲା ଶିବ-କଲ୍ୟାଣ, ଡ଼ାକ ନାଁ ଗୁନ୍ନା । ସେ ବଡ ହେଲେ, ମୁଁ ଯେଉଁଠି ଥାଏ, ମତେ ସେ ଘୃଣା କରବ ନାହିଁ ? ଜନମ ଦେଲେ କ ହେଲା, ମୋ' ମୁହଁ ସେ ଗୁହିଁବ ନାହିଁ ।

— ସତେ ଲୋ ଅପା !

—ଯାହା ପଛେ ମୋ'ର ହେଉ, ମୁଁ ଏଇଠି ରହିବ । ମୋ' କପାଳ ଭୁଞ୍ଜିବ । ନଜେ ଦୁଃଖ ସହି ମୋ ଗୁନ୍ନାକୁ ମଣିଷ କରବ । ନଧି ବେହେରାଙ୍କୁ ରୁ ମନା କର ଦେ ।

ଭଅଁ ଗ୍ର କହିଲା, ସେ ଆଗଥୁଗ୍ର ଭଡା ନେବାକୁ କହିଥିଲେ । ସେତକ ନ ପାଇଲେ ସେ ବଲେ ବୁଝିବେ । ମନ କଲେ ନଜେ ଆସି ପଗ୍ଚରି ପାରନ୍ତ । ମୋର ଯିବା ଲୋଡ଼ା ନାହିଁ ।

ତମେ ସେଇଠି ଟିକେ ଶୋଇପଡ ଅପା ! ରାଘ ପାଳି ଲଣ୍ଠନ ଦି'ଟା ସଜାଡ଼ି ଦେବ । ସକାଳୁ କଛୁ ଖାଇ ନ । ପୁଅ ବ । ଟଙ୍କା ଦୁଇଟି ଦେଲେ କବରାଜଙ୍କ ଘରେ ବରାଦ କର ଦେବ ଯେ, ସେ ତାଙ୍କ ଠାକୁରଘର ପ୍ରସାଦ ପୁଅ ହାତରେ ପଠାଇ ଦେବେ । ଗ୍ରେଷବାସର ଯୋଗାଡ କାଲ୍ କମ୍ବ ହେବ ।—

ଟଭ ତା ଲୁଗା କାନର ଗଣ୍ଠି ଫିଟାଇ ଭଅଁ ଗ୍ର ହାତକୁ ଖଣ୍ଡେ ପାଞ୍ଚଟଙ୍କିଆ ନୋଟ୍ ବଢ଼ାଇ ଦେଲା । କହିଲା, ସକାଳର କ୍ଷୀର ସେମିତ ରଖା ହୋଇଛି । ଆଗ୍ରଯ୍ୟ କବରାଜଙ୍କୁ ପଗ୍ଚରବୁ, ଖାଲି କ୍ଷୀର ଖାଇଲେ କ'ଣ ତାଙ୍କ ଦେହରେ ଯୋର୍ ହୋଇ ପାରବ ? ଆଉ କ'ଣ ଦେଇ ହେବ ନାହିଁ ?

—ପଗ୍ଚର ଆସିବ । ସୁନାବଢ଼ଉଣୀ କାହିଁକ ଆସିଥିଲା ଅପା ? ପିଲା ଦୁଇଟାଙ୍କୁ ଛାଡ଼ି ଯାଇଛ ?

ଟଭ କହିଲା, ତା' କବଲା, ଆଉ କାଗଜ ରୁ ଆଣି ତୋ' ବାବୁଙ୍କୁ ଦେଇଛୁ ବୋଲି ସେ ଜାଣିଛ ।

—ବାହାଦୁରୀ କର ଆମ ସାହିରେ ଗୁପ୍ତରେ କହିଦେଇଥିଲ । ପ୍ରଘଟ ହେଲାଣି । ଏବେ କଏ ପଗ୍ଚରଲେ ମୁଁ ଭୁରୁଡ ମାରୁଛ । ତମେ କ'ଣ କହିଲ ?

—କହିଲ, ମତେ କ ଜଣା ?

—ସେଇଆ । ତା'ର ସେ ବଡ଼ପୁଅଟା ଭାର ଗୁଣି । ଚଗଲଟାଏ ବି; ଶୁଣାଶୁଣିରେ ସ୍କୁଲରେ ଭଲ ପଢୁଛି ସେ ଅନ୍ୟପିଲାଙ୍କର ବହି, ପେନ୍ସିଲ ଏମିତି ସବୁ ଚୋର କରୁଛି···

—ଚୋର କରୁଛି ?

—ହଁ ଅପା ! ଶୁଣାଶୁଣିରେ ତା'ଠେଇଁ ଚୋରକଳା ଅଛି । ଆମ ଝିଙ୍କ ସାଆନ୍ତଙ୍କ କଣ୍ଢେଇ କି ଆଉ କ'ଣ ସେ ନଷ୍ଟେ ଚୋରେଇ ନେବ । ମୁଁ ଆଗ ତାଙ୍କୁ ନେଇ ଆସେ । ସେ ଦି'ଟା ବଳେ ପଳାଇବେ ।

ନଜର ଅଜାଣତରେ ଝୋଲାକୁ ଚାହିଁକାଇ, ଝିକଏ ବିବ୍ରତ କରି ଭଉଁରୀ ଉଠି ପଦାକୁ ବାହାରିଗଲା ।

ଟଙ୍କାର ଭୟଙ୍କର ସପନଟା ଭାଙ୍ଗିଗଲା । ସେ ଉଠି ବସିଲା । ଦେହଟା ବରଡ଼ାପତ୍ର ପରି ଥରୁଥାଏ । ସେ ଆଲୁଅ ଜେଳିଲା । ବଲବଲ କରି ଚାରି ଆଡ଼କୁ ଚାହିଁଲା । ଦାଣ୍ଡଘରର ଦୁଇ ପାଖର କବାଟ ବନ୍ଦ କରା ହୋଇଛି । ସପ ଉପରେ ଅରକ୍ଷିତ ନିଶ୍ଚିନ୍ତରେ ଶୋଇଛି । ଗୋଡ଼ ତଳେ ପେଡ଼ି ପେଟରା ଇତ୍ୟାଦି ସଜଡ଼ା ହୋଇ ରହିଛି । ପାଖରେ ଅଇଁଠା ବାସନ ।

କ୍ଷଣକରେ ସେ ବୁଝି ପାରିଲା, ସେ ରତନପୁରରେ ନାହିଁ, ସେ ଚାଲିଆସିଛି ମଣିକୁଦକୁ, ଝିଅଆପାଖକୁ ।

ଅଚ୍ୟୁତ ମଉସାଙ୍କ ଅଗଣାର ବେଦିରେ ସେ ବସି ନାହିଁ । ପାଖରେ ଚଇତନ ନାହାନ୍ତି । ତା'ର ବାପା ହାତରେ କଟୁରୀ ଧରି ଧାଇଁ ଆସୁ ନାହାନ୍ତି । ପଛରେ ଥାଇ ନାଟୁରୀ କଲକଲା ରଡ଼ି ଛାଡ଼ୁନାହିଁ । ଗିହାସର ଅର୍ଦ୍ଧାତଆ ଠେଙ୍ଗା ପାହାରରେ ତାଙ୍କୁ ଫାଟି ଲହୁଲୁହାଣ ହୋଇ ତା' ବାପା ତଳେ ପଡ଼ି ଛଟପଟ ହେଉ ନାହାନ୍ତି ।

ବାହାର ପିଣ୍ଡାରେ ଶୋଇଛି ଭଉଁରୀର ବଡ଼ ପୁତୁରା ଗଜୁଆ ।

ସେଉଁ ଧନମାଣ ଜମି ସୁନା ଝିଅଆଠାରୁ ଲେଖାଇ ନେଇଥିଲା, ତହିଁରୁ ଦି ମାଣ ଭଉଁରୀର ବଡ଼ଭାଇ ଚଷୀ ଭାଗରେ ଧରିଥିଲା । ଏବେ ବି ଧରିଛି । ବାକି ମାଣକ ଧରିଛି ଭଉଁରୀ ! ଆଉ ଦଶ ଗୁଣ୍ଠ ଝିଅଆ ତାକୁ ଆଗରୁ ଦେଇଥିଲା । ବର୍ତ୍ତିନ ବାବତକୁ ଘରଭାଗ ଫସଲ ସେ ଭୋଗ କରେ । ଭଉଁରୀ ନିଜେ ଟଙ୍କାକୁ ଏହା କହି ସାରିଛି । ଝିଅଆଙ୍କୁ ପଚାରି ଟଙ୍କା ବୁଝି ନାହିଁ । ଝିକଏ ସୁସ୍ଥ ହେଲେ ସେ ବଳେ କହିବ ।

ଭିତରପାଖ ପିଣ୍ଡାରେ ଭଉଁରୀ ଜଗି ବସିଥିବ । କେଜାଣି, ଶୋଇ ପଡ଼ି-ଥିବ । ସଞ୍ଜ ବେଳେ, ଝିଅଆ ପାଖରୁ ଆସିବା ସମୟରେ ସେ ଚେଇଁ ରହିଥିଲା । ଆଉ ଗୋଟିଏ ଆଲୁଅ କବିରାଜଙ୍କ ଘରକର ପାଖରେ ରଖିଥିଲା । ଝିଅଆ ଘରର ଆଲୁଅ ସେ କଳେ କମାଇ ଦେଇ ଆସିଥିଲା ।

କେଡ଼େ ସୁଧାର ପିଲାଟିପରି ଝିଅଆ ଆଁ-କଲା । ଗ୍ରେଟ ବଟିକାକୁ ଘର ଖଣ୍ଡ କରି ଗିଳାଇଲାରୁ ସେ ଘରଥରରେ ଢୋକିଲା । ଗରମ କ୍ଷୀର ଅଧବେଲାଏ ପିଇ ଶୋଇଲା ।

ଆଖିବୁଜି ମୁହଁ ବିକୃତ କରୁଥିଲା । ଦେହରେ ତାତ ଉଣା ହେଲା ପରି ଲାଗୁ-ଥିଲା । ସଁ ସଁ ନିଶ୍ୱାସ ଗ୍ରାଡ଼ୁଥିଲା । ହାବୁକାଇ ଉଠିଆସୁଥିବା ଲହଡ଼ିଆ କାଶର ଚୋଡ଼କୁ ରୋକ ରଖିବାର ଚେଷ୍ଟାରେ ସେ ଧନୁ ପରି ବଙ୍କେଇ ଯାଉଥିଲା । ଟଗି ତା'କୁ ଧରି ତା'ର ଗ୍ରାଡ଼ ଓ ପିଠି ଆଉଁସି ତାକୁ ଆଉଜାଇ ବସାଉଥିଲା । ସେ କହୁ କହୁ ନ ଥିଲା ।

ଟଗି ପଗ୍ୟରିଥିଲା, ଟିକିଏ ଭଲ ଲାଗୁଛି ? ଦୁଇ ତିନି ଥର ପଗ୍ୟରିଲା ପରେ ମୁଣ୍ଡ ହଲାଇ ସେ ଉତ୍ତର ଦେଇଥିଲା. ହୁଁ ।

ଭଉଁରୀ ପାଖରେ ଠିଆ ହୋଇଥିଲା । କହିଲା, ସାଆନ୍ତେ ଭଲ ଅଛନ୍ତି ଅପା ! ଟିକିଏ ଶୋଉନ୍ତୁ । ତମେ ପୁଅ ପାଖକୁ ଯାଅ । ଏକା ଶୋଇଛନ୍ତି । ମୁଁ ତ ଜଗିଛି ।

ଟଗି ଝିଅଆକୁ ଶୁଆଇ ଦେଉଣୁ ସେ ଆଖି ଖୋଲିଲା । ଡ଼ବଡ଼ବ କରି ତା ମୁହଁକୁ ଗ୍ୟହିଁଲା । ପଗ୍ୟରିଲା, କିଏ ?

—ଚିହ୍ନି ପାରୁ ନା ? ମୁଁ ତ ଟଗି ।

—ହିଁ, ଟଗି । ତତେ ମୁଁ ତଡ଼ି ଦେଇଥିଲି ।

—ଛି, ଭୁଲିଯାଅ । ମୁଁ ଫେରି ଆସିଛି । ତମର ସେବା କରୁଛି । ଶୋଇ ପଡ଼ । ଭଲ ହୋଇଯିବ ।

—କାହିଁକି ପୁଣି ଆସିଲୁ ? ତତେ ମୁଁ-ମୁଁ ଗ୍ରାଡପତ୍ର ଦେଇଛି । ଗ୍ୟଲି ଯା, ଗ୍ୟଲି ଯା, ଗ୍ୟଲି ଯା—

—ତମେ ଡ଼କାଇଥିଲ । ତମ ପୁଅକୁ ସଙ୍ଗରେ ଆଣି ଆସିଥିଲି । ତମେ ଦେଖିଛ । ଶୋଇପଡ ମୋର ସୁନାଟି, ଦାଉଲା ହେଉଛ କାହିଁକି ? ତୁନି ହୁଅ । ଶୋଇ ପଡ଼ ।

—ତୁ ଗ୍ୟମଣ୍ଡା ! ମତେ ଖାଇବୁ···

—ନାହିଁ, ନାହିଁ, ଗ୍ରମଣ୍ଡା ମିଛ । ମୁଁ ତମର ଟେଗ୍ର । ସେ ଶିବପ୍ରସାଦ, ତମର ପୁଅ । ବାଉଳା ଗ୍ରଉଳା ହେଉଛ କାହିଁକି ? ଅରେ ଭଅଁଗ୍ର, ଗ୍ରତ ବେଶୀ ହୋଇ ନାହିଁ, କବିରାଜଙ୍କୁ ଡାକ ।

ଭଅଁଗ୍ର କହୁଥିଲା, ସେ ବିଗତ କଥାକୁ ସପନ ଦେଖିଲେ କି କ'ଣ ' ଅନେଇଁ ଅନେଇଁ ସେ ଏମିତ ସପନ ଦେଖନ୍ତି । ଏମିତ ବକନ୍ତି । ଦେଖ ଅପା, ସେ ଶୋଇ ପଡ଼ିଲେଣି । ଆଖି ବୁଜିଲେଣି ।

ସତ । ସେ ଆଖି ବୁଜିଥିଲେ । ଟାଣି ଟାଣି ନିଶ୍ୱାସ ନେଉଥିଲେ, ଗ୍ରଡ଼ୁଥିଲେ । ଭଅଁଗ୍ରର କଥା ସେ ଶୁଣି ନ ଥିଲେ ପରି ।

ଟେଗ୍ର ଅରକ୍ଷିତ ପାଖକୁ ଆସିଥିଲା । କ୍ଳାନ୍ତ ହୋଇ ପିଲାଟି ଶୋଇ ପଡ଼ିଥିଲା । ଶୋଇଲା ପିଲାକୁ ଠାକୁରଙ୍କର ପ୍ରସାଦ ଦି' ଗୁଣ୍ଡା ଖୋଇ ଦେଇଥିଲା ।

ଖୋଇ ଶୋଇ ଝିଅଆର କଥା ଖବୁଶୁ ଆସିପତା ମାତ୍ର ହୋଇ ଯାଇଥିଲା, ଆଉ ସେ ଦେଖିଥିଲା ଭୟଙ୍କର ସପନଟା !

ଗ୍ରତ କେତେ ହେଲାଣି ? ଭଅଁଗ୍ର କ'ଣ ଶୋଇ ପଡ଼ିଲା ? ସ୍ୱର ଶବଦ କିଛି ନାହିଁ । ଝିଅଆର ନଦ କ'ଣ ଗ୍ରର୍ଜି ଥିଲା କି ? ଅବା, ସେ ଶୋଇ ପଡ଼ିଛି ?

ଭିତର ପାଖର ଶିକୁଳି ଖୋଲି ଟେଗ୍ର ଅଗଣାକୁ ଆସିଲା ।

ଆକାଶର ଜହ୍ନ ମଥା ଉପରୁ ପଶ୍ଚିମ ଆଡ଼କୁ ଢଳି ଗଲାଣି । ଗ୍ରଳଘରର ନୁଆଁଣିଆ ମଥାନର ଅଳପ ଉପରେ ଚଳନ୍ତ ମେଘ ତଳେ ସେ ନିଷ୍ପ୍ରଭ ଦିଶୁଛି । ସଳାଣ୍ଡି ଅଗଣାର ମଝିରେ ଆଲୁଅ ଡେଜାହୋଇ ରଖାହୋଇଛି । ପିଣ୍ଡା ତଳେ ଟିକିଏ ଦୂରରେ ବାଲଟି । ପିଣ୍ଡା ଉପରେ ଲୋଟା ଥୁଆ ହୋଇଛି । ଝିଅଆ ଥିବା ଘରର ଦି' ଫାଳ କବାଟ ଠିଆ ମେଲା । ସେ ଘରେ ବି ଆଲୁଅ ଉଜ୍ଜ୍ୱଳ ହୋଇ ଜଳୁଛି । ଭଅଁଗ୍ର ତ ସେଇଠି !

ସେ ପଦାକୁ ଆସିଲା ।

ଟେଗ୍ରକୁ ହାତ ଟେକି ଅଟକାଇଲା । ପାଖକୁ ଆସି କହିଲା, ଯାଆନ୍ତେ ଶୋଇଲେଣି । ତମେ କ'ଣ ଏକା ରହି ପାରିବ ଅପା ? ଖବୁଛି, କବିରାଜଙ୍କ ପାଖକୁ ଯିବି ।

ଭୟଥିବା ସ୍ୱରରେ ଟେଗ୍ର ପଚ୍ଚରିଲା, କ'ଣ ହୋଇଛି କହୁନୁ ? ମତେ ଉଠାଇଲୁ ନାହିଁ ?

—କବାଟରେ ହାତ ମାରି ଡାକିଲି । ତମେ ନିଘୋଡ଼ ନିଦରେ ଶୋଇ ପଡ଼ିଥିଲ । ତମକୁ ଉଠାଇବି ନା ବାବୁଙ୍କ କଥା ବୁଝିବି ?

—କ'ଣ ହେଲା ?

—ଶୋଇ ପଡ଼ିଲିତ, ମୋ'ର ଘୁମ ନ ଥିଲା । ଅଲପ ଉଗାଳିଲା ଶବଦ ଶୁଣିଲି । ମୋ' ନିଦକୁ ସେ ଶବଦ ଦୋହଲାଇ ଧ୍ରୁଗାଳା ଦେଇଥିଲା ଅପା ! ଆଖି ଖୋଲି ହେଉ ନ ଥିଲା । ସାଆନ୍ତେ ଯେମିତି କାଶନ୍ତି, ସେମିତି ଲଟାଳ-କାଶ ପାଖରେ ଶୁଣି ଚମକି ଉଠିଲି । ଆଗରୁ ଆଲୁଅ ତେଜି ସେଇଠି ଥୋଇଥିଲି । ଆଲୁଅ ଦେଖିଲେ ଲନ୍ଦଲନ୍ଦୁଆ ପାଖକୁ ଆସିବେ ନାହିଁ । ସେଇଥିପାଇଁ । ଦେଖିଲା ବେଳକୁ ସାଆନ୍ତେ ! ଧଡ଼ପଡ଼ ଉଠି ପାଖକୁ ଯାଉଣୁ ସେ ଖଟିଆ ଉପରୁ ତଳକୁ ଗଡ଼ିପଡ଼ିଲେ ।

—ଏଁ-ଏଁ ...!

—କିଛି ହୋଇ ନ ଥିଲା ଯେ, ସେ ଖାଲି ଧଇଁ ସଇଁ ହେଉଥିଲେ । କଥା କହିପାରୁ ନଥିଲେ ।

—ମୁଁ କ'ଣ କରିବିକି !

—କରିବାକୁ ବାକି ରଖି ନାହିଁ । ବାବୁଙ୍କୁ ତଳୁ ଉଠାଇଲି । ଯାହା ଖାଇଥିଲେ ସବୁ ଉଗାରି ଦେଇଥିଲେ । ତା' ସଙ୍ଗରେ ଗୁଡ଼ାଏ ରକତ ।

—ର-କ-ତ !

—ହଁ ରକତ । ମୋହ ଯାଉଥିଲେ କି କ'ଣ, ଜବାବ୍ ଦେଉ ନ ଥିଲେ । ମୁହଁକୁ ପାଣି ଛିଞ୍ଚିଲି । ତମକୁ ଡାକିଲି ଅପା ! କେମିତି 'ତାଙ୍କୁ ଛାଡ଼ି କବାଟ ବାଡ଼ାନ୍ତି ?

—ମୋ' କଅଁଳିଆ ନିଦ !

ଟିକି ଶଙ୍କେଇ ହେଲା ।

ଭଉଁରି ବୁଝାଇ କହିଲା, ତମେ ବ୍ୟସ୍ତ ହୁଅନା ଅପା ! ସାଆନ୍ତେ ଆଖି ଖୋଲିଲେ । ଡାକିଲାରୁ ଜବାବ ଦେଲେ । ତା'ଙ୍କୁ ପୋଛିପାଛି ଟେକିଲି । ସେ ବି ଗୋଡ଼ ଲଗାଇ ଚାଲି ପାରିଲେ । ପଲଙ୍କ ଉପରେ ଶୁଆଇ ଘୋଡ଼ାଇ ଦେଇଛି । ଆଖି ବୁଜି ଖର ନିଶ୍ୱାସ ଛାଡ଼ୁଥିଲେ । କ'ଣ ଅଣ୍ଡାଳି ଅଣ୍ଡାଳି ଖୋଜୁଥିଲେ ।

—ମତେ ଖୋଜୁଥିଲେ ?

—ନାଇଁ ତ, କେଜାଣି ? ମୁଁ ପଦାକୁ ଆସିଲି । କୂଅମୂଳକୁ ପାଣି ପାଇଁ ଗଲି । ଭାଗ୍ୟକୁ ଆଲୁଅ ଧରି ଯାଇଥିଲି, ନୋହିଲେ ମୋ' କଥା ଆଜି ସରିଥାନ୍ତା । କୂଅନିକ ପାଖରୁ ଦ' ତିନି ହାତ ଛାଡ଼ି ସେ ଚେକା ବାନ୍ଧି ଶୋଇଥିଲା ।

—କିଏ କିଏ ବୁଢ଼ାଟା ?

—ହଁ, ଲନ୍ଦଲନ୍ଦୁଆ, ମହାଦେବଙ୍କ ବେକର ହାର । ଫଣା ଟେକିଲା । ଆଲୁଅ ଦେଖି ମୁହଁ ଏପାଖ ସେପାଖ କଲା । ହାତ ଯୋଡ଼ିଲି । କହିଲି, ଯା'

ମହାତମା, ତତେ କୁହାର ହେଉଛି । ମୋ' ଆଡ଼କୁ ଫଣାଟେକି ଟିକଏ ଚାହିଁଲା । ସେଇଠୁ ଧୀରେ ଧୀରେ ବଉଲଗଛ କଡ଼ ବାଟେ ବାଗକୁ ଚାଲିଗଲା ।

—ସେଇଠୁ ?

—ପାଣି କାଢ଼ି ସବୁ ସଫା ସୁତୁରା କଲି । ନିଜେ ଧୋଇ ହେଲି । ମୁଁ ଜାଣି ମୋ ଜୀବନକୁ ପାଣି ଛଡ଼େଇ ଦେଇଛି । ଉମାଁ କାହିଁକି ଉଠାନ୍ତି ? ପୁଣି ଦେଖିବାକୁ ଯାଇଥିଲି । ଶୋଇଛନ୍ତି । ନିଶ୍ୱାସ ଗୁଣ୍ଡୁଛନ୍ତି । ଭଲ ଅଛନ୍ତି ତ !

—କେତେ ରାତି ହେବ ରେ ଭଅଁରା ?

—ଅଧରାତିଆ ବଲୁଆ ବୋବେଉ ଥିଲେ ମୁଁ ଶୋଇଲି । ସାଆନ୍ତଙ୍କୁ ଦେଖିଲି ବେଳେ, ପିଣ୍ଡା ତଳେ ମ, ପୁଣି ସେମାନେ ବୋବେଇଲେ । ସେଇଠୁ ସେ ଭେରେଣ୍ଡାଟା···

—ଭେ-ରେ-ଣ୍ଡା ! ଆରେ ଭଅଁରା···

—ସେମିତି ସେ ବେଳେ ବେଳେ ବୋବାଏ । ସେ କିଛି ନୁହେଁ । ହେଇଟି, ଜହ୍ନ ମଥାନ ତଳକୁ ଦବି ଯାଉଛି । ପାହାନ୍ତା ହେବଣି ଅପା !

—ତୁ ଯା, କବିରାଜଙ୍କୁ ଡାକିବୁ । ମୁଁ ଜଗି ରହିବି । ପୁଅ କାଲେ ଉଠିବ, ମତେ ନ ଦେଖିଲେ ଡରିବ । ଗଜୁଆକୁ ଉଠାଇ ଦେ । ସେ ପୁଅ ପାଖରେ ରହିବ ।

—ରାତି ପାହିଲେ ଦୋଳ ପୂନେଇଁ । ତାଙ୍କର ନିତ୍ୟକର୍ମ ନ ସାରି କ'ଣ ଆସିବେ ?

—ଆସିବେ ରେ, ଆସିବେ । ଟିକଏ ରହ ।

ଟେଣ୍ଟ ତା' କାନିର ଗଣ୍ଠି ଖୋଲିଲା । ଦେଖିଲା, ଚାରୋଟି ଟଙ୍କିକିଆ ନୋଟ୍ ଆଉ କିଛି ରେଜା ପଇସା ଅଛି । ଭାବିଲା, ମୋଟେ ଏତିକି କବିରାଜଙ୍କୁ ତାଙ୍କ ବିଛଣାରୁ ଓଟାଳି ଆଣି ପାରିବ ନାହିଁ । ପୁଣି ଗଣ୍ଠି ପକାଇଲା । ଅଣ୍ଟାରେ ହାତ ମାରିଲା । ଝରିଆ ଦେଇଥିବା ଚାବି ପେନ୍ଥିକି କାଢ଼ିଲା । ହାତରେ ଧରି ସେ ଝରିଆ-ଥିବା କୋଠରୀ ଭିତରେ ପଶିଲା ।

ଆଲୁଅ ଟେକି ପଲଙ୍କ ପାଖରେ ଠିଆ ହେଲା । ଦେଖିଲା, ଝରିଆ ଆଖି-ବୁଜି ଚିତ୍ ହୋଇ ଶୋଇଛି । ମୁହଁଟି କେମିତି ଆଉ ଜାଉଆ ଦିଶୁଛି । ପାଟି ଅଳପ ଖୋଲିଛି । ଯେତେ ବାଟେ ଓଟାଣ ଓଟାଣ ପବନ ଟାଣୁଛି, ଗୁଣ୍ଡୁଛି । ଓଠ ଥରୁଛି । କ'ଣ କହିଲା ପରି ଲାଗୁଛି ।

କାନକୁ କୋହ ଚାପି ରଖିଲା । ନଳଟିଣ ନୁଆଁଣି ସିନ୍ଦୁକ ଉପରେ ରଖା-ହୋଇଥିବା ମଝିଭଳିଆ ହଳଦିଆ ବାକ୍ସର ତାଲା ଖୋଲିଲା । ତା'ର ହାତ ଥରୁଥିଲା । ମନେ ହେଉଥିଲା ଯେମିତି ସେ କାହାର କ'ଣ ଚୋରି କରୁଛି । ଝରିଆ

ତ ତାକୁ ଗ୍ରୁଡପଣ ଦେଇଛୁ ! ଉପୁନା ଧାନ ଗଳା ହେବ ନାହିଁ। ଏ ସବୁ ସେ ଦେଇଛୁ ସେହି ପିଲଟିକୁ, ଯିଏ ତା'ର ବଂଶର ନାମ ରଖିବ ।

ବାକ୍ସର ଢାଙ୍କୁଣି ଟେକଲା । ଆଲୁଅ ଉଠାଇଲା । କେତେ କାଗଜ ବଡା ବଡ଼ା ହୋଇ ଡ଼ୋରରେ ବନ୍ଧା ହୋଇଛୁ । ସବା ଉପରେ ଶାଳ ଲମ୍ବାଳିଆ କାଗଜ-ଟିଏ ଭଙ୍ଗା ହୋଇଛୁ । ମଝିରେ ବନ୍ଧା ହୋଇଛୁ ଖଣ୍ଡିଏ ରଙ୍ଗକନା । ସୁନା ବଢ଼ଉଣୀର କବଲ ହୋଇଥିବ । ତା ପାଖରେ ଗୁଡ଼ିଏ ନୋଟ୍ । ଖେଳେଇ ହୋଇଛୁ । ଗୁଡ଼ିଏ ରେଜାପଇସା ।

ଟଗ୍ର ପାଞ୍ଚଟଙ୍କିଆ ଦ'ଖଣ୍ଡି ନୋଟ୍ କାଢ଼ିଲା । ଢାଙ୍କୁଣି ପକାଇ ଥରେ ଟଶଆ ଆଡ଼କୁ ଗ୍ରୁହିଁ ପଦାକୁ ଆସିଲା । ଭଅଁଗ୍ର ହାତକୁ ଦେଇ କହିଲା, 'ଧଅସି ଧାଇଁ ଯା ଭାଇ ! ମତେ କାହିଁକ କେମିତ କେମିନ୍ତ ଲଗୁଛୁ । କହିବୁ, ମୁଁ ନେହୁଗ୍ର ହୋଇ କହୁଛୁ, ବସିଲାଠଉଁ ଉଠି ଆସିବେ ।

ଭଅଁଗ୍ର କହିଲା, ତୁ କାନ୍ଦ ନା ଅପା ! ସେ ଭଲ ଅଛନ୍ତି । ଦେଖ୍ କେଡ଼େ ଶାନ୍ତିରେ ସେ ଶୋଇ ନଶ୍ବାସ ଗ୍ରୁଡୁଛନ୍ତି । ସୋଗଣା ଘରେ ଲୁହ ଢାଳିବା ଶୁଭ ନୁହେ । ମୁଁ ମୂର୍ଖଟା, ତତେ କ'ଣ ବୁଝେଇବ ?

ଟଗ୍ର ଆଖି ପୋଛୁଲା । ଭଅଁଗ୍ର ମଛେ ମଛେ. ସେ ଦାଣ୍ଡ କବାଟ ଖୋଲି ପଦାକୁ ଗଲା । ଭଅଁଗ୍ର ଅଦୃଶ୍ୟ ହେଲା । ଗଳିଆ ଦାଣ୍ଡମିଣ୍ଡାରେ ନ ଥିଲା । ଚଗଲାଟା, କୁଆଡ଼େ ପଳାଇଛୁ ।

ଟଗ୍ର ଭିତରକୁ ଆସି କବାଟ କିଳିଲା । ଦେଖିଲା, ତା'ର ଅରକ୍ଷିତ ଭିଡ଼-ମୋଡ଼ି ହେଉଛୁ । ଉଠିବ କି ? ନା, ସେ କଡ଼ ଲେଉଟାଇ ପୁଣି ଶୋଇଲା । ଟଶଆ ଘରେ ବାକ୍ସଟି ଖୋଲା ପଡ଼ିଛୁ ! ଭାବିଲା, ଆଗ ତା'କୁ ବନ୍ଦ କରିବ ।

ସେ ଭିତର ପାଖ ଅଗଣାକୁ ଆସିଲା । ଥକ୍କା ହୋଇ ମୂହୂର୍ତ୍ତେ ଠିଆ ହେଲା । ଅଗଣାରେ ଅନ୍ଧାର ଘୋଟି ଆସୁଥିଲା, ଆଉ ସେହି ଅନ୍ଧାରକୁ ଦୂର କରୁଥିଲା ଲଣ୍ଠଣର ଆଲୁଅ ।

ହାତ ଯୋଡ଼ି ସେ ମୁଣ୍ଡରେ ଲଗାଇଲା । ପୁଣି ଆକାଶକୁ ଗ୍ରୁହିଁ ଠାକୁରଙ୍କୁ ସୁମରିଲା । ମନେ ମନେ ସେ ଜଣାଣ କଲା, କାଳିଆ ରେ, ନବରଙ୍ଗିଆ, କେତେ ହାଟ ତୁ ଲଗାଇଛୁ ? କାଲି ତୋ'ର ମଉଛବ । ଅବର ଖେଳିବୁ । ଖେଳ୍ ତୋ'ର ମନଇଚ୍ଛା । ମାଗିଲେ ତୁ ଦେଉ ନାହୁଁ । ନ ମାଗିଲେ ତୁ ଦେଉଥାଉ ।

ଟଗ୍ରର ମୁଣ୍ଡ ଦୋହଲିଲା । କହିଲା, ଉହୁଁ, ଜାଣିଲିଣି । ତୁ ଦେଉ ନାହୁଁ, ତୁ ନେଉ ନାହୁଁ ରେ, ତୁ ଖାଲି ମଉଆଗ୍ର । ଯେମିତ ନଗ୍ରଇବୁ ନଗ୍ରଉ ଆଆ ରେ ଅଲକ୍ଷଣା ! ତୁ ମୋ ଗ୍ରୁତ ତଳେ ତୋ ନୀଳଶଇଳ ପାଦ ବସିଥା । ମୋ'

ଘୃତ ପଥର ହେଲେ ମୋ' ସହିବା ଶକତ ଦୋହଲିବ ନାହିଁ । ମୋ' ପଥର ଛାତିରେ ଛୁର ସୁଖ ଦୁଃଖ ଆଉ ଭେଦିବ ନାହିଁ ।

ପାହାନ୍ତିଆ କୋଇଲିର କୁ-ହୁ ଡାକ ଟେଶ୍ରର କାନରେ ବାଜିଲା । ପୁଣି ଆଉ କେଉଁ ଚଢ଼େଇମାନଙ୍କର ରାବ । ରାତି ପାହିବ ପରା !

ଟେଶ୍ର ଝଣଆର କୋଠରୀ ଭିତରେ ପଶିଲା ।

ଅଗଣାରେ ସନ୍ଧ ସକାଳର ଆଲୁଅ । ଲଣ୍ଠନର ତେଜ 'ମଳିନ ଦିଶୁଛି । ପାଖରେ ଅଚକ୍ଷିତ ଟଙ୍ଗର ଟଙ୍ଗର ହେଉଛି । ଦୁଇ ହାତରେ ଦୁଇଟି କଣ୍ଢେଇ, ଯାହାକୁ ରତନପୁରରେ ତା'ର ଅଜା ଦେଇଥିଲେ '। ବେଙ୍ଗ-ବାଇଦଟି ଟୁନ୍ନାର ହାତରୁ ପିଣ୍ଡା ତଳକୁ ଖସିପଡ଼ି ଭାଙ୍ଗି ଯାଇଥିଲା । ପେଁକାଳିଟିକୁ ପରୀକ୍ଷା କରୁଣୁ ମୁନ୍ନା ଅପଜ କଲାରୁ ବାଜିଲା ନାହିଁ । ଅରକ୍ଷିତ ତା'କୁ ନଜେ ଭାଙ୍ଗି ଦେଲା । ଟେଶ୍ର ଆଗରେ ସେ କହୁଥିଲା । ତା'ର ଅଜଟେପଣ ନାହିଁ ।

ପଲଙ୍କ ପାଖରେ ଠିଆହୋଇ ଟେଶ୍ର ଝଣଆର ଦେହରୁ ମୁଣ୍ଡରୁ ଝାଳ ପୋଛୁଥିଲା । ସତେକି ଝର ଫିଟିଛି । ଟେଶ୍ର ଭାବିଲା, ଜର ଛାଡ଼ିଯିବ । ସେ ଭଲ ହୋଇଯିବ । କବିରାଜେ ତେରିକଲେ କରନ୍ତୁ, ଆସିଲେ ନୂଆ ଔଷଧ ଦେଇଯିବେ ।

ଝଣଆ କେତେ ଡାକ ପରେ ଚାହିଁଥିଲା । ଚେତ୍ ଅଛି । ଚାହୁଁଛି, ପୁଣି ଚାହୁଁ ନାହିଁ । ବୁଝୁଛି, ପୁଣି ବୁଝୁ ନାହିଁ ।

ଅଭିମାନଆଁ ମନକଥା ଶୁଣି କାଳିଆ ଦୟା କରୁଛି । ରଘୁ ଅରକ୍ଷିତକୁ ସେ କରୁଣା କରିଥିଲା । ଶିବକଲ୍ୟାଣ ବି ଅରକ୍ଷିତଟିଏ । ତା' ବାପକୁ ସେ ଭଲ କରିଦେବ ।

ଦେହରୁ ଝାଳ ଶୁଖି ଆସିଲାଣି । ଜର ଛାଡ଼ିଗଲାଣି କି ?

—ଝଣଆ, ଝଣଆ—

ଟେଶ୍ର ଡାକିଲା । ଗେଲବସର ଡାକ । ଗେରସ୍ତର ନାଁ ତୁଣ୍ଡରେ ଧରିବା ଉଚିତ ନୁହେ ବୋଲି ଶାଶୁ କେତେଥର ଶିଖାଇ ଥିଲେ । ହଇହେ ଶବଦ ଉଚ୍ଚାରିବାକୁ ଟେଶ୍ରକୁ ଲାଜ ମାଡ଼େ । କେବେ ତରତର ଥରଥର ଡାକିଲେ ବାହା-ଗଣ୍ଡିରୁ ଚାହିଁକି ଭିଡି ଖାମବଳୁଆ ଝଣଆ ତା' ପିଠିରେ କାବୁଡ଼ା ଥୁଏ । କହେ, ହଇବେ, ମୋ'ର କ'ଣ ନାଁ ନାହିଁ ?

ନଜର ନାଁ ଟେଶ୍ରର ମୁହଁରୁ ଶୁଣିବାକୁ ସେ ସୁଖ ପାଏ ।

କେତେ ଡାକରେ ଝଣଆ ଉଁ କଲା । ଆଖି ଖୋଲିଲା । ଚାହିଁ ରହିଲା ।

—ମତେ ଚହ୍ନୁଛ ଝିଅ, ଝିଅ···

—ବୋ-ଉ-ଉ, ବୋ-ଓ-ଉ····

ଟଗ୍ରି ଶଙ୍କିତ ହେଲା । କହିଲା, ଚହ୍ନି ପାରୁନା ? ଭଲ କରି ଦେଖ । ମୁଁ ତ ଟଗ୍ରି ।

ସେମିତି ସେହି କୋରଡ଼ିଆ ଆଖି ଦିଓଟି ଅନେଇ ରହିଲା । ରହି ରହି ପଲକ ପଡ଼ୁଥାଏ ।

ଆକୁଳ ସ୍ୱରରେ ଟିକିଏ ବଡ଼ପାଟିରେ ଟଗ୍ରି କହିଲା, ଚହ୍ନିଲ ତ, ମୁଁ ତମର ଟଗ୍ରି ମ ! ହେଇଟି ଦେଖ, ସେ ତ ତମର ପୁଅ ।

ଆଖିରେ ଲୁହ ଭରି ଟଗ୍ରି ଅରକ୍ଷିତର ଡେଣାଧରି ତାକୁ ଉଠାଇଲା । ଛାତିରେ ଧରିଲା । କହିଲା, ଦେଖ—

ଝିଅର ଦୀର୍ଘଶ୍ୱାସ ତା'ର ଛାତି ଥରାଇଲା । ଖଇ ବାଜିଲା ପାଟିରେ; ସେ ଉଚାରିଲା, ଆ-ଇ-ଛୁ—, ଯା-ଉ-ଛୁ···

—ଦେଖ, ଭଲ କରି ଦେଖ ମ, ଆମେ ଦିହେଁ ଆଇଛୁ । ତମରି ପାଖକୁ । ତମକୁ ଛାଡ଼ି ଆଉ କେବେ କୁଆଡ଼ିକି ଯିବୁ ନାହିଁ । ତମେ ନିଶ୍ଚେ ଭଲ ହେବ । ତମ ପୁରୁଣା ଦେହ ଫେରିପାଇବ । କେଡ଼େ ସୁଖରେ ସଂସାର କରିବା । ଶୁଣୁଛ କି ? ହେ-ହେ-ହେ, ଶୁଣ ମ, ଶୁଣୁଛ ?

ଝିଅ ଆଖିପତା ମୁଦି ଯାଇଥିଲା । ଟାଣି ଟାଣି ରହି ରହିକା ନିଶ୍ୱାସ ଛାଡ଼ୁଥିଲା । କ'ଣ ସେ କହୁଥିଲା ପରା ! ଓଠ ଦିଓଟି ଥରୁଥିଲା । ଶବଦ ଫୁଟୁ-ନ ଥିଲା ।

ନିବ୍ରତ ଟଗ୍ରିର ବୁଦ୍ଧି ହଜିଗଲା । ପୁଅକୁ କାଖରୁ ଓହ୍ଲାଇଲା । ଆତୁରିଆ ହୋଇ ଝିଅର କପାଳରେ ହାତ ଥାପିଲା । ଭାବିଲା—ଉଷୁମ ନାହିଁ, ଜର ଛାଡ଼ି ଗଲାଣି । ନିଦ ଲାଗୁଥିବ । କେମିତି ଶୁଆଁଇବ ? କେମିତି ଚହ୍ନିବ ନିଦୁଆ ଆଖିରେ ? କେମିତି ବା କହି ପାରିବ ? ନିଦ ତ ଆନନ୍ଦ କରିଦବଣି । ଶୋଉ, ଟିକିଏ ଶାନ୍ତିରେ ଶୋଉ । ଦେହକୁ ହିତ । ସେ ଭଲ ହୋଇଯିବ । ଆରେ କାଳିଆ, ଭଲ କରିଦେ । ଆଉ ତୋ ନିସ୍ତୁର ନାଟ ଲଗାନା । ତୋ' ଶରଣ ପଶୁଛୁ

ଦାଣ୍ଡ କବାଟ ଧଡ଼ ଧଡ଼ ହେଲା ।

ଟଗ୍ରି କହିଲା, ଆରେ ପୁଅ, ଭଅଁରି ଆସିଲାଣି । କବିରାଜ ଆସିଥିବେ । ଠାକୁରେ ବଡ଼ଲୋକ । ଆମ ଗୁହାରି ଶୁଣିଲେ ।

ଟଗ୍ରି ଦାଣ୍ଡଘରକୁ ଧାଇଁଗଲା । ତା' ପଛେ ପଛେ ଅରକ୍ଷିତ ।

ଶୀତଳ ସକାଳର ନରମ ଆଲୁଅରେ ଚାରିଆଡ଼ ଉଜ୍ଜ୍ୱଳ ଦିଶୁଥାଏ । ଦାଣ୍ଡକଡ଼ର ଫଗୁଆ କୃଷ୍ଣଚୂଡ଼ାର କେଉଁ କନ୍ଦରୁ କୋଇଲିଟିଏ ଦୋଳପୂନେଇଁର ଧୀର ଆଗମନକୁ ସ୍ୱାଗତ ଜଣାଉଥାଏ ।

ଛାଆଳି ତଳରେ ଛାଟଲଗା ବଳଦ-ଗାଡ଼ିଟି ରଖା ହୋଇଥିଲା । ଘୁଙ୍ଗୁରୁ-ମାଳ ପିନ୍ଧା ହାତୀ ପରି ଏକ-ମସ୍ତର ବଳଦ ହଳକ ଗାଡ଼ିରୁ ଫିଟି ତଳେ ମୁହଁ ମାରୁ-ଥିଲେ । ମୁଣ୍ଡ ଟେକି ଚାରିଆଡ଼କୁ ଚାହୁଁଥିଲେ । ଗାଡ଼ି କଡ଼ରେ ଠିଆହୋଇଥିଲା ଟହ୍ଲା ଲୋକଟି ।

ରତନପୁର ସରପଞ୍ଚ ଚଇତନ ପାଣ୍ଡଙ୍କର ଗାଡ଼ିଆଳ ।

କିଛି ପଚାରିବା ଆଗରୁ ଭଅଁସା ତା'ର ଡ଼େରିର କାରଣ କହିଲା— କବିରାଜଙ୍କ ଘର ଆଗରେ ବସି ରହିଥିଲି ଅପା ! ସେ ଉଠି ନିତ୍ୟକର୍ମ ସାରିଲେ । ଠାକୁର ପୂଜା କଲେ । ତେବେ ଯାଇଁ ବାହାରିଲେ । କହିଲେ, ଠାକୁରଙ୍କୁ ଜଣାଣ ନ କରି ଗଲେ ଶୁଭଫଳ ଫଳିବ ନାହିଁ । ପୁଣି କହିଲେ, ରୋଗୀ ନ ଦେଖି ଟଙ୍କା ଛୁଇଁବେ ନାହିଁ ।

ଟେରି ଚାହିଁ ରହିଥିଲା କବିରାଜଙ୍କୁ, ଆଉ ତାଙ୍କର ଦୁଇ ପାଖରେ ଆସୁଥିବା ତା'ର ବାପା କାର୍ତ୍ତିକ ମହାନ୍ତି ଓ ମଉସା ଅଚ୍ୟୁତ ବେହେରାଙ୍କୁ । ସେ ଦୁହେଁ କବିରାଜଙ୍କୁ କ'ଣ ପଚାରି ବୁଝୁଁଥିଲେ । ତାଙ୍କର ପାଦ ମଠେଇ ମଠେଇ ପଡ଼ୁଥିଲା ।

ଟେରିର ବ୍ୟାକୁଳତା ତା'ର ବିମୂସ୍ତ ଭିତରେ ବୁଡ଼ି ଉବୁଟୁବୁ ହେଉଥିଲା । କେତେ କେତେ ପ୍ରଶ୍ନ ସେହି ବିମୂସ୍ତର ତକ୍ଷଣ-ବ୍ୟାମୃଢ ଭିତରେ ଶିର୍ଙ୍ଗିରୁଡ଼ା ଦେଉଥିଲା ।

ସେମାନେ ପୋଖରୀ ପାହାଚ ତଳକୁ ଆସିଲେ । ଅରକ୍ଷିତ ଅଚ୍ୟୁତଙ୍କ ପାଖକୁ ଧାଇଁଗଲା । ସେ ତାକୁ କାଖକୁ ନେଲେ । ଗେଲ କଲେ । ସେ ସୁଚାଇ କହିଲେ, ପାଏ କାଲି ସକାଳେ ଆସି ପହୁଞ୍ଚିଲେ ମା ! ତୋ' ବାପା ଫେରିଲେ ଯାଇଁ ରାତି ପହରକେ ।

କାର୍ତ୍ତିକ କହିଲେ, ହଁ ମା ! ବୁଝି ଆସିଲି ତୋ' ମାମୁଁ ଘରୁ । ସେ ଟୋକା ସତେ ନାଟୁରିର ସାବତପୁଅ । ସାବତ ବୋହୂ ତାକୁ ଘରେ ଥାନ ଦେଲା ନାହିଁ । ପଳେଇ ଆଇଲା ବାପଘରକୁ । ଗାଁ, ଗାଉଁଲିମାନେ ପାଖ ପୂରାଇଲେ ନାହିଁ ।

ନାଟୁରି ଯାହା ନେଇଥିଲା ପୁଡ଼ାରେ ରଖିଥିଲା । ତା' ବଡ଼ଭାଉଜକୁ ଦେଇ କହିଗଲା, ରଖିଥା, ମୋ ଝିଅ ଟେରିର ଏ ଚଳ, ମୁଁ ନଈରୁ ଗାଧୋଇ ଆଉଛି ।

କାନ୍ତୀରିଆ ନଈ । ସେ ଆଉ ଫେରିଲା ନାହିଁ । ପାଞ୍ଚ ବର୍ଷ କଟିଲାଣି ।

ମୁଁ ବାହୁଡ଼ି ଆସିଲି । ମୋ ବୋହୂକୁ ତୋ'ର ସେ ପୁଡ଼ା ଦେଲି । ସବୁ ଶୁଣିଲି ମା ! ଭାବିଲି, ତୋ ଛଡ଼ା ଆଉ ମୋର କିଏ ଅଛି ? ଏଇ

ପିଲାଟି ମୋ ଗୁଢ କୋଳ ପକାଇଲା । ଏକା ଚଇତନ ମୋର ଆଶା ଭରସା । ଜଗତକୁ ଭୁଲିଗଲି ଲୋ ମାଆ, ଅଚ୍ୟୁତ ସଙ୍ଗରେ ଗଲି ତାଆର ପାଖକୁ ।

ଟେଣ୍ଡିର ଆଖିରୁ ଦୁଇଧାର ଲୁହ ଗଡ଼ି ଆସିଲା ।

କବିରାଜେ କହିଲେ, ଏ ସବୁ କଅଣ ଗପୁଛ ମହାନ୍ତିଏ ? ଆଜିପରି ଶୁଭ ଦିନରେ ସକାଳଟାରୁ କି ଦୁଃଖର ଖବର ଦେଉଛ ? ଲକ୍ଷ୍ମୀପରି ଝିଅର ଆଖିରୁ ଅନର୍ଥକ ଲୁହ ଗଡ଼ାଉଛ ? ଛି, ଛି । ଆଗ କୋଇଁଙ୍କର ଦେହର ଖବର କୁହ ।

ଭଅଁରି ଅଗଣାକୁ ଚାଲିଯାଇଥିଲା । ଟେଣ୍ଡିର ପଛେ ପଛେ କବିରାଜେ ଦାଣ୍ଡ ଘରେ ପାଦ ପକାଇଲେ । ପଚାରିଲେ, ଏବେ ସେ କେମିତି ଅଛନ୍ତି ମା ?

ଟେଣ୍ଡି କହିଲା, ଚିହ୍ନୁଥିଲେ । କଥା ବି କହୁଥିଲେ । ଦେହରୁ ଝାଳ ବୋହୁଥିଲା । ପୋଛି ଦେଲି । ଜର ନାହିଁ । ଶୋଇଛନ୍ତି ।

କବିରାଜେ ହସ ହସ ହେଲେ । ମୁଣ୍ଡ ଟିଙ୍କାରିଲେ । କହିଲେ, ଖାଲି ଔଷଧ ଖାଇଲେ କ'ଣ ରୋଗ ଭଲ ହୁଏ କି ? ଠାକୁରଙ୍କର କରୁଣା ବି ଲୋଡ଼ା । ତାଙ୍କର କୃପାରେ ପଙ୍ଗୁ ପର୍ବତ ଲଙ୍ଘନ କରେ । ଏଠାକୁ ଆସିବା ଆଗରୁ ଝିଅବାବୁଙ୍କ ଆରୋଗ୍ୟ କରିବା ପାଇଁ ମୁଁ ପ୍ରାର୍ଥନା କରି ଆସିଛି । ପ୍ରଭୁ ନିଶ୍ଚୟ ଦୟା କରିବେ । ଭାବୁଛି, ଆଜି ତାଙ୍କର ଔଷଧ ବଦଳାଇବି ।

କବିରାଜେ ଝିଅଆର କୋଠରି ଭିତରେ ପଶିଲେ । ଦ୍ୱାରବନ୍ଧର ସେପାଖେ ଏପାଖେ ଠିଆ ହୋଇ କାର୍ତ୍ତିକ ଓ ଅଚ୍ୟୁତ ଚାହିଁ ରହିଥିଲେ । ଆଗରେ ଭଅଁରି । ଉଦ୍‌ବିଗ୍ନ ହୋଇ ଅଳଗୁମୁଣ୍ଡୀ ଟେଣ୍ଡି ପିଣ୍ଡା ଉପରେ ଅରକ୍ଷିତର ହାତ ଧରି ଅଟକାଇ ରଖିଥିଲା । ମନେ ମନେ ଆରତ-ତାରଣ ଜଗନ୍ନାଥଙ୍କୁ ସ୍ମରଣ କରୁଥିଲା । ଝିଅଆକୁ ଭଲ କରି ଦେବାପାଇଁ ଆକୁଳ ମିନତି କରୁଥିଲା ।

— ୨୧ —

ଝିଅମଣି ଖୁଣ୍ଟିଆ ଶାନ୍ତିରେ ଶୋଇଥିଲେ । ସବୁ ଆଶାଦୁରାଶା, ଦୁଃଖଜଞ୍ଜାଳ ଆସନ୍ତାକାଲିର ଭାବନା ହରଣକାରୀ ଶାନ୍ତି ପ୍ରଦାୟିନୀ ମହାନିଦ୍ରା ତ ଭାଙ୍ଗିବାର ନୁହେଁ— !

●

ରାଜାବଗିଚା
କଟକ

କାହ୍ନୁଚରଣ
ତା ୩୦ । ୪ । ୬୫